ଚିତ୍ର କ'ଣ ସତରେ
ମଣିଷ ଭଳିଆ ଦିଶେ ?
ନା ମଣିଷଙ୍କ ସ୍ୱପ୍ନ ପରି ଲାଗେ
ସବୁ ଛନ୍ଦାଛନ୍ଦି ଶିଆଳିଲଟା ପରି
ସକାଳର କୁହୁଡ଼ି ପରି
ଘାସରେ କାକରର ମୁକ୍ତା ପରି ।

ଚିତ୍ର କ'ଣ ସତେ ଅକୁହା କବିତା !
ଯା ଦେହରେ କଥା ହଜିଥାଏ
ଯାହା କହିବ କହିବ ହୁଏ
ଅଥଚ କହି ବି ପାରେନା
ରହି ବି ହୁଏନା ନିଷ୍କୁଚିରେ ।

କେଉଁ ସାଗରର ଅତଳ ଗର୍ଭରୁ
ଆଖିରେ ଆଖିରେ ତୋଳିବାକୁ ହୁଏ
ମୁକ୍ତା ହୀରା ନୀଳା ଓ ଶାମୁକା ।

ଚିତ୍ର କ'ଣ ନିଜେ ଇ ମଣିଷ
ନା ମଣିଷଙ୍କ ଛାଇ ?
ମଣିଷ ପରି ଦିଶେ
ଅଥଚ ମଣିଷ ନୁହେଁ
ଯାହା ମଣିଷଠୁ ଭିନ୍ନ
ତୃଷ୍ଣନର ପ୍ରତିଧ୍ୱନି ଭଳି
ଖାଲି ଅକୁହା ଯନ୍ତ୍ରଣା ।

ଦିନନାଥ ପାଠୀ
**ପୁନର୍ନବା**
ମେଟା ଫିକ୍‌ସନ୍

ପ୍ରଥମ ପ୍ରକାଶନ: ୧୯୯୯

ପ୍ରକାଶକ : **ଅବନ୍ତୀ**
ଇ - ୪୯/୧୩୮୬
ଭୀମଟାଙ୍ଗି, ଭୁବନେଶ୍ୱର- ୭୫୧୦୨୦
ଫୋନ୍ : ୦୬୭୪ ୫୯୦୨୧୨
ଫାକ୍ସ : ୦୬୭୪ ୫୯୨୮୯୫

ପ୍ରଚ୍ଛଦ ପରିକଳ୍ପନା : ଲେଖକ
ପ୍ରଚ୍ଛଦଫୋଟ : ଡ଼ାଭିଡ୍ ଏମ୍ ପେଟର୍ସ
ପ୍ରଚ୍ଛଦ ମୁଦ୍ରଣ : ବିକ୍ରମ ମେହେର୍‌ା
ମୁଦ୍ରଣ : ଭୋଳାନାଥ ପ୍ରିଣ୍ଟର୍ସ, ଭୁବନେଶ୍ୱର

ମୂଲ୍ୟ : ୨୦୦ ( ଦୁଇ ଶହ ଟଙ୍କା ମାତ୍ର )

Dinanath Pathy
**Punarnava**
Meta Fiction

Publisher : **Avanti**
E- 49/1386 Bhimatangi
Bhubaneswar 751020
Tel : 0674 590212
Fax : 0674 592895



Jacket and Drawings : Dinanath Pathy
Jacket Photo : David M Peters
Jacket Printing : Vikram Mehera

Printed at : Bholanath Printers, Bhubaneswar

Price : Rs 200 (Rupees Two Hundred Only)

ଜୀବନ ଆଉ କେତେ କି ?
ପିତୁଳା ଗଢ଼ିବା ଓ ନଶ୍ୱରିବା ଭିତରର
ସମୟଟକ ତ !

ପ୍ରାଣ ଆଉ କେତେ କି ?
ବାକ୍ୟଟିଏ ଝୁରିବା ଓ ନିଶବ୍ଦ ହେବାର
ବ୍ୟବଧାନ ତ !

ହସ ଆଉ କ'ଣ କି ?
ଦୁଃଖର ମହାସାଗରରେ
ବୁନ୍ଦାଏ ଆଲୋକ ତ !

ତୁ କିଏ ?
ଚିହ୍ନିନେ, ତାଙ୍କ କଳାକୁଞ୍ଜର
ଗଦାଏ ପିତୁଳି ଭିତରୁ

ତୋ ସଫେଦ କ୍ୟାନଭାସ୍
ବର୍ଣ୍ଣମୟ ହେଇଯାଉ
ହସି ହସାଉ
କାନ୍ଦି କନ୍ଦାଉ
ସୂର୍ଯ୍ୟୋଦୟଠୁ
ସୂର୍ଯ୍ୟାସ୍ତ ଭିତରେ
ବିତରୁ ଯାହା ବିତରିବା କଥା
ସ୍ନେହ ପ୍ରେମ ହିଂସା ଘୃଣା
ଲୋଭ ମୋହ ମମତା
ଯେତେ ସବୁ ଭଲ ମନ୍ଦ

ତା'ପରେ ?

ଘୋଟିବ ଅନ୍ଧାର
ମାଟି ଆଉ ପାରାବାର
ବ୍ୟୋମ ଓ ଶରୀର
ସବୁ ହେବ ଏକାକାର

ଜଣେ ସ୍ନେହମୟୀ ଜନ୍ମଦାତ୍ରୀ
ଜଣେ ଆଦରଣୀୟା କନ୍ୟା
ଆଉ ଜଣେ ପ୍ରେମମୟୀ ପତ୍ନୀ

ସମସ୍ତେ ସ୍ରଷ୍ଟାର ପିତୁଳୀ
ମାଟିର ଦେହ ମାଟିରେ ମିଶିଲା
ରୂପ ଓ ରଙ୍ଗର ଖେଳ ଶେଷ ହେଲା

ଦେ, ପୁଣି ଥରେ ଗଢ଼ି ଦେ
ପିତୁଳୀରେ ପ୍ରାଣ ଭରି ଦେ
ତୁ ସ୍ରଷ୍ଟା, ପାରିବୁ
ଦେ' ଗଢ଼ିଦେ

ସେମାନେ କହିଯାଆନ୍ତୁ
ଯାହା କିଛି ବାକି ରହିଥିଲା

ଦେ' ଗଢ଼ିଦେ
ସେମାନେ
ପୁନର୍ନବା ହେଇଯାଆନ୍ତୁ

କମଳା ସୁନନ୍ଦା ଆଉ ଅବନ୍ତୀ

ଇନ୍ଦ୍ରିୟାଶ୍ରୟୀ ହେଲେ ସୃଷ୍ଟି ଅବୋଧ୍ୟ ହୋଇପଡ଼େ । କିନ୍ତୁ ଇନ୍ଦ୍ରିୟାନୁଭୂତି ବାହାରେ ବୋଧର ପ୍ରଶ୍ନ ଉଠେନା । ଚିତ୍ର ଦର୍ଶନରେ ଏଭଳି ଅବସ୍ଥାଟିଏ ଆସେ । ସାହିତ୍ୟ ପଠନରେ ମଧ୍ୟ ଅନୁରୂପ ପର୍ଯ୍ୟାୟଟିଏ ଅଛି । ନାମ ରୂପ ରଙ୍ଗ ଅକ୍ଷର ଭାଷା ଉପମା ଓ କଳ୍ପ ନିଜସ୍ୱ ହରେଇଦେଲା ପରେ, ଗୋପୀଙ୍କ ଭଳି ନିଜକୁ ଅନାବରଣ କରିଦେଲା ପରେ, ଯାହା ଦର୍ଶକ ଓ ପାଠକକୁ ଆଚ୍ଛନ୍ନ କରେ ତାହା ଚିତ୍ର ନୁହେଁ, ସାହିତ୍ୟ ବି ନୁହେଁ । ତାହା ସୃଷ୍ଟିର ଆତ୍ମା । ଦେହ ନୁହେଁ । ତାହା ନିର୍ବିକଳ୍ପ ଆନନ୍ଦ, ରମଣର ଶୀର୍ଷ ।

ଚିତ୍ରଦର୍ଶନ ଓ ସାହିତ୍ୟ ପଠନ ସାରୋଲାଙ୍କ ବର୍ଣ୍ଣିତ ପିତୁଳୀ ରମଣ ଭଳି । ଏଥିରୁ ଯେଉଁ ଆନନ୍ଦ ମିଳିଲା ତାହା ଅଯୋନି ସମ୍ଭୂତ, ଦୈହିକ ନୁହେଁ, ଅପାର୍ଥିବ । ରାଧାକୃଷ୍ଣଙ୍କ ପ୍ରେମ ମଧ୍ୟ ଏହି ପର୍ଯ୍ୟାୟର, ଅପ୍ରାକୃତ ଓ ଅଲୌକିକ ।

ମଣିଷ ପିତୁଳି ଗଢ଼େ, ଜୀବନ୍ୟାସ ଦିଏ । ପିତୁଳି କଥା କହେ, ପ୍ରେମ ବିତରେ, ରମଣ ସୁଖ ପ୍ରଦାନ କରେ ତାକୁ ତିଆରି ଥିବା ମଣିଷକୁ । ସେଇଥିପାଇଁ ମଣିଷ ପିତୁଳା ଗଢ଼େ । ଗଢ଼ିସାରିଲାପରେ ଆଉ କାରଣ ରହେନା । ଗଢ଼ିବା ହିଁ କାରଣ । ଗଢ଼ଣ ସୁଖ ।

ଯେଉଁମାନେ ଚିତ୍ରପିତୁଳାକୁ ନେଇ ବଞ୍ଚନ୍ତି ସେମାନଙ୍କ ପାଇଁ ସଂସାର ପିତୁଳାମୟ । ସବୁ ତ କଣ୍ଢେଇର ଖେଳ ।

ଗୌରୀ ପୁନର୍ନବା ହେଉଥିବା ଗୋଟିଏ ପିତୁଳୀ ମାତ୍ର, କଳାକୁଞ୍ଜର ନଡ଼ା ଓ ମାଟିର ମୂର୍ତ୍ତି, ମନ୍ଦିରର ଚିତ୍ରିତ କାଠର ବିଗ୍ରହ ଓ କଳାମୁଗୁନି ପଥରର ଖୋଦିତ ପ୍ରତିମା ମଧ । ସ୍ରଷ୍ଟା ହାତରେ ସବୁ, ସମସ୍ତେ ପୁନର୍ନବା ହୁଅନ୍ତି, ହେଉଥାନ୍ତି । ଶେଷରେ ନିଜେ ସ୍ରଷ୍ଟା ବି । ଗୌରୀ ସବୁ ନାରୀ ଭଳି ଅର୍ପିତା ଓ ଭୋଗ୍ୟା । କାହାର ? ପିତୁଳାର, ମଣିଷର ଓ ଶେଷରେ ଅସରନ୍ତି କଳ୍ପନାର, ଅଭିବ୍ୟକ୍ତିର ।

ଯିଏ ପିତୁଳି ଗଢ଼େ ମାଟି କାଠ ରଙ୍ଗ ଓ ଭାଷାରେ ସେ ବିଶ୍ୱକର୍ମା । ଜଗନ୍ନାଥଙ୍କ ଭଳି ଅସମ୍ପୂର୍ଣ୍ଣ ପ୍ରତିମା ଗଢୁ ବା ରାଧାଙ୍କ ଭଳି ସମ୍ପୂର୍ଣ୍ଣ ବିଗ୍ରହ ଗଢୁ ବିଧାତା ତାକୁ ଈର୍ଷା କରନ୍ତି । ତାଠୁ ସବୁ ଜାଗତିକ ସୁଖ କାଢ଼ିନିଅନ୍ତି । ସେ ହିଁ ନିତ୍ୟାନନ୍ଦ । ତଲ୍ଲୀନ ହେଇ ରହୁଥିବା, ନିଜ ସୃଷ୍ଟିରେ ମଜି ରହୁଥିବା ମଣିଷ । ମଣିଷ ହେଇଚି ବୋଲି ସେ ବେଳେବେଳେ ସୁଖ ଇଚ୍ଛେ, ଯାହା ପାଏନା । ବିଧାତାର ଈର୍ଷାର ଉତ୍ତରରେ ସେ ସର୍ଜନା କରୁଥାଏ, ଭାଙ୍ଗୁଥାଏ, ଗଢୁଥାଏ ପୁଣି ଭାଙ୍ଗୁଥାଏ ନୀଳାମ୍ବର ମିଶ୍ରେଙ୍କ କଳାକୁଞ୍ଜ ଭଳି, ଏ ଉପନ୍ୟାସର ଅଧିକାଂଶ ଚରିତ୍ର ଭଳି । ପୁନର୍ନବା ଏକ ପ୍ରକ୍ରିୟା ମାତ୍ର ।

ମଠ ସଂସାରର ଏକ ବାସ୍ତବରୂପ ଯେଉଁଠି ସଂଭୋଗ ଓ ବୈରାଗ୍ୟ ଫେଣ୍ଟାଫେଣ୍ଟି ହେଇ ରହିଥାନ୍ତି । ମଠ ପରଂପରାରେ ରମଣର ଶୀର୍ଷ ସୁଖ ନାହିଁ । ଲୌକିକତା ଅଲୌକିକତା ପାପ ପୁଣ୍ୟ ବି ନାହିଁ । ମଠରେ ଯାହା ସମ୍ଭବ ତାହା ଜଗତରେ ବି ନୁହେଁ । ପୁଣି ମଠରେ କିଛି ବି ସମ୍ଭବ ନୁହେଁ । ମଠ, ମହନ୍ତର ଦେହ ଭଳି ଏକ ନିର୍ବେଦ ଅଭିବ୍ୟକ୍ତି । ଯିଏ ଯାହା ଇଚ୍ଛେ ତାକୁ ସେଭଳି ସବୁ କଥା ଦୃଶ୍ୟ ହୁଏ । ସଂସାର



ରଜ୍ଜୁରେ ସର୍ପ ଭଳି ଲାଗେ । ନବନାରୀକୁଞ୍ଜର ରଚନା କର ବା କନ୍ଦର୍ପରଥ ରଚନା କର ଆନନ୍ଦ ଅରୂପ ଓ ଅବବୋଧର ।

ପୁନର୍ନବା ଜଣେ ଓଡ଼ିଆ ଶିଳ୍ପୀର ଅବବୋଧର କଥା । ଚିତ୍ରଭାଷାର କଥା କବି ଭାଷାରେ । ଅନୁଭୂତିର ଭାଷାନ୍ତର । ଆମ ସାହିତ୍ୟ ପରଂପରାରେ ଚିତ୍ରଭାଷା ବ୍ୟତିରେକ କାବ୍ୟ ଭାଷାର ଉନ୍ମେଷ ନଥିଲା ବୋଲି ଜାଣିଲା ପରେ ଏଠି ଏ ଉଭୟଙ୍କୁ ଏକା ସାଙ୍ଗରେ ଅବବୋଧ କରିବାର ପ୍ରଚେଷ୍ଟା । ସହବାସ ଅର୍ଥରେ ଅଳଂକରଣ ଅର୍ଥରେ ନୁହେଁ । ଚିତ୍ରଭାଷାର ଲୋକଟିଏ କବିଭାଷାରେ କହିବାପାଇଁ ଗଲାବେଳେ ପୂର୍ବ ସୁକୃତ ଭଳି, ସଂସ୍କାର ଭଳି ଆପେ ଆପେ ସବୁ ଉତୁରି ପଡ଼େ । ସ୍ୱତନ୍ତ୍ର ପ୍ରଚେଷ୍ଟା ଲୋଡ଼ା ହୁଏନା । ଏପରି ମଧ କୁହାଯାଇପାରେ ଏହା ପ୍ରଚ୍ଛଦର ଏକ ବିସ୍ତାର ମାତ୍ର । ସେଭଳି ନଥିଲା ବୋଲି ଏଭଳି ହେବାକଥା ନୁହେଁ , ସୃଷ୍ଟିରେ ଏମିତି କି ସେମିତି ବିଧାନ ନାହିଁ । ଯାହା ନ୍ୟାସ ହେଇପାରିଲା, ଯାହା ସମ୍ଭବ ହେଇପାରିଲା ଉପନ୍ୟାସରେ ।

ଏ କଥନ ପ୍ରାକ୍‌କଥନ ନୁହେଁ , ସାମାନ୍ୟ କଥନ ବି ନୁହେଁ । ଏହା କିଛି ବି ନୁହେଁ । ଉପନ୍ୟାସରେ ନୀଳାମ୍ବର ମିଶ୍ରେ କହିଲା ଭଳି ଏହା ରାଧାଙ୍କ ଗୁପତଅଙ୍ଗ । ତୋତେ ନା ମୋତେ ଦୃଶ୍ୟ ହେବାକଥା ନୁହେଁ । ଦୃଶ୍ୟ ହେଲେବି ନହେଲା ପରି ।

ଚିତ୍ରକର ଏଠି ଲେଖକ । ଏହା ତାର ବି ପୁନର୍ନବା ହେଇପାରେ ।

ନିତ୍ୟାନନ୍ଦ ଆଡ଼ବାୟା ପିଲା । ଡେଙ୍ଗା, ବାପ ଭଳି ଧଡ଼ଧଡ଼ିଆ କିନ୍ତୁ ତମ୍ବା ପାତ୍ରୀ ଭଳି ଦେହର ରଙ୍ଗ । ମୁହଁରେ କୃଷ୍ଣବର୍ଣ୍ଣର ଗୋଛାଏ ଦାଢ଼ି । ପରିଷ୍କାର ଦାନ୍ତ, ପାନ ନାହିଁ କି ଗୁଣ୍ଡି ନାହିଁ କଷାଳିଆ ଦିଶିବାକୁ । ଆଣ୍ଠୁ ଡ଼େଉଁ ନ ଡ଼େଉଁ ପାକଲା କସ ଗାମୁଛା ଖଣ୍ଡେ ପିନ୍ଧିଥାଏ । ଆଉ ଖଣ୍ଡେ କାନ୍ଧ ଉପରେ ପକେଇ ଥାଏ । ଝପଟିଆ ଚାଲି, ଲାଗିବ ଆଗକୁ ଆଗକୁ ଝୁଙ୍କି ପଡ଼ି ଫିଟିଯାଉଛି । ଭେଣ୍ଡାଟେ ହେଲାଣି ବାହାଚୂଡ଼ା ହେଇନି । କିମିତି ବା ହୁଅନ୍ତା । କିଏ ବା କରେଇ ଦିଅନ୍ତା । ନନା ବୋଉ ପିଲାଟି ବେଳୁ ତ ବାଧକରେ କାଳ ହେଇଯାଇଛନ୍ତି । ଖୁଡ଼ୀଙ୍କ ପାଖରେ ରହି ଛୋଟରୁ ବଡ଼ ହେଇଛି । ଖୁଡ଼ୀ ଏଣେ ବାଲ୍ୟ ବିଧବା । କକେଇ ମଦ ପାଣି କରି ତାଙ୍କ ଭାଗର ଭୂ ସମ୍ପତ୍ତି ତକ ଉଡ଼େଇ ଦେଇଛନ୍ତି । ଘର ବି ସାଉଡ଼ି ଡ଼ିହ ହେଇଯାଇଛି । ଆଉ ତାଙ୍କ ଅନ୍ତେ ଖୁଡ଼ୀ ଯାଆନ୍ତେ ବା କୁଆଡ଼େ । ଶକୁନ୍ତ ପକ୍ଷୀ ଭଳି ନିତ୍ୟାକୁ ସେ ଆଦରି ପଡ଼ି ରହିଛନ୍ତି । ବିଅର୍ଥ ଯୌବନ ନେଇ କାଳ କାଟୁଛନ୍ତି । ମଠା ଶାଢ଼ି ଓ ସାଦା ପିନ୍ଧାରେ ବି ଖୁଡ଼ୀ ପିତୁଳୀ ଭଳି ଦିଶନ୍ତି । ଆଖିରୁ ବୟସ ଖସିନି, ଓଠରୁ ରଙ୍ଗ ମଉଳିନି, ଜଙ୍ଘ ଦିଟା ମାଂସଳ ଆଉ ଭାରି । ନିତ୍ୟା ଶାଗ ପେଜ ଖାଇ ବଂଚିଯାଇଛି । ବଡ଼ କଥା ବୋଲ । ମଠ ଭାତ ଖାଇ ଟୋଲ୍‌ରେ ମଧମା ଯାଏଁ ସଂସ୍କୃତ ପଢ଼ିଛି । ପିଲାଟାର ଅମରକୋଷ ଓ ସଂସ୍କୃତ ବ୍ୟାକରଣ ଜଳବତ୍ ମୁଖସ୍ଥ । ମଗାଯଚା କରି ଉପନୟନ ବ୍ରତ ବିଧାନଟି ବଢ଼ିଯାଇଛି । ବ୍ରାହ୍ମଣ ପିଲାଙ୍କ ଏ କର୍ମଟି କେବେ ଅଟକେ ନାହିଁ । ପୂଜାପାଟଳ, ଓଷାବ୍ରତ, କର୍ମକାଣ୍ଡରେ ନିତ୍ୟା ଧୁରନ୍ଧର । କିନ୍ତୁ ମଝି ମଝିରେ ବାଟ ହୁଡ଼େ । ମନ ଉଚ୍ଚାଟ ହେଲେ ଯାହା ତାହା ଶ୍ଲୋକ ପଢ଼ିଦେବ । ଆଜି କାଲି ସଂସ୍କୃତ କିଏ ବୁଝୁଛିଯେ । ସେ ବୋଲିବା ତକ ଏମିତି ଘଡ଼ଘଡ଼ି କରି ବୋଲିବ ଯେ ପାଟିରେ ବାଟୁଳି ଲାଗିବନି । ତାକୁ ବୁଝିରେ ପାରିବା ସହଜ ନୁହେଁ । ଧରାଯାଉ ସେଆରମ୍ଭକଲା,

ଓଁ ଶ୍ରୀବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ ।
ଗଙ୍ଗେ ଚ ଯମୁନେ ଚୈବ
ଗୋଦାବରି ସରସ୍ୱତି ।
ନର୍ମଦେ ସିନ୍ଧୁକାବେରୀ

ଜଲେଽସ୍ମିନ୍ ସନ୍ନିଧିଂ କୁରୁ ।।
କୁରୁକ୍ଷେତ୍ରଗୟାଗଙ୍ଗା
ପ୍ରଭାସପୁଷ୍କରାଣି ଚ ।
ଏତାନି ପୁଣ୍ୟତୀର୍ଥାନି ... ।।

ତାପରେ ଗଙ୍ଗାନଦୀ ପୋଲ ଉପରେ ରେଳଗାଡ଼ି ପରି ବାକ୍ୟ ଛୁଟି ଚାଲେ । ବେଳେ ଅଧେ ସିଗ୍ନାଲ୍ ନମିଳିଲେ ଅଟକି ଯାଇପାରେ, ହେଲେ ଦେବବାକ୍ୟ ତ । ବାକ୍ୟଗୁଡ଼ିକର କାବ୍ୟିକ ଝଂକାରରେ ଯଜମାନ ଓ ତା ପରିବାର ମୋହିତ ହେଇଯାଆନ୍ତି । କଣ ମିଳିବ ସେ ଅର୍ଥରୁ, ପିତୃପୁରୁଷ ପିଣ୍ଡପାଣି ପାଇ ସ୍ୱର୍ଗରେ ଆନନ୍ଦରେ ରହିଲେ ତ ହେଲା । ପଦ୍ମତୋଳା ଗାଇଲେ ଯିମିତି ବିଷଧର ନାଗମାନେ ମଧ ପ୍ରଲୁବ୍ଧ ହେଇପଡ଼ନ୍ତି ସେମିତି ଶୁଣିବା ଲୋକେ । ଅଧିକାଂଶ ଯଜମାନ ତ ଶୂଦ୍ର, ଶୁଦ୍ଧ ଅଶୁଦ୍ଧ ବାରିବେ କୁଆଡ଼ୁ ।

ନିତ୍ୟାନନ୍ଦ ପିଲାଟି ବଡ଼ ସଚ୍ଚୋଟ, ନିର୍ଲୋଭ, ରୋକ୍‌ଠୋକ୍ କଥା । ତାକୁ ପାଲେଇବା, ପଟେଇବା ଏତେ ସହଜ ନୁହେଁ । ଯାହା ବୁଝିଥିବ ସେଇଆ, ଖମ୍ବଆଳୁ ମାଟିଆଳୁ ହେବନି, ମୁନିଗା ସଜନା ହେବନି । ମୁହେଁ ମୁହେଁ ଶୁଣେଇଦେବ । ଡ଼ର ଭୟ ନାହିଁ । ସ୍ଥାନ କାଳ ପାତ୍ର ବିଚାର ନାହିଁ । ଏଇଥିପାଇଁ ହିଁ ସେ ଆଡ଼ବାୟା । ପୁରାଣ ଭଲ ପଢ଼େ । ସରସ୍ୱତୀ କଣ୍ଠେ ପାଇଛି । ପାଠ ଖଣ୍ଡମଣ୍ଡଳକୁ ଭେଦିଯାଏ । ଖରା ଟିକିଏ ଗଡ଼ିଗଲେ କାଖରେ ତାଳପତ୍ର ବିଡ଼ାଟି ଜାକି ମଠ ମନ୍ଦିର ବେଢ଼ାରେ ପହଞ୍ଚିଯାଏ । ପାଞ୍ଚ ଥାଆନ୍ତୁ କି ଦଶ ଥାଆନ୍ତୁ ଚକାଟେ ମାରିଦେଇ ପଢ଼ା ଆରମ୍ଭ କରିଦିଏ । ଗଳା ଖଙ୍କାରି ସଫାକରେ ।

ପ୍ରଥମେ ଆଖି ବୁଜି ମନ୍ତ୍ର ବୋଲେ !

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।।

ଏତିକି ପଦ ବୋଲି ସାରିଲା ବେଳକୁ ମନ୍ଦିର ବେଢ଼ା କମ୍ପି ଉଠିଥାଏ ।

ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଘଂୟତେ ଗିରିମ୍ ।
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବମ୍ ॥

ପିଲା ହେଲେ ବି ପୁରାଣ ଖାତିରିରେ ଶୋଇଥିବା ଲୋକେ ଧଡ଼ପଡ଼ ଉଠି ଗୋସେଇଁ ମହାପ୍ରଭୁଙ୍କୁ ହାତ ଯୋଡ଼ନ୍ତି । ଅବେଳଟାରେ ଘାରି ଆସୁଥିବା ତୋରାଣି ନିଦଟା ଭାଙ୍ଗି ଗଲେ ବି ମନ ବିସ୍ତାପ କରନ୍ତି ନାହିଁ । ନିତ୍ୟାନନ୍ଦର ନନା ଆଖିବୁଜି ଦେଲାପରେ ତାଳପତ୍ର ଖେଦା ତକ ବେତ ପେଟରା ଭିତରେ ପଶି ଆଟୁଉପରେ ସଡୁଥିଲେ । ସୁଆଁଶିଆ ପୋକ, ତେଲୁଣିଆ, ଉଇ, ଅସରପା ସମସ୍ତେ ଦାଉ ସାଧିଲେ । ଝଡ଼ାଝଡ଼ି କରି ବହୁ କଷ୍ଟରେ କେତେକ ପୁରାଣ ପୋଥି ଉଦ୍ଧାର ହେଇପାରିଲା । କିନ୍ତୁ ମଝିମଝିରେ ଦି ଚାରି ପତ୍ର ଲେଖା କୀଟଦଂଷ୍ଟ୍ର ହେଇଗଲା । ବହୁତ ଯାଗାରେ କଣା ଫୁଟିଗଲା, ପତ୍ର ଧାର ଯାକ ନଦୀ ଅତଡ଼ା ଖାଇଗଲା ଭଳି କଟିଗଲା । ପଢ଼ିଲା ବେଳେ ପତ୍ର ଉଭାନ ହେଇଯାଇଛି ବୋଲି ଜଣାପଡ଼େ । ଭାବେ ଭାଗବତ ଗାଦି ଘରର ତାଳପତ୍ର ପୋଥି ଦେଖି ସେ ଉଡୁରେଇଦେବ । ବେଳ ହୁଏନି । ସକାଳୁ ସଂଧ୍ୟା ଯଜମାନଙ୍କ କାମ, ଏଣୁ ପୁରାଣ ପଢ଼ିଲା ବେଳେ ଅଟକି ଯାଏ । ପୁରୁଣା ଗ୍ରାମ୍‌ଫୋନ୍ ରେକର୍ଡ଼ ଭଳି ଘଡ଼ିଏ ଗଁ ଗଁ ହୁଏ । ତାପରେ ପଦ ନ ପଇଟିଲେ 'ପାଠ କଣ କହିଲା କହି 'ଗୋଳେଇ ଦେବାକୁ ଚେଷ୍ଟା କରେ । ମୁରବି ମୁରୁବା ବସିଥିଲେ ପଦ୍ୟରେ ନ ହେଲେ ଗଦ୍ୟରେ ଛାଡ଼ବାଡ଼ ମିଶେଇ ଦିଅନ୍ତି । ଗାଁ ଲୋକେ ସିନା ଇଂଲିଶ୍ ପାଠ ପଢ଼ିନାହାନ୍ତି ହେଲେ ପୁରାଣ ଶାସ୍ତ୍ର ଆଲୋଚନାରେ ଧୁରନ୍ଧର । ପାଠ ଅଟକେନି । କହନ୍ତି, ବନମାଳୀ ଖାଡ଼ଙ୍ଗା ପୁଅ ନିତ୍ୟା ମିଶାରୁ ବାପ ଭଳି ଆଡ଼ ବାୟାଟେ । ପୁରାଣ ଶେଷ ହେଲା ବେଳକୁ ଆଠଣେ ଟଙ୍କେ ଦକ୍ଷିଣା ବି ଜମା ହେଇଯାଇଥାଏ ।

ବେଳେବେଳେ ମଠ ମନ୍ଦିରରେ ଶ୍ରୋତା ନ ଜୁଟିଲେ ସେ ନୀଳାମ୍ବର ମିଶ୍ରେଙ୍କ ଘରଆଡ଼େ ପଳେଇ ଆସେ । ଲେଖାରେ ମିଶ୍ରେ ଅଜା । ଅଜା ଷାଠିଏ ବର୍ଷର ବୁଢ଼ା । ଦମ୍ଭିଲା ଥିଲେ ମଧ ସାଇଟା ଯାକର ସମସ୍ତଙ୍କ ସେ ଅଜା । ଅଜା ସାରଳା ମହାଭାରତରୁ ପ୍ରସଙ୍ଗ ଶୁଣିବାକୁ ଭଲ ପାଆନ୍ତି । ମିଶ୍ରେ ନାଟ ତାମସା, କଳାକୁଞ୍ଜ, ଥିଏଟର ସିନ୍‌ଚିତ୍ର ରେ ମାତିଥାନ୍ତି । ବଡ଼ ରସିକ ଲୋକ । ଏଇଥିରୁ କଳାକୁଞ୍ଜ ପାଇଁ ତାଙ୍କ ସାମଗ୍ରୀ ମିଳିଯାଏ । ନୀଳାମ୍ବର ମିଶ୍ରେ ନୈଷ୍ଠିକ ବ୍ରହ୍ମଣ ହେଲେ ମଧ ଜଣେ ପୋଖତ କାରିଗର । ଅବିକଳ ମୂର୍ତ୍ତି ଗଢ଼ିଦିଅନ୍ତି । ଦଣ୍ଡ ବୈଠକ କୁସ୍ତି କସରତ କରନ୍ତି । କେଡ଼େ ସୁନ୍ଦର ବନାଚି

ଖେଳନ୍ତି, ଆଚ୍ଛା ଆଚ୍ଛା ଗଛା ଭେଣ୍ଡିଆମାନେ ବି ତାଙ୍କ ସାଙ୍ଗରେ ବାଡ଼ି ବୁଲେଇବାକୁ ଡ଼ରନ୍ତି । ସେ ପିଲାଙ୍କ ସାଙ୍ଗରେ ପିଲା, ବଡ଼ଙ୍କ ସାଙ୍ଗରେ ବଡ଼ । ଚେର ମୂଳି ଔଷଧ କରନ୍ତି , ଘରେ ଦି ଚାରିଟା ଖୋଲ ବି ରଖିଛନ୍ତି । ତାଙ୍କ ହାତରେ ମାଟି କାଠ ପଥର ଜୀବନ ପାଇଯାଆନ୍ତି । ମିଶ୍ରେଙ୍କ ପାଖରେ ନିତ୍ୟାନନ୍ଦ ଖାଲି ପୁରାଣ ତ ପଢ଼େନି । ଚର୍ଚ୍ଚାକରେ । ଟିପ୍ପଣୀ କରେ । ମିଶ୍ରେ ଟୋଲରେ ହେଡ୍ ପଣ୍ଡିତ ଥିଲେ । କାବ୍ୟ, ଶାସ୍ତ୍ର ଅଳଂକାରରେ ଧୁରନ୍ଧର । ପଣ୍ଡିତ ହେଲେ ବି ତାଙ୍କ ପାଖରେ ପଣ୍ଡିତିଆ ବଦ୍‌ଗୁଣ କମ୍ । ଏକ ବାଗିଆ ନୁହଁନ୍ତି । ବୁଝେଇ ଦେଲେ ମାନିଯାଆନ୍ତି । କିନ୍ତୁ ଟିକେ ଟେଢ଼ା । ନିତ୍ୟା ସାଙ୍ଗରେ ନିଜ ପୋଥି ଆଣିଥାଏ । ମିଶ୍ରେ କହନ୍ତି ପଢ଼ ତୋର ଯା ଇଚ୍ଛା । ନିତ୍ୟାନନ୍ଦ ଡ଼ୋର ଖୋଲି ପୋଥି ଉପରେ ଝପଟି ପଢ଼େ । ବନ୍ଦନା ପାଖରୁ ଆରମ୍ଭକରେ ।

ହାତ ଯୋଡ଼େ ।

ଜୟତୁ ଦଧି-ମଙ୍ଗଳ ବିଘ୍ନରାଜ
ଯାହାର ଦ୍ରଶନେ ସିଦ୍ଧ ହୁଅଇ ସର୍ବକାର୍ଯ୍ୟ ॥
ସକଳ ବିଘ୍ନବିନାଶନ ଜୟତୁ ଗଜାନନ
ମଙ୍ଗଳ ଯୋଗେଶ୍ୱର ପରମାନନ୍ଦ ପାର୍ବତୀନନ୍ଦନ ॥

ଏତେ ବନ୍ଦନା ଶୁଣିବାପାଇଁ ମିଶ୍ରେଙ୍କ ଧୈର୍ଯ୍ୟ ନଥାଏ । ଓପରଓଳିଟାର ଖୁଢ୍ଗୁମୁଢ୍ଗୁକୁ ଲାଘବ କରିବା ଭାବି ସେ ନିତ୍ୟାକୁ ହିଁ ଭରିଥାନ୍ତି । ବଡ଼ ପାଟିରେ ମିଶ୍ରେ ଚିଲେଇ ଉଠନ୍ତି । କୁଳାଙ୍ଗାର ! ପାଠକୁ ଯାଆ । ବନ୍ଦନା ଘରେ ବୋଲିଦେବୁ । ନିତ୍ୟା କହେ ଅଜା, ହଉ ତମକଥା ହେଲା । ସାରୋଳା ଚଣ୍ଡୀକୁ ଦିପଦ ବୋଲିଦେଇ ପାଠକୁ ଯିବା । ନହେଲେ ଚଣ୍ଡୀ ରୁଷ୍ଟ ହେଲେ ପାଠ ସରିଲା । ଥୟଧର । ମୁଁ ବନ୍ଦିଲି । ମିଶ୍ରେ ଏବେ ଚୁପ୍ ହେଇ ଯାଆନ୍ତି । ଚଣ୍ଡୀଙ୍କ କଥା, ହିଁ କିଏ ନ ଭରିବ !

ମହାଯୋଗେଶ୍ୱରୀ ସେ ପରମ ବଇଷ୍ଣବୀ
ପ୍ରତକ୍ଷେ ବର ଦିଅଇ ସେ ପରମ ସାଧବୀ ॥
ବାଞ୍ଛା ସାର୍ଥିକ ସେ ଦେବୀର ଅଟଇ
ପାଷାଣ ହୋଇକରି ବାଞ୍ଛା ତାହାର ଫୁଟଇ ॥

ସର୍ବ ମଙ୍ଗଳା ରୂପ ମାତାଙ୍ଗୀ ମତରୋଳୀ
ଗ୍ରନ୍ଥ ଅର୍ଥ ଶୁଣଇ ସେ ହରଷେ କୁତୋହଳୀ ॥

ଅଜ୍ଞା, ପଦ କଣ ବୋଇଲା ଶୁଣିଲତ । ଗ୍ରନ୍ଥ ଅର୍ଥ ଶୁଣିବାକୁ ସାରଳା ଚଣ୍ଡୀ ଉଭା ହୁଅଇ । ଏ ଗମ୍ଭାରି ଭିତରେ ଚଣ୍ଡୀ ରହିଛି ବୋଲ । ନିତ୍ୟାନନ୍ଦ ହାତ ଟେକି ଚାରିଆଡ଼କୁ ଜୁହାର ହୁଏ । କହେ ଗ୍ରନ୍ଥର ଅପାର ମହିମା ଅଛି । ଠାକୁରାଣୀ ବାକ୍ୟ ତ, ଅନ୍ୟଥା ହେବାର ନୁହେଁ ।

ଶ୍ରୀ ସାରୋଳା ଚଣ୍ଡୀ ନାମେ ସେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁଂ ଯେ ସାରୋଳ ଦାସ କବି ॥

ନିତ୍ୟା ଦେ, ଏଥର ପାଠକୁ ଆ ।

ନିତ୍ୟା ପାଠକୁ ଯିବା ପୂର୍ବରୁ ବଚନିକା ଦେବାକୁ ଆରମ୍ଭ କଲା । ସେ କାଳରେ ରାଜା ରାଜୁତି କରୁଥିଲେ । ରଜା ବସେଇଥିବା ଶାସନ ଯାକରେ ଏତେ ତ ବ୍ରାହ୍ମଣେ ଥିଲେ, ପଣ୍ଡିତ ବୋଲଉ ଥିଲେ, ଚୂଡ଼ି ଦେଖାଉ ଥିଲେ, ସାରୋଳା ଶୂଦ୍ରଟା ହେଇ କିମିତି ହେ ଭଣତି କରିପକେଇଲା ଅଠର ଖଣ୍ଡ ମହାଭାରତ । ବ୍ୟାସଙ୍କ ବାଟେ ବ୍ୟାସ, ସଂସ୍କୃତ ବାଟେ ସଂସ୍କୃତ । ଓଡ଼ିଆରେ କି ଚମତ୍କାର ପଦ ଯୋଡ଼ିଲା । ଘେନୁଚ ତ । ପଣ୍ଡିତମାନେ ତ ଖାସା ମଣିଷ । ଅଛିଣ୍ଡା ଗଣ୍ଠି ପକେଇବା ଲୋକ । ଅଜ୍ଞା! ତାଙ୍କୁ ବାଟ ଛାଡ଼ିଦେଲେ କିମିତି ହେ ?

ମିଶ୍ରେ ବ୍ରାହ୍ମଣରୁ ଏବେ ଚିତ୍ରକର ହେଇଯାଇଥିଲେ ମଧ୍ୟ ବ୍ରାହ୍ମଣଙ୍କ ପ୍ରତି ଏ ମେଞ୍ଚଡ଼ ଟୋକାର ଏଭଳି ଆକ୍ଷେପ ସହିପାରିଲେନି । ରକ୍ତ ତ ଯିମିତି ହେଲେ କଥା କହିବ । ମିଶ୍ରେ ଟିକିଏ ଚିଡ଼ିଗଲା ଭଳି କହିଲେ । ବାପ ରହିଯା, ଏବେ ପଢ଼ିଲୁ ପରାରେ ଦେବୀ ବାକ୍ୟ । ବ୍ରହ୍ମ ଜାନାତି ଇତି ବ୍ରାହ୍ମଣଃ, କର୍ମଣା ଶୂଦ୍ର ଉଚ୍ୟତେ । ସାରଳା ବ୍ୟାସଙ୍କ ଭଳି ମହାମୁନି , କାଳିଦାସଙ୍କ ଭଳି ପଣ୍ଡିତ । ବୋଇଲା କବୟଃ କ୍ରାନ୍ତଦର୍ଶୀନଃ । ସରସ୍ୱତୀ ପୁତ୍ର ସେ । କାଳିଦାସ ପୁତ୍ର ସେ । ବ୍ରାହ୍ମଣ କର୍ମ କଲେ, ଗ୍ରନ୍ଥ ରଚନା କଲେ, ବ୍ରାହ୍ମଣ ହୋଇଗଲେ । ନଖିଅ, ଛଖିଅ ପଇତା କାନ୍ଧରେ ପକେଇଦେଲେ ବ୍ରାହ୍ମଣ ନୁହଁରେ । ଜିଭ

ଛିଡ଼ି ପଡ଼ିବ । ଏମିତି ପାପକଥା ତୁଣ୍ଡରେ ଧରନା । ଦିନାକେତେ ହିଂସୁକ ଦଳେ ଟୁପୁରୁଟାପର, ଫୁସୁରୁଫାସର ହେଇଥିବେ । ତାପରେ ଗ୍ରନ୍ଥର ମହାତ୍ମ୍ୟ ଦେଖିବଲେ ତୁନି ହେଇଯାଇଥିବେ । ଆମ ଭିତରେ ଏବେ ବି ଗଣ୍ଡେ ଦିଗଣ୍ଡା ଅପଦାର୍ଥ ନାହାନ୍ତି ବୋଲି ନୁହଁ । ଅଛନ୍ତି, ଶଳେ ସବୁ ଯୁଗରେ ସବୁ କାଳରେ ସେମିତି ଥାଆନ୍ତି । କୂର୍ମ ପିଠିଆ ହେଇ ପଡ଼ିରହିଥାନ୍ତି । ତୁଚ୍ଛାଟାରେ କନ୍ଦଳ ଅନର୍ଥ ଭିଆନ୍ତି । ଏମାନେ ତିଳକୁ ତାଳ କରନ୍ତି । ରସ ନିଗିଡ଼ି ପଡ଼ିଥାଏ, ଖୋଳପାଟାକୁ ଧରି ଭିଡ଼ାଓଟରା କରନ୍ତି । ଏବେ ବି ସାରଳା କଥା ପଡ଼ିଲେ ତାଙ୍କ ଦେହ ସହୁନି । ଶୂଦ୍ର ମହାଭାରତ କହି ପ୍ରସଙ୍ଗକୁ ଲଘୁ କରିଦେବାର ଅପଚେଷ୍ଟା କରୁଛନ୍ତି । ଏଇଠି ଥାଉଥାଉ ଗୋପୀନାଥ ନନ୍ଦଙ୍କ କଥା ସେମାନଙ୍କ ମନକୁ ଆସୁନି । ଗହୀର ଚାଷ ତ ନାହିଁ । ନନ୍ଦେ ସାରଳା ସାହିତ୍ୟର ଆଦ୍ୟ ସମାଲୋଚକ । 'ଶ୍ରୀ ଭାରତ ଦର୍ପଣ' ପଢ଼ିଲେ ସାରଳା ନନ୍ଦେ କିମିତି ସାରଳାଙ୍କୁ ମୁଣ୍ଡରେ ମୁଣ୍ଡେଇଛନ୍ତି ତୁ ଜାଣି ପାରିବୁ । ସାରଳା ବ୍ରାହ୍ମଣଙ୍କ ଭିତରେ ଶ୍ରେଷ୍ଠ ବ୍ରାହ୍ମଣ । ଓଡ଼ିଆ ଭାଷା ଜାଣିବୁ ତ, ଓଡ଼ିଆ ଚରିତ୍ର ଜାଣିବୁ ତ ସାରଳା ମହାଭାରତ ପଢ଼ । ସେ ପୁନାଦି ପକେଇଲାରେ ପୁଅ । ସେ ସବୁ କଥା ଛାଡ଼ । ଦେ, ଆଗକୁ ବଢ଼ ।

ନିତ୍ୟା ତାଳପତ୍ର ଖେଦା ମେଲି ଆଦିପର୍ବର ଶାନ୍ତନୁ ବିବାହ ପ୍ରସଙ୍ଗରୁ ଆରମ୍ଭକଲା ।

ଅଜା ଶୁଣୁଚ ତ ?

ଯେମନ୍ତେ ପିତାର ଘରେ ଯେ ଅଛଇ ଗଙ୍ଗାବାଳୀ
କୁମାରୀମାନଙ୍କ ସଙ୍ଗେ ସେ ଖେଳଇ କୁତୁହୋଳୀ ॥
ପିତାର ଘରେ ସହସ୍ରେ ବରଷ ଭୋଗକଲା
ଦୋହିତାକୁ ଦେଖିଣ ଯେ ନିର୍ଘାତ ଶୋକକଲା ॥
ସ୍ତିରୀ ଜନ୍ମ ନିଷ୍ଫଳ ହୋଇଲା ମାତ ତୁକୁ
ମାଗୋ ସ୍ୱୟଂବର କରି ବରି ଆଣିବିକି ଦେବତାଙ୍କୁ ॥

ରଥ ଅଜାଙ୍କର ବଡ଼ ନାତୁଣୀ, କନକ ନାନୀ ଏ ପର୍ଯ୍ୟନ୍ତ ହାତକୁ ଦି'ହାତ ହେଇ ପାରିଲାନି । ଦେବୀ ପ୍ରତିମା ଭଳିଆ ରୂପ, ଆଖି ଦିଟାକୁ ଅନେଇଦେଲେ ପେଟ ପୂରିଯିବ । କେତେ ଦୁଃଖ ତହିଁରେ ଭରିଦେଲା ଦଇବ, ଆଉ ଏବେ ଚାହିଁ ହୁଏନି ।

ଗିରସ୍ତ ସୁଖ କଣ ଜାଣିପାରିଲାନି । ହାତଗଣ୍ଠି ପଡ଼ିଯାଇଥିଲା ନାଥ ନନାଙ୍କ ପୁଅ ସାଙ୍ଗରେ । କି ବେମାରି ହେଲା କେଜାଣି ଭେଣ୍ଡା ପୁଅଟା କାଠଗଡ଼ ଭଳି ସାଷ୍ଟାଙ୍ଗ ହେଇଗଲା । ସାହି ଯାକର ଲୋକେ ଛି ଛାକର କଲେ, କହିଲେ କନକଟା ଅଲକ୍ଷଣୀ । କନକ ଅଲକ୍ଷଣୀ କାହିଁକି ହେବ? ମୋତେ ଏବେ ବି ଲାଗୁନି । କନକ ଆଉ କଣ କରିପାରନ୍ତା । ବାପଘରେ ହିଁ ରହିଲା । କି ଯାତନା ସେ । କି ପ୍ରାଣାନ୍ତକ କଷ୍ଟ ସିଏ । ଭାଗ୍ୟ ଏମିତି ଭୋଗାଏ କାହିଁକି ଯେ । ଅଜା ତ ବଡ଼ନ୍ତ ଦେହକୁ ଅନେଇ ହେଉନି । ଦାଣ୍ଡ ଦୁଆରେ ଠିଆ ହେଇଥିବ, ଦେଖିଲେ ଖାଲି ପଚାରିବ ଖୁଡ଼ୀ କିସ କରୁଥିଲାରେ? ଏମିତି ପରିସ୍ଥିତିରେ ବାପ ଘରକୁ ଦୋଷ ଲାଗିବ କିହେ ଅଜା !

ସାରଳାର ପଦ ଓ ନିତ୍ୟାର କଥାତକ ଶୁଣିଦେଲାପରେ ମିଶ୍ରେଙ୍କ ଭାବାନ୍ତର ଲକ୍ଷ୍ୟକରିହେଲା । ଝିଅ ବଞ୍ଚିଥିଲେ ପଚିଶି ଯାଇ ଛବିଶି ପୂରିଯାଆନ୍ତାଣି । କେବଠୁ ଶାଶୁଘରେ ଖଟି ସାରନ୍ତାଣି । ସ୍ୱାମୀ ଓ ପିଲାପିଲିଙ୍କୁ ସାଙ୍ଗରେ ନେଇ କେଡ଼େ ସୁଖରେ ଘର କରିସାରନ୍ତାଣି । ବିଧାତା ବାମ ହେଲା । ଭାଗ୍ୟରେ ନଥିଲେ ଆସିବ କୁଆଡୁ । ଯଦ୍ ଭାଲପଟେ ଲିଖିତଂ ।

ମିଶ୍ରେ ପଲଙ୍କ ଉପରେ ଗଡ଼ପଡ଼ ହେଉଛନ୍ତି । ଏ ପଲଙ୍କର ବି ମହିମା ଅପାର । ଏଥିରେ ବହୁ କଥା ନେସି ହେଇ ରହିଯାଇଥାଏ । କାଠ ଦିଖଣ୍ଡ ଭାବିଲେ କାଠ, କଥା କହିବସିଲେ ସରିବନି । ତାଙ୍କ ଗୋସେଇଁ ବାପା ଅମଳର ସନ୍ତକ । ଗୋସେଇଁ ମା ଯୌତୁକରେ ବାପଘରୁ ଆଣିଥିଲେ । ବୁଢ଼ୀଙ୍କସହିତ ତାଙ୍କର ଦର୍ଶନ ତ ହେଇନାହିଁ, କିନ୍ତୁ ଲାଗୁଛି ବୁଢ଼ୀ ଧୁମ୍ ପାନ ଚୋବଉ ଥିଲେ । କୁନ୍ଦାକାଠର ବିଚିତ୍ର କମକୁଟ ଲତାଡ଼ାଳି ପାଟକୁମ୍ଭ କାମ । ପଲଙ୍କ କାହିଁକି କେଜାଣି ବହୁ ସ୍ମୃତି ରୋମନ୍ଥନ କରେଇ ଦିଏ । ପଛଦିନର କଥା ଯାକ ଯିମିତି ଆଟୁତଳେ ଧୂସର ପାଉଁଶର ପରସ୍ତ ଉପରେ ଲେଖି ହେଇ ଯାଉଛି । କି ଦୁଃଖଦ, କି କରୁଣାନ୍ତକ ସେ ମୁହୂର୍ତ୍ତଯାକ, କିମିତି ସେ ସହିନେଇଛନ୍ତି କେଜାଣି । ସବୁ କୃଷ୍ଣଚନ୍ଦ୍ର ଓ ରାଧାରାଣୀଙ୍କ କୃପା । ତାଙ୍କ ରକ୍ତମାଂସର ଦେହ ସତେ ଯିମିତି ପଥର ପାଲଟି ଯାଇଛି । ଜୀବନ କ'ଣ ? କେବଳ ଦୁଃଖ ହିଁ ସହିବାକୁ ?

ନିତ୍ୟା ତଳେ ଶିତଳା ପଟି ଉପରେ ବସି ପଢ଼ିଚାଲିଛି । ମିଶ୍ରେ ମଝିରେ ମଝିରେ କଣ ସବୁ ଭାବୁଥାନ୍ତି । ଏଣେ ହୁଁ ହୁଁ କରୁଥାନ୍ତି ଆଉ ନିତ୍ୟାନନ୍ଦ ଗଡ଼ ଗଡ଼ ହେଇ

ଆଗେଇ ଯାଉଥାଏ । ଗମ୍ଭୀରା ଘରର ବହଳ ମାଟିକାନ୍ଥ ଦେଇ ଦିନ ଦିପହରର ଉଦୁଉଦିଆ ଖରା ପଶିପାରୁନଥାଏ ।

ନିତ୍ୟାଙ୍କୁ ଲାଗୁଛି ସାରୋଳା ପଦ ପରେ ପଦ ଭଣତି କରି ଚାଲିଛନ୍ତି ଆଉ ସେ ତାଙ୍କ ପାଟିରୁ ଛଡ଼େଇ ନେଇ ଆବୃତ୍ତି କରିଚାଲିଛି ।

ତୁ ମହାଭିଂଗ୍ୟ ଅଟୁ ମହରଷି
ରାଜପଦେ ପଶି କିମ୍ପା କରୁ ଯେକାଦଶୀ ।।
ଦୁର୍ବାର ବଚନ ଯେ ବୋଲଇ ଜାହ୍ନବୀ
ଯେ ମହାରାଜ୍ୟେ ପଶି ବ୍ରତରାଜସେବି ।।
ଧର୍ମ ଦୁଷିତ କରଇ ଦେବି ତୋୟା
ଦେବତା ଋଷି ନଜାଣନ୍ତି ତାର ମାୟା
ଅନେକ ଭାବେଣ ଯେ ବୋଲଇ ମହାସତୀ
ଋଷିଙ୍କର ତୁଲେ ଯେ ବଢ଼ାଇଲା ପ୍ରୀତି ।।

ନୀଳାମ୍ବର ମିଶ୍ରେ ବିବାହିତ ଜୀବନର ବହୁ ଅଲୋଡ଼ା ସ୍ମୃତି ମନେ ପକେଇଲେ । ପାଖରେ ନବ ଯୁବତୀ ଥିଲେ ଇନ୍ଦ୍ରଚନ୍ଦ୍ରଙ୍କୁ ମଧ ମାନିବାକୁ ଇଚ୍ଛାହୁଏନି । ଉପେନ୍ଦ୍ର ଭାବରାଜ୍ୟକୁ ଆବୋରି ଯାଆନ୍ତି । ପଦେ ଦିପଦ ମନେ ପଡ଼ିଯାଏ ।

ଦ୍ୱିତୀୟା ଯାମିନୀରେ ମୋ ପ୍ରାଣସହି
ଦିନେ ପଲଙ୍କେ ଥିଲା ମୋ କୋଳେ ଶୋଇଯେ,
କୁସୁମବତୀ ହୋଇ ଅବନୀ ଶୋଭା
ତଳପ ତେଜି ତଳେ ହୋଇଲା ଉଭା ଯେ ।

କେତେବେଳେ ଚେତନା ପାଇଲି ମୁଁ ଯେ
ଲୋଡ଼ିଲି ପ୍ରାଣପ୍ରିୟା ନାହିଁ ମୋ ଶେଯେ ଯେ,
ହେ ଜୀବେଶ୍ୱରୀ ବୋଲି ଡ଼ାକନ୍ତେ ପୁଣି
ଚତୁରୀ ନ କହିଲା ତେବେହେଁ ବାଣୀ ଯେ ।

ମନେହୁଏ ସବୁ ଦିନ ରାତି ମିଶି ଘୋର ଅମାବାସ୍ୟାର ରାତି ହେଇଯାଆନ୍ତାକି । ଏକାକାର ହୋଇପଡ଼ନ୍ତା କି । ପାଖରେ ପୀନସ୍ତନୀ ପଲଙ୍କ ଉପରେ ଆଉଜି ବସିଥାନ୍ତା । ତା ବକ୍ଷରୁ ଦୁକୂଳ ଖସି ପଡୁଥାନ୍ତା । ତା ନୀବୀବନ୍ଧ ଖୋଲିଯାଉଥାନ୍ତା । ସେ ଅଳପ ଅଳପ ହସି ମୃଦୁ ମୃଦୁ ବଚନ ଭାସୁଥାନ୍ତା । ତାମ୍ବୁଳ ଭୁଞ୍ଜୁଥାନ୍ତା । ଭୁଞ୍ଜାଉଥାନ୍ତା । ଘନ ଘନ ଅଧର ଚୁମ୍ବୁଥାନ୍ତା । ଆଃ କି ଅବର୍ଣ୍ଣନୀୟ ସେ ଅନୁଭବ । ତା ବାହୁଲତାରେ ବେଢ଼େଇ ଆଣୁଥାନ୍ତା ତା କୋଳରେ ଶୁଆଇ ଦେଉଥାନ୍ତା । ପଣତରେ ଝାଳ ପୋଛି ଦେଉଥାନ୍ତା । ସରାଗରେ ତା ଚମ୍ପା କଢ଼ି ଭଳି ଆଙ୍ଗୁଳିରେ ଦେହ ଉପରେ ହାତ ବୁଲେଇ ଆଣୁଥାନ୍ତା । ଦେହ କୁଣ୍ଢେଇ ଯାଉଥାନ୍ତା, ରୁମ ଟାଙ୍କୁରି ଉଠନ୍ତା । ପାଖରେ କୁଆ କୋଇଲି ଟିଏ ବି ନଥାନ୍ତୋ । ମିଶ୍ରେ ହଠାତ୍ ପ୍ରକୃତିସ୍ଥ ହେଇ ଉଠିଲେ । ଉତ୍ତେଜିତ ସ୍ୱରରେ ପାଟିଟେ କଲେ । ନିତ୍ୟା ଅଟକୁଛୁ କାହିଁକି ରେ । ଆଗେଇଚାଲ । ନିତ୍ୟା କହିପକେଇଲା ଅଜା, ତମେ ତ ଅନ୍ୟମନସ୍କ ରହୁଛ । ମୁଁ ତ ଠିକ୍ ପଢ଼ିଚାଲିଛି ।

କହଇ ଅନେକ ମତେଣ ଚାଟୁ ଯେ ପଟଳ
ଆବରି ବସିଲା ଯାଇଂ ଋଷିଙ୍କର କୋଳ ॥
ଆପେଣ ବିବସନ କଲାକ ଯେ ଋଷିଙ୍କି
ଭୋଳେଣ ପଡ଼ିଲେ ଋଷି ଜାହ୍ନବୀ ରୂପ ଦେଖି ॥
ଛାଡ଼ିଲେ ବ୍ରତରାଜ ଜଞ୍ଜାଳୀର ଭାବେ
ଇଚ୍ଛିଲେ ଶୃଙ୍ଗାର ଯେ ଶାୟେଂତନୁ ଦେବେ ॥
ଯେମନ୍ତେ ଅନେକ ଯେ ବଢ଼ିଲା ପୀରତି
ଦିବାରାତ୍ରେଣ ଯେ ରମଣେ ଅଶାନ୍ତି ॥

ବୁଝିଲ ଅଜା ଏମିତିକା ଭାର୍ଯ୍ୟା ପ୍ରାପ୍ତ ହେଇଗଲେ ଖାସା ମଣିଷ ମଧ ପାଗଳା ହେଇଯିବ । ସ୍ତିରୀ ବୁଦ୍ଧି ସବୁବେଳେ ଏମିତି । ଲାଗୁଥିବ ସେମାନଙ୍କ ମନ ଦସ୍ତିଲା ଅଛି । ସେମାନେ କିଛି ଇଛୁ ନାହାନ୍ତି । ନିଆଁ ସେମାନେ ହିଁ ପ୍ରଥମେ ଜାଳି ଦେଇଥିବେ । ଅପେକ୍ଷା କରିଥିବେ ବିସ୍ଫୋରଣକୁ । ମାୟାବିନୀ ସେମାନେ । ଦେଖ ଏ ଋଷିଟା କିମିତି ହିନସ୍ତା ହେଉଛି । ଜାଲରେ ତ ଛନ୍ଦି ହେଇ ଯାଇଛି । ଏବେ ଅଶାନ୍ତି ହେଲେ କଣ ହେବ । ନୀଳାମ୍ବରଙ୍କୁ ନିତ୍ୟାର କଥା ଯାକ ପସନ୍ଦ ହେଲାନି । ଭାବିଲେ, ଛୋଟ ତୁଣ୍ଡରେ ବଡ଼ କଥା । ବାହାଚୂଡ଼ା ହେଇନି । ମେଞ୍ଚଡ଼ ଟୋକା ଗୃହସ୍ଥଧର୍ମ ଉପରେ ବଖାଣୁଛି ।

ମିଶ୍ରେ ନିତ୍ୟାକୁ ତାଗିଦା ଦେଲେ । ଏ ପୁଅ ! ଚୁଡ଼ାଘସା ମାଲପଣା ନୁହେଁରେ, ଏ ସଂସାର । ଘୋର ସଂସାର । ପୁଣି କଳିଯୁଗ, ମାୟା ସମସ୍ତଙ୍କୁ କବଳିତ କରିଦିଏ । କି ରାଜା କି ଋଷି କି ଧନୀ କି ମାନୀ କି ଗୃହସ୍ଥ କି ବୈରାଗୀ କିଏ ହେଲେ ମାୟାର କବଳରୁ ଉଦ୍ଧାର ପାଇ ପାରନ୍ତିନି । ନିସ୍ତାର କେବଳ ହରିନାମ । ହରେର୍ନାମ, ହରେର୍ନାମ ହରେର୍ନାମୈବ କେବଳମ୍ । କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ।। ନାରଦ ଋଷି କଥା ସ୍ମରଣା କରେ । କହିହେଉଥିଲେ ମୋ ଭଳି ଭକ୍ତ ଆଉ ତ୍ରିଭୁବନରେ କିଏ ନାହିଁ । ବିଷ୍ଣୁ ଦେଲେ, ମାୟା ଭିଆଣ କରିଦେଲେ । ବାବାଜି ପାଣି ଆଣିବାପାଇଁ ଯାଇଛନ୍ତି ତ ଯାଇଛନ୍ତି । ଫେରିଲା ବେଳକୁ ଯୁଗେ ବିତି ଗଲାଣି । ନାରଦ ମାୟାବିନୀ ନାରୀ ଦେଖି ଅସମ୍ଭାଳ । ପ୍ରେମ ନିବେଦନ କଲେ । ବାହାଚୂଡ଼ା ହେଲେ । ଦେ, ତାପରେ ଲମ୍ଭିଗଲା ସଂସାର । ପିଲା ପିଚିକା ଗଣ୍ଡେ ଧରି ଆଉଟୁ ପାଉଟୁ ହେଲେ । ସେ କି ଗାନ୍ଦିକା ! ଏଣେ ବିଷ୍ଣୁ ନାରଦ ପାଣିନେଇ ଫେରିଲେ ପିଇବେ, ତୃଷା ମେଣ୍ଟେଇବେ ବୋଲି ଜଗିଛନ୍ତି । ତା ଭିତରେ ତୁ ତ ପଶିନୁ । ଭଲ କରିଛୁ । କଥା ସମ୍ଭାଳ, ଚାଲ, ଆଗକୁ ବଢ଼ ।

ଏହିପରି ଅନେକ ସମୟ ବହିଗଲା
ପୁଣିହିଂ ବେନି ସହସ୍ର ବରଷ ଶୃଙ୍ଗାରେ ବଞ୍ଚିଲା ।।
ଯେସନେକ ଚଞ୍ଚଳା ଜାହ୍ନବୀ ଦୁଷ୍ଟଯେ ପ୍ରକୃତି
ନିଶ୍ଚଳ ହୋଇଣ ବସିଥାଇ ହୁଅଇ ଅଶାନ୍ତି ।।
ବାହାର ହୋଇବା ସେ ଭାବହିଂ ଛାଡ଼ିଲା
ଶାୟେଂତନୁ ଋଷିଙ୍କି ସେ ବହୁତ କଟାଳିଲା ।।
ବେଳେ ଅନ୍ନ ନ ଦିଅଇ ସେ ବେଳେ ନ ଦିଅଇ ପାଣି ।
ଋଷିଙ୍କ ଭାବ ସେ ନ ଯାଇ ଦିବା ଯେ ରୟେଣୀ ।।
ଧର୍ମ ଛାଡ଼ି ଶାୟେଂତନୁ ପଶିଲେ ଶୃଙ୍ଗାରେ
କାଳେଣ ନଦେଲା ଦେହ ଢ଼େଲାଇଲା ଦୂରେ ।।

ଅଜା ! ଲାଗୁଛି ଏ ବଡ଼ ଅଘଟଣକଥା । ଶାନ୍ତନୁଙ୍କ ଭଳି ଋଷି ପ୍ରବର ଜପ ତପ ଧ୍ୟାନ ଧାରଣା ଛାଡ଼ି ଶେଷରେ ଶୃଙ୍ଗାରରେ ମାତିଲେ?

ବୁଝିଲୁ ନିତ୍ୟାନନ୍ଦ, ମିଶ୍ରେ ଟିପ୍ପଣୀ ଦେବା ଭଙ୍ଗିରେ କହିଲେ, ଶାନ୍ତନୁ ମହାରଜାଙ୍କୁ ତୁ ଚିହ୍ନିନୁ । ସେ ସବୁବେଳେ କାମାତୁରା, ସବୁବେଳେ ଅସମ୍ଭାଳ । ଅଧିକାଂଶ ମୁନି ଋଷିଙ୍କ କଥା ଏମିତିକା । ସଂଯମରେ ଥିବେ ତ ଥିବେ । ଥରେ ବାଉଳା ହେଲେ ବନ୍ଧ ଭାଙ୍ଗିଲା । ଶ୍ରାବଣ ମାସରେ ମହେନ୍ଦ୍ର ତନୟା କଥା ହେଇ, ବନ୍ୟା ମାଡ଼ିଆସିଲା । ତେ ।କୁ ଅଟକେଇବ କିଏ ? କାହାର ଶକ୍ତି ଅଛି ?

ପରାଶରଙ୍କ କଥା ତ ତୁ ଶୁଣିଛୁ । ଏତେ ଅଡ୍ରଛ । ସତ୍ୟବତୀ କହୁଚି, ମହାତ୍ମନ୍ ଶୁଣିମା ହେଉ, ଘେନା ହେଉ । ଏ ଅବେଳଟାରେ, ଗଙ୍ଗାନଦୀରେ ଡ଼ଙ୍ଗାଟାଉପରେ । ଚାଲ କୂଳକୁ । ମୁଁ ତ ମଙ୍ଗିଲି । ଏଣେ ପରାଶର ଅସମ୍ଭାଳ, କୁହୁଡ଼ି ଭିଆଇଲେ, ମତ୍ସ୍ୟଗନ୍ଧାକୁ ଯୋଜନଗନ୍ଧାକଲେ, ଶେଷରେ ସେଇ ଡ଼ଙ୍ଗା ଉପରେ ।

ମିଶ୍ରେ ପଲଙ୍କରେ ଶୋଇରହି ଆଟୁତଳେ ବୁଢ଼ିଆଣୀ ଜାଲକୁ ଲକ୍ଷ୍ୟ କରିଛନ୍ତି । ବୁଢ଼ିଆଣୀ ନିଜେ ଜାଲ ରଚନା କରି ସେଥିରେ ଶେଷକୁ ନିଜେ ଛନ୍ଦି ହେଇ ପଡ଼ିଛି । ସଂସାରରେ ସବୁ ମଣିଷ ଏଭଳି । ନିଜ ଜଂଜାଳ ନିଜେ ହିଁ ସୃଷ୍ଟିକରନ୍ତି । ପଶୁପକ୍ଷୀ, କୀଟପତଙ୍ଗ, ସମସ୍ତେ ମାୟାରେ ଉବୁଟୁବୁ ହେଉଛନ୍ତି । କାମନାର ମାୟା, କାମର ମାୟା । ମାୟାର ମୂଳେ ଏ ଜଗତ । ଦେଖ ବାପ ନିତ୍ୟାନନ୍ଦ । ଏ ବୁଢ଼ିଆଣୀ ଠାରୁ ଆରମ୍ଭ କରି ମର୍ଯ୍ୟାଦା ପୁରୁଷ ଶ୍ରୀରାମଙ୍କ ପର୍ଯ୍ୟନ୍ତ ଏ ମାୟା କାହାକୁ ଗ୍ରାସ ନ କରିଛି କହିଲୁ । ସୀତୟା ପାଇଁ ତ ଏତେ ଯୁଦ୍ଧ । ଲଙ୍କା ଦହନ । ରାବଣ ମରଣ । ସୀତୟାଙ୍କୁ ଲୋଭେଇଲା, ରାବଣ ମଲା । ମହାଭାରତ କାହା ପାଇଁ? ପାଞ୍ଚାଳୀ ପାଇଁ ତ ? ଦୁଃଶା କି ଅନ୍ୟାୟ ନକଲା କୁଳ ବୋହୂଟାକୁ ସଭାଟା ଭିତରେ ଉଲଗ୍ନ କରିବା ପାଇଁ ଲାଗିପଡ଼ିଲା । କୃଷ୍ଣ ଥିଲେ ବୋଲି ସିନା ସାହାହେଲେ । ନହେଲେ ଭୁଆସୁଣୀ ବୋହୂଟା ହିନସ୍ତା ହେଇସାରିଥିଲା । ନିତ୍ୟା ତୁ ଆଉ ତା ଭିତରେ ଅଧିକ ପଶନା । ସଂସାରର ମାୟା ଆପେ ବୁଝିଯିବୁ ଯେ ଦେ ହାତକୁ ଦି ହାତ ହେଇଯା । ଗଦ ଶୁଙ୍ଘିବୁଯେ, ଏକବାରେ ଭଲୁ ଥିବୁ । ଉଠ କହିଲେ ଉଠ । ବସ, କହିଲେ ବସ ।

ନିତ୍ୟାର ମନଟା ସଂସାରର ଜଂଜାଳରେ ଭାରାକ୍ରାନ୍ତ ହେଇଗଲା । ଦୁବ ଘାସରେ କାକର ପଡ଼ି ନଇଁଗଲା ଭଳି । ତାକୁ ଲାଗିଲା ସଂସାରଟା ଗୋଟାଏ ବିରାଟ ବୋଝ ଓ ଥରେ ମୁଣ୍ଡେଇଲେ ମଣିଷମାନେ ପେଶି ହେଇ କୂର୍ମ ହେଇଯାଆନ୍ତି । ଥବିର ଅର୍ଥବ

ହୋଇ ପଡ଼ନ୍ତି । ଘୋଷାଡ଼ି ହେଇ ହେଇ ନୟାନ୍ତ ହେଇଯାଆନ୍ତି । ସ୍ତ୍ରୀ ସହବାସ ହିଁ ନର୍କବାସ । ନିତ୍ୟା ସିଦ୍ଧାନ୍ତ କଲା । ଏ ଦେହଟା ତ ରୋଗର ଗନ୍ତାଘର । ପ୍ରେମ ପ୍ରେମ ସବୁ ମିଛକଥା । ଅଧରରୁ ଅମୃତ କୁଆଡ଼େ ଝରେ ? ଓଳିଟେ ଦାନ୍ତ ନ ଘସିଲେ ପାଟି ଗନ୍ଧାଏ । ମିଛଟାରେ କବି ଯାକ ଗଞ୍ଜେଇ ଖାଇ ଲେଖିପକେଇଛନ୍ତି । ଯାଇ ଯାଇ ସେଇ ଦେହ ପାଖରେ । ପାଠ କହୁଛି ଦେହ ନଶ୍ୱର । ମାଟି ଘଟ । ମାଟିର ଦେହ ମାଟିରେ ମିଶିଯିବ । ମଣିଷମାନେ ନୀଳାମ୍ବର ଅଜାଙ୍କ କଳାକୁଞ୍ଜର ଚିତ୍ରିତ କଣ୍ଢେଇ ଭଳି । ନଡ଼ା କାଠି କୁଟା ମାଟି କାଦୁଅରେ ତିଆରି । ଚକ୍ ଚକ୍ ଉପର । ଚିରି ଦେଖ ଭିତର । କି ନାରଖାର ! ରଜା ପିଲାଟା ମିଛଟାରେ ଏଡ଼େ ସୁନ୍ଦରୀ ରାଣୀ ଓ କଅଁଳା ପିଲାଟାକୁ ଛାଡ଼ି ପଳେଇଲାକି ? ପଳେଇଲା ବୋଲି ତ ବୁଦ୍ଧ ହେଇଗଲା । ସଂସାରରେ ଥିଲେ ଘାଣ୍ଟି ହେଉଥାନ୍ତା । ନିତ୍ୟା ମନସ୍ଥ କରୁଥିଲା ସେ ଆଉ ସଂସାର କରିବନି । ମାୟାଜାଲରେ ଛନ୍ଦି ହେବନି । ନହେଲା ନାଇଁ । ମଠରେ ବାବାଜି ହେଇ ରହିଯିବ । ତାର ଗୋଟିଏ ପେଟ କ'ଣ ଅପୋଷା ରହିଯିବ ? ନିତ୍ୟା ପୁରାଣ ପଢ଼ାରେ ଆଗେଇଲା :

ରମଣୀ ମନ୍ଦିରେଣ ଲେଖନ ପିତୁଳୀ
ରତିବନ୍ଧ ଲିହାଇଲେ କ୍ରୀଡ଼ା ରଙ୍ଗ କେଳି ।।
ଅନେକ ଚାଟୁ ପଟଳେ ସେ କହନ୍ତି ବାଉନୀ
ଋଷିଙ୍କି କଥା ସେ ନ କହଇ ମାନେନୀ ।।
ରତି ଶାସ୍ତ୍ର ପୁରାଣ ସେ ଶିଖାନ୍ତି ବ୍ରହ୍ମଚାରୀ
ଶାୟେଂତନୁଙ୍କର ଥିଲେ ସେ ନ ପଶଇ ଅନ୍ତପୁରୀ ।।

ଅଜା, ଗମ୍ଭୀରା ଘର କାନ୍ଥ ଯାକ ଚିତ୍ରଲେଖିଲେ କିହେ ? ଏବେ ଯିମିତି ବୈଜୟନ୍ତୀମାଳାର ହେମାମାଳିନୀର କ୍ୟାଲେଣ୍ଡର ଝୁଲଉଛନ୍ତି । କେତେ ରଙ୍ଗରେ କେତେ ଭଙ୍ଗିରେ ମାଇକିନା, ଅଣ୍ଡିରାଯାକ ଫୋଟରେ ପୋଜ ଦେଉଛନ୍ତି ହେ । ଟିକିଏ ହେଲେ ଲାଜ ମହତ ନାହିଁ । ଶେଷକୁ ଉଦଣ୍ଡ ଲଙ୍ଗଳା ହେଇ ପଡୁଛନ୍ତି । ଏମାନେ ଦାରୀ ଯାକ ହେ । ଦେହ ବିକି ପଇସା ଉପାର୍ଜନ କରୁଛନ୍ତି । ଛି! ଛି! ଏଗୁଡ଼ାଙ୍କୁ ଦେଖିହେବନି ।

ରତିବନ୍ଧ ଚିତ୍ର ବୋଇଲେ କ'ଣ ହେ ?

ଦେଖ, ନିତ୍ୟା! ଅଜା ବୁଝେଇବା ଢ଼ଙ୍ଗରେ କହିଲେ ଆଗରୁ ରଜା ମହାରଜାମାନେ ତାଙ୍କ ଶୟନଗୃହ, କେଳିମଣ୍ଡପ ରଙ୍ଗଘରମାନଙ୍କରେ ନାନା ପ୍ରକାର ଶୃଙ୍ଗାର ଚିତ୍ର ଲେଖାଉଥିଲେ । ତୁ ତ ଦେଖିଥିବୁ ଆମ ରାଧାକାନ୍ତ ମଠରେ କିମିତି କୃଷ୍ଣଲୀଳା ଚିତ୍ର ଅଙ୍କାହେଇଛି । ଦେବମନ୍ଦିରର ଚିତ୍ରର ପାଠ ନିଆରା । ଶୃଙ୍ଗାର ଚିତ୍ର ବଡ଼ ରସରସିଆ ଚିତ୍ର । ଧର ରାଧାକୃଷ୍ଣ ଯମୁନା ନଦୀତଟ କୁଞ୍ଜରେ ରତିକ୍ରୀଡ଼ାରେ ମାତିଛନ୍ତି । ଅଜା ଆଉ ଅଧିକା ବଢ଼ିପାରୁନାହାନ୍ତି । କହିପାରୁଥିଲେ କହିଥାନ୍ତେ କୃଷ୍ଣ ରତି ସାରି ରାଧାଙ୍କୁ ବେଶକରି ଦେଉଛନ୍ତି । ଅନ୍ୟ କେଉଁଠି ରାଧା ବିପରୀତ ରତିରେ ଚଂଚଳା ହେଇ ଉଠିଛନ୍ତି । କେଉଁଠି ହୁଏତ କୃଷ୍ଣ ରାଧାଙ୍କ ସ୍ତନଯୁଗଳରେ କୁଙ୍କୁମରେ ଭ୍ରମରୀ ଚିତ୍ରେଉଛନ୍ତି, କେଉଁଠି ପଛଆଡୁ ଲୁଚିଆସି ରାଧାଙ୍କ ଆଖି ବନ୍ଦ କରି ଲୁଚକାଳି ଖେଳୁଛନ୍ତି ଓ ରାଧାଙ୍କ ସଖୀର ଅଧର କପଟରେ ଚୁମ୍ବୁଛନ୍ତି । ଅଜା ଘଡ଼ିଏ ନିରବ ହେଇଯାଆନ୍ତି ।

ତାପରେ ସେ ଆରମ୍ଭ କରନ୍ତି । ନିତ୍ୟା ଶୁଣ, ବିଭିନ୍ନ ନାୟିକାମାନଙ୍କର ବିଭିନ୍ନ ଭାବ, ବାସକସଜ୍ଜା, ବିପ୍ରଲବ୍ଧା, ବିରହୋତ୍କଣ୍ଠିତା, ଖଣ୍ଡିତା, କଳହାନ୍ତରିତା, ଅଭିସାରିକା, ଏସବୁ ନାୟିକାଙ୍କ ମନକଥା ଜାଣିଲେ ତ ଶୃଙ୍ଗାର କଳା ଜାଣିବୁ , ରତିକ୍ରୀଡ଼ାର ରସ ବୁଝିବୁ । ପୁଅ ହେଜ, ନିର୍ମଳ ଚନ୍ଦ୍ରରାତି । ମନ୍ଦ ମନ୍ଦ ମଳୟ ପବନ ବହୁଛି । ଉପବନ ଭିତରେ କେଳି ମଣ୍ଡପରେ ରତିକଳା ନିପୁଣା ନାୟିକା ବିପରୀତ ରତି ମାଗୁଛି । କାରିଗର ଅବିକଳ ଚିତ୍ରଟିଏ ଆଙ୍କିଦେଇଛି । କାମସୂତ୍ର ପଢ଼, ସବୁ ରହସ୍ୟ ପରିଷ୍କାର ହେଇଯିବ । ଆମବେଳେ ବିଭିନ୍ନ ପ୍ରକାର ଶାସ୍ତ୍ର ଚର୍ଚ୍ଚା ହେଉଥିଲା । ଏବେ କ ଚ ଠ ପ କରିଦେଇ ସମସ୍ତେ ପଣ୍ଡିତ ବୋଲେଇଲେଣି ।

ନୀଳାମ୍ବର ମିଶ୍ରେଙ୍କ ଆଦ୍ୟ ଜୀବନର ସବୁ ଶୃଙ୍ଗାୟିତ ମୁହୂର୍ତ୍ତ ମନେ ପଡ଼ିଗଲା । କି ମଧୁମୟ ସେ ଅନୁଭୂତି । ଅନ୍ତର ପ୍ରେମରସ୍ମୃତିରେ ଦ୍ରବିଗଲା । ତାଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା । ମିଶ୍ରେଙ୍କ ଜୀବନ ପ୍ରେମ କାଙ୍ଗାଳ ହେଇ ବିତୁଛି । ମିଶ୍ରେ ବଡ଼ ସରାଗରେ କହିଲେ, ପୁଅ, ରତିବନ୍ଧ କଥା ତୋ ଆଗରେ ଆଉ କିଭଳି ବର୍ଣ୍ଣିବି, ସଂସାରର, ସୃଷ୍ଟିର ଗହନ କଥା ସେ । ନାରୀ ପୁରୁଷର କାମବନ୍ଧର ବିଭିନ୍ନ ପ୍ରକାରର ପିତୁଳା ମନ୍ଦିର ଦେହରେ ଖୋଦିତ ହେଇଛି । ତୁ ତ ଅନେକ ମଠ ମନ୍ଦିର ବୁଲୁଛୁ । ପୁରାଣ ପଢୁଛୁ । ପାଠ ସରିଲେ ଘର ମୁହାଁ ଦୌଡୁଛୁ । ବେଢ଼ା ଥରେ ବୁଲିଆସିଲେ ଆପେ ବୁଝିଯିବୁ ।

ନିତ୍ୟା ମୁରୁକି ମୁରୁକି ହସିଲା । ଅସ୍ପଷ୍ଟ ସ୍ୱରରେ କହିଲା, ସେ ଛୋପରା ଯୁଗଳ ମୂର୍ତ୍ତି ଯାକ ! ଛି ! ତାର ଇଚ୍ଛା ହେଉଥିଲା ସେ ଅଜାଙ୍କୁ ମନ୍ଦିରର ମିଥୁନ ମୂର୍ତ୍ତିର ରହସ୍ୟ କଥା ପଚାରିବ । ଦେବମନ୍ଦିରମାନଙ୍କର ବାହ୍ୟ ଆବରଣ ଉପରେ ଏତେ ଅଶ୍ଳୀଳ ମୂର୍ତ୍ତି କାହିଁ ପାଇଁ ? ମନ୍ଦିର ଯିବା ଲୋକର ମନ ତ ଟହଲି ଯିବ, ଚଂଚଳି ଯିବ । ଏମାନଙ୍କ କଥା ଭାବିଲେ ଠାକୁରଙ୍କ ପାଦପଦ୍ମରେ ମନ ଆଉ ରହିବ କିମିତି? ମନ ତ ସହଜେ ଚଗଲା, ବାୟାମନ । କହିଲେ ସହଜରେ କ'ଣ ମନ ମାନିଯିବ ? ଅଜାଙ୍କ ସାନପୁଅ ମନ୍ଦିର ବିଭାଗର ସୁପ୍ରେଣ୍ଟ ଅଛି । ଏ ଛୋପରା ପିତୁଳୀମାନଙ୍କୁ ନେଇ ଏଡ଼େ ମୋଟା ବହି ଲେଖିଛି । ସେ ବହି କୁଆଡ଼େ ଦିଲ୍ଲୀରେ ଛପା ହେଇଛି । କେଡ଼େ ସୁନ୍ଦର ଚିକ୍କଣ କାଗଜ, ହାତ ପକେଇଲେ ହାତ ଖସଡ଼ି ପଡୁଛି , ଦର୍ପଣ ଭଳିଆ ମୁହଁ ଦେଖିଲେ ଦିଶିବ । ସୁନ୍ଦର ରଙ୍ଗିନ ଫୋଟ ସେଇ ଛୋପରା ମୂର୍ତ୍ତି ଯାକର । ଦି'ହଜାର ଟଙ୍କା ବାନ୍ଧିଲେ ବହି ମିଳୁଛି । ଆଠ ଦଶ ଶଗଡ଼ ଧାନ ହେବ ବୋଲ । ସେ ଥରେ କହୁଥିଲା, ଏମାନେ ରହିଲେ କୁଆଡ଼େ ମନ୍ଦିର ପବିତ୍ର ହୁଏ । ମନ୍ଦିର ଉପରେ ବଜ୍ର ପଡ଼େନି । ସୃଷ୍ଟିର ମୂଳରେ ତ ଏମାନେ । ଏମାନେ କୁଆଡ଼େ କାମକଳା ନିପୁଣା ସୁଲକ୍ଷଣା ନାୟିକା । ମନ୍ଦିର ଆବରଣଟା ତ ସଂସାର । ଭିତରର ଗର୍ଭଟା ଆତ୍ମା । ସେଇଠି ଠାକୁର ବିରାଜି ଥାନ୍ତି । ଏସବୁ ଜଂଜାଳକୁ ଆଡ଼େଇ ଭିତରକୁ ଗଲେ ତ ଠାକୁରଙ୍କ ଦର୍ଶନ ମିଳିବ । ଏମାନଙ୍କ ପାଖରେ ଥାକିଯିବୁ ଯଦି ଥାକି ଯା । ଖମ୍ୱଆଳୁ ପାଇବୁ । ଠାକୁର ନା ତାଙ୍କ ପାଦଧୁଆ ପାଣି । ଇନ୍ଦ୍ରିୟ ସଂଭୋଗକୁ ଅତିକ୍ରମ କର । ଦେହ ବାସନାକୁ, ତାର ଅନେଶ୍ୱତ କୋଟି ମାୟାକୁ ପାରି ହେଇଯା, ତପ୍ତ ବୈତରଣୀ ପାରି ହେଲା ପରି । ଭିତରେ ଦେଖ ଆତ୍ମା ପ୍ରଚଣ୍ଡ ମାର୍ତ୍ତଣ୍ଡ ଭଳି ତେଜ ପ୍ରକାଶୁଛି । ଚାହିଁ ପାରିବୁ ତ । ଅନା ଆଖିଡ଼ୋଳା ପକାନା । ଅଜା ଏସବୁ ଗହନ କଥା ପଚାରିଲେ କହିବେ ନିତ୍ୟା ତୁଟା ଜାଣି ସିଆଣିଆ, ଛତରା ହେଇଗଲୁଣି । ମୁଁ ତ ଦେଖୁଛି ତୋତେ କୋଉ କଥା ଅଛପା ନାହିଁ ! ଗହନ କଥା ମଧ ତୁ ହେଜିଲୁଣି । କାମବନ୍ଧ କଥା ଆଉ କେତେ ଖୋଲି କହିବି । ଅଜା ଯିମିତିକା ଲୋକ ବେଶି ରଗେଇଦେଲେ କାନରେ ଦି ସୋରା ପଇତା ଗୁଡ଼େଇ ହେଇ ଅଣ୍ଡକୋଷ ଦେଖେଇ ଦେବେ । ମୁହଁ ପୋତି ନିତ୍ୟା ପଢ଼ି ଚାଲିଲା,

ଦଣ୍ଡ କମଣ୍ଡଳ ଶ୍ରୁବ ଶ୍ରୋହା ଯେ ପ୍ରୋକ୍ଷଣୀ
ଚୁଲାରେ ଭରିଣ ଜାଳଇ ଅଏଂଳା ବେଣୀ ।।
କୁଶ ବିଡ଼ା ଆଦିକରିଣ କକ୍ଷା ଯେ କପଟୀ
ବହନିରେ ଭରି ତାହା କରଇ ଭସ୍ମଭୁତି ।।

ଭଲ ହେଲା ଢାଳିଦେଲା । କମଣ୍ଡଳୁ ଚିମୁଟା ଆଶାବାଡ଼ି ଜପାମାଳି ଶ୍ରୁବ ଶ୍ରୁଚ ଦେଖେଇଲେ ଋଡିଲୀଳା ହେବକି ? ଚୁଲିରେ ଗଲା ଭଲହେଲା । ମାଇକିନା ରାଗିଲେ ସଂସାର ଢାଳିଦେବେ । କୁଶ ପକଉଚି ହୋମରେ? ବାବାଜି ହେବ ଯଦି ଜଟାଜୁଟ ରଖ । ଗୃହସ୍ଥ ହେବ ଯଦି ଜପତପ ଛାଡ଼ । ମାଇପ କଥା ହେଜ । ରସିକ ପଣିଆକୁ ଆଶ୍ରାକର । ମାଇକିନିଆ ଉଦଣ୍ଡ ହେଲେ କଥା ସରିଲା । କାଳୀ ଠାକୁରାଣୀକୁ ଦେଖୁନ । ଉନ୍ମତ୍ତ ହେଲା ଯେ ଶିବଙ୍କ ଉପରେ ଠିଆ ଚଢ଼ିଗଲା । ଶିବଙ୍କ ଗଞ୍ଜେଇ ନିଶା ଏକାଥରେ ଛାଡ଼ିଗଲା । ଶିବ ମହାପ୍ରଭୁ ଅନ୍ୟୋପାୟ ହେଇ ଲିଙ୍ଗ ବିସ୍ତାରିଲେ । ତାପରେ ଯାଇ ଠାକୁରାଣୀର ରାଗ ଶାନ୍ତି ପଡ଼ିଲା । ଶିବ ମହାପ୍ରଭୁ ପାରିଲେ ବୋଲି କ'ଣ ସମସ୍ତେ ପାରିଯିବେ କିହେ ?

ଯେମନ୍ତେ ଅନେକ ପ୍ରକାରେ କରାଇଲା ବିମୁଖ
ଗୃହବାସ ନିମନ୍ତେ ସହିଲେ ଅନେକ ଦୁଃଖ ।।
ଭୋଖର ବେଳେ ସେ ନ ଦିଅଇ ଅନ୍ନ ଯାଚି ।
ଅକ୍ଷୁଧା ବେଳେ ସେ ବହୁତ କରି ଯାଚି ।।
ଅନେକ ବେଶ ହୋଇ ଶାୟେଂତନୁ ମହାଗର୍ଷି
ଶୃଙ୍ଗାର ନିମନ୍ତେ କତି କତି ହୁଅଇ ଆସି ।।
ପଛରେ ଆସି କୋଳକରି ଧରନ୍ତି ଶାୟେଂତନୁ
ମହା ଅବଳା ନାରୀ ସେ ବାହାର ହୁଅଇ ଭୁବନୁ ।।

ନିତ୍ୟା ଭାବିଲା । ଏମିତିକା ମହାଭାରତ ଶୁଣିଲେ ପିଲେ ତ ଛତରା ହେଇଯିବେ । ଜ୍ଞାନ ନହେଇଥିବା ପିଲାଙ୍କର ଜ୍ଞାନ ଗଜୁରିଯିବ । ସାରୋଳା ମୁନି ଏକଥା ସବୁ କିମିତିକା ଲେଖିଲେ ଜଣା ପଡୁନି । ଏ ତ ଗିରସ୍ତ ଭାରିଯାଙ୍କ ନିଜ କଥା । ବଡ଼ ଗହନ କଥା । ଆମ ତଳ ସାହି ପଧାନ ଘରେ ତ ନିତି ଏମିତି ହେଉଛି । ପଧାନ ତ ବୁଢ଼ା ହେଇଗଲାଣି । ଜମିବାଡ଼ି ଧନ ସଂପତ୍ତି ଦାଣ୍ଡରେ ସିନା ଗଛା ଦିଣ୍ଡାଟାକୁ ଆଉଥରେ ବିଭା ହେଇପଡ଼ିଲା । ସମ୍ଭାଳି ପାରିଲାନି । ଅଚ୍ଛା ଜାଣିଚ ନା ସେଟା ଗୋଟେ ଜବର ମାଇକିନା । ଟିକିଏ ଶ୍ୟାମାଙ୍ଗୀ, ହେଲେ କଣ ହେଲା ଭରପୁରଦିହ ଫରୁଆ ଭଳିଆ ଆମ୍ବୁଆ ଦେହ । ଖାସା ମାଇପିଟା ହେ । ଦେହରେ ମୁହଁରେ ହଳଦି ମାଖିହେଇ, ଆଖିରେ କଜଳ ଲଗେଇ, ଯୋଡ଼ା ପାରି, ଓଠରେ ପାଦରେ ଆଳ୍ତୁ ଲଗେଇ ରଙ୍ଗକରି, ନାଲି

କସ୍ତା ପିନ୍ଧି ଦାଣ୍ଡକୁ ବାହାରି ପଡ଼ିଲେ ଦାଣ୍ଡ ଉଛୁଳି ପଡ଼େ । ବେଳ ବୁଡ଼ିଗଲେ ଦିଅରକୁ ଲାଠିକଣ୍ଡା ପକେଇଲା ପରି ସମାନେ ଟାକି ଥିବ । ଦାଣ୍ଡକୁ ବାଡ଼କୁ ହେଉଥିବ । ହାତରେ ଗୋଡ଼ରେ ପାଇଟି ପଅଚୁ ନଥିବ । ସେ ଶଳା ଟୋକା ବି ସେମିତିକା । ମସ୍ତ ହେଇଛି । କଲିକତା ଚଟକଳରେ କାମ କରେ । ହାତରେ ରିଷ୍ଟ୍‌ଉଆଚ । ଲୁଙ୍ଗିଟେ ମାରି ହାଓ୍ୱାନି ଖଣ୍ଡେ ପିନ୍ଧି, ପାତ ପକେଇ ମୁଣ୍ଡ କୁଣ୍ଡେଇଥିବ । କି କଲିକତି ତେଲ ଲଗେଇଥିବ କେଜାଣି ଭଣଭଣ ହେଉଥିବ । ହାତରେ ଚାରିସେଲିଆ ଟର୍ଚ୍ଚଟେ ଧରିଥିବ । ପାଞ୍ଚ ଆଙ୍ଗୁଠିରେ ପଥର ବସା ପାଞ୍ଚଟା ମୁଦି ପିନ୍ଧିଥିବ । ମୁହଁ ଅନ୍ଧାର ହେଲେ ସେ ମାଇକିନା ପାଖକୁ ଝପଟି ଆସୁଥିବ । କିସ ଦେଖିବ ତା କଲିକତି ଚାଲି । ନାଲି ପାଣ୍ଡେଇ ଘୋଷାଡୁ ଥିବ । ଶଳାଟାକୁ କଲକଟର ଭଳିଆ ଲାଗୁଥିବ । ବୁଢ଼ା ପଧାନ ଯେତେ ପାନଖିଲ କଲରେ ଢାକିଲେ କିସ ହେବ, ନିଶରେ ଅତର ମାରିଲେ କିସ ହେବ । ଏତେ ବଡ଼ ଦଣ୍ଡା ମାଇକିନାଟାକୁ ସମ୍ଭାଳିବାକୁ ତାର ଦିହରେ ବଳ କାହିଁ । ପଧାନ ଲହଲହଙ୍କା ବତାଟା ହେ । ଖାଲି ଭକୁଆ ଭଳି ଚାହିଁଥିବ । ମାଇପ ତା ଆଗରେ ଦିଅରକୁ ଧରି ଚାଲିବ ପୋଖରୀ ହୁଡ଼ାକୁ, ହୁଡ଼ାତଳ କିଆବୁଦା ମୂଳକୁ । କି ଦିଅର ହେ, ଫାଲତୁ କଥା । ନାଗର ହେ ରସିକ ନାଗର । ଫଟା ରସିକଟେହେ । ମହାଭାରତ ଯୁଦ୍ଧ ଯାହା ରତିକ୍ରୀଡ଼ା ତାହା ବୋଲ ।

ଅଜା କହୁନ, କଥା ସତ କି ନୁହେଁ ? ଅଜା ଯେ ଏସବୁ ଜାଣିନାହାନ୍ତି ତା ନୁହଁ । ଏ ମେଞ୍ଚଡ଼ ଟୋକା ସାଙ୍ଗରେ ରତି ପ୍ରୀତି ସଂପର୍କରେ ଆଲୋଚନା ସମୀଚୀନ ଓ ନିରାପଦ ନୁହେଁ ଏଣୁ ମୁରବୀ ଢ଼ଙ୍ଗରେ ତାଚ୍ଛଲ୍ୟ କରି କହିଲେ ନିତ୍ୟା ! ତୁ ରାଧାକାନ୍ତ ମଠରେ ପୁରାଣ ପଢୁଛୁ ନା ବନ୍ଧକୁ ବାଡ଼କୁ ଯାଉଥିବା ପରସ୍ତ୍ରୀ ଉପରେ ଆଖି ପକଉଛୁ , ନିଘା ରଖୁଛୁ । ଜାଣିଚୁ ଶାସ୍ତ୍ରକଣ କହୁଚି । "ମାତୃବତ୍ ପରଦାରେଷୁ । ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍" । ଏମିତି ଅନୀତି କଥା ତୁଣ୍ଡରେ ଧରନା, ଦେ ଆଗ । ଅଜାଙ୍କ ତାଗିଦାରେ ନିତ୍ୟା ଟିକିଏ ଚମକି ଯିବ ।

ନିତ୍ୟାର ଘୋର ସନ୍ଦେହ ହେଉଥିଲା ଅଜା ଏ ଶ୍ଳୋକର ମର୍ମକୁ ଅକ୍ଷରେ ଅକ୍ଷରେ କ'ଣ ପାଳନ କରୁଥିବେ ? ଅଜା ତ ପୋଖରୀ ହୁଡ଼ାରେ ମାଇକିନା ତୋଠ ପାଖରେ ସକାଳ ପହରୁ ଠିଆ ହେଇ ଦାନ୍ତ କାଠି ଘସୁଥିବେ ଯେ ଘସୁଥିବେ । କାଠି ସରି ସରି ତ୍ରିନାଥ ପାନ ଦୋକାନର ଖଇର କାଠ ଭଳିଆ ଥୋବଡ଼ା ହେଇ ଆସୁଥିବ । ଅଜା ତ,

କେହି ସନ୍ଦେହ କରନ୍ତିନି । ଅଜା ଏଣେ ନାତୁଣୀମାନଙ୍କ ଗଜରୀ ଉଠୁଥିବା ଥନଠୁ ଆରମ୍ଭକରି ମଧବୟସୀ, ବୁଢ଼ୀ ଧୋତଡ଼ୀ ପର୍ଯ୍ୟନ୍ତ ନିଘା ରଖୁଥିବେ । କିଛି ଛାଡ଼ିବେନି । ଲୁଗା ପାଲଟିଲା ବେଳେ ନିତମ୍ବମାନଙ୍କୁ ଦେଖୁଥିବେ । ଲାଖ ବିନ୍ଧିଲା ଭଳିଆ ଅନେଇ ରହୁଥିବେ । ପିଇ ତ ଯାଉଥିବେ । ଅଜାଙ୍କୁ ଆଉ ନିତ୍ୟା କଣ ବା କହନ୍ତା, ପାଠରେ ଆଗେଇଲା :

ପଳାଇ ପଶନ୍ତି ସେ ବହୁତଙ୍କ ମେଳେ
କାମରସେ ବିହ୍ୱଳିତ ସେ ମହାତ୍ମା ବହୁତ ବିକଳେ ।
ଚିତ୍ରବନ୍ଧ ପିତୁଳୀ ଯେ ଲେଖା ଅଛି କାନ୍ଥେ
ତାହାଙ୍କୁ ଚୁମ୍ବନ ଦିଅନ୍ତି ମଦନ ଆରତେ ।।
ହୃଦରେ ଲଗାଇ ଯେ କରନ୍ତି ଆଲିଙ୍ଗନ
ସେ ଚିତ୍ର ପିତୁଳୀକି କରଇ ରମଣ ।।
କାମ ବୋଲିଣ ସେ ଯେବଣ ପୁରୁଷେ
ମାୟା ଘୋର ସଂସାରେ ସେ ଅବସ୍ଥା ଦିଅଇ ଅଶେଷେ ।
ପୁରୁଷ ହୋଇ ବା ସ୍ତିରୀ ଜନ୍ମ ହୋଇ
ଅନଙ୍ଗ ସୁନ୍ଦର ନାଥ ଅନେକ ଦୁଃଖ ଦେଇ ।।
ଆନନ୍ଦେଣ ମହାତ୍ମା ପିତୁଳୀକୁ ଘେନି କରନ୍ତି କେଳି
ଧାତିକାରେ ଛାଡ଼ିଲା କାମ ବୀର୍ଯ୍ୟସ୍ଥଳୀ
ପିତୁଳୀ ରମଣେ ଛାଡ଼ିଲେ ମୁନି ବୀର୍ଯ୍ୟ
ସଇନ୍ଦୁ ଅମୋହ ରେତ ଛାଡ଼ିଲେ ମୁନିର ଉପୁଜିଲା ଆତ୍ମଜ ।।

ଅଜା, ଏ ତ ଅତି ଆଚମ୍ବିତ ବର୍ଣ୍ଣନା । ଲାଗୁଛି ଏହା କବି କଳ୍ପନା ମାତ୍ର । ଏଥିରେ ସତ୍ୟର ସାମାନ୍ୟ ଗନ୍ଧ ମାତ୍ର ନାହିଁ । ସ୍ତ୍ରୀ ପୁରୁଷ ବାହାହେଇ ଘର ସଂସାର କରି, ବାରବ୍ରତ କରି, ହୋମଯଜ୍ଞ କରି ମଧ ପୁତ୍ର ସନ୍ତାନ ପ୍ରାପ୍ତ ହେଉନି । ପିତୁଳୀ ରମଣ କଲେ ସନ୍ତାନ ଉତ୍ପତ୍ତି ହେଇଯିବ୍‌କି ହେ । ତା ହେଲେ ସଂସାରରେ ଏତେ ଜଂଜାଳ ନ ଥାଆନ୍ତା, ଲୋକେ ପିତୁଳୀକୁ ବାହାହେଇ ପଡ଼ନ୍ତେ । ପିତୁଳୀ ପାଟିଖୋଲି କିଛି କହନ୍ତା, ନା ଅଡ଼ିବସନ୍ତା,ବଡ଼ ଶସ୍ତାରେ ଘର ସଂସାର ଚଳି ଯାଆନ୍ତା । ଏମିତିକା କଣ୍ଢେଇ ବାହାଘର ଆମ ସାହିରେ ନିଇତି ହେଉଛି । କୋଉ ପିଲାଟା ଜନ୍ମ ହେଇଯାଉଛି ଯେ ।

ପିଲା ପିଚିକା ନ ହେଲେ ଅଜା ଜାଣିଥିବତ କେତେ ପାଲାହୁଏ । ନିତ୍ୟା ବୋଧହୁଏ ଭୁଲିଯାଇଛି ମିଛିମିଛିକା କଣ୍ଢେଇ ବାହାଘରେ, ମିଛିମିଛିକା ପିଲା ବି ଜନ୍ମ ହୁଅନ୍ତି ।

ନିତ୍ୟା ମନେପକେଇଲା, ଏଇ ଗତ ମାସର କଥା । ଆଖୁପଦା ମହାଦେବ ଦେଉଳକୁ ବାବାଜିଟେ ଆସିଥିଲା । ଅହର୍ନିଶ ଧୁନି ଜାଳି ବସିଲା । ସେ କୁଆଡ଼େ ମଉନୀ ବାବା । ଶଳାଟା ଦିଟା ଚେଲା ମଧ ସାଙ୍ଗରେ ଆଣିଥିଲା । ଚେଲା ନଥିଲେ କି ବାବାଜି । ଧୁନିର ଭସ୍ମ ସେବନ କଲେ, ଖାଇଲେ ବୋଲ, ସବୁ ରୋଗ ବ୍ୟାଧି ଉପଶମ ହେବ । ଜୋରଦାର ପ୍ରଚାରଟେ ହେଇଗଲା । ତୁଣ୍ଡ ବାଇଦ ସହସ୍ର କୋଶ । ବ୍ୟାପିଗଲା । ଯେତେ ପୁରୁଣା ବେମାର ହେଲେ ମଧ ଚିମୁଟେ ଭସ୍ମରେ ଆରୋଗ୍ୟ ହେଇଯିବ । ଅସଲ ମଂଜି କଥାଟି ହେଲା, ବାବାଜି ମନ୍ତ୍ରପଢ଼ି ଭସ୍ମପୁଡ଼ିଆ ଦେଲେ ବାଂଝ ପୁତ୍ରବତୀ ହେବ । ଏଇ କଥାପାଇଁ ଦେ ଲାଗିଲା ଭିଡ଼ ମାଇକିନାଙ୍କ । ବାବାଜି ରାତି ଅଧିଆ ହିଁ ମନ୍ତ୍ରେଇ ଭସ୍ମ ଦିଏ । ସଂଧ୍ୟାବେଳକୁ ଭକ୍ତଙ୍କ ଗହଳି ପତଳା ପଡ଼ିଆସେ । ମଶାଣିପଦା, ଗାଁ ମଶାଣିକୁ କାହାର ଭୟ ହେବନି । ରାତି ହେଇଗଲେ ଆଉ ଗାଁ ଲୋକ ପ୍ରାୟ କେହି ରହନ୍ତିନି । ଦୂର ଦୂରାନ୍ତରୁ ଆସିଥିବା ସନ୍ତାନସନ୍ତତି ହେଉନଥିବା ଗିରସ୍ତ ଭାରିଯାମାନେ ମନ୍ଦିର ବେଢ଼ାରେ ରାତିଅଧବେଳକୁ ଘୁମଉ ଥାନ୍ତି । ବେଳ ଉଣ୍ଡି ଚେଲାମାନେ ଡ଼ାକ ଛାଡ଼ନ୍ତି । ଗିରସ୍ତକୁ ବାହାରେ ଛାଡ଼ି ଭାରିଯା ମନ୍ଦିର ଭିତରେ ପଶେ । ମନ୍ଦିର କବାଟ ବନ୍ଦ ହୁଏ । ତାପରେ ଆରମ୍ଭ ହେଇଯାଏ ହାଂହାଂ, ହୁଂ ହୁଂ, ହ୍ରାଂହ୍ରାଂ, ହ୍ରୀଂହ୍ରୀଂ, କ୍ଲୀଂକ୍ଲୀଂ, ଫଟ୍‌ଫଟ୍ ଏମିତି ଅଜବ ଅଖାଡୁଆ ମନ୍ତ୍ର । ମଝି ମଝିରେ ଦୀର୍ଘଶ୍ୱାସ ଛାଡ଼ିଲା ଭଳି ଓଁ ଓଁ ଉଚ୍ଚାରଣ ଓ ଘଣ୍ଟାର ଠଣ୍‌ଠଣ୍ ଡ଼ଣ୍‌ଡ଼ଣ୍ ଶବ୍ଦ ରୁଦ୍ଧମନ୍ଦିର ଭିତରୁ ଧ୍ୱନିତ ହେଉଥାଏ ଓ ପରିବେଶକୁ ଚହଲେଇ ରଖିଥାଏ ।

ମନ୍ଦିର ଭିତରୁ ବାହାରି ଆସିଲା ବେଳକୁ ମାଇପିଲାଟି ଥତମତ ହେଇଯାଇଥାଏ । ମନରେ ହସ ମରିଯାଇଥାଏ । ଲାଗୁଥାଏ ବାବାଜିର ମନ୍ତ୍ର ଦେହରେ ଚରିଯାଇଛି । ଅଜା ଏମିତିକା ଧନ୍ଦା ମାସାଧିକ କାଳ ଚାଲିଲା । ଚୋରଘର ସବୁବେଳେ ତ ଅନ୍ଧାର ନଥାଏ । ଦଳେ ବଗୁଲିଆ ଟୋକା ବାବାଜି ଉପରେ ନିଘା ରଖିଥିଲେ । ମନ୍ଦିର ପଛପଟେ ଲୁଚି କବାଟ ଫାଙ୍କରେ ବାବାଜି କିମିତି ମନ୍ତ୍ର ଦେଉଛି ଦେଖିଲେ । ଆଉ ଦେଖ । ଦେ । ହେଲା ମାଡ଼ । ଗାଁଟା ଯାକର ଭେଣ୍ଡିଆ ମାଡ଼ି ଆସଲେ । ବାବାଜିର ଦାଢ଼ି, ଜଟକୁ କାଟି, ଦାନ୍ତ ଭାଙ୍ଗି ପାଟିରେ ବିଷ୍ଠା ଭର୍ତ୍ତି କରିଦେଲେ ।

ବାବାଜି ତ୍ରାହି ତ୍ରାହି ଡ଼ାକଦେଲା । ଧୁନିଫୁନି ଛାଡ଼ି ଯାଇଛି ଯେ ଯାଇଛି, ଆଉ ତାର ଦେଖା ନାହିଁ ବାବାଜିଙ୍କ ମହିମା ବଡ଼ ଅପାର । ପିତୁଳୀ ରମଣ କଥାଟା ମୋତେ ଏମିତିକା ଲାଗୁଛି ।

ଏତକ କହି ନିତ୍ୟା ତଳକୁ ମୁହଁପୋତି, ମୁରୁକି ମୁରୁକି ହସିଲା । ନିତ୍ୟାର ସାଙ୍ଗ ମଦନା ଫେମିଲି ପ୍ଲାନିଙ୍ଗ୍ ଅଫିସରେ ପିଅନ ପାଇଟି କରେ । ହଁ , ସିଏତ କହୁଥିଲା ଫେମିଲି ପ୍ଲାନିଙ୍ଗ୍ କଥାକୁ ପ୍ରାଂଜଳ ଭାବରେ ଦେଖେଇ ନୂଆ ଗିରସ୍ତ ଭାରିଯାଙ୍କୁ ବୁଝେଇବା ପାଇଁ ବ୍ରିଟିଶ ସରକାରଙ୍କ ଦୟାକୁ ଗଣ୍ଡେ ଦିଗଣ୍ଡା ରବରର ମାଇକିନା କଣ୍ଢେଇ ଭୁବନେଶ୍ୱର ହେଡ୍‌ଅଫିସକୁ ଆସିଥିଲା । ହେଡ଼ ଅଫିସରେ ବଡ଼ ଡ଼ାକ୍ତର ଡ଼ାକ୍ତରାଣୀ ମାନେ ସାନ ସାନ ଡ଼ାକ୍ତର ଡ଼ାକ୍ତରାଣୀମାନଙ୍କୁ ଟ୍ରେନିଙ୍ଗ୍ ଦେବା ପାଇଁ ଡ଼କରା ପଠେଇଲେ । ମଦନା ତା ବାବୁସାଙ୍ଗରେ ଭୁବନେଶ୍ୱର ହେଡ଼୍ ଅଫିସକୁ ଯାଇ ହପ୍ତାକାଳ ରହିଥିଲା । ଦିନେ ସଂଧ୍ୟାବେଳେ ଅଫିସ ବନ୍ଦ ହେଇଗଲା ପରେ ଉଡ଼ାଜାହାଜରେ ଆସିଥିବା ବଡ଼ ବଡ଼ କାଗଜ ପେଟିମାନ ଖୋଲାଗଲା । ମଦନା ଓ ତା ଭଳି ଅନ୍ୟ ଅଫିସରୁ ଆସିଥିବା ପିଅନମାନଙ୍କୁ ଏ କାମ ବରାଦ ଦିଆଗଲା । ପେଟି ଖୋଲିବା କାମରେ ସମସ୍ତେ ଲାଗିପଡ଼ିଲେ । ଡ଼ାକ୍ତର ଡ଼ାକ୍ତରାଣୀମାନେ ଅଣ୍ଟାରେ ହାତଦେଇ ଉତ୍‌କଣ୍ଠାର ସହିତ ଅନେଇରହିଥାନ୍ତି । ମଦନା ସଂଧ୍ୟାବେଳଟାରେ ଅନ୍ଧାରଟାରେ ଘର୍ମାକ୍ତ ହେଇ ଟର୍ଚ୍ଚ ଆଲୁଅରେ ଏଭଳି କାର୍ଯ୍ୟକୁ କରିବା ପସନ୍ଦ କରୁନଥିଲା । ଅସରାଏ ଆଚ୍ଛାକରି ବର୍ଷାହେଇଯିବା ପରେ ଅଫିସ୍ ଘର ଲାଇଟ୍ ଅଫ୍ ହେଇଯାଇଥିଲା । ମଦନା ବାଧ୍ୟରେ ପେଟିର ପ୍ୟାକିଙ୍ଗ୍ ଖୋଲି ଚାଲିଥିଲା । ବଡ଼ବାବୁ ସେମାନଙ୍କ ଶ୍ରମ ଲାଘବ କରିବାପାଇଁ ଓ ଡ଼ାକ୍ତର ଡ଼ାକ୍ତରାଣୀଙ୍କୁ ଖୁସି କରେଇବାପାଇଁ ତାହା ବରାଦ ଦେଇ ସାରିଥିଲେ । ମଦନା ଓ ତା ସାଙ୍ଗମାନେ ଆବା କାବା ହେଇ ଚାହିଁଛନ୍ତି, ପେଟିଭିତରେ ନିଷାଓଷ ଖୁଆଇ ଶୁଆଇ ଦେଲା ଭଳିଆ ଲଙ୍ଗଳା ସାଇବାଣୀ ମାଇକିନା ଯାକ ଆଖିରେ ପଡ଼ିଲେ ।

ଆଚୁ ମିଶା କ୍ଷୀର ରଙ୍ଗ ଭଳି ସେମାନଙ୍କ ଦେହ ଦିଶୁଥିଲା । ଲାଗୁନଥିଲା ସେଗୁଡ଼ିକ ରବର କଣ୍ଢେଇ ଭଳି । ଅଙ୍ଗୁର କୋଳି ପରି କଣ୍ଢେଇଙ୍କ ଗାଲ ଯାକ ଟଳ ଟଳ ହେଉଥିଲା । ନୀଳ ନୀଳ ଭାସିଲା ଭାସିଲା ଆଖି, ରଙ୍ଗା ହେଇଥିବା କଥା କହିଲା ଭଳିଆ ଓଠ । ଦେହକୁ ଦେଖିଲା ବେଳକୁ ଥନ ଯାକ ସାମାନ୍ୟ ଛୋଟ, କିନ୍ତୁ ଡ଼ାଳିମ୍ବ

ଭଳି ଚୁମୁକ୍ରୁଳେଇ ରହିଥିଲା । ଆମର ଏଠିକାର ମାଇକିନାଙ୍କ ଭଳିଆ ନୁହଁ । ଇଆଡ଼େ ସବୁ ବୃଶାଳ ଓ ଲମ୍ବିତ । କଣ୍ଢେଇମାନଙ୍କ ଅଣ୍ଟା ପାଖଟା ବେଶ୍ ସରୁ । ତା ତଳକୁ ଚନ୍ଦନ ପେଡ଼ି ଭଳି ଓସାରିଆ ନିତମ୍ବ । ଗୋଡ଼ ହାତର ଗଢ଼ଣ କେଡ଼େ ସୁନ୍ଦର , କଇଁନାଡ଼ ଭଳିଆ ବାହୁ । ଲାଗୁଥିଲା ଦେ କହିଲେ ଭିଡ଼ିନେବେ । କଣ୍ଢେଇଯାକକୁ ଟେବୁଲ୍ ଉପରେ ଶୁଆଇ ଦେଇ ଡ଼ାକ୍ତର ଡ଼ାକ୍ତରାଣୀମାନେ କ'ଣ ସବୁ ପରୀକ୍ଷା କଲେ । କ'ଣ ସବୁ ଇଂଲିଶରେ କଥା ହେଇ ହୋ ହୋ ହେଇ ହସାହସି ହେଲେ । ବଡ଼ ଲୋକ ସେମାନେ, ସେମାନଙ୍କୁ ଉତ୍ତର ନାହିଁ । ହେଡ୍ ଅଫିସ ଚୌକିଆ ନବଘନକୁ ତାଲାବନ୍ଦ କରିବାକୁ କହି ସେମାନେ ଅଫିସ୍ ଭେନ୍‌ରେ ଘରକୁ ଫେରିଲେ ।

ମଦନା ମନରୁ କିନ୍ତୁ ସେ କଣ୍ଢେଇ କଥା ଯାଉ ନଥାଏ । ଡ଼ାକ୍ତର ଡ଼ାକ୍ତରାଣୀଙ୍କ ଆଗରେ ପେଟ ପୁରେଇ ଦେଖିବା ହେଇ ନଥାଏ । ଏଡ଼େ ସୁନ୍ଦର ଦେହରେ ଟିକିଏ ହାତ ମାରନ୍ତେନି , କିମିତିକା ଲାଗୁଚି ଦେଖନ୍ତେନି । ମଦନାର ଇଚ୍ଛା ହେଉଥିଲା କଣ୍ଢେଇ ଟାକୁ ଥରେ ମନ ଲାଖି ଭିଡ଼ି ଧରନ୍ତା । ସରିଯିବ ନା କଣ ? ମଦନା ନିଜ ମନକୁ ବୁଝେଇଲା । ଆମେ ଅଫିସ୍ ଲୋକ । ଆମେ ଦେଖିବାନି , ଆମେ ଜାଣିବାନି ତ ପଦା ଲୋକ କଣ ଦେଖିବେ ଜାଣିବେ ।

ସଂଧ୍ୟା ଗାଢ଼ ହେଲା । ସେ ଭାରି ସରାଗରେ ନବଘନକୁ ଖାଇବାକୁ ଡ଼ାକିଲା । ମାଂସର ସ୍ପେଶାଲ ତରକାରୀ ଯାଚିଲା । ନବଘନ ପଚାରିଲା, କି ବେ ମଦନା, ଆଜି ମନ ଏତେ ଉଚ୍ଛାଟ କାହିଁକି ? ମଦନା ଖାଲି ହସିଲା । କହିଲା ଶଳା ଖା, ହେଡ୍ ଅଫିସର ଚୌକିଆ ପାଖରେ ବଡ଼ବାବୁର ପାୱାର । ଶଳା, ଆଜିକ ଖାଇଦେ, ଦି ଦିନ ପରେ ଏ ଟ୍ରେନିଙ୍ଗ୍ କେମ୍ପ ତ ସରିଯିବ । ଉଭୟେ ପେଟେ ପେଟେ ଖାଇ ଅଫିସ ଫେରିଲେ । ମଦନାର ମନ ତ କଣ୍ଢେଇମାନଙ୍କ ପାଖରେ ଲାଖିଥାଏ । ସେ ନବଘନକୁ ଲେବୋରେଟରୀ ଘର ଖୋଲିବା ପାଇଁ ଫୁସୁଲେଇଲା । ନବଘନ ପ୍ରଥମେ ପ୍ରଥମେ ଦୋ ଦୋ ପାଞ୍ଚ ହେଲା । ହେଲେ ତାର ମଧ ମନ ସେଇ ପିତୁଳାଙ୍କ ପାଖରେ ଭଉଁରୀ କାଟୁଥାଏ । ଦି'ଜଣ ଚୁପ୍‌ଚାପ୍ ଲେବୋରେଟରୀ ଭିତରେ ପଶି କବାଟ ବନ୍ଦ କଲେ । ସଂଧ୍ୟାବେଳେ ଧୁମ୍ ଗଂଜେଇ ଟାଣିଥିଲେ । ନିଶାରେ ଆଖିଯାକ ଟଳଟଳ ହେଇ ଆସୁଥାଏ । ପିତୁଳାମାନଙ୍କ ଉପରେ ହାତ ବୁଲେଇ ଆଣିଲେ । କି ଚମତ୍କାର ଅନୁଭବ, କେଡ଼େ ଚିକ୍କଣ, କେଡ଼େ କଅଁଳ । ଉଭୟଙ୍କର ଦେହ ଓ ମନ ରୋମାଞ୍ଚରେ ଭରିଗଲା

ଆଉ ସମ୍ଭାଳା ଗଲେନି । କେତେ ଆଉ ଅଣ୍ଡାଳିବେ । କୁଆଡ଼ୁ କୁଆଡ଼କୁ ହାତ ବୁଲେଇବେ ? ସବୁ ତ ସ୍ତନ ଜଘନ ଭଳି ଅନୁମାନ ହେଉଛି । ସାଇବ କାରିଗର କିମିତି ଗଢ଼ିଛି ଏ କଣ୍ଢେଇ ? ଲେବୋରେଟରୀର ନିଅନ ଆଲୁଅରେ ପିତୁଳା ଯାକ ସାକ୍ଷାତ କାଞ୍ଚନ ପାଲଟି ଯାଇଥିଲେ । ସେମାନେ କାମୋତ୍ତେଜନାରେ ଜଳୁଥିଲେ ଓ ଜାଳିଦେବାପାଇଁ ତିଆର ଥିଲେ । ମଦନା ଓ ନବଘନ ପେଟେ ପେଟେ ଖାଇ ମଧ ଭୀଷଣ କ୍ଷୁଧାର୍ତ୍ତ ଥିଲେ । ପିତୁଳୀ ମାନଙ୍କୁ ରମଣ କରିବା ଆରମ୍ଭକଲେ । ଦିହେଁ ତ ଟୋକା ବୟସର, ଯେତେ ରଙ୍ଗରେ, ଯେତେ ଛନ୍ଦରେ, ଯେତେ ଢ଼ଙ୍ଗରେ ସମ୍ଭବ । ଥରେ ଅଧେ ନୁହେଁ , ବାରମ୍ଭାର, ତୁହାକୁତୁହା ରାତିର ଶେଷ ପ୍ରହର ଯାଏଁ ଏଭଳି କାର୍ଯ୍ୟ ଚାଲିଲା । ସେମାନେ ହୁଏତ ଭାବୁଥିଲେ କେଉଁଏକ ଆଦିମ ଯୁଗରୁ ସଂଚିତ ସେମାନଙ୍କ ପ୍ରବୃତ୍ତିକୁ ଆଜି ହିଁ ଚରିତାର୍ଥ କରିନେବେ । ତା ପରେ କ'ଣ ମନେପଡ଼ିଗଲା କେଜାଣି ଅତର୍କ୍କାରେ କବାଟ ବନ୍ଦକରି ପଦାକୁ ବାହାରି ଆସିଲେ । ଚୁପ୍ ଚାପ୍ ଅଫିସ ବେଞ୍ଚ ଉପରେ ସାଷ୍ଟାଙ୍ଗ ହେଇ ଶୋଇଗଲେ । ନିଶାସକ୍ତ ରତିକ୍ଳାନ୍ତ ଦେହ ଦିଟାକୁ ନିଦ ଘାରିଦେଲା ।

ସକାଳ ହେଲା । ଅଫିସ ଖୋଲିଲା । ଡ଼ିରେକ୍ଟର ଡ଼ାକ୍ତର (କୁମାରୀ ) ନୀଳିମା ମହାନ୍ତି ଦିଜଣ ଲେଡ଼ି ଡ଼ାକ୍ତରାଣୀଙ୍କ ସହିତ ଲେବୋରଟରୀ ଭିତରକୁ ପଶିଆସିଲେ , ଇଂଲଣ୍ଡରୁ କ'ଣ ସବୁ ଆସିଛି ତନଖି କରିବା ପାଇଁ । ନବଘନ ମ୍ୟାଡ଼ମ୍‌ଙ୍କୁ ନମସ୍କାର ହେଲା, ମଦନା ମଧ ପାଖରେ ଆସି ଠିଆ ହେଲା । ଡ଼ିରେକ୍‌ଟର ମହୋଦୟା ପିତୁଳୀ ଯାକ ପରଖିଲେ, ଓଲଟ ପାଲଟ କରି ଦେଖିଲେ । ପିତୁଳୀଙ୍କ ଦେହସାରା, ଗାଲ ଓଠ ଚିବୁକ ବେକସନ୍ଧା ସ୍ତନ ଜଘନରେ କ୍ଷତ ଚିହ୍ନ । ଆମ୍ପୁଡ଼ା ରାମ୍ପୁଡ଼ା ହେଲା ଭଳି ଦେହ ହେଇଯାଇଛି । ଧର୍ଷିତା ହେଲା ଭଳି ଦେଖାଯାଉଛି । ସେ ରାଗରେ ଘୃଣାରେ ଓ ଲଜ୍ଜାରେ ଯିମିତି ଜଳିଗଲେ । ସେ ନିଜେ ଅବିବାହିତା ହେତୁ ତାଙ୍କ ପ୍ରତି ଏହା ଉଦ୍ଦିଷ୍ଟ ବୋଲି ସେ ଅନୁମାନ କରିନେଲେ । ସେ ସେଠି ଦଣ୍ଡେ ମଧ ଠିଆ ହେଇପାରିଲେନି , ନିଜ ଅଫିସ୍ ରୁମ୍‌କୁ ବାହୁଡ଼ି ଆସିଲେ । ଘୁରା ଚଉକି ଉପରେ ବସିଗଲେ । ମୁହଁ ତଳକୁ ହେଇଗଲା । ରକ୍ତ ତାଳୁକୁ ଉଠିଗଲା, ଆଖିରେ ଲୁହ ଭର୍ତ୍ତି ହେଇଗଲା ।

ତା' ପରେ ଅଫିସ୍ ଭିତରେ ଗୋଟିଏ ଛୋଟ ଧରଣର ଭୂମିକଂପ ସଂଗଠିତ ହେଇଗଲା । ଉପରୁ ଆରମ୍ଭକରି ତଳ ପର୍ଯ୍ୟନ୍ତ ସବୁ ଅଫିସର କିରାଣୀ, ପିଅନ, ଚପରାସି ଯିମିତି ଦୋହଲି ଗଲେ । ସବୁଆଡ଼େ ପିତୁଳୀ ରମଣର ଚାପା ଚାପା ଗୁଞ୍ଜରଣ

ଖେଳିଗଲା । ଶେଷରେ ଚୌକିଆ ବାପୁଡ଼ା ନବଘନ ଚାକିରୀରୁ ସସ୍‌ପେଣ୍ଡ ହେଲା । ପ୍ରେମ ନିଶା ଉତୁରି ଆସିଲା । ଗୋଡ଼ ତଳିପା ଆଣ୍ଠୁ କାକର ପଡ଼ିଗଲା , ପାଟି ଅଠାମାରିଗଲା । ଅଫିସ୍ ଅର୍ଡ଼ରଟା ହାତରେ ଧରିନେଲା ପରେ ତଳେ ସେ ଅଛାଡ଼ି ହେଇ ପଡ଼ିଲା । ତାର ଏଭଳି ଅବସ୍ଥା ଦେଖି ମଦନାର ଗୋଡ଼ ହାତ ଥରି ଉଠିଲା । ସେ ବଡ଼ବାବୁଙ୍କ ଗୋଡ଼ ତଳେ ପଡ଼ି ଭୋ ଭୋ ହେଇ କାନ୍ଦିବାକୁ ଲାଗିଲା । ହାତ ଯୋଡ଼ି କାଠଗଡ଼ାରେ ଠିଆ ହେଲା ଭଳି ଠିଆହେଲା । ତାଙ୍କ ଗାଁ ଆଡ଼ିଆ ପିଲା ତ, ବଡ଼ବାବୁ ସାହସ ସଂଚୟ କରି ଡ଼ିରେକ୍ଟରଙ୍କ ଅଫିସ୍ ରୁମ୍ ଭିତରକୁ ମଦନାକୁ ନେଇକରି ଗଲେ । ମଦନା ଗୋଟା ଥରୁଥାଏ । ବଡ଼ବାବୁ ବତେଇ କହିଥିଲେ ସିଧା ମାନିଯିବୁ, ଗଫଲତି କରିବୁନି । ତେଣୁ ମଦନା ଖୁବ୍ ଅନୁନୟ ବିନୟ ହୋଇ କହିଲା, ମା ମୋତେ ରକ୍ଷା କରନ୍ତୁ, ମୁଁ ଜୀବନରେ ବଡ଼ ଭୁଲ କାମ କରିପକେଇଛି । ମୋତେ କ୍ଷମା କରିଦିଅନ୍ତୁ । ପିଲାଛୁଆ କୁଟୁମ୍ବ ଚୋଡ଼୍‌ଚାଡ଼୍ ମରିଯିବେ । ମଦନାକୁ ପଚାଶଟଙ୍କା ଫାଇନ୍ ହେଲା । ପିତୁଳୀ ରମଣ ମଜା ଆପେ ବାହାରି ଗଲା । ବଡ଼ବାବୁ ରୁମରୁ ବାହାରିଆସିଲା ପରେ କହିଲେ, ଶଳା, ବଞ୍ଚିଗଲୁ । ଅପିଲଟିଏ କରେ । ମୁଁ ମ୍ୟାଡ଼ମକୁ କହି ମାଫ୍ କରେଇ ଦେବି । ଥରେ ନୁହେଁ ସାଙ୍ଗ ସୁଖରେ ବସିଲେ ମଦନା ଏ ପ୍ରସଙ୍ଗଟି ଜମେଇ କରି ବାରମ୍ବାର କହେ । ସାଙ୍ଗମାନେ ହୋ ହୋ ହେଇ ହସିଉଠନ୍ତି । ନିତ୍ୟାର ଏ କଥାଟି ମନେଥିଲେ ମଧ ଅଜାଙ୍କୁ ଆଉ କହନ୍ତା କଣ ? ତା ଚାପାଚାପା ହସ ଭିତରେ କଥାଟି ବାହୁଡ଼ା ଜୁଆର ଭଳି ହଜିଗଲା ।

ଅଜା କହିଲେ ନିତ୍ୟା, ତୁ ପ୍ରସଙ୍ଗଟିକୁ ଯିମିତି ଭାବରେ ଦେଖୁଛି ମୁଁ ତା ଭାବୁନି । ଆମେ ସମସ୍ତେ ତ ଚିତ୍ରିତ ପିତୁଳି, ନିଶ୍ୱାସ ଟିକକ ଅଟକି ଗଲେ ଗଲା । ମାଟିରୁ ତ ଏ ଦେହର ଜନ୍ମ । ପୁଣି ଲୀଳାଖେଳା ସରିଗଲେ ଦେହ ମାଟିରେ ମିଶିଯାଏ । ପିତୁଳାର ବି ସେଇ ଦଶା । ଏଇ ଅଛି, ପର ମୁହୂର୍ତ୍ତରେ ନାହିଁ । ମାଟିର କାଠର ପଥରର ଏଭଳିକି ସୁନା ହୀରା ନୀଳା ଆଉ ମୋତି ମାଣିକ୍ୟର ସବୁ ପିତୁଳା ମଧ ସମାନ । ପିତୁଳା ଏକ ମିଛ ମାୟାର ରୂପ, ଏକ ଚିତ୍ରିତ ସ୍ଥିତି । ଭଗବାନ ମଣିଷ, ଗଛଲତା, ପଶୁପକ୍ଷୀ, ସାରା ସଂସାର ପିତୁଳା ଭଳି ନିଜ ହାତରେ ଗଢ଼ନ୍ତି, ଠିକ୍ ଯିମିତି କାରିଗର ଭଗବାନଙ୍କୁ ଗଢ଼େ । ଯିମିତି ମନରେ ଘେନିବୁ ସବୁ କଥା ସିମିତି ସିମିତି ଲାଗିବ । ସୃଷ୍ଟିର ନିଗୁଢ଼ ତତ୍ତ୍ୱ ଭେଦିବାକୁ ତୋର ଆହୁରି ବୟସ ହେଇନି ।

ବୀର୍ଯ୍ୟ କଥା ସାରୋଳା ଗାଇଛିରେ। ବୀର୍ଯ୍ୟ ତ ହେଉଛି ବ୍ରହ୍ମ। 'ସର୍ବଂ ଖଲ୍ବିଦଂ ବ୍ରହ୍ମ', ବୀର୍ଯ୍ୟରେ ପ୍ରାଣ ଓଜ ତେଜ ସବୁ କିଛି ଶକ୍ତି ନିହିତ ଅଛି। ଆମର ଜନ୍ମ ତ ବୀର୍ଯ୍ୟରୁ, ରଜ ଓ ବୀର୍ଯ୍ୟର ମିଳନରେ ତ ପିତୁଳାର ଜନ୍ମ। ବୀର୍ଯ୍ୟ ହେଉଛି ଜଳ, ବୀର୍ଯ୍ୟ ବାୟୁ, ବୀର୍ଯ୍ୟ ଅଗ୍ନି, ବୀର୍ଯ୍ୟ ହିଁ ପ୍ରାଣୀଙ୍କୁ ବଞ୍ଚେଇ ରଖିଚି। ସଂସାରର ମୂଳ ହେଉଛି ବୀର୍ଯ୍ୟ। ଏତେ ତ ପୁରାଣ ପଢୁଛୁ। ଜାଣିଛୁ ବୀର୍ଯ୍ୟ ଥରେ ସ୍ଖଳନ ହେଇଗଲେ ଆଉ ନିସ୍ତାର ନାହିଁ ରେ ବାପା। ଜଳରେ ପଡୁ, ସ୍ଥଳରେ ପଡୁ, ଯୋନିରେ ପଡୁ ବା ଗର୍ଭରେ ପଡୁ ତା କରାମତି ସେ ଦେଖେଇବ। ଜୀବନଟିଏ ଫୁଟି ଉଠିବ।

ନୀଳାମ୍ବର ଅଜା ଆହୁରି ଫେଣେଇବା ପାଇଁ କଥାକୁ ଲମ୍ବେଇଚାଲିଲେ। ତୁ ତ ଦୁତୀବାହନ ଓଷା କଥା ଜାଣିଛୁ। ଆଶ୍ୱିନ ମାସେ କୃଷ୍ଣ ପକ୍ଷେ ରାଜାଙ୍କର ପିତୃପକ୍ଷ ପଡ଼ିଲା। ରାଜାଙ୍କ ଘରେ ଶ୍ରାଦ୍ଧ ନିମନ୍ତେ ଚାଉଳ ଲୋଡ଼ା ହେଲା। ସେଦିନ ବହୁତ ଝଡ଼ ବର୍ଷା ହେଲା। ଧାନ ଶୁଖିଲା ନାହିଁ। ଚାଉଳ ମିଳିଲା ନାହିଁ। ରେବତୀ ନାମେ ଏକ ବିଧବା ବ୍ରାହ୍ମଣୀ ଥିଲା। ସେ ବିଧବା ହେଲେ ବି ରୂପବତୀ ଥିଲା। ସେ ସୂର୍ଯ୍ୟ ଦେବଙ୍କୁ ବହୁତ କାକୁତି କଲା। ବୋଇଲା ଭୋଦେବ ଈଶ୍ୱର ମୋହୋ ଦୁଆରେ ଖରା କରିବ। ଉଆ ଉସୁନା ଧାନ ଶୁଖିବ। ମୁଁ ରାଜାଙ୍କୁ ଚାଉଳ ଦେବି। ସତକୁ ସତ ଖରାହେଲା। ରାଜାଙ୍କ ପାଖରେ ତା ମହତ ରହିଗଲା। ସୂର୍ଯ୍ୟଦେବ ତାକୁ ଜାଗ୍ରତେ କହିଲେ - ତୁଯେ ଆମ୍ଭଙ୍କୁ ସତ୍ୟ କଲୁ, ଆମ୍ଭେ କେଉଁ ଦିନ ତୋହଠାକୁ ଯିବୁ। ବ୍ରାହ୍ମଣୀ ଦିନ ନିଦାନ କଲା। ସେ ଦିନ ଘର ଲିପାପୋଛା କଲା। ଆପଣା ଦାସୀକି ଅନୁରୂପେ ବେଶ ବେଶନ ଦେଇ ସୁବେଶ କଲା। ଗୃହେ ପଲଙ୍କ ପକାଇ ଦାସୀକୁ ଶୁଆଇଲା। ବୋଇଲା ଯେ ପୁରୁଷ ଆସିବ ତାହାଙ୍କୁ କବାଟ ଫେଡ଼ିବୁ। ଅଙ୍ଗ ସମର୍ପିବୁ। ଈଶ୍ୱର ତାହା ଜାଣିଲେ। ବ୍ରାହ୍ମଣୀ ବିଶ୍ୱାସରେ ଅବିଶ୍ୱାସ କଲା ବୋଲି ଦାସୀକୁ ଡ଼ାକି କହିଲେ, ସେ ବ୍ରାହ୍ମଣୀ ଆମ୍ଭକୁ ଜିତିଗଲା। ଏତେ ବୋଲି ଈଶ୍ୱର ତାହା ଦୁଆରେ କନ୍ଦର୍ପ ଆରତ ପ୍ରସାବ କଲେ। କେତେ ଦିନ ଅନ୍ତେ ଯେଉଁଠାରେ ଈଶ୍ୱର ପ୍ରସାବ କରିଥିଲେ ସେଠାରେ ଲେଉଟିଆ ଶାଗ ଓଠିଲା। ବ୍ରାହ୍ମଣୀ କିଛି ଦିନ ଅନ୍ତରେ ପାକାସ୍ୱର୍ଶ ହୋଇଲା। ସ୍ନାନ ପାଳିଦିନ ସେ ଶାଗ ପାକ କରି ଖାଇଲା। ସେ ଶାକ ଗର୍ଭରେ ପଡ଼ିବାରୁ ସେ ଗର୍ଭବାସ ହୋଇଲା। ଦଶ ମାସ ସମ୍ପୂର୍ଣ୍ଣ ହୋଇବାରୁ ଗୋଟିଏ ପୁତ୍ର ଜନ୍ମ ହେଲା। ତା ନାଁ ହେଲା ଦୁତୀବାହନ। ସେଭଳି ପୁଅ ପାଇଁ ତ ପୁଣି ଓଷା। ବ୍ରହ୍ମର କରାମତି ହେଜିଲୁ ତ ବାପ।

ନିତ୍ୟା ତୁ ଅଟକି ଯାଆନା ଆଗକୁ ଚାଲ ।
ନିତ୍ୟାନନ୍ଦ ପଢ଼ିଚାଲିଲା :

ପୁତ୍ରେକ ଉପୁଜିଲା ଯେ ମହା ବଳବନ୍ତ
ଦେଖିଣ କୋଳେ ତାକୁ ଧଇଲେ ତପୋବନ୍ତ ॥
ଚିତ୍ର ପିତୁଳୀରୁ ଯେ ଉପୁଜିଲା ଆତ୍ମଜ
ଚିତ୍ରବୀର୍ଯ୍ୟ ନାମ ଦେଲେ ସୋମବଂଶ ମହାରାଜ ॥
ପୁତ୍ର ଘେନିଣ ମହାତ୍ମା ହୋଇଲେ ବାହାର
ଗଙ୍ଗାକୁ ଲୁଚାଇ ଦେଲେ ସତ୍ୟବତୀ କୋଡ଼ର ॥
ଗଙ୍ଗା ନ ଜାଣୁଂ ଯେହା ପାଳ ଅତି ଯତ୍ନେ
ଏତେ ବୋଲି ପୁତ୍ର ଦେଇ ଚଳିଲେ ମହାମୁନ୍ୟେ
ପୁତ୍ର ଗୋଟି ଯତନେ ପାଳଇ ସତ୍ୟବତୀ
ବଢ଼ଇ ଚିତ୍ରବୀର୍ଯ୍ୟ ଅଯୋନି ଜାତ ମୂର୍ତ୍ତି ॥

ପାଞ୍ଚପଦ ପରେ ପୁଣି ଅଟକି ଯାଇ ନିତ୍ୟା ପ୍ରଶ୍ନକଲା, ଅଜା ଅଯୋନି ଜାତ ମୂର୍ତ୍ତି କଥା ଯେ ସାରଳା କହିଛି ମୁଁ ଭାବୁଛି ସେଇଠି ରହସ୍ୟ ଲୁଚି ରହିଛି । ପିତୁଳା ତା ହେଲେ ମଣିଷଙ୍କ ଠାରୁ ନିଆରା । ପିତୁଳା ମାତ୍ରକେ ତାଠି ଦେବତ୍ୱ ପ୍ରତିପାଦିତ ହେଇଛି । ମଣିଷ ପିତୁଳା ହେଇଗଲେ ଦେବତ୍ୱ ପାଇଯାଏ ଓ ତା ଠାରୁ ସନ୍ତାନ ଜାତ ହେଲେ, ଅଯୋନି ସମ୍ଭୂତା ହେଇଯାଏ ।

ଅଜା ନୀଳାମ୍ବର ମିଶ୍ରେ, ନିତ୍ୟାର ବୋଧ ଶକ୍ତିକୁ ପ୍ରଶଂସା ନକରି ରହି ପାରିଲେନି । ନିତ୍ୟା ତୁ ତ ଆଡ଼ପାଗଳା ମୋଟେ ନୁହଁ ରେ । ମଂଜିଟାକୁ ଠିକ୍ ଧରିଲୁ । ତୁ ତ ଦ୍ରୌପଦୀ ଓ ସୀତାଙ୍କ କଥା ଶୁଣିଥିବୁ । ଏ ଦୁହେଁ ଯାକ ଅଯୋନି ସମ୍ଭୂତା । ପୁରାଣ ଘାଣ୍ଟିଲେ ଏମିତି ଶହ ଶହ ଉପଲକ୍ଷ ମିଳିବ । ତୁ ଅଗ୍ରପୂଜ୍ୟ ବିନାୟକଙ୍କ କଥା ଦେଖୁନୁ । ହଳଦି ମଳକୁଟି ଯାକ ନେଇ ପାର୍ବତୀ ପିତୁଳା ଗଢ଼ିଦେଲେ । ସେହି ପିତୁଳା ଗଣେଶ ହେଇଗଲା । ଚିତ୍ରରେ, ପୁରାଣରେ କଣ ଯେ ବର୍ଣ୍ଣନା ନହେଇଛି । କବି ଯାହା କଳ୍ପନା କରିଛି ତାହା ହିଁ ରୂପ ପାଇଯାଇଛି, ଅଯୋନି ଜାତ କଥାଟି ଠିକ୍ ଏଇମିତିକା ବୁଝ । ପଢ଼ିଚାଲ ।

ଆମ୍ଭର କୋପ କଲେ ବାହାର ହେଇଯିବ ।
ଘର ଖଣ୍ଡେ କରିବାର ସେହିତ ନୋହିବ ।
ଯେତେବୋଲି ମହାତ୍ମା କୋପ ଯେ ସଂଘରି
ଗଙ୍ଗା ସନ୍ନିଧେ ଯାଇ ପ୍ରବେଶ ତପଚାରି ।।
ଅନେକ ମତେଣ ଖଟନ୍ତି ସେହି ଆଳି
ଋଷିଙ୍କର ସଂଗତେ ସେ ଲଗାଇଲା କଳି ।।
ପୁଣି ଶାନ୍ତନୁଙ୍କୁ ଯାଇ ନ ଦେଲେକ କତି
କାମେଣ ସଂଘରଣ ହୋଇଲେକ ଯତି ।
ଅନେକ ମତେଣ ଚାଟୁ ବଚନ ସେ ବୋଲି
ଶୃଙ୍ଗାର ନ ଦେଇ ସେ ଋଷିଙ୍କି ପକାଇଲା ପେଲି ।।

ବୁଝିଲ ଅଜା, ଏଭଳି ସ୍ତ୍ରୀକୁ ଠେଙ୍ଗା ପ୍ରହାର ବିଧେୟ । ହଇହେ କେଉଁ ସ୍ତ୍ରୀ, ସ୍ୱାମୀ ଶୃଙ୍ଗାର ଇଚ୍ଛିଲେ ମନା କରି ପାରିବ ? ଗଙ୍ଗା ବୋଲନ୍ତେ ଯେଉଁ ସ୍ତ୍ରୀ, ସେ କିଭଳି ନାରୀ ? ଶାନ୍ତନୁ ଏଭଳି ସ୍ତ୍ରୀର କାହିଁକି ପାଣିଗ୍ରହଣ କରୁଥିଲେ କେଜାଣି ! ନିଜ ଛନ୍ନକଲା ଛଅ ସାତ୍ କଅଁଳା ପିଲାକୁ ଖାଇଗଲା । ଅଜା ହେ, ସାକ୍ଷାତ ଡ଼ାହାଣୀଟାଏ । ମୋର ଏ ଭଳି ସ୍ତିରୀ ଥଲେ ଗୋଟା ଫାଡ଼ି ଦେଇଥାନ୍ତି । ଦେଖାଯାଆନ୍ତା କଣ ହେଇଥାନ୍ତା ଏମିତି ମାଇପ ରତ୍ନଟା ଯେ ରତି ମାଗିଲେ ସ୍ୱାମୀକୁ ପେଲି ଦେବ ? ସ୍ୱାମୀ ପରା ଇହଜନ୍ମ ଆଉ ପରଜନ୍ମରେ ନାରୀର ସମ୍ବଳ, ସଂସାର ରୂପକ ଘୋର ଅର୍ଣ୍ଣବରୁ ଉଦ୍ଧାର ପାଇବାପାଇଁ ସେ ପରା ନଉକା । ପେଲିଦେବ ? ଆମେ କଣ ନିବଳୁଆକି ? ଆମେ କ'ଣ ଅଣପୁରୁଷିଆ କି ? ଆମେ କଥା କହିବୁ, ମାଇକିନାଟା ହେଇ ନା କରିଦେବ । ପ୍ରଳୟ ନ ହେଇ ଯାଇଛି । ଶାନ୍ତନୁ ଭଳି ଉଦାର ଲୋକଟାକୁ ବାରମ୍ବାର ହଇରାଣ ହରକତ କରି ଗଙ୍ଗା ନିଜ ନାଁରେ କଳଙ୍କ ସିନା ଗଚିଲା । ଦେଖୁନ ଶେଷକୁ ମହାଭାରତରେ ସେକଥା ଲେଖାହେଲା ପର୍ଯ୍ୟନ୍ତ ଗଲା । ଛି ! ଛି !

ଅସମ୍ଭାଳ ହୋଇଣ ଚିତ୍ର ପିତୁଳି ଘରେ ମିଳି
ବିବସନ ହୋଇ ମୁନି ତା ସଙ୍ଗରେ କରେ କେଳି ।।
ମୁଖଏଣ ରତି କରାଇଲା ଚିତ୍ର ରତି
ଢ଼ଳିଲା ଅମୋହ ରେତ ପଡ଼ିଲା ଯାଇ କ୍ଷିତି ।।

ଋଷିଙ୍କର ଅମୋଘ ରେତ ସେ ନାଶହିଂ ନୋହିଲା
ସଉନ୍ଦୁ ଜାତ ସେ ପୁତ୍ରେକ ହୋଇଲା ॥
କୋଳେଣ ଶାୟେଂତନୁ ଯେ ଧଇଲେ ଆମ୍ଭଜ
ସେ ପୁତ୍ରର ନାମ ଦେଲେଟି ବିଚିତ୍ରବୀର୍ଯ୍ୟ ॥

ପୁଣି କାମୋତ୍ତେଜନାରେ କି ମଣିଷ, କି ପଶୁପକ୍ଷୀ ସମସ୍ତେ ଅସମ୍ଭାଳ ହେଇପଡ଼ନ୍ତି । ବିଧାତା, ନାରୀ ଭିତରେ କି ସମ୍ମୋହନୀ ଶକ୍ତି ଭରି ଦେଇଛି କେଜାଣି ଦେବତା ମୁନିଋଷିମାନେ ମଧ ଅଲୌକିକ ତପଦଗ୍ଧ ହେଇ ମଦନର କାମ ବାଣରେ ଜର୍ଜରିତ ହେଇପଡୁଛନ୍ତି । ବ୍ରହ୍ମଯତି ଶାନ୍ତନୁ ଜାହ୍ନବୀଙ୍କ ଠାରୁ ବାରମ୍ବାର ପ୍ରତ୍ୟାକ୍ଷାତ ହେଇ ପିତୁଳୀ ସାଙ୍ଗରେ ବାଧ୍ୟରେ ଅନ୍ୟ ଉପାୟ ନପାଇ ରମଣ କରିଛନ୍ତି । ଋଷିଙ୍କ ବୀର୍ଯ୍ୟ ବ୍ରହ୍ମାସ୍ତ୍ର ଭଳିଆ । ଲକ୍ଷ୍ୟ ସାଧନ କରିବ ହିଁ କରିବ । ନିତ୍ୟା ଭାବୁଛି ନୀଳାମ୍ବର ମିଶ୍ରେ ମଧ ଜୀବନରେ ବହୁବାର ଅସମ୍ଭାଳ ହେଇଥିବେ । ବିଚିତ୍ର କଣ ? ପାଖରେ ତ ଆଇ ନାହାନ୍ତି । ସେ ବି କଣ ପିତୁଳୀକୁ ରମଣ କରିଥିବେ? ମିଶ୍ରେ ତ ପିତୁଳୀ ନିର୍ମାଣରେ ଖୁବ୍ ଧୁରନ୍ଧର । ଶାନ୍ତନୁଙ୍କ ଠାରୁ ଅଜା ତ ବଡ଼ ନୁହଁନ୍ତି । ଏଣୁ ଏମିତି ବି ହେଇଥିବ ବୋଲି ମନକୁ ଆସୁଛି । ଶାନ୍ତନୁଙ୍କ ବୀର୍ଯ୍ୟ ଯିମିତି ଚିତ୍ର ବିଚିତ୍ର ହେଇ ମୂର୍ତ୍ତି ପାଲଟିଲା ଓ ସେ ମୂର୍ତ୍ତି ଜୀବନ ଲାଭକରି ଶାନ୍ତନୁଙ୍କ ବଂଶ ରକ୍ଷା କରିବାରେ ସକ୍ଷମ ହେଲା ସେମିତି ଅଜାଙ୍କ କ୍ଷେତ୍ରରେ ଅବଶ୍ୟ ହେଇନଥିବ । ଅଜାଙ୍କର ଆଇଙ୍କ ଆଡୁ ତ ରାମକୃଷ୍ଣ ଭଳି ଗୋବିନ୍ଦ ଓ ସଂଜୟ ଦୁଇଟି ସନ୍ତାନ ଅଛନ୍ତି ।

ଗଙ୍ଗାକୁ ଲୁଚାଇ ଥୋଇଲେ ମହାଯତି
ଗଙ୍ଗାର ଡ଼ରେଣ ପାଳିଲେ ସତ୍ୟବତୀ ॥
ବୋଲନ୍ତି ଅଗସ୍ତି ଶୁଣ ଗୋ ଯୋଗେଶ୍ୱର
ଚିତ୍ର, ବିଚିତ୍ରବୀର୍ଯ୍ୟ ଅଯୋନି ଅବତାର ॥

ଅଜା, ଜୀବ ସଚରାଚର ତ ଯୋନିରୁ ଜନ୍ମ । ଯୋନି ଭ୍ରମଣ ନକଲେ ତ ନିସ୍ତାର ନାହିଁ । ଅଯୋନିସମ୍ଭୂତା, ଅଯୋନି ଅବତାର କଥାରେ ମନଟା ମାନୁନି । ସହସ୍ର ଯୋନି ଭ୍ରମଣ କଲା ଉତ୍ତାରେ ତ ମଣିଷ ଜନ୍ମ ଲାଭ ହୁଏ । ଯୋନି ସ୍ପର୍ଶ ନକରି ରମଣ ତ ସମ୍ଭବ ନୁହେଁ । ସନ୍ତାନ ଜନ୍ମ ବା କିମିତି ହେବ ? ଯୋନି ମୂଳରେ ତ ଜଗତ । ରାମାୟଣ

ମହାଭାରତ, ଅଷ୍ଟାଦଶ ପୁରାଣ, ଶାସ୍ତ୍ର ବିଦ୍ୟାବୁଦ୍ଧି ପାଠଶାଠ ସବୁରି କାରଣ ଯୋନି । ଯୋନି ସବୁ କନ୍ଦଳର, ସବୁ ସୁଖର ଦୁଃଖର ସମୃଦ୍ଧିର ବିପତ୍ତିର, ସବୁ ସୃଷ୍ଟିର ବିନାଶର । ଆଦି ଅନ୍ତ ହେଲା ଯୋନି । ତାକୁ ପରିତ୍ୟାଗ କଲେ ନା ମଣିଷ ରହିବେ ନା ଜୀବଜନ୍ତୁ, ନା ବୃକ୍ଷଲତା ବଞ୍ଚିବେ । ମଝି ମଝିରେ କିଏ ଜଣେ ଅଧେ ଏଠୁସେଠୁ ଗଳି ପଡ଼ିଲେ ସେଟା କଣ ପାଠ ହେବ କି ? ଅଜା ଭାବିଲେ ନିତ୍ୟା ପୁରାଣ ଶେଷପାଦିଆ ବେଳକୁ ଯୋନି ଯୋନି ହେଲାଣି । ଖାଲି କହିଦେଉଛି ନା ଘଟଣାର ଗୁରୁତ୍ୱ ହୃଦୟଙ୍ଗମ କରିଛି ? ବାୟାଟେ । ଅଜା ମନେ ମନେ ବିଚାରିଲେ ବାପ, ଯୋନି ଦର୍ଶନ କର । ସଂସାର ଜାଣିବୁ । ସିଏ ହିରଣ୍ୟଗର୍ଭରେ ପୁଅ । ହଳାହଳ ହୁତାଶନ ହେଉଥିବ । ମଣିଷମାନେ ପତଙ୍ଗ ଭଳି ଝାସ ଦେଉଥିବେ । ଗାଜିଆ ଲୋକ ଗାଜି କୁଣ୍ଡେଇଲା ପରି, ରକ୍ତାକ୍ତ ଆନନ୍ଦ, ମୃତ୍ୟୁର ଆବହ ସୁଖ ।

ପ୍ରସଙ୍ଗ ସରିଆସିଲା । ଅଜା ନାସ ଦାନି ଅଣ୍ଟାରୁ ଫିଟେଇ ଟିପେ ଶୁଙ୍ଘିଲେ । ନିତ୍ୟା ଖାଲି ପୁରାଣ ତ ପଢ଼ିଲାନି ଅଜାଙ୍କ ସମଗ୍ର ଅନୁଭୂତିକୁ ତହଲେଇ ପକେଇଲା । ଆଉ ଅଧ୍ୟାୟଟି ପଢ଼ିଲା । ସୃଷ୍ଟିତତ୍ତ୍ୱର ନିଗୁଢ଼ କଥାଯାକ ଠିକେ ଠିକେ ବାରିହେଇ ପଡ଼ିଲା । ଅଜା ନିତ୍ୟାକୁ ବିଦା କରିବା ପାଇଁ ପଲଙ୍କରୁ ଉଠି ଠିଆହେଲେ । ଗାଈ ବାଛୁରୀ ଗୋଠରୁ ଫେରିଆସିଥିଲେ । ହଳିଆ ସଦାନନ୍ଦ ବାଡ଼ି ଅଗଣାରେ ପଘା ଧରି ହାଜର ହେଇଯାଇଥିଲା । କୁଣ୍ଡା ପେଜ ଦେଇ, ପାଳ ମଡ଼େଇ ଦେଇ ଘର ଫେରିବ । ନୀଳାମ୍ବର ମିଶ୍ରେ ଗଳା ଖଙ୍କାର ମାରି ନିତ୍ୟାକୁ କହିଲେ, ବାପ ପୁରାଣ ପଢ଼ା ବଡ଼ ଦହଗଞ୍ଜ କାମ । ଯା ଚାହା ଟିକେ କର । ନିତ୍ୟା ଚୁଲିରେ ତସଲା ବସେଇଲା । ଚୁଲିରେ ନିଆଁ ଗୁମ୍ ସୁମ୍ ହେଇକରିଥିଲା । କାଠଦେଇ ଚୁଲି କୁହୁଁଳେଇଲା । ପାଣି ବିଭଷିବାରୁ ଚାହାପତି ଚେନି ଅଦା ପକେଇ ଫୁଟେଇଲା । ଗାମୁଛା ମଙ୍ଗରେ ଚାହା ଛାଣି ଅଜାଙ୍କୁ କଂସା ଗ୍ଲାସରେ ଗ୍ଲାସେ ଧରେଇଲା । ନିଜେ ଆଉ ଗ୍ଲାସେ ଧରି ଷଡ଼୍ ସାଡ଼୍ ପିଇଦେଇ ପୋଥିଯାକି ଚାଳିଲା । ନୀଳାମ୍ବର ମିଶ୍ରେ ପୋଖରୀ ପାଣି ପାଇଁ ଢ଼ାଳ ଧରି ବାହାରିଲେ । ସେତେବେଳକୁ ସଂଜ ଉତୁରି ପଡ଼ି ମୁହଁ ଅନ୍ଧାର ହେଇଯାଇଥିଲା । ଖରା ଦିନଟାତ । ତତଲା ପବନ ବହିବା କମିନଥିଲା ।

ଚତୁର୍ମାସ୍ୟା ଶେଷ ହେଉ ଆସିଲାବେଳକୁ ପିତୁଳାମାନଙ୍କୁ ନୀଳାମ୍ବର ମିଶ୍ରେ ଖୋଜା ଲୋଡ଼ା କରନ୍ତି । ସେଥିରୁ ଥୋଡ଼େ ଶୋଇବା ଘର ଆଟୁ ଉପରେ, ଆଉ କେତେକ ଧାନ ଘରର ଭାଡ଼ି ଉପରେ, ବଳକା ଯେତେକ ବାଡ଼ି ପଟ ପିଣ୍ଡାର ମଞ୍ଚା ଉପରେ ଖରାକାଳ ଓ ବର୍ଷାକାଳ ବେପରୁଆ ଭାବେ ଗଡୁଥାନ୍ତି । ପରବର୍ତ୍ତୀ କାର୍ଯ୍ୟକ୍ରମ ପାଇଁ ଏହା ସେମାନଙ୍କ ସାମୟିକ ବିଶ୍ରାମ ।

ପିତୁଳାମାନଙ୍କ ଦେହରୁ ରଙ୍ଗ ଉତୁରି ଯାଇଥାଏ । କନାର ପରସ୍ତ ଉଲିପରା କାଗଜ ଭଳି ଉଲୁରି ଆସିଥାଏ । ସେମାନେ ବିବର୍ଣ୍ଣ ଦେଖାଯାଉଥାନ୍ତି । ସେମାନଙ୍କ ଯୌବନ ଖସି ଯାଇଥାଏ । ଧୂଳିର ଆସ୍ତରଣ ସେମାନଙ୍କ ଅବସ୍ଥାକୁ ହିନସ୍ତା କରିଦେଇଥାଏ । ପିତୁଳାମାନଙ୍କ ପରଚୂଳା ନିଶ ଗାଲମୁଛ ଉପୁଡ଼ିଯାଇଥାଏ । ସମସ୍ତଙ୍କ ମୁଣ୍ଡ ଟାଙ୍ଗରା ହେଇପଡ଼ିଥାଏ । ପିତୁଳାଙ୍କ ବେଣୀ ନଥାଏ । ଦଣ୍ଡି ନୋଥ ଗୁଣା କୁଆଡ଼େ ଉଭାନ ହେଇଯାଇଥାଏ । ସେମାନେ ଏକବାରେ ହତଶ୍ରୀ ହେଇପଡ଼ିଥାନ୍ତି । ସମସ୍ତେ ନୀଳାମ୍ବର ମିଶ୍ରେଙ୍କ ହାତର ଯାଦୁକରୀ ସ୍ପର୍ଶକୁ ଅପେକ୍ଷା କରିଥାନ୍ତି । ଏମାନଙ୍କୁ ନେଇ ହିଁ ନୀଳାମ୍ବର ମିଶ୍ରେଙ୍କ କଳାକୁଞ୍ଜ ।

କଳାକୁଞ୍ଜ ସଂସାରର ଏକ ପ୍ରତିଛବି । ପାଣି ଫୋଟକା ପରାୟେ ଦୃଶ୍ୟ । କୁଞ୍ଜର ଦସ୍ତୁର ହିଁ ଏଇଆ । ରଙ୍ଗଢ଼ଙ୍ଗ ହେଇ, ବେଶଭୂଷା ହେଇ କୁଞ୍ଜରେ ସଜେଇ ହେଇରହିଥିଲେ ଦିଶୁଥିବେ ଛଳଛଳ, ଢ଼ଳଢ଼ଳ, ହସହସ । ଦେହରୁ ଲାବଣ୍ୟ ଉକୁଟି ଉଠୁଥିବ । କଣ୍ଢେଇମାନେ ଲାଗୁଥିବେ ଜିଅନ୍ତା ମଣିଷ ଭଳି । ପ୍ରଦର୍ଶନୀ ସରିଗଲେ ଏମାନଙ୍କ ସବୁ ସରିଗଲା । ଯିମିତି ପ୍ରାଣ ଚାଲିଗଲେ ମଣିଷ । ଘଟ ତୁଟିଗଲେ ବୋଲିବେ ମଡ଼ା । କଳାକୁଞ୍ଜ ପ୍ରାଣହୀନ ସ୍ପନ୍ଦନହୀନ ମାଟି ଓ କାଠିକୁଟାର ନଶ୍ୱର ପିତୁଳାଙ୍କ ସଂସାର । ଏମାନଙ୍କ ଭିତରେ କୃଷ୍ଣ, ବସୁଦେବ, ନନ୍ଦରାଜା, ଯଶୋଦାଙ୍କ ଠାରୁ ଆରମ୍ଭ କରି ରାମ, ସୀତା, ଲକ୍ଷ୍ମଣ, ରାବଣ, ହନୂମାନ, ଜାମ୍ବବାନ, ଅଙ୍ଗଦ ଓ ତା ସାଙ୍ଗକୁ ଶ୍ରୀରାଧା, ଲଳିତା, ବିଶାଖା ମଧ ମହଜୁଦ ଥାଆନ୍ତି ।

ମିଶ୍ରେ ବର୍ଷା ଛାଡ଼ି ଆସିଲେ ଝାଡ଼ଝୁଡ଼ୁ କରି କଣ୍ଢେଇମାନଙ୍କୁ ପଦାକୁ ବାହାର କରି ବାହାର ଅଗଣା, ଭିତର ଅଗଣା ଓ ବାଡ଼ି ଅଗଣାରେ ଧାଡ଼ି ବାନ୍ଧି ରଖନ୍ତି । ଲାଗେ ସତେ ଯିମିତି ସେମାନେ ଏକ ନୂଆ ଜୀବନ ଯାତ୍ରା ପାଇଁ ପ୍ରସ୍ତୁତ ହେଉଛନ୍ତି । କାହାର ହାତ ଦୁଇଟି କହୁଣୀ ପାଖରୁ ଅଲଗା ହେଇଯାଇଛି ତ କାହାର ମୁଣ୍ଡ ନାହିଁ । କାହାର ଗଣ୍ଡିଟି ନିଆରା ହେଇ ଯାଇ ତଳେ ଗଡୁଛି ତ ଆଉ କାହାର ଗୋଡ଼ ଦୁଇଟା ଲାଗୁଛି ସଂପୂର୍ଣ୍ଣ ଅଚଳ । ଗଣ୍ଡେ ଦିଗଣ୍ଡା ପାପୁଲି ଓ ପାଦ ତଳେ ଗଦିଆ ହେଇଛି । ମାଇପୀ ପିତୁଳୀମାନଙ୍କ ଅବସ୍ଥା ତ ଅତି ଅଦ୍ଭୁତ । ଏଠାରେ ଟିକିନିଖି କଥା ବର୍ଣ୍ଣିହେବନି । ସମସ୍ତେ ତ ଉଦଣ୍ଡ ଉଲଗ୍ନା । କାହାର ସ୍ତନ ଉପରୁ କନାର ପତଳା ଆବରଣଟି ଉଠି ଯାଇଛି ତ ଆଉ କାହାର ନିତମ୍ବ ଉପରୁ ରଙ୍ଗ ପରସ୍ତ ଛାଡ଼ି ଯାଇ କଦର୍ଯ୍ୟ ଦେଖାଯାଉଛି । ସେମାନେ ସବୁ ଲାଗୁଛନ୍ତି ଏକ ଅଲଗା ପୃଥିବୀର ଲୋକ ।

ମିଶ୍ରେ ବଡ଼ ସନ୍ତୁଷ୍ଟ ଚାହାଣୀରେ ନିଜର ହାତଗଢ଼ା ମୂର୍ତ୍ତିମାନଙ୍କୁ ଦେଖନ୍ତି । ମିଶ୍ରେଙ୍କ ଦୁଇ ପୁଅ ଏହି ପିତୁଳୀ ମାନଙ୍କର ଉପସ୍ଥିତି ପ୍ରତି ନିଘା କରନ୍ତି ନାହିଁ ଭାବିବା ଠିକ୍ ହେବନି । ସେମାନେ ଯାଉଣୁ ଆସୁଣୁ ଅତି ଦରଦ ଭରା ହୃଦୟରେ ଚାହିଁ ରହନ୍ତି । ଏଣୁତେଣୁ ହାତ ଗୋଡ଼ ଆଣି ଯୋଡ଼ାଯୋଡ଼ି କରି ପୂର୍ଣ୍ଣାଙ୍ଗ କଳେବରର ମଜା ଦେଖିବା ପାଇଁ ଚେଷ୍ଟାକରନ୍ତି । ଏହା ସେମାନଙ୍କୁ କ୍ରସ୍ ୱାର୍ଡ୍ ପଜଲ୍ ଭଳିଆ ଲାଗେ । ଥରେ ଥରେ ଭୁଲ୍‌ଭଟ୍‌କାରେ କାହାରହାତ ଆଉ କାହାର ଗୋଡ଼ ଯୋଡ଼ିଦେଇ ହସିହସି ଗଡ଼ିଯାନ୍ତି । ସେମାନଙ୍କ ଯୌବନର କୌତୂହଳପୂର୍ଣ୍ଣ ଜିଜ୍ଞାସା ଭିତରେ ପରସ୍ପର ପରସ୍ପରର ପରିପୂରକ ହେଇ ଏକ ନବଚେତନାର ଉଦ୍‌ଘାଟନରେ ଲାଗିପଡ଼ନ୍ତି । ସେମାନଙ୍କ ପାଇଁ ମାଟି କାଦୁଅ ଓ କାଠର ମୂର୍ତ୍ତିଗୁଡ଼ିକ ଜୀବନ୍ତ ଯୁବକ ଯୁବତୀ ଭଳି ପ୍ରତୀୟମାନ ହୁଏ । ସାନ ପୁଅ ସଂଜୟ ଗୋବିନ୍ଦ ଭାଇନାକୁ ପଚାରେ , ଭାଇନା, ଆମ ଦେହ ସାଙ୍ଗରେ ତ ମାଟିରେ ତିଆରି କୃଷ୍ଣ, ରାମ ଓ ଲକ୍ଷ୍ମଣଙ୍କ ଦେହ ମିଶି ଯାଉଛି , ତା ହେଲେ ରାଧା ଲଳିତା ସୀତାଙ୍କ ଲଙ୍ଗଳା ମୂର୍ତ୍ତିଗୁଡ଼ିକ କନକନାନୀ, ପଦ୍ମାମାଉସୀ ଓ ଖାଡ଼ଙ୍ଗୀ ଖୁଡ଼ୀଙ୍କ ଭଳିଆ କ'ଣ ଦେଖାଯାଉଥିବ ? ଏ ପ୍ରଶ୍ନରେ ନିରୀହ ଜିଜ୍ଞାସା ଯେତେ ଶାଣିତ ତା ଅପେକ୍ଷା ସମ୍ଭାବ୍ୟ ଉତ୍ତରମାନଙ୍କରେ ସତ୍ୟନିଷ୍ଠତାର ଅସହାୟତା ସେତିକି ତୀବ୍ର । ଗୋବିନ୍ଦ କ'ଣ ବା ଉତ୍ତର ଫେରେଇବ । ଏଣୁତେଣୁ କହି ସଂଜୟକୁ ବାଆଁରେଇ ଦିଏ । ସଂଜୟର ଅନୁସନ୍ଧିତ୍ସୁ ମନ ମାନେନି । ସେ ଭାବେ ସିଧା ଯାଇ କନକନାନୀ, ପଦ୍ମାମାଉସୀ ଓ ଖାଡ଼ଙ୍ଗା ଖୁଡ଼ୀଙ୍କୁ ସେହି ପ୍ରଶ୍ନ ପଚାରିବ । ସେତକ ପାଇଁ ସେ ସାହସ

ସଂଚୟ କରି ପାରେନି । ସେମାନେ କାଳେ ଭାବିବେ ନୀଳାମ୍ବର ମିଶ୍ରେଙ୍କ ସାନ ପୁଅଟା ଛତରା ହେଇଗଲାଣି ।

ଗୋବିନ୍ଦ ଭାଇନାଙ୍କ ଦିନେ ମୁଣ୍ଡକୁ କଣ ଜୁଟିଲା କେଜାଣି ତିନୋଟି ପିତୁଳାକୁ ବୋଉର ତିନୋଟି ସାଇତା ଶାଢ଼ି ପିନ୍ଧେଇ ଦେଇ ସଂଜୟକୁ କହିଲେ- ଦେଖ, ଏ ମୂର୍ତ୍ତିଯାକ ଆମ କନକନାନୀ, ପଦ୍ମାମାଉସୀ ଓ ଖାଡ଼ଙ୍ଗାଖୁଡ଼ୀ ଭଳିଆ ଦେଖାଗଲେ । ନୀଳାମ୍ବର ମିଶ୍ରେ ପୋଖରୀ ପାଣିରୁ ଲେଉଟି ଏ ପିତୁଳା ଯାକ ଦେଖି ସ୍ମିତ ବିସ୍ମୟରେ ହତବାକ୍ ହେଇଗଲେ । ତାଙ୍କୁ ଲାଗିଲା ତାଙ୍କ ଭାରିଯା ଲବଙ୍ଗଲତା ତାଙ୍କ ଅପେକ୍ଷାରେ ଅଗଣା ଦୁଆରେ ଠିଆ ହେଇଛନ୍ତି । ଲବଙ୍ଗଲତା ଆଉ ଜଣେ ମଣିଷ ହେଇ ରହି ନାହାନ୍ତି । ଲାଗୁଛି ସେ ସମସ୍ତ ପିତୁଳାମାନଙ୍କ ଭିତରେ ସଂଚରି ଯାଇଛନ୍ତି । ଦଣ୍ଡକ ପାଇଁ ସେ ଆନମନା ହେଇପଡ଼ିଲେ । ପିଲାଯାକଙ୍କୁ ଆଉ କଣ ବା କହିଥାନ୍ତେ । ମିଛଟାରେ ଖାଲି ପାଟିଟେ କଲେ, ବୋଉର ପାଟଯାକ ଚିରି ଯିବରେ, ଯୋଉଠି ଥିଲା ରଖିଦିଅ ।

ତାହେଲେ ନଗ୍ନତା ଭିତରେ ପିତୁଳାମାନଙ୍କର ଚାରିତ୍ରିକ ମୂଲ୍ୟବୋଧ କଣ ହଜିଯାଏ ? ଚରିତ୍ରମାନେ ଉଲଗ୍ନ ହେଲେ ସେମାନଙ୍କ ଦେହମାନଙ୍କ ଠାରୁ ସେମାନେ କ'ଣ ଭିନ୍ନ ହେଇଯାଆନ୍ତି ? ବାହ୍ୟ ଆବରଣ କ'ଣ ଏକ ଚିହ୍ନଟ ମାତ୍ର ? ସଂସାରର ଅସଂଖ୍ୟ ନାମ ରୂପ କେବଳ କ'ଣ ଆରୋପିତ ସତ୍ତା ? ଆବରଣ ମୁକ୍ତ ହେଇଗଲେ ସବୁ ଦେହ କ'ଣ ସମାନ ଦିଶେ ? ସେହି ଏକାଭଳି ରକ୍ତ ମାଂସ ଅସ୍ଥି ମଜ୍ଜାର ଗଢ଼ଣ, ଏକା ଭଳି ନିଶ୍ୱାସ ପ୍ରଶ୍ୱାସର ଖେଳ, ଏକାଭଳି ସମ୍ବେଦନ, ଏକାଭଳି ମାୟା ମୋହର ଘେର । ସବୁ ସତ୍ତା କ'ଣ ଏକା ଭଳି ? ଭଗବଦ୍‌ଗୀତା ତ ସେକଥା ଅତି ସ୍ପଷ୍ଟ ଭାବେ କହି ସାରିଛି । ଆତ୍ମା ଏ ଦେହଟାକୁ ଲୁଗା ଭଳି ପିନ୍ଧିଥାଏ । ଆବରଣ ପୁରୁଣା ହେଇଗଲେ ଅତି ଅନାୟାସରେ ବଦଳେଇ ଦିଏ । ହେଲେ ଆମର ଆବରଣ କାହାପାଇଁ ? ଆତ୍ମା ପାଇଁ ନା ସମାଜର ଚଳଣି ପାଇଁ ?

ଗୋବିନ୍ଦ ଓ ସଂଜୟଙ୍କୁ ଏ ସଂଶୟ ଓ ସଂଶୟ ସଂପର୍କିତ ଜଟିଳତା ବିଚଳିତ କଲା । ସେମାନେ ମନେମନେ ସ୍ଥିରକଲେ ନିତ୍ୟାନନ୍ଦ ଭାଇନା ତ ପୁରାଣ ପଢ଼ନ୍ତି , ପୁରାଣରେ ନିଶ୍ଚୟ କେଉଁଠି ନା କେଉଁଠି ଲେଖା ହେଇଥିବ । ପାଠରୁ ଆଣି ଭାଇନା ସେମାନଙ୍କ ସଂଦେହ ଦୂର କରିଦେଇ ପାରିବେ । ନନା ଚାଷ ଗାଁକୁ ଯାଇଛନ୍ତି,

ଭାଇନାଙ୍କୁ ଘରଠାକୁରର ପୂଜା ଦାୟିତ୍ୱ ଦେଇଦେଇଛନ୍ତି । ଗୋବିନ୍ଦ ଓ ସଂଜୟ ଦୁହେଁ ପାରଳାଖେମଣ୍ଡି କଲେଜରେ ବିଏ ପଢୁଛନ୍ତି । ବୟସରେ ବର୍ଷେ ସାନ ବଡ଼ ହେଲେ ମଧ୍ୟ ଏକା କ୍ଲାସରେ ପଢ଼ନ୍ତି । ଗୋବିନ୍ଦର ଓ ସଂଜୟର ବ୍ରତୋପନୟନ ହେଇସାରିଥିଲେ ମଧ୍ୟ ପିଲାମାନଙ୍କୁ ଏତେ ଗୁରୁ ଦାୟିତ୍ୱ ନ ଦେଇ ନିତ୍ୟାକୁ କାମ ବଢ଼େଇ ଦେବା ପାଇଁ କହିଛନ୍ତି । ଦି ଭାଇ ନିତ୍ୟାନନ୍ଦ ଭାଇନାଙ୍କ ଆସିବାକୁ ଟାକି ରହିଛନ୍ତି । ନିତ୍ୟାନନ୍ଦ ଭାଇନା ସେଦିନ ଘରେ ପହଞ୍ଚୁ ପହଞ୍ଚୁ ସାଢ଼େ ଦଶ । ବ୍ରାହ୍ମ ମୁହୂର୍ତ୍ତରୁ ଉଠିଲେବି ବେଳ କୁଳଉନି । ନିତ୍ୟକର୍ମ, ଫୁଲତୋଳା, ରାଧାକାନ୍ତ ମନ୍ଦିରର ଠାକୁର ପୂଜା, ଦି ଚାରି ଯଜମାନଙ୍କ ଘରଠାକୁରମାନଙ୍କ ଉପରେ ଫୁଲପାଣି ଛିଞ୍ଚିଦେଇ ଆସୁଆସୁ ତର ସହୁନି । ସୁଆର ଘର ଖୁଡ଼ୀ ସେମାନଙ୍କ ପାଇଁ ଅରୁଆଭାତ, ମୁଗପଇଡି, ଚଲଣା ସନ୍ତୁଳା, ମୁନିଗାଭଜା ରାନ୍ଧି ଘୋଡ଼ାଘୋଡ଼ି କରି ଚୁଲି ଲିଭେଇ ଦେଇ ବାସନ କୁସନ ମଜାମଜି, ଉବଡ଼ାଉବଡ଼ି କରି ଦେଇ ପଳେଇଲେଣି । ଠାକୁର ପୂଜା ସରିଲେ ଏମାନେ ଖାଇବେ । ନିତ୍ୟାନନ୍ଦ ଭାଇନା ମଧ୍ୟ ସେମାନଙ୍କ ସହିତ ମିଶି ମିଶ୍ରେ ନଥିଲେ ତାଙ୍କ ଘରେ ହିଁ ଖାଆନ୍ତି । ଭାଇନାଙ୍କ ପୂଜାପୂଜି ସରିଲା । ଦି ଭାଇ ଧୈର୍ଯ୍ୟର ସହିତ ଅପେକ୍ଷା କରିଥାନ୍ତି । ସେମାନେ ନିତ୍ୟା ଭାଇନାଙ୍କ ପାଇଁ କଂସା ଥାଳିରେ ଖାଇବା ବାଢ଼ିଦେଲେ । ନିଜ ପାଇଁ ମଧ୍ୟ ଖାଇବା ଆଣି ଅଗଣା ପିଣ୍ଡାରେ ଥୋଇଲେ । ନିତ୍ୟାନନ୍ଦ, ଗୋବିନ୍ଦ, ସଂଜୟ ଖାଇବା ଆରମ୍ଭ କଲେ । ନିତ୍ୟାନନ୍ଦ ଗୁଣ୍ଡେ ଦିଗୁଣ୍ଡା ନେଇଛନ୍ତିକି ନାହିଁ ସଂଜୟ ଆଉ ନିଜକୁ ସଂଭାଳି ପାରିଲାନି । ପ୍ରଶ୍ନଟାକୁ ଚାଖଣା ଭଳି ନିତ୍ୟାନନ୍ଦ ଭାଇନାଙ୍କ ଖାଇବା ଥାଳି ପାଖରେ ହିଁ ଥୋଇ ଦେଲା ।

ପ୍ରଶ୍ନଟି ହେଲା, ପିତୁଳୀମାନେ ଲଙ୍ଗଳା ହେଇପଡ଼ିଲେ ସେମାନେ ସେମାନଙ୍କ ପୂର୍ବ ସ୍ୱରୂପ ହଜେଇ ଦିଅନ୍ତି କି ? ରାଧା ରାଧାଭଳିଆ ଦିଶନ୍ତିନି ସୀତା ଆଉ ସୀତା ହେଇ ରହନ୍ତିନି । ଏଭଳି ପରିବର୍ତ୍ତନ କାହିଁକି ହୁଏ ? ଆମେ ମଧ୍ୟ ଲଙ୍ଗଳା ହେଇପଡ଼ିଲେ ପିତୁଳୀ ହେଇଯାଉଛେ କି ? ଭାଇନା ତମେ ତ ଏତେ ପୁରାଣ ଶାସ୍ତ୍ର ପଢ଼ିଛ ଆମର ସନ୍ଦେହ ଦୂର କର । ନନାଙ୍କ କଳାକୁଞ୍ଜର ଏ କଣ୍ଢେଇ ଯାକ କୁଞ୍ଜ ଭିତରେ ବେଶ ଭୂଷାରେ ସଜେଇ ହେଇ ଅଳଂକାର ପିନ୍ଧି ରହିଥିଲେ ରାଧା ରାଧା ଭଳି ସୀତା ସୀତା ଭଳି, ଶକୁନ୍ତଳା ଶକୁନ୍ତଳା ଭଳି ଦିଶନ୍ତି । ପୁଣି ଚତୁର୍ମାସ୍ୟାରେ ଆଟୁ ଉପରେ ଶୋଇ ରହିରହି ଉଠପଡ଼ି ଅଗଣାରେ ପହଞ୍ଚିଲା ବେଳକୁ ସବୁ ସମାନ ଦେଖାଯାନ୍ତି, ଯାହାକୁ ତାହା । ସେମାନଙ୍କଠାରୁ ଯିମିତି କିଏ କଣ କାଢ଼ି

ନେଇଯାଏ । ସେମାନେ ଆମ ଭଳି ହାତ ପାଦ କାନ ଆଖି ମୁହଁ ଥିବା ସାଧାରଣ ମଣିଷ ଭଳି ଦେଖାଯାନ୍ତି । ଏ କଥା ଆମକୁ ଆଚମ୍ବିତ ଲାଗୁଛି । ଘଟଣା ତ ମାମୁଲି । କିନ୍ତୁ ଏହା ପରିବର୍ତ୍ତନ ନା ବିବର୍ତ୍ତନ । ଭାଇନା, ଆମର ସନ୍ଦେହ ମୋଚନ କର ।

ପିଲା ଦୁଇଟିଙ୍କ ଏଭଳି ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନରେ ନିତ୍ୟାନନ୍ଦ ପ୍ରଥମେ ହଡ଼ବଡ଼େଇ ଗଲା । ତା ପରେ ନିଜର ଶାସ୍ତ୍ରଜ୍ଞାନ ଓ ସଂଚିତ ଅନୁଭୂତିକୁ ଶାଣିତ କରି ପ୍ରଶ୍ନର ଉତ୍ତର ଦେବାକୁ ଚେଷ୍ଟାକଲା । ସଂସାରର ପ୍ରତ୍ୟେକ ରୂପ, ପ୍ରାଣୀ ହେଉ ବା ଜଡ଼ହେଉ ଭଗବଦ୍ ସତ୍ତାର ପ୍ରତିବିମ୍ବମାତ୍ର । ପରମାତ୍ମା, ପ୍ରତି ଜୀବାତ୍ମା ବା ଦୃଶ୍ୟରୂପ ଭିତରେ ପାଣିଭର୍ତ୍ତି ହେଇଥିବା ଥାଳିଆରେ ଜହ୍ନର ରୂପ ପ୍ରତିଫଳିତ ହେଲା ଭଳି ବିମ୍ବିତ ହେଇଥାଏ । ପ୍ରତ୍ୟେକ ନାରୀଙ୍କର ରାଧା ହେବାର, ସୀତା ହେବାର, ଶକୁନ୍ତଳା ହେବାର ଗୁଣ ଥାଏ । ଏହି ଗୁଣ ପ୍ରଥମେ ପ୍ରଥମେ ରୂପଗତ ମନେ ହେଉଥିଲେ ମଧ୍ୟ ବାସ୍ତବିକ ଏହା ରୂପ ଭିତରେ ଜଳରେ ଲୁଣ ଭଳି ଦ୍ରବି ଯାଇଥାଏ । ଏଣୁ ରୂପରେ ପରିବର୍ତ୍ତନ ହେଲେ ଗୁଣରେ ମଧ୍ୟ ପରିବର୍ତ୍ତନ ହେଲା ଭଳି ଲାଗେ ।

ମା ଉଲଗ୍ନ ହେଇ ପିଲାକୁ ସ୍ତନ୍ୟପାନ କରାଉଥିବା ବେଳେ ତା' ପାଖରେ କୌଣସି ବିକାର ନଥାଏ । ଏଠି ନଗ୍ନତା ଶ୍ଳୀଳ । ସେହି ଉଲଗ୍ନ ରୂପରେ ହିଁ ବାତ୍ସଲ୍ୟ ମମତା ପ୍ରକଟିତ ହୁଏ । ମହାକବି କାଳିଦାସଙ୍କ ସରସ୍ୱତୀ ବନ୍ଦନା ତ ତମେ ସବୁବେଳେ ବୋଲୁଥିବ । କାଳିଦାସ ମା'କୁ କ'ଣ ବୋଲି ବର୍ଣ୍ଣନା କଲେ? କଜ୍ଜ୍ୱଳ ପୂରିତ ଲୋଚନ ଧାର, ସ୍ତନ ଯୁଗ ମଣ୍ଡିତ ମୁକୁତା ହାର । ମା'ର ଆଖି ଓ ସ୍ତନ ବର୍ଣ୍ଣନାରୁ ବନ୍ଦନା ଆରମ୍ଭ କଲେ । ଜନନୀ ମାତ୍ରେ ସ୍ନେହମୟୀ । ଏହି ସ୍ନେହ ଜନନୀର ପୂର୍ଣ୍ଣ ଗର୍ଭା ସ୍ତନ ଯୁଗଳରୁ ସ୍ରବିଯାଏ । ଏଠି ନଗ୍ନତା ବିଚାର୍ଯ୍ୟ ନୁହେଁ । ଶ୍ଳୀଳ ଅଶ୍ଳୀଳ ଧର୍ତ୍ତବ୍ୟ ନୁହେଁ । ନଗ୍ନତା ଭିତରେ ପରିପୁଷ୍ଟ ହେଇଥିବା ସ୍ନେହ ଓ ମମତା ହିଁ ଅସଲକଥା ।

ତମେ ପଚାରିଥିବା ପ୍ରଶ୍ନର ଏହା ଏକ ଭିନ୍ନ ଦିଗ ହେଲେ ମଧ୍ୟ ନଗ୍ନତା ସହିତ ଏହାର ସଂପର୍କ ଅଛି । ତମେ ଏକଥା ବୁଝିପାରିଲେ ତମେ ପଚାରୁ ଥିବା ପ୍ରଶ୍ନ ବୁଝି ପାରିବ ।

ମଣିଷ ଓ ପିତୁଳି ସମାନ ଭାବେ ଗଢ଼ା ହେଇଥିଲେ ମଧ୍ୟ ପିତୁଳି

ମଣିଷର ସୃଷ୍ଟି, ମଣିଷ ପିତୁଳିର ନୁହେଁ । ମଣିଷ ନିଜ କଳ୍ପନାରୁ ପୁଟଦେଇ ଥରେ ପିତୁଳି ଗଢ଼ିଦେଲା ପରେ ପିତୁଳି ମଣିଷ ଠାରୁ ଭିନ୍ନ ହେଇ ଯାଇ ଦେବତ୍ୱ ପ୍ରାପ୍ତି ହେଇଯାଏ । ଯେ କୌଣସି ବସ୍ତୁସତ୍ତା ଦେବତ୍ୱ ପାଇଗଲା ପରେ ନଗ୍ନତା ତାକୁ ଛୁଇଁ ପାରେନି । କଳ୍ପନାର ଅମରତ୍ୱ ଓ ଚିରନ୍ତନତା ହିଁ ପିତୁଳିର ପ୍ରକାଶ । ଏଣୁ ରାଧାକୃଷ୍ଣ ମାଇଣା ଓ ପହୁଡ଼ ବେଳେ ପ୍ରତିମା ଉଲଗ୍ନ ହେଲେ ମଧ୍ୟ ଆମ ମନରେ ପାପ ଛୁଏଁନି ।

ପିତୁଳି ମୂର୍ତ୍ତି ପ୍ରତିମା ଓ ବିଗ୍ରହ ଭିତରର ପ୍ରଭେଦ ଅତି ସୂକ୍ଷ୍ମ । ସମସ୍ତେ ତ ମୂର୍ତ୍ତି ଆଉ ପିତୁଳି । ଅମୂର୍ତ୍ତକୁ ପ୍ରକାଶ କଲେ, ଅରୂପକୁ ରୂପ ଦେଲେ ମୂର୍ତ୍ତି ହେଇଯାଏ । ଏଭଳିକି ପ୍ରକୃତିର ରୂପ ସୌନ୍ଦର୍ଯ୍ୟକୁ ରଙ୍ଗରେ ମାଟିରେ କାଠ ଓ ପଥରରେ ପ୍ରକାଶ କଲେ ମଧ୍ୟ ତାହା ମୂର୍ତ୍ତି ହୁଏ । କିନ୍ତୁ ଶିଳ୍ପୀର ହାତରେ ପ୍ରକୃତିର ରୂପ ଅଲଗା ଲାଗେ । ମୂର୍ତ୍ତି ପ୍ରକୃତିର ନହେଇ ଶିଳ୍ପୀର ହେଇଯାଏ । ମୂର୍ତ୍ତି ଗୁଣଯୁକ୍ତ ହେଲେ, ଦିବ୍ୟ ଆଭା ବିମଣ୍ଡିତ ହେଲେ, ଧ୍ୟାନମନ୍ତ୍ରର ସ୍ୱରୂପ ତା ଦେହରେ ସଞ୍ଚାରିତ ହେଲେ ତାହା ପ୍ରତିମାରେ ବଦଳିଯାଏ । ମନ୍ଦିରରେ ପୂଜାପାଏ । ଆରାଧ ହେଇଯାଏ ।

ଯେଉଁ ପର୍ଯ୍ୟନ୍ତ ଶିଳ୍ପୀର ପାଖରେ ଥାଏ ତାହା ମୂର୍ତ୍ତି ହେଇ ରହିଥାଏ । ଶିଳ୍ପୀର ଶାଳାରେ ମୂର୍ତ୍ତି ମଣିଷ ଭଳି କଥା କହେ । ସେ ଶିଳ୍ପୀର ନିଜର, ଅତି ଆପଣାର । ମୂର୍ତ୍ତିର ଉତ୍ତରଣ ଘଟେ । ତା ଭିତରେ ସାତ୍ତ୍ୱିକ ଚେତନା ଜାଗେ । ସେ ଶାଳାରୁ ଗୋଡ଼ କାଢ଼ି ମନ୍ଦିରରେ ପ୍ରବେଶ କରେ । ସେ ନିର୍ବାକ ହେଇଯାଏ । ଏବେ ତା ପାଇଁ ଉଦ୍ଦିଷ୍ଟ ପ୍ରତିଟି ଉଚ୍ଚାରଣ ମନ୍ତ୍ର ଆଉ ସେ ପ୍ରତିମା ।

ଏମିତି ଭାବେ ମନ୍ତ୍ରିତ ହେଇଗଲେ ପ୍ରତିମା ବିଗ୍ରହାନ୍ୱିତ ହୁଏ । ସେ ଭାବର ଶୀର୍ଷରେ ପହଞ୍ଚେ । ଏକ ଅପହୁଞ୍ଚ ଆୟତନ ଭିତରେ ଦିବ୍ୟ ସତ୍ତାରେ ବିରାଜୁଥିବା ମୂର୍ତ୍ତି ହିଁ ବିଗ୍ରହ ।

ମୁଁ ଶ୍ରୀକୃଷ୍ଣଙ୍କର ଧ୍ୟାନ ମନ୍ତ୍ରଟିଏ ବୋଲୁଛି ଶୁଣ ଓ ପ୍ରତିମାଟିର ରୂପ ପରିକଳ୍ପନା କର ।

କସ୍ତୁରୀତିଳକଂ ଲଲାଟପଟଳେ ବକ୍ଷଃସ୍ଥଳେ କୌସ୍ତୁଭଂ
ନାସାଗ୍ରେ ବରମୌକ୍ତିକଂ କରତଳେ ବେଣୁଃ କରେ କଙ୍କଣମ୍ ।।
ସର୍ବାଙ୍ଗେ ହରିଚନ୍ଦନଂ ସୁଲଳିତଂ କଣ୍ଠେ ଚ ମୁକ୍ତାବଳୀ
ଗୋପସ୍ତ୍ରୀପରିବେଷ୍ଟିତୋ ବିଜୟତେ ଗୋପାଳଚୂଡ଼ାମଣିଃ ।

ଏମିତିକା ମୂର୍ତ୍ତି ରାଧାକାନ୍ତ ମଠରେ ଓ ଗୋପାଳଜୀ ମଠରେ ତମେ ଦେଖିଥିବ ।

ପ୍ରତିମାରେ ପ୍ରାଣ ସଂଚାର କରାଯାଏ । ପ୍ରାଣ ପ୍ରତିଷ୍ଠା କଲାବେଳେ ପୁରୋହିତ ମୂର୍ତ୍ତିର ଆୟୁଧମାନଙ୍କରେ ମନ୍ତ୍ର ଶକ୍ତି ଭରିଦିଏ । ନୟନରେ ଚନ୍ଦ୍ରସୂର୍ଯ୍ୟର ଆଭା, କପାଳରେ ଅମରତ୍ୱର ଐଶ୍ୱର୍ଯ୍ୟ, ଅଧରରେ ବାକ୍‌ଦେବୀଙ୍କ ବାଣୀ, ଶରୀରରେ ଭୂମାର ବିସ୍ତାର, ଭୁଜରେ ଅଲୌକିକ ବିକ୍ରମ, ପାପୁଲିରେ ଅଭୟ ବରଦ ଓ ପଦଯୁଗଳରେ ପଦ୍ମର କମନୀୟତା ଆରୋପ କରେ । ସେ ଶିଳ୍ପୀର ମୂର୍ତ୍ତି ଦେହରେ ସମଗ୍ର ବିଶ୍ୱର ଚେତନ ଶକ୍ତିକୁ, ଭବପ୍ରାଣକୁ ନ୍ୟାସ କରିଥାଏ । ପ୍ରତିମା ଜୀବନ୍ୟାସ ପାଇ ପରଂବ୍ରହ୍ମ ହୋଇଯାଏ । ପୂଜା ନୈବେଦ୍ୟ ଗ୍ରହଣ କରେ । ଶିଳ୍ପୀ ପିତୁଳା ଗଢ଼େ । ପୁରୋହିତ ପିତୁଳାରେ ମନ୍ତ୍ର ନ୍ୟାସ କରି ତାକୁ ପୂଜ୍ୟ କରେ, ପ୍ରତିମା କରିଦିଏ । ପ୍ରାଣ ଭରିଦିଏ ।

ମଣିଷ ମରିଲାପରେ ତାର ରୂପ ବିଶ୍ୱସର୍ଜନାରେ ଲୀନ ହୋଇଯାଏ । ପୁଣି ସେହିରୂପର ସର୍ଜନା ପାଇଁ ଆୟୋଜନ କରାଯାଏ । ଏଥର ରକ୍ତ ମାଂସର ଦେହ କାଠରେ ପଥରରେ । ସେଇ ଏକା ମଣିଷ ବେଳେବେଳେ ଶିଳ୍ପୀ ହାତରେ ଅବିକଳ ନିଜ ର ପିତୁଳା, ବୃନ୍ଦାବତୀ, ସମାଧି ବା ଯୂପସ୍ତମ୍ଭ ହୋଇଯାଏ । ଏସବୁ ସ୍ମାରକୀ ଭିତରେ ମଣିଷ ଦେବତ୍ୱ ଓ ଅମରତ୍ୱ ପାଇଯାଏ । ଏଣୁ କେବଳ ରୂପ ସୌସାଦୃଶ୍ୟ ନୁହେଁ,ଏକ କାଳ୍ପନିକ ଭାବଭିତରେ ମଧ୍ୟ ଦେବତ୍ୱ ଆରୋପ କରାଯାଇପାରେ । କାଳ୍ପନିକ ଭାବ ଓ ରୂପ ହିଁ ଦେବତା ।

ପ୍ରତିମାକୁ ମଣିଷର ସ୍ୱାଭାବିକ ବିନଶ୍ୱର ରୂପ ଠାରୁ ଅନ୍ତର କରି ଦେଇ ଏକ ଭାବମୟ ସତ୍ତାର କାବ୍ୟିକ ପ୍ରତୀକ ଭାବେ ଗ୍ରହଣ କରାଯାଇଛି । ଏଣୁ ସମସ୍ତ

ଦେବ ଦେବୀ ସଦା ସର୍ବଦା ଅପରୂପ ଲାବଣ୍ୟ ଓ ଆଭାରେ ଜାଜ୍ୱଲ୍ୟମାନ ହେଉଥାନ୍ତି । ସେମାନଙ୍କୁ କାଳ ସ୍ପର୍ଶକରି ପାରେନି । ଯଦିଓ ପ୍ରତିମା ଗଢ଼ାଯାଇଥିବା ବସ୍ତୁ ନଶ୍ୱର, ପ୍ରତିମାର ଭାବରୂପ ଓ ସ୍ୱରୂପ କିନ୍ତୁ ସଦା କାଳଜୟୀ ।

କଳାକୁଞ୍ଜରେ ମିଶ୍ରେ ମୂର୍ତ୍ତିଗୁଡ଼ିକୁ ବେଶି ବେଶି ମଣିଷମାନଙ୍କ ଭଳି ଦେଖାଇବା ପାଇଁ ଚେଷ୍ଟାକରନ୍ତି । ଅବିକଳ ମଣିଷଙ୍କ ଭଳି ମୁହଁ ଆଖି ଅବୟବ ଖଞ୍ଜି ପିତୁଳା ଗଢ଼ନ୍ତି । ସେଗୁଡ଼ିକ ଚିତ୍ରିତ ହେଇଗଲା ପରେ ସେମାନେ ଏକାବେଳେକେ ଆମଭଳି ଦେଖାଯାନ୍ତି । ଏହି ପିତୁଳାମାନଙ୍କରେ ରୂପଗତ ଭ୍ରମ ସୃଷ୍ଟିହୁଏ । ଏହା ହିଁ ସର୍ଜନାତ୍ମକ ମାୟା । ମାୟା ହିଁ କଳା । ଏଣୁ ତମ ଘରଅଗଣା ପିଣ୍ଡାରେ ଥୁଆ ହେଇଥିବା ପୁରୁଷ ପିତୁଳା ଯାକ ଆମଭଳି ଏବଂ ନାରୀ ପିତୁଳୀମାନେ ଆମର ନାନୀ ଖୁଡ଼ୀ ଓ ମାଉସୀଙ୍କ ଭଳି ଦେଖାଯିବାକୁ ବାଧ୍ୟ । ନିତ୍ୟାଭାଇନାଙ୍କ ଏତେ ସାରଗର୍ଭକ ଉତ୍ତର ପରେ ବି ଗୋବିନ୍ଦ ଓ ସଂଜୟଙ୍କ ମନରୁ ସନ୍ଦେହ ଦୂରହୋଇ ପାରିଲା ନାହିଁ । ସେମାନେ ପିତୁଳୀ ମାନଙ୍କୁ ଦେଖି ବିଭିନ୍ନ ପ୍ରକାର ଅଦ୍ଭୁତ କଥା ଭାବି ବସୁଥିଲେ । ପିତୁଳୀମାନଙ୍କର ଅବକ୍ଷୟିତ ଦେହର ସଂବେଦନା ଭିତରେ ସେମାନେ ବଂଚିବାର ମୋହକୁ ଉପଲବ୍ଧି କରିବା ପାଇଁ ପ୍ରୟାସ କରୁଥିଲେ ।

ଏମିତି ଆବେଗ ଭିତରେ ସେ ଦୁହିଁଙ୍କ କିଛି ଦିନ ବିତିଗଲା

ଦିନେ ଉପର ଓଳିଟାରେ ପୁରାଣ ପଢ଼ା ପରେ ନୀଳାମ୍ବର ମିଶ୍ରେ ନିତ୍ୟାନନ୍ଦକୁ କହିଲେ ନିତ୍ୟା, ତୁ ଏଥର କଳାକୁଞ୍ଜ ବେଳକୁ ଆମସାଙ୍ଗରେ ଚାଲୁନୁ , ପିଲା ଦିଟା ଲଗେଇଛନ୍ତି ମାମୁଁ ଘରକୁ ଯିବେ । ତୁ ଯାଆନ୍ତୁ , ନୂଆ ଗାଁଟେ ବୁଲି ଆସନ୍ତୁ । ତୋର କୌଣସି ଅସୁବିଧା ହେବନି । ଭଲ ଦି ବକ୍ତ ଖାଇବୁ, ହାତ ଗୁଞ୍ଜା ମିଳିବ । ଫେରିଲା ବେଳକୁ ଧୋତି ଯୋଡ଼ ନେଇ ଆସିବୁ । ନୀଳାମ୍ବର ମିଶ୍ରେ ପିଲା ଦିହିଙ୍କ କଥାକୁ ସହଜେ କାଟିଦିଅନ୍ତି ନାହିଁ । ମା ଛେଉଣ୍ଡ ପିଲା ଦିଓଟି । ମା ଥିଲେ କେତେ ସ୍ନେହ ଶ୍ରଦ୍ଧା ପାଉନଥାନ୍ତେ । ଅଳି ଅଝଟ ସବୁ ମା ପାଖରେ ହିଁ ସରିଯାଉଥାନ୍ତା । ଲବଙ୍ଗଲତା ଚାଲିଗଲା ଦିନଠୁ ସେ ପିଲାମାନଙ୍କ ବାପା, ମା ମଧ୍ୟ । ନିତ୍ୟା, ଅଜାଙ୍କ ଏଭଳି ପ୍ରସ୍ତାବରେ ହଁ କାହିଁକି ବା ନ କରନ୍ତା । ତାର କଉ ଚାକିରି ନା ବାକିରି ଅଛି । ଅଜା ତ ମଜାଳିଆ ଲୋକ , ଯଦି କୌଣସି କାମରେ ସେ

ପାରିଯିବ ତା ହେଲେ ଆଗକୁ ମଧ କଳାକୁଞ୍ଜ ସାଙ୍ଗରେ ବିଭିନ୍ନ ଗାଁ ବୁଲି ପାରିବ । ଲୋକଙ୍କ ସାଙ୍ଗରେ ମିଶାମିଶି କରି ପାରିବ । ସେଥିରୁ ମଧ ଦି ପଇସା ଆସିବ । ପୁରାଣପଢ଼ା କେତେଟା ଦିନ ବନ୍ଦ ହେଇଗଲେ କୋ' ପ୍ରଳୟଟା ହେଇଯିବଯେ !

ନୀଳାମ୍ବର ମିଶ୍ରେ ପାର୍ବତୀପୁରମ୍‌ରେ କଳାକୁଞ୍ଜ ପକେଇବା ପାଇଁ ସ୍ଥିର କରିଥିଲେ । ଏ ଖଣ୍ଡ ମଣ୍ଡଳରେ ପାର୍ବତୀପୁରମ୍ ଗୋଟିଏ ବଡ଼ ତାଲୁକା । ଏଠି ମଧ ରଜାଙ୍କ ଗଡ଼ । ଖୁବ୍ ନାମକରା ରାଜ୍ୟ । ଗଡ଼ ଚାରିଆଡ଼େ ତାଳ, ନଡ଼ିଆ, ଗୁଆ, ଓ ପଣସର ଉଦ୍ୟାନ । ଏଠାକାର ରଜା ଓଡ଼ିଆ , ନାଁ ଉଦୟଭାନୁ ଥାଟରାଜ । ଓଡ଼ିଆ ବ୍ରାହ୍ମଣଙ୍କୁ ଜମିବାଡ଼ି ଖଞ୍ଜା ଦେଇ ରଜା ନିଜ ରାଜ୍ୟରେ ରଖିଛନ୍ତି । ଟିକିଟୀ ରାଜପରିବାର ସହିତ ପାର୍ବତୀପୁରମ୍ ରଜାଘରର ବୈବାହିକ ସମ୍ପର୍କ । ରାଣୀମାନେ ନିଜ ନିଜ ରାଜ୍ୟରୁ ଅନେକ ଦାସୀ ପରିବାରୀ ଆଣି ଉଆସରେ ଓଡ଼ିଆ ଭାଷାର ଆଦର ବଢ଼େଇଛନ୍ତି । ଓଡ଼ିଆଙ୍କ ଭିତରେ ବ୍ରାହ୍ମଣଙ୍କୁ ଛାଡ଼ିଦେଲେ ବାକି ସବୁ କରଣ ଓ କଂସାରି । ଓଡ଼ିଆଙ୍କ ତୁଳନାରେ ତେଲଙ୍ଗାଙ୍କ ପ୍ରତିପତ୍ତି ଯଥେଷ୍ଟ ବେଶି । ତମାଖୁ ଓ ପିକା ବେପାର କରି ଏମାନେ ବଡ଼ ଧନୀ । ପାର୍ବତୀପୁରମ୍ ଖଲିର ଖୁବ ସୁଖ୍ୟାତି ଅଛି ।

ପାର୍ବତୀପୁରମ୍‌ର ମୁଖିଆ ଡ଼ି.ନାରସେୟା ଅଜାଙ୍କ ଅତି ଚିହ୍ନାଲୋକ, ଅଜାଙ୍କ ପାଖକୁ ଖବର ପଠେଇଛି ସେ ସବୁମତେ ସାହାଯ୍ୟ କରିବ । ଘର ତୋଳାଠୁ ଟିକଟ କଟା ଯାଏଁ । ଟିକଟ କଟା ବେଳକୁ ଦି ଚାରି ପାରିଲା ଟୋକା ଦେବ । ମାଇକିନିଆ କାଉଣ୍ଟର ପାଇଁ ସେ ଭଲ ଝିଅଟିଏ ଠିକ୍ କରିଦେଇଛି । କଳାକୁଞ୍ଜରେ ମଧ ମା, ମାଉସୀଙ୍କ ପାଇଁ ଅଲଗା ଧାଡ଼ି ହେଲାଣି । ଅଲଗା କାଉଣ୍ଟର ହେଲାଣି । ପିଲା ତେଲୁଗୁ ତ ଜାଣେ, ଓଡ଼ିଆ ବି ଭଲ ଜାଣେ । ପାଠୁଆ ପିଲାଟି ।

ଅଜା ଚାରି ପାଞ୍ଚ ଲୋଡ଼ର ଶଗଡ଼ ବରାଦ ଦେଇସାରିଛନ୍ତି । ବ୍ୟବସ୍ଥା ହେଇସାରିଛି ଅଜା ଓ ନିତ୍ୟା ଜିପ୍‌ରେ ଆଗରୁ ପାର୍ବତୀପୁରମ୍ ପଳେଇବେ । କଳାକୁଞ୍ଜ ପକେଇବା ପାଇଁ ଜାଗା ଠିକଣା କରିବେ, ନିଜେ ରହିବା ବନ୍ଦୋବସ୍ତ କରିବେ, ମୂର୍ତ୍ତି ଗଢ଼ିବା ପାଇଁ ଭଲ କୁମ୍ଭାର ମାଟି କୋଉଠୁ ଆସିବ ତଦାରଖ କରିବେ, କରତ ଗୁଣ୍ଡ ଯୋଗାଡ଼ କରିବେ । ତେଲୁଗୁ ଗାଁ । ଖାଇବା ପ୍ରବଳରାଗ । ସାଦା ପ୍ରକାରେ ରନ୍ଧାବଢ଼ା କରିବା ପାଇଁ ବ୍ରାହ୍ମଣ ପିଲାଟେ ଦେଖିବେ । ନିତ୍ୟା ଖିଆପିଆ କଥା ବୁଝିବ, କଣ୍ଢେଇ ଗଢ଼ଣ

କାମ ଶିଖିବ, ମନଦେଲେ ହେଇଯିବ, ସେ ନିଜେ ତ ପୁଣି ଚିତ୍ରକାର ସାହିରୁ ଦେଖି ଦେଖି କାମ ଶିଖିଦେଲେ । ମୁହଁ ହାତ ଗୋଡ଼ ପାଇଁ ତ ଛାଞ୍ଚ ଅଛି, ବୁଦ୍ଧି ଖଟେଇଲେ କାମ ହେଲା ।

ରାମନାଥ, ମିଶ୍ରେଙ୍କ ବଂଶିକା ପିଲା । ଭଣଜାର ପୁଅ । ତାର ସାନ ପୁଅ ବୃନ୍ଦାବନ ରଜାଙ୍କ ଉଆସରେ ଡ୍ରାଇଭର ପାଇଟି କରେ । ରଜାଘର ଏବେ ଜିପ୍‌ଗାଡ଼ିଟେ ଆଣିଛନ୍ତି । ମିଶ୍ରେ ମହାର୍ଜାଙ୍କୁ ମାଗୁଣି କରି ତାକୁ ଚାକିରିରେ ରଖିଦେଇଛନ୍ତି । ସେ ଆଗରୁ ମିଲିଟାରୀରେ ଗାଡ଼ି ଚଳଉଥିଲା । ସେ ମିଶ୍ରେଙ୍କୁ ଖବର ଦେଇଛି ରଜାଘର ଖଲି ଆଣିବାପାଇଁ ତାକୁ ପାର୍ବତୀପୁରମ ପଠେଇବେ । ଆହୁରି ମଧ ରଜାଘର ଅନ୍ୟ କ'ଣ କାମ ଅଛି । ସାଙ୍ଗରେ ଛାମୁକରଣ ଭବସୁନ୍ଦର ଚ୍ୟାଉପଟ୍ଟନାୟକ ଯିବେ । ଭବସୁନ୍ଦର ବଡ଼ ରସିକ ଲୋକ । କାନରେ ଅତର ମାରିଥିବେ । ନିଶ ହଳକ ପଜେଇ ରଖିଥିବେ । କାବ୍ୟ କବିତା ଭଣତିରେ ବଡ଼ ଧୁରନ୍ଧର । ପାରଳାର ସୁଖ୍ୟାତିକୁ ନେଇ କଣ ଗୋଟାଏ ଦୀର୍ଘ କାବ୍ୟଟିଏ ଲେଖିଛନ୍ତି । ହଁ ମନେ ପଡ଼ିଲା - ପାରଳାଗୁଣ ଦର୍ପଣ । ଭଲ ହେଲା ବାଟଯାକ ଶାସ୍ତ୍ର ଆଲୋଚନା ହେବ । ବାଟ ଜଣା ପଡ଼ିବନି । ଜିପ୍ ଚାଲିଥିବ ଆଉ ଗୀତ ବୋଲାହେଉଥିବ ।

ଚିତ୍ରକାର ପ୍ରକାଶ ମହାପାତ୍ରର ଭଣଜା ସୀମାଞ୍ଚଳ, ତା ଶଳା ମୀନକେତନ ଓ ପଡ଼ିଶା ସାଇର ଭୁବନା ପାଇକରା ଶଗଡ଼ ସାଙ୍ଗରେ ଯିବେ । ପାରଳାଖେମଣ୍ଡିରୁ ଅରନ୍ଧା ଆପୁଚି, କଇଠ ଅଠା, ଧୋବଖଡ଼ି, ମୁଣ୍ଡାହରିତାଳ, ଧୋବାନେଳୀ, ହିଙ୍ଗୁଳ ଆଉ ଜିଙ୍କୁସଫେଦା କିଣା ହେଇଯାଇଛି । ଧୋବାରତନା ଘରୁ ବୁଢ଼ୁଳେ ହେବ ପତଳା ଚିରାଲୁଗା ନେଇଥିବୁ ବୋଲି ସୀମାଞ୍ଚଳକୁ ଅଜା ତାଗିଦା ଦେଇଛନ୍ତି । କୁଞ୍ଜ ପଛପଟେ ସିନ୍ ଚିତ୍ରେଇବା ପାଇଁ ମଣ୍ଡ ନଦିଆ ଚଉଡ଼ା ବାଲା ଥାନ କନା ଆଉ କାଟିଙ୍ଗ୍ ଗଛ ହେବାପାଇଁ ଆଟା ନିଆ ଯାଇଛି । ସିନ୍‌ରେ କୋଟିଙ୍ଗ୍ ଦେବାପାଇଁ କାଳେ ପାର୍ବତୀପୁରମ୍‌ରେ ନ ମିଳିବ ଏଣୁ ସିରିସ ଅଠା କିଲେ ଖଣ୍ଡେ ଧରିଦେଇଛନ୍ତି । ଅଜାଙ୍କ ପାଖରେ ପିଲାଙ୍କ ପାଇଁ ପଚିଶି ପଇସା ଓ ବଡ଼ଙ୍କ ପାଇଁ ପଚାଶ ପଇସାର ଛପା ଟିକଟ ମହଜୁଦ ଅଛି । ଟିକଟ ଉପରେ ଅଜା କଳାକୁଞ୍ଜର ନାଁ ଛାପି ଦେଇଛନ୍ତି, ଶ୍ରୀ ଶ୍ରୀ ରାଧାରମଣ କଳାକୁଞ୍ଜ, ମୁକାମ ପାରଳାଖେମଣ୍ଡି । ସାନ ହାତ ସିନ୍ଦୁକଟାରେ ସେ ଟିକଟ ସାଇତି ରଖିଛନ୍ତି । ଟିକଟ ବିକା ପଇସା ବି ସେ

ସେଥିରେ ରଖନ୍ତି । ଏହି ସିନ୍ଦୁକଟା ଆଈଙ୍କ ସନ୍ତକ । ଲବଙ୍ଗଲତା ବାହାହେଇ ଘରକୁ ଆସିଲା ବେଳକୁ ଏଇଟି ଯୌତୁକ ଆଣିଥିଲେ । ବଡ଼ ଲକ୍ଷ୍ମୀବନ୍ତ ଏ ସିନ୍ଦୁକ, ରକ୍ତ ଚନ୍ଦନ କାଠର । ଅଜା କୋଳରେ ଧରିଥିଲେ ମହ ମହ ବାସୁଥିବ । ନ ଦେଖିଲା ଲୋକକୁ ଲାଗୁଥିବ ଅଜା କୋଳରେ ଆଉ ଆଈ ବସିଛନ୍ତି କି! ସେ ସିନ୍ଦୁକ ଅଜା ହାତଛଡ଼ା କରନ୍ତିନି ।

ଲବଙ୍ଗଲତା ତ ପିଲା ଦିଟାକୁ ଛେଉଣ୍ଡ କରି ଚାଲିଗଲେ । ନୀଳାମ୍ବରଙ୍କୁ ଏହି କଳାକୁଞ୍ଜ ହିଁ ବଂଚେଇ ଦେଇଛି । ସେ କଳାକୁଞ୍ଜରେ ନ ବାହାରିଥିଲେ ଯେ ତାଙ୍କ ପେଟ ଅପୋଷା ରହିଯାଇଥାନ୍ତା ସେମିତି ନୁହେଁ । ପେଟକୁ ଖାଲି ବଂଚେଇ ରଖିବା କ'ଣ ଜୀବନ ବଂଚିବା ? କଳାକୁଞ୍ଜର କଣ୍ଢେଇ ଯାକ ତାଙ୍କ ସନ୍ତାନ ସନ୍ତତି ଭଳିଆ ତାଙ୍କ ହାତଗଢ଼ା । ସେ କଣ୍ଢେଇମାନଙ୍କ ଭିତରେ ଲବଙ୍ଗଲତା ବି ଛପି ରହିଯାଇଛନ୍ତି । ତାଙ୍କ ଗଢ଼ଣ, ତାଙ୍କ ଚାଲି, ତାଙ୍କ ହସ, ଚିତ୍ରିତ କଣ୍ଢେଇମାନଙ୍କର ଲାବଣ୍ୟରେ ଆପେ ଆପେ ଫୁଟିଉଠେ । ଉଲଗ୍ନ ପିତୁଳୀମାନଙ୍କୁ ଶାଢ଼ି ରାଇକା ପିନ୍ଧେଇ ବେଶଭୂଷା କରିଦେବା ପାଇଁ କିଏ ଯିମିତି ତାଙ୍କୁ ବାଧ୍ୟ କରେ । ଅଜା ପାନ ଖଣ୍ଡେ କଲରେ ଜାକି ଗୀତଗୋବିନ୍ଦରୁ, ଚଂପୂରୁ ନହେଲେ ଗୋପାଳକୃଷ୍ଣଙ୍କ ପଦ୍ୟାବଳୀରୁ ପଦେପଦେ ରସ ରସିଆ ଧାଡ଼ିଟିମାନ ଗାଇ ଗାଇ ସଜାଣ କାମରେ ମାତିଯାଇଥାନ୍ତି । ରାଧା ମୂର୍ତ୍ତିକୁ ଶାଢ଼ିଟା ଭଲ ଭାବରେ ପିନ୍ଧେଇ ସାରି ନଥିବେ, ତାଙ୍କୁ ଲାଗୁଥିବ ଲବଂଗଲତାଙ୍କ ଅଜାଣତରେ ତାଙ୍କ ସ୍ତନରୁ ଲୁଗା ଖସିପଡ଼ିଛି । ମିଶ୍ରେ ସଂଭ୍ରମରେ ପିତୁଳୀର ସ୍ତନ ଉପରେ ହାତ ବୁଲେଇ ଆଣନ୍ତି । ବେଳେ ବେଳେ ପିତୁଳୀମାନଙ୍କୁ ଅତର୍କ୍କାରେ କୋଳ କରି ପକାନ୍ତି । ହତାଶାରେ ତାଙ୍କ ମୁହଁ ନାଲି ପଡ଼ିଯାଏ । ପିତୁଳୀର ଦେହଟା ଖାଲି ଟାଣ ଟାଣ ଲାଗେ । ସେ ଉଠି ଠିଆହେଇ ପଡ଼ନ୍ତି । ଇଷ୍ଟମନ୍ତ୍ର ତୁଣ୍ଡରେ ଧରନ୍ତି । ତାଙ୍କୁ ଲାଗେ ଲବଙ୍ଗଲତା ପଛଆଡୁ କହୁଛନ୍ତି ।

ଏ କି କଥା ହେ, ତମେ ଶେଷରେ ଲୋକହସା ସିନା ହେବ । ମନ କଣ ମାନିବ । ହେ, ତମେ ଶୁଣୁଚ ତ । ଷାଠିଏ ବର୍ଷର ବୁଢ଼ାଟେ ହେଲଣି ପରା । ପିଲେ ଦେଖିପକେଇଲେ କଣ ବିଚାରିବେ । ତମ ସରାଗ ସେତିକିରେ ଥାଉ । ଠିକ୍ ଲବଙ୍ଗଲତାଙ୍କ ସ୍ୱର, ଠିକ ତାଙ୍କ କହିବା ଢ଼ଙ୍ଗ । ସେ ପଛକୁ ବୁଲିପଡ଼ି ଚାହିଁ ଦିଅନ୍ତି । କିଏ ଆଉ ଥାଆନ୍ତା । ନୀଳାମ୍ବର ମଧ ହସିପକାନ୍ତି ।

ରାଧାଙ୍କ ଅଧାଚିତ୍ର ହେଇଥିବା ଲଙ୍ଗଳା ମୂର୍ତିଟା ସେମିତି ଅଲାଜୁକୀ ଭଳିଆ ଠିଆ ହେଇଥାଏ । ଅଧର ଚିତ୍ର ହେଇଯାଇଛି । ଆଖି ଫୁଟିଆ ହେଇନି । ଫୁଟେଇ ଦେଲେ ପିତୁଳୀ ରଖେଇ ଥୋଇ ଦେବନି । ଖାଲିତ ଆଖିରେ ଡ଼ାକିବ । ଏବେବି ପାଟି ଫିଟେଇ ଡ଼ାକିବାକୁ ଏତେ ଲାଜ । ଚମତ୍କାର ବର୍ତ୍ତୁଳ ବକ୍ଷୋଜ, ସୁଗଠିତ ଜଘନ, ସୁଠାମ ନିତମ୍ବ ସବୁ ମନେ ପକେଇଦେବ । ରାଧା ହାତରେ ତାମ୍ବୁଲ ଧରିଛନ୍ତି । କୃଷ୍ଣଚନ୍ଦ୍ରଙ୍କୁ ଭୁଞ୍ଜେଇବେ । ନୀଳାମ୍ବର ମିଶ୍ରେ ଭାବୁଛନ୍ତି ସତେ ଯିମିତି ଲବଙ୍ଗଲତା ମିଠା ପାନ ଖଣ୍ଡେ ଭାଙ୍ଗି ତାଙ୍କ ଆଡ଼କୁ ସରାଗରେ ବଢ଼େଇ ଦେଉଛନ୍ତି, ନିଅ । ହାୟରେ, ସ୍ମୃତିର ବି କି ପ୍ରଲୋଭନ !

ଲବଙ୍ଗଲତା କାଳ ହେବା ପଚିଶି-ଛବିଶି ବର୍ଷ ହେଲା । ବ୍ରାହ୍ମଣୀ ତ ମହତ୍ ଯୋନିରେ ଜନ୍ମ ହେଇ ଘର ସଂସାର କରିବଣି । ନା ସେମିତିକା ତ ଲାଗୁନି । ମନ ତ ବୋଧ ହେଉନି । ଏଇଠି ହିଁ ଅଛି । ସବୁବେଳେ ସପନଉଛି । ପିଲା ଦିଟାକୁ ତାର ଭାରି ଲୋଭ । ଆଉ ଯିବ କୁଆଡ଼େ, ଏ କଳାକୁଞ୍ଜ ଭିତରେ ରହି ନଚଉଚି । ସେ ନାଚୁଛନ୍ତି । ମିଶ୍ରେ ନାରଦ, ପରାଶର , ଶାନ୍ତନୁଙ୍କ କଥା ସ୍ମରଣା କଲେ । ନିଜର ଅସହାୟତାକୁ ଯୁକ୍ତିସିଦ୍ଧ କରିବାପାଇଁ ଚେଷ୍ଟାକଲେ । ସେମାନେ ତ ଏଡ଼େ ବଡ଼ ବଡ଼ ବୈରାଗୀ ହେଇ ରକ୍ତ ମାଂସର ପିଣ୍ଡକୁ ଦେଖି ଲୋଭେଇ ଯାଇଥିଲେ । ତାଙ୍କ ଭଳି ଛାର ମଣିଷର ବା କେତେ ଧୈର୍ଯ୍ୟ ରହିବ । ନୀଳାମ୍ବର ନିଜର ବିକଳ ଅବସ୍ଥାକୁ ପର୍ଯ୍ୟାଲୋଚନା କରୁଛନ୍ତି । ପୃଥିବୀର ସମସ୍ତେ, ମୁନି ଋଷି, ଦେବୀ ଦେବତା ସମସ୍ତେ ତ ପିତୁଳୀର ମାୟାରେ ବ୍ୟାକୁଳ ।

ନୀଳାମ୍ବର ମିଶ୍ରେ ଅନୁଭବର ସମସ୍ତ ହୁଗୁଳା ଖିଅ ଯାକକୁ ଏକାଠି କରି ଉଭବ ପରିସ୍ଥିତିକୁ ହୃଦୟଙ୍ଗମ କରିବାକୁ ଚେଷ୍ଟା କଲେ । ମୂର୍ତ ଓ ଅମୂର୍ତ ଭିତରର ପ୍ରଭେଦ ଅନୁଶୀଳନ କଲେ । ଅମୂର୍ତ ପରମାତ୍ମାର ଏକ ସ୍ପନ୍ଦନ ଯାହା ମୂର୍ତ୍ତି ଭିତରେ ଆଲୋକିତ ହୁଏ । ପ୍ରକାଶ ପାଏ । ଭଗବାନ ଏହି ଦେହପିତୁଳି ଭିତରେ ପ୍ରାଣ ସଂଚାରି ଦେଇଛନ୍ତି ବୋଲି ଦେହ ଉଷ୍ଣତା ବିତରେ, ଭାବକୁ ନିକଟ ହୁଏ , ଦୁଃଖ ସୁଖରେ ଭାଗୀ ହୁଏ । ଭୋଗେ ଭୋଗାଏ । ଜରା ବ୍ୟାଧିର ଶିକାର ହୁଏ । ମୃତ୍ୟୁ ପୁରୁଣା ଦେହକୁ ନେଇଯାଇ ସଂସାରକୁ ଏକ ନୂତନ ଦେହ ଫେରାଇଦିଏ, ମିଶ୍ରେ ପୁରୁଣା ପିତୁଳିକୁ ନୂଆ କଲା ପରି ।

ପିତୁଳା ନିଶ୍ୱାସ ପ୍ରଶ୍ୱାସ ସିନା ନିଏନି , ପିତୁଳାଦେହରେ ନାଲ ଟକ ଟକ୍ ରକ୍ତ ସିନା ପ୍ରବାହିତ ହୁଏନି, ସେ କ୍ଷୁଧାର ସିନା ଶିକାର ହୁଏନି । ହେଲେ ଜରା ମୃତ୍ୟୁ ତ ତାକୁ ଗ୍ରାସିଦିଏ । ଶେଷରେ ମାଟିର ପିତୁଳା ମାଟିରେ ମିଶିଯାଏ । ପିତୁଳା ତ କଥାକହେ । ନୀଳାମ୍ବର ମିଶ୍ରେ ନିଜ ଜୀବନରେ ବହୁବାର ସେଭଳି ଅନୁଭବ କରିଛନ୍ତି । ସେ ତ ନିଜକୁ ଆଜି ଅବିଶ୍ୱାସ କରିପାରିବେନି । କି ମହାର୍ଘ ସେ ଅନୁଭୂତି । ବିପଦରେ ଆପଦରେ ଦୁଃଖରେ ସୁଖରେ କର୍ମ ବ୍ୟସ୍ତତା ଭିତରେ ବା ଏକୁଟିଆ ମୁହୂର୍ତ୍ତମାନଙ୍କରେ ସୁସୁପ୍ତିରେ ଜାଗ୍ରତାବସ୍ଥାରେ ଲବଙ୍ଗଲତା ଏବେ ଅମୂର୍ତ୍ତ ହେଇ ମଧ କଥା କହନ୍ତି । ବେଳେ ବେଳେ ରାଧାଭାବେ, ଲଳିତା ଭାବେ ଉଭା ହେଇଯାଇ ଠିକ୍ ଠିକ୍ କଥା ସ୍ମରଣା କରେଇଦିଅନ୍ତି । ତାଙ୍କୁ ଓ ପିଲାମାନଙ୍କୁ ଆଜି ପର୍ଯ୍ୟନ୍ତ ସେ ବାଟ କଢ଼େଇ ଆସିଛନ୍ତି । ଘଣ୍ଟ ଘୋଡ଼େଇ ରଖିଛନ୍ତି । ସେମାନଙ୍କ ଚଲା ବାଟକୁ ନିଷ୍କଣ୍ଟକ କରିଛନ୍ତି । ତାଙ୍କର ଖିଲ୍ ଖିଲ୍ ହସ ତ ନୀଳାମ୍ବର ମିଶ୍ରେଙ୍କୁ ଏବେ ପର୍ଯ୍ୟନ୍ତ ବଂଚେଇ ଦେଇଛି । ସେଦିନ ସେ ରାଧା ପିତୁଳିକୁ ବେଶ କଲାବେଳେ ଜିଅନ୍ତା ଦେହର ଉଷ୍ଣତା ଅନୁଭବ କରିଛନ୍ତି । କି ମଧୁମୟ ସେ ସ୍ପର୍ଶ । ଅନିର୍ବଚନୀୟ ସେ ସଙ୍ଗ । କି କୋମଳ ସେ ଅଙ୍ଗଲତାର ସମ୍ବେଦନା!

କିଏ କହେ ପିତୁଳି ଜୀବନ୍ତ ନୁହେଁ ? ଯଦି ପିତୁଳିର ମୃତ୍ୟୁ ଅଛି ତାର ଜୀବନ ବି ରହିବା ସ୍ୱାଭାବିକ । ଜୀବନ ଓ ମୃତ୍ୟୁ ଭିତରର ବ୍ୟବଧାନ ତ ପ୍ରାଣ । ଚିତ୍ର କାଗଜ ଖଣ୍ଡେ ବୋଲି, ପିତୁଳି ମାଟି କାଦୁଅର ମେଞ୍ଚାଟେ ବୋଲି, ଠାକୁର କାଠ ପଥରର ପ୍ରତିମା ବୋଲି କିଏ ହତାଦର କରିବାକୁ ଚିନ୍ତା ମଧ କରେକି ? ଗାଁ ମୁଣ୍ଡ ନିମଗଛ ମୂଳର ସିନ୍ଦୁରମଖା କେଇଖଣ୍ଡ ପଥର ଆର୍ତ୍ତଙ୍କ ଗୁହାରିତ ପୁଣି ଶୁଣୁଛି ? ନିଶା ରାତିରେ ମାଟି ଘୋଡ଼ା ପିଠିରେ ବସି ଠାକୁରାଣୀ ପୁଅଝିଅଙ୍କୁ ସାଙ୍ଗରେ ନେଇ ଗାଁ ପରିକ୍ରମା କରୁଛି ଭଲମନ୍ଦ ବୁଝୁଚି । ଏସବୁ ଯଦି ମିଥ୍ୟା ତା ହେଲେ ପିତୁଳି ମିଥ୍ୟା, ମଣିଷ ମିଥ୍ୟା, ଜଗତ ମିଥ୍ୟା, ସବୁ ଦୃଶ୍ୟମାନ ସତ୍ତା ମିଥ୍ୟା, ସବୁ ମିଥ୍ୟା ।

ନୀଳାମ୍ବର ମିଶ୍ରେ ପାର୍ବତୀପୁରମ୍‌ର ରାଧାବିନୋଦ ମଠର ଚାନ୍ଦନୀ ଉପରେ କୁଣ୍ଡାପଥରର ଚଉରାକୁ ଆଉଜି ବସି ଭାବି ଚାଲିଛନ୍ତି ।

ନିତ୍ୟାନନ୍ଦ ଶଗଡ଼ରୁ କଳାକୁଞ୍ଜର ସାମଗ୍ରୀ ଓହ୍ଲେଇବାରେ ଶଗଡ଼ିଆଙ୍କୁ ସାହାଯ୍ୟ କରୁଛି । ନିତ୍ୟା ପରିସ୍ଥିତିକୁ ଟିକିଏ ହାଲୁକା କରିବା ପାଇଁ ଅଜାଙ୍କୁ ହାସ୍ୟରେ

ପଚାରିଦେଲା । ଅଚ୍ଛା, କଣ ହେ ବସି ଭାବୁଛ ? ଆଈ କଥା ମନେ ପଡ଼ି ଯାଉଛି କି ? ଶୁଖିଲା ବାରୁଦରେ ନିଆ ଚେଙ୍କା ଲାଗିଲା ଭଳି ନୀଳାମ୍ବର ମିଶ୍ରେଙ୍କ ପୃଥୁଳ ଶରୀରଟି ଭିତରେ ଅଗ୍ନି ବିସ୍ଫୋରଣ ହେଲା । ରାଗରେ କିମ୍ବା କ୍ରୋଧରେ ନୁହେଁ, ଉନ୍ମାଦନାରେ, ଉଚ୍ଚାଟନରେ । ମିଶ୍ରେ ଅଣ୍ଟା ସିଧା କଲେ । ପିନ୍ଧିଥିବା ଖଦଡ଼ କାବାରୁ ନାଶ ଦାନି ବାହାର କରି ଦିଟିପ ନାକ ପୁଡ଼ାରେ ଛୁଆଁଇଲେ । ପରସ୍ତେ ଛିଙ୍କା ଛିଙ୍କି କରିସାରି ନିତ୍ୟାକୁ ନିଘା କଲେ ।

ନିତ୍ୟା ରାଧାପିତୁଳୀକୁ ଶଗଡ଼ରୁ ଓହ୍ଲାଉଛି । ଧୀରେଧୀରେ ଥିରି କରି, ସମ୍ଭାଳି ଟେକେରେ । ସେଇଟା ଏକା ତୋର ଆଈ ବୋଲ । ଦେ ମୁଣ୍ଡିଆ ମାର । ପିତୁଳୀ ଦେହ ଉପରେ ନେ ମୋ ଗାମୁଛାଟା ବେଢ଼େଇ ଆଣ । ପୁଅ କଳାକୁଞ୍ଜର ମହିମା ହେଇ । ସାଙ୍ଗରେ ଅସିଛୁ ଭଲ କରିଛୁ । ପ୍ରାଣ କିମିତି ସଂଚରେ, ପିତୁଳୀ କିମିତି କଥା କହେ । ସପନାଏ । ଏବେ ହେଜିବୁରେ ପୁଅ । ଖାଲି ପୁରାଣ ଗଡ଼ ଗଡ଼ କରି ପଢ଼ିଦେଲେ କ'ଣ ହେବ । ଅକ୍ଷର ଯିମିତି ବ୍ରହ୍ମ, ରୂପ ମଧ୍ୟ ସିମିତି । ଠାକୁରକୁ ଡ଼ାକ, ଓ' କରିବ । ତୁ ଦାସିଆ ବାଉରି ହେଇ ପାରିବୁ? ମତ୍ତବଳରାମଦାସ ହେଇ ପାରିବୁ ? ଭକ୍ତ ସାଲବେଗ ହେଇ ପାରିବୁ ? ବନ୍ଧୁମହାନ୍ତି ମାଣିକ ଗଉଡୁଣୀ, ଏମାନଙ୍କ ଭଳି ହେଇପାରିବୁ ? ଯଦି କାଠ ପଥରର ଠାକୁର କଥା କହୁଥିବ, ଭକ୍ତଙ୍କ ଡ଼ାକ ଶୁଣୁଥିବ, ବୋଲ ମାନୁଥିବ ତାହେଲେ ପୁରୀ ବଡ଼ଦାଣ୍ଡରେ ରଥ ଟିପେ ଘୁଞ୍ଚିବନି । ସତେ ତ ଘୁଞ୍ଚିଲାନି । ହଜାର ହଜାର ଲୋକ ଦଉଡ଼ି ଭିଡ଼ିଲେ କଣ ହେଲା । ଭକ୍ତ ଆସିବାକୁ ଅଟକି ରହିଲା । ଠାକୁର ଦହି ଖାଇସାରି ଗଉଡୁଣୀକୁ ହୀରା ମୁଦି ବି ବନ୍ଧା ଦେଇଦେବେ । ଏ ସବୁ କିଏ ଭିଆଣ କରୁଛିରେ । ଜାଣିଛୁ ? ସେହି କାଠ ପିତୁଳୀ । ନୀଳକନ୍ଦରରେ ରତ୍ନସିଂହାସନ ଉପରେ ବିଜେହେଇଛି । ଏହି କଣ୍ଢେଇ ଯାକ ନବ ଯଉବନ ପାଇ ଯାଆନ୍ତୁ ଦେଖିବୁ କୁଞ୍ଜ ଭିତରଟା କିମିତି ପ୍ରାଣରେ ପୂରି ଉଠିବ । ପାର୍ବତୀପୁରମର ଏ କାଦୁଆ ରାସ୍ତା ଧୂଳିଆ ଗୋପ ଦାଣ୍ଡ ପାଲଟିଯିବ ।

ନିତ୍ୟା ତୁ ବୋଧହୁଏ ଧରି ନେଉଛୁ, ମୁଁ ଦି' ଚାରି ଶଗଡ଼ ଅଲୋଡ଼ା କଣ୍ଢେଇ ନେଇ ଏଠି ପହଞ୍ଚିଯାଇଛି । ଭାବୁଚୁ ଅଜାଟା ମୂର୍ଖଟେ । କଣ୍ଢେଇ ଦେଖେଇ ପେଟ ପୋଷୁଛି । ବ୍ରାହ୍ମଣଟେ ହେଇ ରଙ୍ଗ ଢ଼ଙ୍ଗରେ ମାତିଛି । ସେ କଥା ନୁହଁରେ ବାପ, କଳାକୁଞ୍ଜ ମୋ ପାଇଁ ସାଧନାର ମାର୍ଗ । ମୋ ପାଇଁ ମୁକ୍ତିର ବାଟ ଫିଟେଇ ଦେଇଛି । ମୁଁ

ଏମାନଙ୍କ ଭିତରେ ଅଛି ବୋଲି ଆଜି ଯାଏଁ ବଂଚିଯାଇଛି । ଗାଈ ଗୋଠରେ ଗଉଡ଼ ଶୋଇଲା ପରି କଳାକୁଞ୍ଜ ଭିତରେ ମୁଁ । କୃଷ୍ଣଚନ୍ଦ୍ରଙ୍କୁ ଆଉ ପାଇଟି ନଥିଲା କିରେ । ଦିଇନ୍ ଗାଈଗୋଠ ନେଇ ବଣକୁ ଯାଉଥିଲେ । ନିତ୍ୟା ଶୁଣ । ଗୋଠର ଗାଈ ଯାକ ସଖିପିଲାରେ । କିଏ ରାଧାତ କିଏ ଲଳିତା, କିଏ ବିଶାଖା ତ କିଏ ରଙ୍ଗରେଖା । ବୁଝି ପାରିବୁ ଯଦି ବୁଝ । ହେଜିପାରିବୁ ଯଦି ହେଜ । ଯାହା ଚର୍ମ ଚକ୍ଷୁରେ ଦେଖିଛୁ ,ସଂସାରଟା ତାହା ନୁହଁରେ । ତାହା ଖାଲି ଗାଈଗୋଠ ନୁହେଁରେ । ସହସ୍ର ଗୋପୀଙ୍କ ଥାଟ, ତା ଭିତରେ କୃଷ୍ଣଚନ୍ଦ୍ର ମୋହନ ବଂଶୀ ବଜେଇ ଗୋପୀଙ୍କୁ ନଚଉଛନ୍ତି , ମଜଉଛନ୍ତି, ବଶ କରିଦେଉଛନ୍ତି । ପ୍ରାଣ ଶୋଷି ନେଇ ସେମାନଙ୍କୁ ନିର୍ଜୀବ କରି ପକେଇ ଦେଉଛନ୍ତି । ସବୁ କୃଷ୍ଣମାୟା । ଦେ, ତୋ ଆଈକୁ ବାଗରେ ରଖେ । ଦେଖ ତୋ ଆଈ ପଚିଶିବର୍ଷତଳେ ଯିମିତି ଥିଲା ଏବେ ବି ସିମିତି ଅଛି । ନିତ୍ୟା ସଂଭ୍ରମରେ ଆଈଙ୍କ ପାଖରୁ ଆଖିଫେରେଇ ଆଣିଲା । ଭାବିଲା ଅଜାଟା ପାଗଳ । ଆଈ କଥା ମନେ ପଡ଼ିଯାଇଛି ତ ଏମିତି ବିଳିବିଳଉଛି । ରକ୍ଷା ହେଇଯାଇଛି ପିଲାଦିଟା ଏଠି ନାହାନ୍ତି । ସେମାନେ ଏକଥାତ ପଚାରୁଥିଲେ । ବଢ଼ିଆ ଉତ୍ତର ପାଇଯାଇଥାନ୍ତେ । ସେମାନଙ୍କର କନକନାନୀ, ପଦ୍ମାମାଉସୀ ଓ ଖାଡ଼ାଙ୍ଗାଖୁଡ଼ୀଙ୍କୁ ଚାକ୍ଷୁଷ କରିପାରିଥାନ୍ତେ ।

ନିତ୍ୟା ଧୀରେ ଧୀରେ ମୂର୍ତିତତ୍ତ୍ୱର ଦାର୍ଶନିକତା ଭିତରକୁ ତା ଅଲକ୍ଷ୍ୟରେ ପଶିଯାଉଛି । ସାରୋଳାଙ୍କ ପିତୁଳୀ ରମଣ ଓ ଅଜାଙ୍କ ରାଧା ମୂର୍ତିରେ ଆଈଙ୍କ ସନ୍ଦର୍ଶନ ର ମହତ୍ତ୍ୱ ନିତ୍ୟା ବୁଝିବାକୁ ଚେଷ୍ଟାକଲା ।

ରାଧାବିନୋଦ ମଠ ବେଢ଼ା ପାଚେରିକୁ ଲାଗି ବଡ଼ ପଡ଼ିଆଟେ । ଯାନି ଯାତ୍ରା ସିନେମା ସର୍କସ ସବୁ ଏହି ପଡ଼ିଆରେ । ଏଇଠି ହିଁ କଳାକୁଞ୍ଜ ପାଇଁ ଛାମୁଣ୍ଡିଆ ତୋଳା ହେଲା । ଅଶିଏ ହାତ ଲମ୍ବା ଆଉ ଷାଠିଏ ହାତ ଓସାରର ଏକ ସାଉଡ଼ି ଚାଳ ଛପର ଘର ତାକୁ ବୋଲିବା । ଆଗ ଆଡ଼କୁ ଲମ୍ବା ବାଗରେ ମଝା ମଝିକି ବାରହାତର ରାସ୍ତା ଛାଡ଼ିଦିଆ ହେଲା । ତା ପୁଣି ମଝିରେ ଦି ସୋରା ହେବ ପ୍ରବେଶ ଓ ପ୍ରସ୍ଥାନ ପାଇଁ । ଫେ'ରେ ସେଥିରେ ମାଇକିନିଆ ଅଣ୍ଡିରାଙ୍କ ପାଇଁ ଅଲଗା ଅଲଗା ବାଟ ଖୋଲାହେବ । ପ୍ରବେଶ ଦୁଆର ପାଖକୁ ଲାଗି ଟିକଟ କାଉଣ୍ଟର । ସେଥିରେ ଦୁଇଟି ଜଳାବାଟ ରହିବ । ଗୋଟିଏ କଡ଼େ ପୁରୁଷ ଓ ଅନ୍ୟଟିରେ ସ୍ତ୍ରୀଏଁ ଟିକଟ କାଟିବେ । ମଝିରେ ଫର୍ଚ୍ଚା ଅଗଣା । ରାସ୍ତା ଦିପଟେ ବାଉଁଶ

ବନ୍ଧାହେଇ ଅର୍ଗଳ ତିଆର ହେବ । ଲମ୍ବା ଧାରରେ ଦଶଟା ବଖରା , ଦି ଓସାର ପଟର ମିଶି ଦଶ, ରାସ୍ତାଛାଡ଼ିଦେଇ ଆଗ ପଟକୁ ଛ ଏମିତି ହେଇ ଛବିଶିଟି ବଖରା ତିଆରି ହେବ । ପ୍ରତ୍ୟେକ ବଖରାରେ କୁଞ୍ଚ ସଜିଆ ହେବ । ପଛକାନିକୁ ରୋଷେଇ କରିବା ପାଇଁ ସାଉଡ଼ିଏ ଘର । କଳାକୁଞ୍ଚର ମାଲମତା ଗଦେଇବା ପାଇଁ ଆଉ ଦିବଖରା ଘର । ତା ପାଖକୁ ଲାଗି ଅଜାଙ୍କ ବସା । ଏଠି କେବଳ ଅଜା ହିଁ ରହିବେ ।

ଛବିଶିଟି ବଖରା ଭିତରୁ ଶେଷଆଡ଼କୁ ଗୋଟିଏ ବଖରା ଅଫିସ ଘର । ସରପଞ୍ଚ ତାଙ୍କ ପିଲାପିଲି, ୱାର୍ଡ଼ ମେମ୍ବର , ସ୍କୁଲ ହେଡ଼ମାଷ୍ଟ୍ରେ ବା ଥାନାବାବୁ ଆସିଲେ ଏଠି ବସାଉଠା କରିବେ । ନୀଳାମ୍ବର ମିଶ୍ରେ ନୈଷ୍ଠିକ ବ୍ରାହ୍ମଣ ହେଲେ ମଧ, ସୀମାଞ୍ଚଳ ନ ହେଲେ ଆଉ କା ହାତରେ ଅଲ୍ଲୀ ମିଆଁ ଆର୍ମି ହୋଟେଲରୁ ମାଂସକୁରମା ଓ ଚିକେନ୍ ଆଣି ଲୁଚେଇ କରି ଥାନାବାବୁକୁ ପରଶି ଦେବେ । ଏ ଲୋକଯାକ ପିତୁଳୀ ଫିତୁଳୀ କିମ୍ବା ପୁରାଣ ଶାସ୍ତ୍ର ବୁଝନ୍ତିନି । ସବୁବେଳେ ଡ଼ାବୁ ଉପରେ ଲାଖ ରଖିଥିବେ । ପାଞ୍ଚ ଦିଅ କି ଦଶ ଦିଅ ଚଳିବ, ପକେଟ ଗରମ ହେଲେ ଗଲା । ହେଡ଼ମାଷ୍ଟରଙ୍କ କଥା ଅଲଗା । ମାଷ୍ଟ୍ର ବିଚରା ଯାଇ ଯାଇ ଆଉ କେତେ ବାଟ ଯିବ । ଦୋସା ଉପମା ପେଟେ ହେଲେ ତା ପରଦିନ ସ୍କୁଲରେ ନୋଟିସ୍ ଜାରି କରିଦେବେ । ସଂଧ୍ୟାବେଳକୁ ହିୟାପ ହାପ୍ ଟିକଟ ଦୁଇଶହ ଅଢ଼େଇଶହ ବିକ୍ରି ହେଇଯିବ ।

ଗାର୍ଲସ୍କୁଲର ହେଡ଼ମିଷ୍ଟ୍ରେସ୍‌ଙ୍କ ଘରକୁ ଯାଇ ତାଙ୍କୁ ନିମନ୍ତ୍ରଣ କରିବାକୁ ପଡ଼ିବ । ନୀଳାମ୍ବର ଅଜା ଆଗରୁ ହିସାବ କରି ପାରଳାଖେମଣ୍ଡି ପ୍ରକାଶମ୍ କ୍ଲାଥ୍ ଷ୍ଟୋରରୁ ଜରି ଶାଢ଼ି ଓ ରାଇକା କିଣି ଆଣି ରଖିଥିବେ । ପତ୍ରିକା କାଗଜରେ ଗୁଡ଼େଇ ତାକୁ ହେଡ୍‌ମିଷ୍ଟ୍ରେସ୍ ଘରେ ଦେଇ ଆସିବେ । ହେଡ୍‌ମିଷ୍ଟ୍ରେସ୍ ଈଶ୍ୱରମ୍ମା ନାଇଡୁ, ବି.ଏ, ବି.ଇଡ଼ି, ଖୁବ୍ ଭଲ ସ୍ତ୍ରୀଲୋକ । ନୀଳାମ୍ବର ମିଶ୍ରେଙ୍କୁ ଦେଖି ଆମ୍ମା ପ୍ରଥମେ ଭିଡ଼ି ମୋଡ଼ି ହେବେ । ହଲେଇ ଗେଲେଇ ଦେବେ ଯିମିତି ନାତୁଣୀମାନେ ଅଜାଙ୍କ ଆଗରେ ହୁଅନ୍ତି । ଆମ୍ମାଙ୍କ ଚେହେରାଟା ତାଙ୍କ ଗୁଣକୁ ଧରି ନୁହେଁ । ଛାମୁ ଦାନ୍ତ କୋଡ଼ି ଭଳି ଆଗକୁ ବାହାରି ଆସିଛି । ହନୁହାଡ଼ ଦିଟା ମୁହଁରୁ ଠେଲି ହେଇ ପଦାକୁ ଫିଟି ଆସୁଚି । ନାକଟା ଚେପଟା, ଓଠ ଦିଟା ମୋଟା, ଥୋଡ଼ି ନାହିଁ ବୋଲ । ବେକ କାନ୍ଧ ସାଙ୍ଗରେ ସମତୁଲ । ଥନ ଦିଟା ଅବାଧ୍ୟ ହେଇ ଆଗକୁ ଠେସି ଆସିଛି । ଅଜା ଖୁବ୍ ଚମତ୍କାର ତେଲୁଗୁରେ ତା ସହିତ କଥା ହେବେ । ଆମ୍ମା କାଫି ଆଣି ଦେଲେ ଅଜା

ସୋଡ଼ ସୋଡ଼ ପିଇବେ । ନାହିଁ ନଥିବା ଦୁଃଖସୁଖ ହେବେ । ଆମ୍ଭା ଘରକୁ ସେ ଏକୁଟିଆ ହିଁ ଯାଇଥିବେ । ନିତ୍ୟାକୁ କି ଅନ୍ୟମାନଙ୍କୁ ନେଇ ନଥିବେ । ଆମ୍ଭା କହିବେ ତାଙ୍କର ପିଲା ଦିଓଟିଙ୍କୁ ଦେଖିବାକୁ ଭାରି ମନ ଥିଲା । ତମେ ଆଣିଲନି କିହେ ! ଅଜାଙ୍କୁ ମନେ ପକେଇ ଦେବେ । ଖୁଚୁମୁଚୁ ଲାଗୁଛି ବୋଲି ଦୁଃଖ କରିବେ । । ଆମ୍ଭା ନିଃସନ୍ତାନ । ନୀଳାମ୍ବର ମିଶ୍ରେ କଳାକୁଞ୍ଜ ଆରମ୍ଭ ହେବାକୁ ଥିବା ଦୁଇ ଦିନ ଏମିତି ସଞ୍ଚୁଳିବାକୁ ବିଭିନ୍ନ ଆଡ଼େ ଯାଆନ୍ତି । ନିମନ୍ତ୍ରଣ ଦିଅନ୍ତି ଓ ସଂପର୍କ ଦୋହରାନ୍ତି ନହେଲେ କଳାକୁଞ୍ଜର କାଟତି କମିଯିବ । କୁଆଡ଼େ ଯାଆନ୍ତୁ ନ ଯାଆନ୍ତୁ ପଛକେ ରିପୋର୍ଟର ରାମାରାଓ ପାଖକୁ ନିଶ୍ଚୟ ଯିବେ, ନହେଲେ ହିନ୍ଦୁରେ ଦି'ପଦ ଡେଢ଼ା କରି ବାହାରି ପଡ଼ିଲେ ସବୁ ଆଡ଼ମ୍ବର ଫସର ଫାଟିଯିବ ।

ମିଶ୍ରେ ରାଧାବିନୋଦ ମଠର ଚାନ୍ଦନୀ ଉପରେ ଖଡ଼ିରେ ଗାରକାଟି କଳାକୁଞ୍ଜର ନକସା ବନେଇ ନେଲେ । ତାଙ୍କ ଆଖିରେ ସମଗ୍ର କଳାକୁଞ୍ଜଟା ନାଚି ଉଠିଲା । ଏଥିପାଇଁ ତାକୁ ଆଉ ସ୍ୱତନ୍ତ୍ର ଭାବେ ଚିନ୍ତା କରିବାକୁ ହୁଏ ନାହିଁ । ସବୁ ଯିମିତି କଣ୍ଠପଇଠ, ଖାଲି ଖଞ୍ଜାଖଞ୍ଜି କରିଦେଲେ ହେଲା । ପଚିଶିଗୋଟି ବଖରାରେ କେଉଁଠି କଣ ରହିବ । ସେ ମୁହେଁ ମୁହେଁ କହିଦେଇଗଲେ, କୁଞ୍ଜ ଭିତରେ ପଶୁ ପଶୁ ବାଁ ପଟର ପ୍ରଥମ ବଖରାରେ ନିଜ ପରିବାରର ଇଷ୍ଟ ରାଧାକୃଷ୍ଣ ଯୁଗଳ ରହିବେ । ଠାକୁରଙ୍କୁ ଛାଡ଼ି ଆଉ ପାଠ ନାହିଁ । କୃଷ୍ଣଙ୍କ ଡ଼ାହାଣ ପଟେ ରହିବେ ଲଳିତା । ମୂର୍ତ୍ତିଙ୍କ ପଛପଟେ କଦମ୍ବ ଗଛ ରହିବ । କଦମ୍ବ ଗଛ ସିନ୍‌ରେ ଚିତ୍ରାହେବ । ଠାକୁରଙ୍କ ଆଗରେ ପୂଜାରୀଟିଏ ଅର୍ଚ୍ଚନା କରିବା ଭଙ୍ଗିରେ ପଦ୍ମାସନରେ ବସିବ । ଅଜା ପିତୁଳାଟାକୁ ତାଙ୍କ ନିଜ ଭଳିଆ ଗଢ଼ଣ କରିଦେଇଛନ୍ତି । ବହିଲେଖି ନାଁ ଛାପିବା ଯାହା ଏକଥା ବି ସିମିତିକା । ପୁରୁଣା କାଳରେ ମଧ କବିମାନେ ନିଜ ନାଁରେ ଭଣତା କରୁଥିଲେ । ଅଜାଙ୍କ ଏଇଟା ଭଣତା ବୋଲ । ଲୋକେ କଳାକୁଞ୍ଜରେ ପଶୁ ପଶୁ କଥା ହେବେ ଏଇଟା ଆର୍ଟିଷ୍ଟର ସାକ୍ଷାତ ଫୋଟଟାରେ । ଗଛ ପଛରୁ ଟେପ ରେକର୍ଡ଼ରେ ଘଣ୍ଟି ବାଜିବ ଓ ପୂଜାରୀଟିର ଡ଼ାହାଣ ହାତ ତଳୁ ଉପରକୁ ଓ ଉପରୁ ତଳକୁ ହେଉଥିବ । ମୂର୍ତ୍ତି ବିଜେ ହେଇଥିବା ମନ୍ଦିରର କବାଟ ମଧ ଖୋଲି ଯାଉଥିବ ଓ ଆପେ ଆପେ ବନ୍ଦ ହେଇ ଯାଉଥିବ । ପୂଜାରୀ ବ୍ରାହ୍ମଣ ଆଗରେ ପିତଳ ଥାଳିଆ ଥୁଆ ହେଇଥିବ ଓ ସେଥିରେ ଦଶ ପନ୍ଦର ଟିଲରା ପଇସା ପଡ଼ିଥିବ ।

ପଡ଼ିଶା ବଖରାରେ ବନ୍ଦୀଶାଳାରେ କୃଷ୍ଣଜନ୍ମ । କୁଆଁ କୁଆଁ ଶବ୍ଦ

ହେଉଥିବ । କୁଞ୍ଜ ଚାରିଆଡ଼ କିଟିକିଟି ଅନ୍ଧାର , ତା ଭିତରେ ବନ୍ଦୀଘରର ଜଗୁଆଳି ମାନେ ଘୁମେଇ ପଡ଼ିଥିବେ । ବନ୍ଦୀଶାଳା ଭିତରଟା ଆଲୁଅରେ ଝଟକୁଥିବ । ଛୋଟିଆ କୃଷ୍ଣ ପିଢ଼ୁଳାଟି ତଳେ ଥୁଆ ହେଇଥିବ । ଦେବକୀ ଅଧା ଲଙ୍ଗଳା ହେଇ ଜାନୁ ଯୌବନ ମେଲେଇ ବସିଥିବେ । ବସୁଦେବ ତାଙ୍କ ଅଣ୍ଟାକୁ ଧରିଥିବେ । ମାଇକିନାମାନେ ଏହି ଦୃଶ୍ୟକୁ ବଡ଼ ପ୍ରେମରେ ଦେଖିବେ । ସେମାନଙ୍କ ନିଜନିଜ ମା ହେବା କଥା ମନେ ପଡ଼ିଯିବ । ସେମାନେ ଟୁପୁରୁ ଟାପର ହେବେ । ଆଉ ଏବେ ଏନ୍ତୁଡ଼ିଶାଳ ଅଛିକିହେ ? ସମସ୍ତେତ ଏବେ ଡ଼ାକ୍ତରଖାନା ଧାଇଁଲେଣି । ଆମ ବେଳ କଥା ସବୁ ବଦଳି ଗଲାଣି ।

ଏବେ ରହିବ କୃଷ୍ଣଙ୍କୁ ମୁଣ୍ଡରେ ଧରି ବସୁଦେବର ଯମୁନା ପାରି ହେବାର ଦୃଶ୍ୟ । କୃଷ୍ଣଲୀଳାର ପୂତନା ଶକଟା ବକା ଅଘା ହେଇ ଦଶ ପର୍ଯ୍ୟନ୍ତ ବଖରାଯିବ, ଏମାନଙ୍କ ଭିତରେ ସବୁଠାରୁ ଆକର୍ଷଣୀୟ ହେବ ଗୋପୀଙ୍କ ବସ୍ତ୍ରହରଣର ଦୃଶ୍ୟ । ପୂତନା କୁଞ୍ଜକୁ ଦେଖିସାରି ଲୋକେ ଛି ଛାକର ହେବେ । ପୂତନାକୁ ବହେ ଅଭଦ୍ର ଭାଷାରେ ଗାଳି ଦେବେ । କହିବେ ଏ ରାଣ୍ଡଟା କଣ ନକରୁଥିଲା, ଦେଖ କଅଁଳା ପିଲାଟାକୁ ଜୀବନରେ ମରିଦେବା ପାଇଁ , କେତେ କପଟ କରିଥିଲା । ଅଧର୍ମ ଯିବ କୁଆଡ଼େ । ଉଚିତ ଶିକ୍ଷା ପାଇଗଲା । ସେ ତା ପାହାଡ଼ ଭଳିଆ ଥନ ଦିଟାକୁ ଦେଖେଇ, ଚାଖଣ୍ଡେ ହେବ ଜିଭ ବାହାର କରି ଚିତ୍‌ମାଡ଼୍ ହେଇ ମରିପଡ଼ିଥିବ, ସୁନ୍ଦର ଛୋଟିଆ କୃଷ୍ଣ ପିଲାଟେ ତା ପେଟ ଉପରେ ହାମୁଡ଼ି ପଡ଼ି କ୍ଷୀର ସାଙ୍ଗେ ପ୍ରାଣ ଶୋଷାଡ଼ି ନେଉଥିବେ ।

ଗୋପୀଙ୍କ ବସ୍ତ୍ରହରଣ କୁଞ୍ଜରେ ଅଳ୍ପା ପତଳା ଜରି ଦେଇ ଉଲଗ୍ନା ଗୋପୀଙ୍କର ଅଣ୍ଟାଯାଏଁ ଲୁଚେଇ ଦେବା ପାଇଁ ଚେଷ୍ଟାକରିବେ । ଜରିପଛପଟେ ଟେବୁଲ୍ ଫେନ୍ ଲଗେଇ ଦେଇଥିବେଯେ ଜରିଟା ହଲ ହଲ ହେଇ ଲହଡ଼ାର ଭ୍ରମ ସୃଷ୍ଟିକରିବ । ସବୁ ଗମାତ । ଭେଳିକି । ସବୁ ମିଛିମିଛିକା । ଭିତରପଟୁ ନୀଳ ଆଲୁଅ ଦେଇ ଦେଲେ ପାଣିଟା ଠିକ୍ ପାଣି ଭଳି ଦେଖାଯିବ । ଗୋପୀମାନଙ୍କର ସ୍ତନ ପାଣି ଉପରେ ପରିଷ୍କାର ଭାବେ ଦୃଶ୍ୟ ହେଉଥିବା ବେଳେ ସେମାନଙ୍କର ନିତମ୍ବ ଜଙ୍ଘ ଓ ଗୁପ୍ତାଙ୍ଗ ଯମୁନାର ନୀଳ ଜଳ ଭିତରେ ବୁଡ଼ିରହିବ । ତଥାପି ଦର୍ଶକ ପାଣି ଭିତରେ ସବୁ ଦେଖିପାରୁଥିବେ । ନିତ୍ୟା ଅଜାଠୁ ସବୁ ଶୁଣିଲା ପରେ ମନ୍ତବ୍ୟ ଦେଲା, ଅଜା! ଲାଗୁଛି ଟୋକା ଟୋକୀ ଏଇଠି ଭିଡ଼ ଜମେଇଦେବେ । ପାଣିରେ ବୁଡ଼ି ଗୋପୀମାନଙ୍କ ସୌନ୍ଦର୍ଯ୍ୟକୁ ପିଇଯିବେ । ସେମାନେ ମଧ କୃଷ୍ଣଙ୍କ ସାଙ୍ଗରେ କଥା ମିଶେଇ କହିବେ,

ପାଣିଉପରକୁ ବାହାରି ଆସ ତମକଥା ବୁଝିବା । ଦେଖଣାହାରି ଏହି ବଖରାକୁ ଦେଖିଲେ ଏପରି ଆନନ୍ଦ ମିଳିଯିବ ଯେ ପଚାଶ ପଇସା ଟିକଟର ଅଧା ବାହାରିପଡ଼ିବ । ପଇସା ଖର୍ଚ୍ଚ କରି ଆନନ୍ଦ ପାଇବା ପାଇଁ ଚେଷ୍ଟାକଲେ, ପଇସା ବାଣ୍ଟି ହେଇଗଲେ ତା ଅନୁପାତରେ ଆନନ୍ଦ ବି ବାଣ୍ଟି ହେଇଯିବା ସ୍ୱାଭାବିକ । କଳାକୁଞ୍ଜର ଭିତରି କଥା ହେଲା, ଡ଼ାବୁ ଲେଦୁ ଆନନ୍ଦମ୍ ଲେଦୁ । ପଇସା ନାହିଁ ତ ଆନନ୍ଦ ନାହିଁ ।

ଶ୍ରୀମଦ୍‌ଭାଗବତ ଦଶମ ସ୍କନ୍ଧର ଏହିଦୃଶ୍ୟ ଗୁଡ଼ିକ ପରେ ରାମାୟଣର ପାଞ୍ଚ ଟି ଦୃଶ୍ୟ । ସେଥିରୁ ପ୍ରଥମଟି ହେଲା ମାୟାମୃଗ । ପାହାଡ଼ ଉପରେ ଆଶ୍ରମ ଭିତରେ ରାମ ସୀତା ବସିଥିବେ । ସୀତା ରାମଙ୍କ କୋଳରେ ଆଉଜି ସରାଗରେ ଆଶ୍ରମ ତଳକୁ ଚରୁଥିବା ସ୍ୱର୍ଣ୍ଣ ମୃଗକୁ ଆଙ୍ଗୁଠି ଦେଖଉଥିବେ । ମିରିଗର ବେକ ଲଡ଼ ଲଡ଼ିଆ କଣ୍ଢେଇ ଭଳିଆ ହେଇଥିବ । ଥରେ ସେ ଘାସ ଚରୁଥିବ । ପୁଣି ଥରେ ବେକ ଉଠେଇ ସୀତାୟାଙ୍କୁ ଲୋଭେଇ ଦେଉଥିବ । ମୃଗ ପେଟରେ ଓ ଗୋଡ଼ରେ ଇଲେକ୍‌ଟ୍ରିକ୍ ମୋଟର୍ ଦେଇ ଅଙ୍ଗ ସଜେଇ ଥିବେ । ମୃଗର ପିଠିଟା ସୁନାଭଳି ଝଟକୁଥିବ, ସେ କୁଞ୍ଜର ଏପଟୁ ସେପଟକୁ ଯାଇ ପୁଣି ଫେରୁଥିବ । ମୃଗକୁ ଦେଖିବାପାଇଁ ଲୋକେ ନିଶ୍ଚୟ ଦଣ୍ଡେ ଠିଆ ହେଇପଡ଼ିବେ । ଲକ୍ଷ୍ମଣ ଆଶ୍ରମ ବାହାରେ ଧନୁ ଧରି ଠିଆ ହେଇଥିବେ । ପାହାଡ଼ ତଳକୁ ଆଉ ଗୋଟିଏ ଦୃଶ୍ୟରେ ରାମ ଲକ୍ଷ୍ମଣ ଭାରରେ ମାୟାମୃଗ ବାନ୍ଧି ଆଶ୍ରମକୁ ଫେରୁଥିବେ । ଫେରିଲା ପରେ ଦେଖିବେ ଆଶ୍ରମ ଖାଲିପଡ଼ିଛି । ସେଇଦୃଶ୍ୟରେ ଦର୍ଶକମାନେ ସୀତାଙ୍କ କଥା ସ୍ମରଣ କରି ଲଙ୍କପତି ରାବଣକୁ ଓ ତାର ସପ୍ତପୁରୁଷକୁ ଶୋଧିବେ । କିଛି ବଗୁଲିଆ ଟୋକା ସ୍ୱଗତୋକ୍ତି କଲାଭଳି କହିବେ, ଢିଆଦ ମାଂସ କିଲୋ କେତେ ହେ ? ଦି 'ଭାଇଙ୍କି ପଚାର । ମଠ ଚାନ୍ଦନୀ ତଳେ ମାଉଁସ ଭାଗ ପକେଇବେ କିହେ । ମାଇପକୁ ତ ରାବଣ ନେଲା ଏଥର ମାଉଁସ ବିକ ।

ତାପର ଦୃଶ୍ୟ ହେବ ସୀତୟା ହରଣ । ପୁଷ୍ପକ ବିମାନରେ ରାବଣ ସୀତାଙ୍କୁ ବସେଇ ଆକାଶ ମାର୍ଗରେ ଉଡ଼େଇ ନେଇ ଯାଉଥିବ । ନୀଳାମ୍ବର ମିଶ୍ରେ ପୁଷ୍ପକ ବିମାନର ମୁହଁପଟ ହଂସାକୃତିକରି ବିମାନର ଦୁଇପଟେ ହଂସର ଦୁଇଡ଼େଣାକୁ ମେଲେଇ ରଖିଥିବେ । ମୋଟାମୋଟି ପୁଷ୍ପକ ବିମାନର ମଝିଅଂଶଟି ମେଲଣ ଯାତ୍ରାର ଚଉଦୋଳ ଭଳି ଦେଖାଯାଉଥିବ । ରାବଣ ହଲେ ପ୍ରହ୍ଲାଦ ନାଟକର ହିରଣ୍ୟ ଭଳିଆ ନିଶ ରଖି ଡ଼ି .ନାରସେୟା ପରି ଦେଖାଯାଉଥିବ । ଡ଼େବିରି ହାତରେ ସୀତାଙ୍କୁ ଢାକି

ଧରି ଖାଇଲା ହାତରେ ଖଣ୍ଡାଟାକୁ ଉଠେଇ ଧରିଥିବ। ନାରସେୟା ଏ ଦୃଶ୍ୟଦେଖିଲେ ଆଛା ଖୁସିଟେ ହେଇଯିବ । ତା ନିଶକୁ ରାବଣର ନିଶ ସହିତ ତୁଳନା ତ କରିବ, ତା ସହିତ ସେ ମେଳକ କରିବ ଯେ ରାବଣର ଜମିବାଡ଼ି ଅପେକ୍ଷା ତାଙ୍କ ନିଜର ଭୂସଂପତ୍ତି ବେଶି ନା କମ୍ । ନୀଳାମ୍ବର ମିଶ୍ରେ ଏକଥାକୁ ଆଗରୁ ଅନୁମାନ କରି ଏଭଳି ପ୍ରସଙ୍ଗ ବାଢ଼ିଥିବେ। କଳାକୁଞ୍ଜ ପରଂପରା ଭିତରେ ପୃଷ୍ଠପୋଷକମାନଙ୍କର ମୂର୍ତ୍ତି କୁଞ୍ଜ ଭିତରେ କେଉଁଠି ହେଲେ ଥାପିଦେବା ବିଧି ଅଛି । ଡ଼ି. ନାରସେୟାର ପାର୍ବତୀପୁରମ୍ ଗାଁରେ ସମସ୍ତଙ୍କ ଠାରୁ ବେଶି ଭୂମି । ଘରକୁ ପନ୍ଦର କୋଡ଼ିଏ ଶଗଡ଼ ଧାନ ଆସୁଥିବ । ଦି ଶଗଡ଼ କାନ୍ଦୁଲ, ଶଗଡ଼େ ଦି ଶଗଡ଼ ମୁଗ । ତାକୁ ଧରି ଆଉ ସବୁ ଖନ୍ଦ ବ୍ରାନ୍ଦ । ରାବଣ ପାଖରେ ଅସହାୟା କାପତା ଭଳିଆ ଶାଗିଯାଇଥିବା ସୀତାକୁ ଦେଖିଲେ ନାରସେୟା ମନରେ ଭୀଷଣ ଦୁଃଖହେବ । ନାରସେୟାର ନିଜ ସ୍ତ୍ରୀଟା ମଧ ଛୋଟିଆ ମଣିଷଟିଏ । ବଡ଼ ରୋଗଣା । ନାରସେୟା ଉପଦେଶ ଦେବା ଢ଼ଙ୍ଗରେ କହିବ, ମିଶ୍ରେ ମହାପ୍ରୁ ଏତା କିସ କଲହେ। ସୀତୟାକୁ କଞ୍ଚୁମ୍ ମୋଟାରୋଟା କରିଥିଲେ ହୁଅନ୍ତା ନିକି ? ବେଶି ପ୍ରମାଣେ କାଇଲା ହେଇଗଲା । ତା ଭାରିଯାକୁ ସେ ଖୁସି କରିବାପାଇଁ ଏମିତି କହିବ । ଯେତେ ହେଲେ ମିସାରୁ ସୀତୟା ଅଯୋଧାର ରାଣୀଟାନା ଏତେ ଦୁର୍ବଳିଆ କରିଦେଲଯେ କେତେ ଦୁଃଖ ଆଗକୁ ଲଙ୍କାରେ ସହିବାକୁ ଅଛି । ମିଶ୍ରେ ଠିକ୍ ଧରିଥିବେ। ନାରସେୟାର ଗୋଟିଏ ନୁହଁ । ପୁଞ୍ଜେ ମାଇପ ରଖିଛି । ଅନ୍ୟ ମାଇପଙ୍କ କଥା ମନେ ପକେଇ ମିଶ୍ରଙ୍କ ତାପୁ ଧରିବନି ।

ତା' ପର ଦୃଶ୍ୟ ହେଲା ଅଶୋକ ବନରେ ସୀତା । ସୀତା ବିରସ ବଦନରେ ଶିଂଶପା ଗଛମୂଳରେ ବସିଛନ୍ତି । ତାଙ୍କ ଚାରିପଟେ ତ୍ରିଜଟା ସୁଶେଣ ପ୍ରଭୃତି ଅସୁରୀ ଘେରି ରହିଛନ୍ତି । ଏମାନଙ୍କ ବର୍ଣ୍ଣ ତ୍ରିପଣ୍ଡ କଳା । ଅଛା କାହାକୁ ନେଳୀ, କାହାକୁ ପଚା, କାହାକୁ ପାଉଁଶିଆ କରି ଦେଇଥିବେ । ସେମାନଙ୍କ ଛାମୁଦାନ୍ତ ଯାକ ପଦାକୁ ବାହାରି ଆସିଥିବ । ଓଲମ୍ବିତ ସ୍ତନ, ପୁତୁଗ ଭଳି ପେଟ । କଦାକାର, ରୁକ୍ଷ ଓ ଭୀଷଣ ଦେଖାଯଉଥିବ । ଏମାନଙ୍କ ଭିତରେ କୋମଳାଙ୍ଗୀ, କୃଶୋଦରୀ ସୀତା ଏଭଳି କୁତ୍ସିତ ବୀଭତ୍ସ ପରିବେଶକୁ ସହ୍ୟ କରି ଅତି ତ୍ରସ୍ତ ହେଇ କପାଳରେ କର ଦେଇ ବସି ରହିଥିବେ । ରାମଙ୍କୁ ସ୍ମରଣା କରୁଥିବେ । ବିଶ୍ୱାସ ଥିବ ରାମଚନ୍ଦ୍ର ଆସିବେ ତାଙ୍କୁ ଏ ଘୋର ନରକରୁ ଉଦ୍ଧାର କରିବେ । ସୀତାଙ୍କର ରୂପ ସୌନ୍ଦର୍ଯ୍ୟ ବର୍ଣ୍ଣିବାରେ ମିଶ୍ରେ କେବେ ହେଳା କରିବେନି । ଶୋକାତୁରା, ବିମର୍ଷା ହେଲେମଧ ସୀତାଙ୍କ ସୌଷ୍ଠବ ଓ

ଦୀପ୍ତି ଉକୁଟି ଉଠୁଥିବ । ଲୋକେ ସୀତାଙ୍କୁ ଦେଖିଲେ କହିବେ, ସୁରେୟା ଭଳିଆ ଦିଶୁଛି, ଗିଆସ ଲାଇଟ୍ ଭଳିଆ ଝଟକୁଛି । ସୁରେୟା ସିନେମା ଜଗତର ଏକ ସୁନ୍ଦରୀ ଅଭିନେତ୍ରୀ ।

ତା ପରର କୁଞ୍ଜରେ ରାମରାବଣ ଯୁଦ୍ଧର ଦୃଶ୍ୟ । ଉଭୟେ ସମ୍ମୁଖ ରଣରେ ଜଣେ ଆଉଜଣକୁ ଭେଟୁଛନ୍ତି । ଦଶାନନ ରାବଣ ତା ଧନୁରେ ଗୁଣ ଦେଇ ଟଙ୍କାରିଲା ବେଳକୁ ଜଟାଧାରୀ ତପସ୍ୱୀ ରାମଚନ୍ଦ୍ର ରାବଣକୁ ପାନେ ଦେବାପାଇଁ ଧନୁରେ ବ୍ରହ୍ମାସ୍ତ୍ର ଯୋଖି ବୀରଠାଣିରେ ଠିଆ ହେଇଛନ୍ତି । କୁଞ୍ଜ ଭିତରେ କଟାମୁଣ୍ଡ, ହାତ, ଗୋଡ଼ ଓ ପରିତ୍ୟକ୍ତ ଅସ୍ତ୍ରଶସ୍ତ୍ର ଅଜାଡ଼ି ହେଇ ପରିବେଶକୁ ଭୟଙ୍କର କରିଦେଉଛି । ଭାଗବତ, ରାମାୟଣ ହେଇ ଚଉଦ ବଖରା ଗଲାଣି । ରାମାୟଣ ବିଷୟ ଶେଷ କରିବା ପୂର୍ବରୁ ମିଶ୍ରେ ପଟ୍ଟାଭିଷେକ ପଟୁଆରକୁ ଖଂଜି ଦେଇଛନ୍ତି । ରାମ ଲକ୍ଷ୍ମଣ ଜରିଡ୍ରେସ୍ ପିନ୍ଧି ସିଂହାସନରେ ବୀର ବେଶରେ ବସିଥିବେ । ସୀତା ରାମଙ୍କ ଡ଼େବିରି ପାଖକୁ ଢାକିଢୁକି ହେଇ ବସିଥିବେ । ଭରତ ଛତ୍ର ଟେକି ଧରିଥିବେ । ହନୁମାନ ପାଦ ତଳେ ହାତ ଯୋଡ଼ି ବସିରହିଥିବ । ପିଲାମାନେ ହନୁମାନ ଦେଖିଲେ ମାଙ୍କଡ଼ମାନଙ୍କୁ ଯିମିତି ଖତେଇ ହୁଅନ୍ତି ସିମିତି ଖିଙ୍କାରିବେ । କିଛି ପିଲା ମାଙ୍କଡ଼ ଆଉ ଜାମ୍ବବାନ ଭାଲୁକୁ ଡ଼ରି କୁଞ୍ଜ ପାଖ ମାଡ଼ିବେନି । ଏମିତିକା ଦୃଶ୍ୟ କୁଞ୍ଜଗୁଡ଼ିକ ମଝିମଝିରେ ଅସଲ ଥାକ । ଟିକିଏ ଧର୍ମଭାବ ଥିବା ଦର୍ଶକ, ବୟସାଧିକ ଲୋକ, ମୁରବିମୁରବା ଏଇଠି ଭିଡ଼ ଜମାଇବେ, ଭକ୍ତିରେ ହାତ ଯୋଡ଼ିବେ । କିଏ କିଏ ଦର୍ଶନ ପରେ ଦକ୍ଷିଣା ଦେବାପାଇଁ ପଇସେ ଦି ପଇସା, ଅଣେ, ଦି ଅଣା ପର୍ଯ୍ୟନ୍ତ ପକେଇ ଦେବେ । କୁଞ୍ଜ ଶେଷ ହେଲା ବେଳକୁ ଏମିତିରେ ଦୁଇଶହ, ଅଢ଼େଇଶହ ପର୍ଯ୍ୟନ୍ତ ଟଙ୍କା ହେଇଯାଏ । ଏହି ପଇସାରେ ମିଶ୍ରଙ୍କ ଧୋତି ସାର୍ଟ ଓ ପିଲାମାନଙ୍କର ଜାମା ପେଣ୍ଟ ଖର୍ଚ୍ଚ ଉଠିଯାଏ ।

ଏହା ପରେ ମହାଭାରତରୁ ଦ୍ରୌପଦୀ ବସ୍ତ୍ରହରଣ ଦୃଶ୍ୟ । ଏଇଟା ବି ଗୋପୀଙ୍କ ବସ୍ତ୍ରହରଣଭଳି ଆଉ ଗୋଟିଏ ଜମାଣିଆ ପ୍ରସଙ୍ଗ । କଳାକୁଞ୍ଜରେ ବୁଢ଼ା ବୁଢ଼ୀ, ଟୋକା ଟୋକୀ ସମସ୍ତଙ୍କ ପାଇଁ ଖୋରାକ ନଥିଲେ କୁଞ୍ଜ ଜମେନାହିଁ କି ବେଶିଦିନ ଚାଲେନାହିଁ । କୁଞ୍ଜକୁ ତ କେହି ଆସିବେନି । ସିନେମା ସାଙ୍ଗରେ ଯୁଝିବା ଦରକାର । ଭେଲ୍କି ଦେଖେଇବା ଦରକାର । ଏକଥା ମିଶ୍ରଙ୍କୁ ଭଲ ଭାବରେ ଜଣା । ଧର୍ମ ଭିତରେ ବି ପ୍ରେମ ନଥିଲେ ଧର୍ମ ଅଲଣା ତୁଣ ଭଳି ଲାଗିବ । ଏହିବଖରାର ମଝିରେ ମଟର ଲଗା

ଚକ୍ରୀ ଉପରେ ଦ୍ରୌପଦୀ ଗୋଟିଏ ହାତରେ ସ୍ତନକୁ ଅନ୍ୟ ହାତରେ ଗୁପ୍ତାଙ୍ଗକୁ ଘୋଡ଼େଇ ଧରି ଗିରି ଗିରି ବୁଲୁଥିବେ । ଦୁଃଶାସନ ତଳେ ଠିଆ ହେଇ ଦ୍ରୌପଦୀର ଅଙ୍ଗରୁ ଲୁଗା ଓଟାରି ପକାଉଥିବ । ଲୋକେ ଦେଖିଲେ କହିବେ ମିଶ୍ରେଗାରୁ ପ୍ରକାଶମ୍ ଲୁଗା ଦୋକାନରୁ ଖାଲି ଭୋଏଲ୍ ଯାକ ଘିନି ଆଣିଛନ୍ତି । ଏତେ ଦାମିକା ଲୁଗା ଦେଖିଲେ ଟୋକୀମାନଙ୍କ ମନ ସଡ଼ ସଡ଼ ହେବ । ପର୍ବତ ପ୍ରମାଣେ ଲୁଗା ଗଦା ହେଇ ସାରିଥିବ, କୃଷ୍ଣ ଦରବାରର ଦିମହଲା ଉପରୁ ଦ୍ରୌପଦୀଙ୍କୁ ପତଳା ଶାଢ଼ି ବଢ଼େଇ ଦେଉଥିବେ । ସେହି ଶାଢ଼ିଟାରେ ହିଁ ଦ୍ରୌପଦୀ ଗୁଡ଼େଇ ହେଇ ପଡ଼ିଥିବେ । ତଥାପି ଝିନ ଶାଢ଼ି ଭେଦି ଦ୍ରୌପଦୀର ଯୌବନ ବାରିହେଇ ପଡୁଥିବ । ଅସଲ ଚମକ ତ ଏଇଠି । ଲୋକେ ତାଙ୍କ ଚାହାଣିକୁ ଏକସ୍ୱରେ କଲା ଭଳିଆ ଏଇଠି କରିବେ । ଅଚ୍ଚା ଦିଶୁ ନଦିଶୁ କରିଦେଇଥିବେ ଯେ ଟୋକା ଟୋକାଳିଆଙ୍କର ଫାକାସି ଉଡ଼ିଯିବ । ଅଚ୍ଚା ଷାଠିଏ ବର୍ଷର ବୁଢ଼ା ହେଲେ ବି ଏଭଳି ଭେଳିକି ଦେଖେଇବାରେ ଓସ୍ତାଦ । ସବୁ ଶିଳ୍ପୀଙ୍କ ଦସ୍ତୁରୁ ହିଁ ସେଇଆ । ପଞ୍ଚୁପାଣ୍ଡବ ଓ ଭୀଷ୍ମ ପାଚନ ଖାଇଲା ଭଳିଆ ମୁହଁ ତଳକୁ କରି ବସିଥିବେ । ଦୁର୍ଯ୍ୟୋଧନ ଭିଲିଏନ୍ ଭଳିଆ ଅଟ୍ଟହାସ କରୁଥିବ ।

ତା' ପର କୁଞ୍ଜର ଭୀମ ଦୁଃଶା ମଲ୍ଲ ଯୁଦ୍ଧ ବଡ଼ କୌତୁକିଆ । ମିଶ୍ରେ ତ ନିଜେ କୁସ୍ତିବାଲା । କହିବେ, ବାପା ଏମିତି ହେଇଥିବ ଯେ ଭୀମ ଦୁଃଶାକୁ ଦେଖିଦେଲେ ଲୋକ ଢଙ୍ଗରେ ହାତ ବାଡ଼େଇ ପକେଇବେ । ନିଶଥିଲେ ନିଶ ମୋଡ଼ି ପକେଇବେ । ଏଠି ଗଚ୍ଚା ଟୋକାଙ୍କ ଭିଡ଼ ଲାଗିବ । ଭୀମ ଦୁଃଶାର ଦେହ ବହୁ କାଳ୍ପନିକ ମାଂସପେଶିରେ ଭରି ହେଇଯାଇଥିବ । ପାଞ୍ଜି ପଛପଟେ ଗୁପ୍ତ ଯୌନ ରୋଗର ଆରୋଗ୍ୟ ସମ୍ଭବ ପାଖାପାଖି ଛପା ହେଇଥିବା ମଲ୍ଲ ମାନଙ୍କର ଚିତ୍ରର ଅନୁକରଣରେ ଭୀମ ଦୁଃଶାର ଗଢ଼ଣ କରାଯାଇଥିବ । ଟୋକାମାନେ କଳନା କରିବେ ଓ ନିଜ ଭିତରେ ଆଲୋଚନା କରିବେ , ଭୀମ ଓ ଦୁଃଶା କେତେ ବତୁରା ଚଣା ଖାଉଥିବେରେ, ଶଳା ଖାସା ଚେହେରା ରଖିଛନ୍ତି । ପ୍ରତିଦିନ ଦଣ୍ଡ ବୈଠକ ନ କଲେ କଣ ଏମିତି ଦିଶିବେ । ଏହି ଯୁଦ୍ଧ ଦୃଶ୍ୟ ଦେଖି ଛୋଟ ପିଲାମାନେ ଢୁସମ୍ ଢୁସମ୍ ଆରମ୍ଭ କରିଦେବେ ।

ନୀଳାମ୍ବର ମିଶ୍ରେ ମହାଭାରତରେ ଯାହା ଦେଖାନ୍ତୁ ବା ନ ଦେଖାନ୍ତୁ ଗୀତା ଦୃଶ୍ୟଟି ନିଶ୍ଚୟ ଦେଖେଇବେ । ଅର୍ଜୁନ ଗାଣ୍ଡିବ ଧନୁ ତଳେ ପକେଇଦେଇ ଗାଲରେ ହାତ ଦେଇ ବସିଛନ୍ତି । କହୁଛନ୍ତି ମୁଁ ଚାରିଆଡ଼େ ଭାଇ ବନ୍ଧୁ, ସ୍ୱଜନ, ଗୁରୁଙ୍କୁ ଦେଖୁଛି । ସେମାନଙ୍କ

ଉପରକୁ ଅସ୍ତ୍ରଚାଳନା କରିବି କିମିତି ? ରାଜ୍ୟଜୟ ମୋର ଲୋଡ଼ା ନାହିଁ । ଶ୍ରୀକୃଷ୍ଣ ସଖା ଅର୍ଜୁନଙ୍କୁ ପ୍ରବୋଧୁଛନ୍ତି । ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ । ମୁଁ ସବୁ କରୁଛି । ମୁଁ ହିଁ କର୍ତ୍ତା । କର୍ମଫଳ ମୋ ଉପରେ ଛାଡ଼ିଦେଇ ତମେ ତମ କର୍ମହିଁ କରିଯାଅ । ତମେ କ୍ଷତ୍ରିୟ, ଯୁଦ୍ଧ କରିବା ତମର କର୍ମ ।

ତା ପରକୁ ଭଗବାନଙ୍କ ବିଶ୍ୱରୂପ । କଳାକୁଞ୍ଜ ଭିତରେ ଏଇଟା ସବୁଠୁ ଅଡୁଆ । ଏଇ କୁଞ୍ଜକୁ ସଜାଡ଼ିଲା ବେଳକୁ ମିଶ୍ରେ ତନ୍ମୟ ହେଇ ଯାଆନ୍ତି । ଲାଗେ ସେ ନିଜେ ଇ ବିଷ୍ଣୁଙ୍କର ଏ ଅଲୌକିକ ରୂପ ଚାକ୍ଷୁଷ କରୁଛନ୍ତି । ସେ ବେଳେବେଳେ ଆଖି ବୁଜି ପକେଇ ଶ୍ରୀମଦ୍ ଭଗବଦ୍‌ଗୀତାର ବିଶ୍ୱରୂପ ଦର୍ଶନ ଯୋଗରୁ ଦି ଚାରି ଶ୍ଳୋକ ବୋଲି ପକାନ୍ତି ।

ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ
ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।
ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା
ସନାତନସ୍ତ୍ୱଂ ପୁରୁଷୋ ମତୋ ମେ ॥

ଅନାଦିମଧ୍ୟାନ୍ତମନନ୍ତବୀର୍ଯ୍ୟ-
ମନନ୍ତବାହୁଂ ଶଶିସୂର୍ଯ୍ୟନେତ୍ରମ୍ ।
ପଶ୍ୟାମି ତ୍ୱାଂ ଦୀପ୍ତହୁତାଶବକ୍ତ୍ରଂ
ସ୍ୱତେଜସା ବିଶ୍ୱମିଦଂ ତପନ୍ତମ୍ ॥

ଏତେବେଳ ପର୍ଯ୍ୟନ୍ତ ନିତ୍ୟାନନ୍ଦ କଳାକୁଞ୍ଜର ନକ୍ସା ଓ ତାର ବିବରଣ ଶୁଣୁଥିଲା । ଏଇଠି ସେ ବାହାରିପଡ଼ି କହିଲା ଅଜା ତମେ ତ ଏତେ କଥା କହିଗଲ ଏବେ ମୋର ଗୋଟିଏ ପ୍ରସ୍ତାବ ଶୁଣ । ଆଉ ଯେତେକ ବଖରା ରହିଲା ସେଥିରେ ଆମେ ସାରଳା ମହାଭାରତରୁ ଯେଉଁ ପିତୁଳୀ ପ୍ରସଙ୍ଗଟି ଚର୍ଚ୍ଚା କରିଥିଲେ ତାକୁ ଏଠି ରୂପ ଦେଲେ କିମିତି ହୁଅନ୍ତା ? ନୀଳାମ୍ବର ମିଶ୍ରେ ନିତ୍ୟାର ଏଭଳି ଏକ ଅପ୍ରତ୍ୟାଶିତ ଅଥଚ ଭାବଗର୍ଭକ ପ୍ରସ୍ତାବରେ କିଛି କ୍ଷଣ ତୁନି ହେଇ କଥାର ମର୍ମ ଘେନିବାକୁ ଲାଗିଲେ ।

ନୀଳାମ୍ବର କହିଲେ, ବାପ ନିତ୍ୟାନନ୍ଦ, ତୋ ପ୍ରସ୍ତାବ ଅବଶ୍ୟ ସ୍ୱୀକାର୍ଯ୍ୟ । କିନ୍ତୁ ଏଥିରେ ତ୍ରିବିଧ ସମସ୍ୟାର ଉଦ୍ଭବ ହେଉଛି । ପ୍ରଥମଟି ହେଲା ସାରଳା କବିର ଭାଷାକୁ ନୀଳାମ୍ବର ମିଶ୍ରର ଚିତ୍ରଭାଷାରେ ଦେଖେଇବା । ଦ୍ୱିତୀୟଟି ହେଲା କିମିତି, କି ଢ଼ଙ୍ଗ ପ୍ରୟୋଗ କଲେ କବିର ସ୍ୱପ୍ନକୁ ଚିତ୍ରକର ତାର ବାସ୍ତବତାରେ ପରିଣତ କରି ପାରିବ ଓ ଶେଷରେ ଏହି ରୂପ ଦେଖଣାହାରିଙ୍କ ମନରେ କି ବିକାର ଆଣିଦେବ ।

ଦେଖ ନିତ୍ୟାନନ୍ଦ, ଏବେ ବି ମୁଁ ପରିଷ୍କାର ଭାବେ ଧରିପାରୁନି ଶାନ୍ତନୁ ଚିତ୍ର ସାଙ୍ଗରେ କିମିତି ରମଣ କଲେ । ହାତକୁ ଦେହ ଭଳିଆ ଅନୁଭବ ହେଲେ ତ ରମଣ ସମ୍ଭବ ହେବ । କାନ୍ଥ ଚିତ୍ରରେତ ଦେହ ହାତକୁ ଲାଗେନି । ଅବଶ୍ୟ ସାରଳା ଆଉ ଶାନ୍ତନୁ ଉଭୟେ ମୁନି । ସାରଳା ମନୋରମଣ କଥା ହୁଏତ କହିଥାଇପାରନ୍ତି । ମୁଁ ଭାବୁଛି ସେ ଚିତ୍ରରେ ମୂର୍ତ୍ତିର ଅଙ୍ଗନ୍ୟାସ କରିଛନ୍ତି । ଏଣୁ ଶାନ୍ତନୁ ସେହି ଅଙ୍ଗକୁ ହିଁ ଗ୍ରହଣ କରିଛନ୍ତି ନିଜ ଆଲିଙ୍ଗନ ଭିତରେ । ସାରଳାଙ୍କ ଭାଷାରେ ମନ୍ତ୍ରଥିଲା ଓ ତାରି ବଳରେ କାନ୍ଥର ଚିତ୍ରଯାକ ଦେହ ଧରିଲେ ଓ ଶାନ୍ତନୁ ରମଣ କଲେ ।

ମତେ ଏବେ କୁଟା କାଠି ମାଟିକୁ ମନ୍ତ୍ରିତ କରିବାକୁ ହେବ । ସେମାନଙ୍କୁ ଆମ ଭଳି ଦେହ ଦେବାକୁ ହେବ । ପିତୁଳୀତ ଢାନୁ ଯୌବନ ଦେଖେଇ ଉଲଗ୍ନ ହେବ । ଶାନ୍ତନୁ ମଧ୍ୟ ନିଜର ଗୁପତ ଅଙ୍ଗ ଦେଖେଇ ପିତୁଳୀକୁ ଆଲିଙ୍ଗନ କରିବେ । ଏଭଳି ଦୃଶ୍ୟରୁ କାମାଗ୍ନି ଉଦ୍‌ଗିରଣ ହେବ । କଥା କୁଆଡ଼କୁ ଯିବ ତାହାହିଁ ଭାବୁଛି । ଶାନ୍ତନୁ ତ ଅସମ୍ଭାଳ । ଦେଖଣାହାରି ବି ଅସମ୍ଭାଳ ହେଇଯିବେ । ଗୋପୀଙ୍କ ବସ୍ତ୍ରହରଣ ଓ ଦ୍ରୌପଦୀ ବସ୍ତ୍ରହରଣରେ ଯେତିକି ଲୁଚାଛପା ଥିଲା ଏଥିରେ ସବୁ ମେଲା ଖୋଲା ହେଇଯିବ । ଅବଶ୍ୟ କାମୋତ୍ତେଜନାକୁ ଉଣା କରିବାପାଇଁ ମୋତେ ପିତୁଳୀ ଓ ଶାନ୍ତନୁଙ୍କୁ ମୁହଁକୁ ମୁହଁ କରି ଠିଆ କରେଇଦେବାକୁ ହେବ ।

ନିତ୍ୟାନନ୍ଦ କହିଲା ଅଜା, ତମେ ପିତୁଳା ପିତୁଳୀ ଗଢ଼ଣ ସମସ୍ୟା କଥା ବୁଝ, ମୁଁ ଅନ୍ୟ ସବୁ ଅଡୁଆକୁ ଠିକଣା କରିବା ଦାୟିତ୍ୱ ନେବି ।

ବହୁ କଥାକୁ ଆଲୋଚନା ଭିତରକୁ ନେଇ ଓ ନିତ୍ୟା ସାଙ୍ଗରେ ପରାମର୍ଶ କରି ନୀଳାମ୍ବର ମିଶ୍ରେ ଶେଷରେ ସ୍ଥିର କଲେ ଯେ ଆଉ ଯେତୋଟି ବଖରା ବଳିଗଲା

ସେ ସବୁକୁ ମିଶେଇ ଶାନ୍ତନୁ ବିବାହ ପ୍ରସଙ୍ଗ ଉପରେ ଏକ ନୂଆ ଧରଣର କଳାକୁଞ୍ଜ ତିଆରି ହେବ । ସାଧାରଣ ଦର୍ଶକମାନଙ୍କ ଠାରୁ ଓ ଅପ୍ରାପ୍ତ ବୟସ୍କ ସାନ ସାନ ପିଲାମାନଙ୍କ ଠାରୁ ଏହି କୁଞ୍ଜକୁ ନିଆରା କରି ରଖାଯିବ । ମିଶ୍ରେ ଡ଼ି.ନାରସେୟା ସହିତ ଏ ବିଷୟରେ ପରାମର୍ଶକଲେ । ଡ଼ି . ନାରସେୟା କଥାଟାକୁ ଅତି ସହଜ ଢ଼ଙ୍ଗରେ ଗ୍ରହଣ କରି, ଇଂଲିଶ 'ଏ' ଲଗେଇ ଦେବାକୁ ମିଶ୍ରେଙ୍କୁ ପରାମର୍ଶ ଦେଲା । ନୀଳାମ୍ବର ମିଶ୍ରେଙ୍କ ମୁଣ୍ଡକୁ ଏକ ଅଦ୍ଭୁତ ପରିକଳ୍ପନା ଜୁଟିଲା । ସେ ଯୋଜନା କଲେ କୁଞ୍ଜର ଏ ବଖରା ଗୁଡ଼ିକୁ ମଶାରି କନାରେ ଢ଼ାଙ୍କି ଦେବେ । ଏଠି ଆଉଥରେ ପଚାଶ ପଇସାର ଟିକଟ କଟାଯିବ । ଦରକାର ପଡ଼ିଲେ ଅଜା ସୀମାଞ୍ଚଳକୁ ଏଠି ପଇସାପେଢ଼ି ଧରାଇ ବସେଇଦେବେ । କୁଞ୍ଜ ଭିତରେ ଧିମା ଧିମା ନେଳିଆ ଆଲୁଅ ଜଳିବ । ସବୁ ସ୍ୱପ୍ନ ଭଳିଆ ଲାଗିବ । ଡ୍ରାମାମାନଙ୍କରେ ସ୍ୱପ୍ନ ଦୃଶ୍ୟଯାକ ଏମିତି ହିଁ ହୁଏ । ନିତ୍ୟା କହିଲା ଏକଥାକୁ ଏତେ ଡ଼ର କିଆଁ । ଆଜିକାଲି ସିନେମାରେ ଯାହାସବୁ ଦେଖଉଛନ୍ତି ଫାକାସି ଉଡ଼ିଯିବ । ତାକୁ ତ ଲୋକ ପିଇ ଯାଉଛନ୍ତି, ଆମର ଏତକ କଥାକୁ କାହାର ହେଲେ ଆପତ୍ତି ରହିବନି ।

ଶାନ୍ତନୁ ବିବାହ କୁଞ୍ଜ ଗଢ଼ିବା ଆରମ୍ଭହେଲା । କୁଞ୍ଜପଛପଟ କାନ୍ଥରେ ଧାଡ଼ିଏ ନାୟିକା ବିଭିନ୍ନ ଭଙ୍ଗିରେ ରହିଲେ । ସମସ୍ତେ ଉଲଗ୍ନା, କାମୋନ୍ମତ୍ତା, ତାଙ୍କର ଦେହର ଗଢ଼ଣ ରିଲିଫ୍ ଧରଣର ହେଲା । ମନ୍ଦିରର କାନ୍ଥରେ ଖୋଳା ହେଇଥିବା ମୂର୍ତ୍ତି ଭଳି ଲାଗିଲା । ବର୍ତ୍ତୁଳସ୍ତନ, ଘନଜଘନ କୃଶାଳଦେହ, ସୁଠାମଠାଣି । ନାୟିକାଯାକ ଖୁବ୍ ଲୋଭନୀୟ ଲାଗିଲେ । ଗୁଣ୍ଡୁଣି ହାତୀ ଭଳିଆ ଦେଖାଗଲେ । ନାୟିକାମାନଙ୍କ ସମ୍ମୁଖରେ ଶାନ୍ତନୁ ଋଷିଙ୍କ ପିତୁଳା । ମୂର୍ତ୍ତିଟି ସଂପୂର୍ଣ୍ଣ ବିବସନ । ଅସମ୍ଭାଳ ହେଇ ଆଉ ଗୋଟିଏ ପିତୁଳୀକୁ ଆଲିଙ୍ଗନ କରୁଛି । ପିତୁଳୀ ମୁହଁରେ ଚୁମ୍ବନ ଦେବା ଅବସ୍ଥା ଦେଖା ହେଇଛି । ଅସମ୍ଭାଳରେ ଋଷିଙ୍କ ଜଟା ଫିଟିଯାଇ ପିଠିରେ ଲୋଟୁଛି । ପିତୁଳୀଟି ସାକ୍ଷାତ ଜୀଅନ୍ତା ଯୁବତୀ ଭଳି ଦେଖାଯାଉଛି । ଶାନ୍ତନୁ ପିତୁଳୀର ନିତମ୍ବ ଉପରେ ଦୁଇ ହାତ ବେଢ଼େଇ ଆଣିଛନ୍ତି । ରମଣର ଦୃଶ୍ୟ । ଶାନ୍ତନୁ ଋଷିଙ୍କ କଥା ଛାଡ଼, ବାବାଜିମାନେ ଆଜି କାଲି ଏମିତି ଉଦ୍‌ବାର୍ଯ୍ୟ ହେଲେଣି । ଟୋକାଟାକିଳିଆ କହିବେ ଶଳା ବାବାଜିଟା ହେଇ ଚାନ୍ସ ମାରିଦେଲା । କୁଞ୍ଜର ଗୋଟିଏ ପଟେ ଶାନ୍ତନୁଙ୍କ ଭାରିଯା ଗଙ୍ଗା କୋପ ଦୃଷ୍ଟିରେ ଶାନ୍ତନୁ ଋଷିକୁ ଚାହିଁଛନ୍ତି । ଅଜା ଏତକ ମନରୁ ମିଶେଇ ଦେଇଛନ୍ତି । ମିଶ୍ରଙ୍କ ଚମତ୍କାର ପରିକଳ୍ପନା ଫଳରେ କୁଞ୍ଜଟି ବେଶ୍ ଉତୁରି ଆସିଲା । ଏହାହିଁ ହେଲା ଏବର୍ଷ କଳା କୁଞ୍ଜର

ବିଶେଷ ଆକର୍ଷଣ । ମିଶ୍ରେ ନିତ୍ୟାର ବୁଦ୍ଧିକି ପ୍ରଶଂସା ନକରି ରହିପାରିଲେନି । ନିତ୍ୟା ପ୍ରସ୍ତାବ ନ ଦେଇଥିଲେ ଓ ଭରସା ନ ଦେଇଥିଲେ ନୀଳାମ୍ବର ମିଶ୍ରେ ହୁଏତ ଏଭଳି କଥାରେ ହାତ ଦେଇନଥାନ୍ତେ ।

କଳାକୁଞ୍ଜ ପ୍ରଦର୍ଶନ ଆରମ୍ଭ ହେବା ଦିନରୁ ଶାନ୍ତନୁବିଭା କୁଞ୍ଜ ଦେଖିବା ପାଇଁ ଦେଖଣାହାରିଙ୍କ ସୁଅ ଛୁଟିଲା । ମୂର୍ତ୍ତିମାନେ ଯାହା ହେଇଥାନ୍ତୁ ବା ନହେଇଥାନ୍ତୁ 'ଏ'ଲଗେଇ ଦେବାରୁ ତୁଣ୍ଡକୁ ତୁଣ୍ଡହେଇ କଥା ଲମ୍ବିଗଲା । ସାରଳା ମହାଭାରତ, ଶାନ୍ତନୁ, ଗଙ୍ଗା ସବୁ କୁଆଡ଼େ ପଛରେ ପଡ଼ିଗଲେ, ହଜିଗଲେ । କଥା ହେଲା ରଷିଟା ହେଇକରି ଯୁବତୀଟାକୁ ପ୍ରେମକରୁଛି । ଛି ଛି ଏ କି ଅନ୍ୟାୟ କଥା । ଦଳେ ଭାବିଲେ ଏହା କୋଣାର୍କ ମନ୍ଦିରର କୌଣସି ଆଖ୍ୟାୟିକା ହେଇପାରେ । କିଏ କିଏ କହିଲେ ଦେଖହେ, ଶକୁନ୍ତଳାଙ୍କୁ ଦୁଷ୍ୟନ୍ତ ପ୍ରେମ କରୁଛନ୍ତି । ଆଉ ଆଶ୍ରମର ଋଷିକନ୍ୟାମାନେ ଉଲଗ୍ନା ହେଇ ଦୁଷ୍ୟନ୍ତ ରାଜାଙ୍କୁ ଉତ୍ତେଜିତ କରୁଛନ୍ତି । ଆଉ ଦଳେ ଟୋକା କହିଲେ ଏ ବିଶ୍ୱାମିତ୍ର ମେନକା ଦୃଶ୍ୟହେ । ମେନକା ଆହୁରି ପିଲାଟା ଜନ୍ମ କରିନି । । ଶିଳ୍ପୀ ଯାହା ଭାବି ଚିତ୍ର ସର୍ଜନା କରିଥାଉ, ପିତୁଳୀ ଗଢ଼ିଥାଉ, ଦର୍ଶକ ଦେଖି ଯାହା ଭାବିଲେ, ଯାହା ଘେନିଲେ, ଚିତ୍ର ସେମାନଙ୍କୁ ସେମିତିକା ଦୃଶ୍ୟହେଲା । ଦର୍ଶକ ମାନଙ୍କ କଥାରେ ମିଶ୍ରେ ମୁଣ୍ଡ ପୁରେଇଲେନି । ଦେଖିଲେ ତ ଅସମ୍ଭବ ଭିଡ଼ ହେଲା , ଆଉ ଅନ୍ୟ କଥାକୁ କାହିଁକି ସେ ପରବାୟ କରିବେ । ଡ଼ାବୁ ତ ମୂଳ । ଡ଼ାବୁ ମିଳିଲେ ହେଲା ।

କଳାକୁଞ୍ଜ ଉଦ୍‌ଘାଟନ ପାଇଁ ଥାଟରଜାଙ୍କୁ ନିମନ୍ତ୍ରଣ କରିବା ବିଧି ସଙ୍ଗତ ହେବ । ପଛକେ ରଜା ମଙ୍ଗନ୍ତୁ ବା ନ ମଙ୍ଗନ୍ତୁ । ମିଶ୍ରେ ଆଉ ନାରସେୟା ଛାମୁଙ୍କୁ ଭେଟି ଆଜ୍ଞା ଲୋଡ଼ିବାପାଇଁ ସକାଳୁ ସକାଳୁ ନଅରରେ ପହଞ୍ଚିଲେ । ମିଶ୍ରେ ପାରଳାଖେମଣ୍ଡିର ସିଙ୍ଗ କାମଟିଏ ରଜାଙ୍କୁ ଭେଟି ଦେବାପାଇଁ ସାଙ୍ଗରେ ନେଇଛନ୍ତି । ନାରସେୟାଗାରୁଙ୍କୁ ଚିହ୍ନିପକେଇ ଘାଟପାଇକ ସିଂହଦ୍ୱାରରୁ ବାଟ କଢ଼େଇ ନେଇ ସେମାନଙ୍କୁ ଦରବାର ହଲ୍‌ରେ ବସେଇ ଦେଲା । ଦରବାର ହଲ୍ କଳାକୁଞ୍ଜ ଭଳି ସଜିଆ ହେଇଛି । କାନ୍ଥରେ ରଜାଙ୍କ ପୂର୍ବପୁରୁଷଙ୍କ ତୈଳଚିତ୍ର । ଦୁଇଟା ଦଶାବତାର ଖୋଦେଇ ହାତୀ ଦାନ୍ତରେ ଝୁଲୁଛି ଗୋଲିଆ ଦର୍ପଣ । କାନ୍ଥ କଣେ କଣେ ମାର୍ବଲ ଓ ପୋର୍ସ୍‌ଲିନ୍‌ର ବିଦେଶି ନାୟିକା । ତଳେ ଦାମିକା କାର୍‌ପେଟ୍ ଓ ଛାତରୁ ରଙ୍ଗବେରଙ୍ଗର ଝାଡ଼ । ଅଧଘଣ୍ଟା ପରେ ରଜା ବିଜେ ହେଲେ । ଆମ କଥା ନିଆରା ଓ ରାଜା ରାଜୁଡ଼ାଙ୍କ କଥା ନିଆରା ।

ସେମାନେ ସୋଫାରୁ ଉଠିପଡ଼ି ରଜାଙ୍କୁ ଓଳଗି ହେଲେ । ରଜା ମିଶ୍ରେ ଓ ନାରସେୟାଙ୍କୁ ଦେଖି ଖୁସି ହେଇଗଲେ । ଦୁଃଖ ସୁଖ ପଚରା ଉଚରା ପରେ ମିଶ୍ରେ ସେମାନଙ୍କ ଆଗମନର କାରଣ ଜଣା କଲେ । ରଜା ଯାହା କହୁଥାନ୍ତି ଏ ଦୁହେଁ ଚିତ୍ତ ଚିତ୍ତ କରି ସଂଭ୍ରମରେ ମୁଣ୍ଡ ଟୁଙ୍ଗାରୁ ଥାନ୍ତି । ରାଣୀମା'ଙ୍କ ଦେହ ଅସୁଖ, ରଜା ବିଜେ ହେଇପାରିବେନି ବୋଲି ଜଣେଇଦେଲେ । କିନ୍ତୁ ରାଣୀମା'ଙ୍କ ଦେହ ଟିକିଏ ଭଲ ହେଇଗଲେ ସେ କିମ୍ୱା ପାଟରାଣୀ ଜେମାଙ୍କ ସାଙ୍ଗରେ କଳାକୁଞ୍ଜରେ ବିଜେ ହେବେ । ଏମାନେ ଖାଲି ଆଙ୍କା ନେଇ ଫେରିଲେ । ସ୍ଥିର ହେଲା ନାରସେୟାଗାରୁ ହିଁ ଉଦ୍‌ଘାଟନ କାର୍ଯ୍ୟ ବଢ଼େଇ ଦେବେ ।

ଡ଼ି.ନାରସେୟା ରାଧାବିନୋଦ ମହାପ୍ରଭୁଙ୍କୁ ସ୍ମରଣା କରି ନଡ଼ିଆ ବାଡ଼େଇଲେ । କଳାକୁଞ୍ଜ ଉଦ୍‌ଘାଟନ ହେଲା । ମିଶ୍ରେଙ୍କ ଇଙ୍ଗିତରେ ଗୌରୀ ନାରସେୟାଙ୍କୁ ଭାସ୍କର ମାଳ ପିନ୍ଧେଇ ଦେଲା । ନାରସେୟା ଧନାଢ଼୍ୟ ବ୍ୟକ୍ତି । ପାର୍ବତୀ ପୁରମ୍ ଗାଁରେ ତାଙ୍କର ଯଥେଷ୍ଟ ପ୍ରତିପତ୍ତି ଅଛି । ଏଣୁ ତାଙ୍କ ହାତରେ ମିଶ୍ରେ କାର୍ଯ୍ୟଟି ସଂପାଦନ କରି ବୁଦ୍ଧିମାନ କାମ କଲେ । କଳାକୁଞ୍ଜର ପ୍ରବେଶ ଦ୍ୱାର ଆଗରେ ମିଶ୍ରେ ନଚା କଣ୍ଢେଇଟିଏ ଆଉ ହସ କଣ୍ଢେଇ ହଳେ ଖଞ୍ଜି ଦେଇଥିଲେ । କଳାକୁଞ୍ଜ ଆରମ୍ଭ ହେବାକୁ ଘଣ୍ଟେ ଆଗରୁ ସିନେମା ଗୀତର ଗ୍ରାମଫୋନ୍ ରେକର୍ଡ଼ ଡ଼ାକବାଜି ଯନ୍ତ୍ରରେ ବାଜିଲା । ହସା କଣ୍ଢେଇ ହୋ ହୋ ହେଇ ହସି ଖଣ୍ଡ ମଣ୍ଡଳ କମ୍ପେଇ ଦେଲେ । ସେ ଦିନ ସଂଧ୍ୟାରେ ଡ଼ି.ନାରସେୟା ନିଜେ କଳାକୁଞ୍ଜ ଉଦ୍‌ଘାଟନ କରିଥିବାରୁ ଖୁସି ହେଇଯାଇ କାରିଗରମାନଙ୍କ ପାଇଁ ଶହେ ଟଙ୍କା ବକ୍‌ସିସ୍ ଦେଲେ । ନାରସେୟାଙ୍କ ସମ୍ମାନାର୍ଥେ ସେଦିନ କଣ୍ଢେଇ ଖୁବ୍ ନାଚିଲା । ଲାଙ୍ଗା ଓ ଦେହରେ ଓ୍ୱାଣୀ ପିନ୍ଧି, ଲମ୍ୱାବେଣୀ ଲମ୍ୱେଇ କଣ୍ଢେଇ ସରସ ଦିଶୁଥିଲା, ରେକର୍ଡ଼ରେ ବାଜୁଥିଲା :

ତନ୍ ଡ଼ୋଲେ ମେରା ମନ୍ ଡ଼ୋଲେ
ମେରା ଦିଲ୍‌କା ଗୟା କରାର୍‌ରେ
କୌନ ବଜାଏ ବାଂଶୁରିଆ

ଉଦ୍‌ଘାଟନ ସରିଲା ପରେ ମିଶ୍ରେ ନାରସେୟାଙ୍କ ମୁଣ୍ଡରେ ପାଟଶାଢ଼ିଟିଏ ବାନ୍ଧିଦେଲେ । ଏଇଟା ହେଲା ପାରଂପରିକ ଭେଟି । ଶାଢ଼ି ବାନ୍ଧିଲେ କଥା ସରିଲା ।

ଏହାଠୁ ବଳି ଆଉ ମର୍ଯ୍ୟଦା ନାହିଁ । ନାରସେୟା, ମିଶ୍ରେ ଓ କାରିଗରଙ୍କ ଗହଣରେ କଳାକୁଞ୍ଜ ବୁଲାବୁଲି କରି ଦେଖିଲେ । କଳାକୁଞ୍ଜ ଆରମ୍ଭ ହେବା ପରେ ମିଶ୍ରେଙ୍କ କାମ ବସ୍ତୁତଃ କମି ଆସିଲା ।

ପାର୍ବତୀପୁରମ୍‌ରେ କଳାକୁଞ୍ଜ ଦେଢ଼ମାସ ରହିବ । ପନ୍ଦର ଦିନ ଖଣ୍ଡେ ବିତିଗଲାଣି । କଳାକୁଞ୍ଜର ସୁନାମ ଏ ଖଣ୍ଡମଣ୍ଡଳରେ ବ୍ୟାପିଗଲା । ତୁଣ୍ଡବାଇଦ ସହସ୍ର କୋଶ । କଥା କାନକୁ କାନ ହେଇ ରଜାଙ୍କ ନଅର ରାଣୀହଂସପୁରରେ ପହଞ୍ଚିଲା । କଳାକୁଞ୍ଜକୁ ନେଇ କେତେ କଉତୁକିଆ ଆଚମ୍ବିତ କଥା ଜେମା ଶୁଣୁଛନ୍ତି । ସେ ମା'ଙ୍କୁ ଲାଗାଇଲେ କୁଞ୍ଜ ଦେଖି ଯିବା ପାଇଁ ।

ଦିନେ ନଅରରୁ ହଠାତ୍ ଖବର ଆସିଲା ପାଟରାଣୀ ଓ ବଡ଼ ଜେମା ସନ୍ଧ୍ୟାରେ ବିଜେ ହେବେ । ନୀଳାମ୍ବର ମିଶ୍ରେ ଚଂଚଳ ହେଇ ଉଠିଲେ । ନିତ୍ୟାନନ୍ଦ ସୀମାଞ୍ଚଳ ଗୌରୀ ଆଉ ଯେତେକ ଥିଲେ ସମସ୍ତଙ୍କୁ ଡ଼ାକିହାକି ଖବର ଦେଲେ । ସେ ସନ୍ଧ୍ୟାରେ ଦେଖଣାହାରିଙ୍କ ପାଇଁ କଳାକୁଞ୍ଜ ଟିକଟ ବିକା ବନ୍ଦ ରହିଲା । ଝଡ଼ାଝଡ଼ି ପୋଛାପୋଛି ରଙ୍ଗ ବନକ ଝଳି ସବୁ ଦୋହରା ହେଲା । ମନେ ହେଲା ପିତୁଳାପିତୁଳୀ ଯାକ ଜୀବନ୍ତ ହେଇଗଲେ ପାଟରାଣୀ ଓ ବଡ଼ଜେମାଙ୍କ ପାଇଁ ।

ସନ୍ଧ୍ୟା ହେଲାରୁ ନଅରରୁ କଳାକୁଞ୍ଜ ଯାଏ ଅଧମାଇଲେ ରାସ୍ତା ଟେରାବାଡ଼ ପଡ଼ିଲା । ରାଣୀ ଜେମା ଅସୂର୍ଯ୍ୟଂପଶ୍ୟା । ଇତର ଲୋକର ଛାଇ ପଡ଼ିଲେ ମାରା ହେଇଯିବାର ଭୟ । ଚାରି ଆଡ଼େ ଏକ ତ୍ରସ୍ତ ଭାବ, ଏକ ରାଜକୀୟ ନିରବତା । ନୀଳାମ୍ବର ମିଶ୍ରେ, ନିତ୍ୟାନନ୍ଦ ଆଉ କୁଞ୍ଜର କାରିଗରମାନେ ନିଜନିଜର ସାଇତା ଲୁଗାପଟା ପିନ୍ଧିଲେ । ମିଶ୍ରେ ସୁପର୍‌ଫାଇନ୍ ସଫା ଧୋତି, ଦେହରେ ହାପ୍‌ସାର୍ଟ୍ , କାନ୍ଧରେ ପାଟ ଓଢ଼ଣୀ ଧରିଲେ । ନିତ୍ୟାନନ୍ଦ ବି ସିମିତି ବେଶପୋଷାକ ହେଲା । ତାକୁ ପାଟ ଓଢ଼ଣୀ ବା ଦେବ କିଏ, ସେ ଯାଫଲ କସର ଫିକାଗୋଲାପି ରଙ୍ଗର ଗାମୁଛା କାନ୍ଧରେ ପକେଇଲା । ଗୌରୀର ସଜାଣ ଆଉ ଦେଖିବ କ'ଣ । ବାନ୍ଧର ଲାଙ୍ଗା, କାଞ୍ଚଲା ଓ ତା ଉପରେ ଓ୍ୱାଣୀ । ସମସ୍ତେ ଅପେକ୍ଷାରେ ରହିଲେ ରାଣୀ ବିଜେ ହେବେ ।

କିଛି ସମୟ ପରେ ଘଡ଼ଘଡ଼ି ଭଳି ପାଟିଟେ କରି ଘାଟ ପାଇକ ସ୍ୱର

ଲଗେଇଲା । ସମସ୍ତଙ୍କୁ ସାବଧାନ କରିଦେଲା । ବୀରାଧିବୀରବର, ପାର୍ବତୀପୁରଗଡ଼ ଅଧୀଶ୍ୱର, ଗଙ୍ଗେଶ୍ୱର ମହାପ୍ରତାପୀ ଶ୍ରୀ ଶ୍ରୀ ଉଦୟଭାନୁ ଥାଟମହାରାଜାଙ୍କ ପଟ୍ଟମହିଷୀ ଦେବୀଗୁଣ ସମ୍ପନ୍ନା, ପ୍ରଭାମୟୀ କନକ ମଞ୍ଜରୀ ମହାଭାଗା ଓ ତାଙ୍କ ଗହଣରେ ଅପରୂପ ଲାବଣ୍ୟଭରା, ମଞ୍ଜୁଳା ଢେମା ପଦ୍ମମାଳିନୀ ବିଜେ ହେଉଛନ୍ତି । ସାବଧାନ! ସାବଧାନ!

ତା ପରେ ରାଜ ନଅରରୁ ପଟୁଆରଟିଏ ପବନର ହିଲ୍ଲୋଳ ଭଳି ଧୀରେ ଧୀରେ କଳାକୁଞ୍ଜ ଆଡ଼କୁ ଭାସି ଆସିଲା । ପଟୁଆର ଆଗରେ କୁଳ ପୁରୋହିତ ଶ୍ରୀ ବାଲାଜି ବିଶ୍ୱାସ ରାୟଗୁରୁ, ତାପଛକୁ ନଅର ଦେବାନ ଶ୍ରୀ ଲକ୍ଷ୍ମୀନାରାୟଣ ଦ୍ୟାନ ସାମନ୍ତରାୟ, ତା ପଛକୁ ରୁନ୍ଧା ପାଲିଙ୍କିରେ ପାଟରାଣୀ ଓ ସାଙ୍ଗରେ ବଡ଼ ଢେମା । ଚାରିଜଣ କୋବାଲିଆ ଭେଣ୍ଡିଆ ପାଲିଙ୍କି କାନ୍ଧେଇଛନ୍ତି । ମୁଣ୍ଡରେ ପାଗ ଭିଡ଼ିଛନ୍ତି । କଳା ମୁଗୁନି ପଥର ଦେହ ଭଳି ଲାଗୁଛି । ପାଲିଙ୍କି ପଛରେ ରହିଛନ୍ତି ଚାରିଜଣ ଦାସୀ ଓ ଦୁଇଜଣ ଆଲଟଧାରିଣୀ ।

ପାଲିଙ୍କି ରକ୍ତ ଚନ୍ଦନ କାଠର । ତା ଉପରେ ହାତୀ ଦାନ୍ତର ଗୁଣାଗାର କାମ ପିନ୍ଧେଇ ଦିଆ ହେଇଛି । ଲତା ଡ଼ାଳି ଫୁଲ ପତ୍ରରେ ପଲଙ୍କ ଛାଇ ହେଇଯାଇଛି । ପାଲିଙ୍କି ଦେହରେ ହାତୀ ଦାନ୍ତର ଆଠଟି ସଖୀ ଖଞ୍ଜା ହେଇଛି । ସେମାନେ ଆଲଟ ଚାମର ଧରିଛନ୍ତି । କାନ୍ଧେଇବା ଦଣ୍ଡାର ମୁହଁ ମଗର ଆକୃତିର, ପିତଳ ଢ଼ଳେଇ । ପାଲିଙ୍କି ପଟୁଆରରେ ପହଞ୍ଚେଇ ପହଞ୍ଚେଇ ହେଇ ଆସୁଛି । ପଟୁଆର କଳାକୁଞ୍ଜ ଦୁଆରେ ଅଟକିଲା । ଦାସୀମାନେ ପଲଙ୍କର କବାଟ ଫିଟେଇ ଧରିଲେ । ପାଟରାଣୀ ଖାଇଲା ଗୋଡ଼ ପାହାଡ଼ା ଉପରେ ପକେଇଲେ । ଲାଗିଲା ପଦ୍ମଫୁଲଟିଏ ଫୁଟିଗଲା । କି ସୁନ୍ଦର ପାଦ ସେ । କୁମ୍ଭ ଥାଇ ଅଳତା ପିନ୍ଧା ହେଇଛି । ତାରି ଭିତରେ ଗୋଲିଆ ହେଇ ଟୋପା । ଆଙ୍ଗୁଳିମାନଙ୍କରେ ମୁଦି ଓ ଝୁଣ୍ଟିଆ । ନଖ ମଞ୍ଜୁଆତିରେ ପଚିଆ ହେଇଛି । ଗୋଡ଼ରେ ଚେଇନ୍ ପାଉଁଜୁଲୁ ସାଙ୍ଗକୁ ବଳା ଚମତ୍କାର ମାନୁଛି । ପାଟରାଣୀ ଗୋଡ଼ ତଳେ ଦେଲେ । ଝୁମ୍ କରି ଶବ୍ଦ ହେଲା । କବି ଜୟଦେବ ହୁଏତ ଏମିତି ପଦ ଯୁଗଳ ଦେଖି ଭଣତି କରିଥିଲେ ' ଦେହି ପଦପଲ୍ଲବମୁଦାରମ୍ ' । ରାଣୀ ଏଥର ଡ଼େବିରି ଗୋଡ଼ କାଢ଼ିଲେ । ଦାସୀମାନେ ରାଣୀଙ୍କ ଶ୍ରୀଅଙ୍ଗକୁ ଫୁଲ ଭଳି ପଲଙ୍କ ଭିତରୁ ଉଠେଇ ଆଣିଲେ । ସେ ପଲଙ୍କରୁ ବାହାରି ଠିଆହେଲେ କଳାମେଘରୁ ଜହ୍ନ ଉଇଁଲା ପରି । ତାଙ୍କ ପଛେ ପଛେ ଢେମାମଣି ଜହ୍ନ ସାଙ୍ଗରେ ତରା ଭଳି । ଦୁହେଁ ଏବେ ଆଗକୁ

ବଢ଼ିଲେ । ଉଭୟଙ୍କ ଚାଲିରେ ମରାଳର ବିଳାସ । ନିଶବ୍ଦ କଳାକୁଞ୍ଜ ଭିତରେ ଝୁଣ୍ଟିଆ ଓ ପାଉଁଜୁଲୁର ରୁଣୁଝୁଣୁ ଏବଂ ସିଲ୍କ ପାଟର ଖସ୍‌ଖାସ୍ ଶବ୍ଦ ।

ପାଟରାଣୀ ଢଉରଙ୍ଗର ମାଛଧଡ଼ି ପାଟ ପିନ୍ଧିଛନ୍ତି । ଅଙ୍ଗରେ ସୁନାରୁପା ଜରି ଖଚିତ କାଞ୍ଚଳା । ଅଣ୍ଟାରେ ସୁବର୍ଣ୍ଣ ଅଣ୍ଟାପାତିଆ । ଗଳାରେ ଚାପସରି ଜିଗିରି ନାନୁ ଓ ଖାସୁମାଳ । ବିପୁଳ ସ୍ତନ ଯୁଗଳ । ମୁଣ୍ଡରେ ଖୋସା ପାରିଛନ୍ତି । ସୁନାର ଭ୍ରମରୀମାନେ ଗଭା ମଣ୍ଡିଛନ୍ତି । ଝିନ୍ନ ଉପରାଣ ଦେଇ ଶୋଭା ବାରି ହେଇପଡୁଛି । ବୟସ ପଚାଶରୁ ଉର୍ଦ୍ଧ୍ୱ ହେଲେ ବି ମୁହଁରେ ଲାବଣ୍ୟ । କେବଳ ରକ୍ତଚାପ ଯୋଗୁ ଆଖିତଳେ ଇଷତ୍ କଳାବଳୟ । କଳର ପାନଖିଲି ମୁହଁର ଗାମ୍ଭୀର୍ଯ୍ୟ ବଢ଼େଇ ଦେଇଛି । ବଡ଼ ଜେମାଙ୍କ ସୁନାରଙ୍ଗର ଦେହ । ପିନ୍ଧିଛନ୍ତି କ୍ଷୀରୋଦର ପାଟ । ନିତମ୍ବକୁ ସ୍ପର୍ଶ କଲା ଭଳି ଝୁମ୍ପା ଥାଇ ବେଣୀ । ମୁଣ୍ଡରେ ଅଳକାପଟି, ମଥାମଣି । ରଜାଘର ତ ଅଳଂକାରରେ ଦେହ ଗରୁ ହେଇଯାଇଛି । ରାଣୀ ଓ ଜେମା ଉଭୟେ ଉନ୍ନତ ଜଘନା, ଜେମା ଏ ସବୁ ପରିପାଟୀ ଭିତରେ ବି ଲାଗୁଛନ୍ତି ଉଦାସୀ । ଆଜି ଯାଏଁ ପାର୍ବତୀପୁରମ୍ ଉଆସର ଏ କଳୀଟିକୁ ଚୁମ୍ବିବାପାଇଁ ଭ୍ରମର ଆସିନି ।

ମିଶ୍ରେ ନାରୀକେଳ ଭେଟି ଦେଇ କଳାକୁଞ୍ଜ ଦୁଆରରେ ବନ୍ଦେଇଲେ । ପାର୍ବତୀପୁରମର ରାଜ ପୁରୋହିତଙ୍କ ଆଗରେ ଆପଣାର ରୂଢ଼ୀ ଦେଖେଇବାପାଇଁ ପ୍ରଶସ୍ତିଟିଏ ବୋଲିଲେ । ପାଟରାଣୀ ବୋଧହୁଏ ସଂସ୍କୃତ ଅଳ୍ପ ବହୁତ ବୁଝୁଛନ୍ତି । ଲାଗିଲା ଘେନିଲେ । ତାଙ୍କ ମୁହଁରେ ପ୍ରଶାନ୍ତି ବିରାଜିଲା ।

ଏବେ କଳାକୁଞ୍ଜ ପ୍ରଦର୍ଶନ କରିବା ଆରମ୍ଭ ହେଲା । ପ୍ରଥମ କୁଞ୍ଜରେ ରାଧାକୃଷ୍ଣ ଯୁଗଳଙ୍କ ଆଗରେ ନୀଳାମ୍ବର ପାର୍ବତୀପୁରମ୍ ଅଧୀଶ୍ୱରଙ୍କ ଐଶ୍ୱର୍ଯ୍ୟ କାମନା କରି ବନ୍ଦନା କଲେ । ପୂଜା ଅର୍ଚ୍ଚନା କରି ପାଟରାଣୀଙ୍କ ହାତକୁ ଲାଗିତୁଳସୀ ବଢ଼େଇଲେ । ପାଟରାଣୀ ଓ ଜେମା ତୁଳସୀ ସେବା କଲେ । ତା ପରେ କୁଞ୍ଜ ପରେ କୁଞ୍ଜ । ନୀଳାମ୍ବର ମିଶ୍ରେ ଭାଟଙ୍କ ଭଳି ପ୍ରଗଳ୍ଭ ହେଇ ବୁଝେଇବାରେ ଲାଗିଥାନ୍ତି । ରାଜନଅରର ଦର୍ଶକ ମାନେ ବିନା ମନ୍ତବ୍ୟରେ ସବୁ କଥା ଶୁଣି ଯାଉଥାନ୍ତି ।

ଦ୍ରୌପଦୀ ବସ୍ତ୍ରହରଣ ପାଖରେ ପାଟରାଣୀ ଦଣ୍ଡେ ଅଟକି ଗଲେ । ଦ୍ରୌପଦୀଙ୍କୁ ଚାହିଁଲେ, କୃଷ୍ଣଙ୍କୁ ଅନେଇଲେ ଆଉ ଗଦା ହୋଇଥିବା ଶାଢ଼ି ଆଡ଼େ ଆଖି ପକେଇଲେ । ମିଶ୍ରେଙ୍କୁ କିଛି କହିବେ ବୋଲି ଭାବିଲେ । ପୁଣି ନୀରବ ହେଇଗଲେ । ଛେମାଙ୍କ ମୁହଁ ଲାଲ୍ ପଡ଼ିଗଲା । ସେ ହୁଏତ ଭାବିବସିଲେ ନିଜେ ଦ୍ରୌପଦୀ ହେଇଯାଇଛନ୍ତି ଆଉ ତାଙ୍କ ଅଙ୍ଗରୁ କିଏ ଜଣେ ଶାଢ଼ି ଓଟାରି ନେଇଯାଉଛି । ସେ କିଏ ଆଉ ହେଇପାରେ । ହୁଏତ ମଞ୍ଜୁଷାର ଯୁବରାଜ ଯିଏ କଥା ଦେଇ ମଧ କଥା ରଖିପାରି ଲେନି । ପାଟରାଣୀ ଝିଅ ଆଡ଼େ ଚାହିଁଲେ । ଝିଅର ମନକଥା ଘେନିଲେ । ପୁଣି ଆଗେଇଲେ ।

କୁଞ୍ଜ ପରେ କୁଞ୍ଜ ପାରି ହେଇ ସେମାନେ ଆଗଉଛନ୍ତି । ଭାଗବତ ରାମାୟଣର କଥାବସ୍ତୁ ମୂର୍ତ୍ତିମନ୍ତ ହେଇଯାଉଛି । ଲାଗୁଛି ରାଣୀ ପିତୁଳା ଓ ପ୍ରିତୁଳୀଙ୍କ ସୌନ୍ଦର୍ଯ୍ୟ ମଧୂ ପିଇଯାଉଛନ୍ତି । ସବୁଠୁ ଛେମାମଣି ଏମାନଙ୍କୁ ଉପଭୋଗ କରୁଛନ୍ତି । ତାଙ୍କର ନିଃସଙ୍ଗତାକୁ କଳାକୁଞ୍ଜର ପିତୁଳାମାନେ ଚଂଚଳିତ କରି ମାଦକତା ଭରି ଦେଉଛନ୍ତି । ସେ ଏକ ଆଘ୍ରାଣିତ ସମ୍ବେଦନା ଭିତରେ ଉଲ୍ଲସିତ ହେଇ ଉଠୁଛନ୍ତି ।

ନିତ୍ୟାନନ୍ଦ ଭାବୁଥିଲା ସେ ପାଟରାଣୀଙ୍କୁ ଓ ଛେମାଙ୍କୁ ଶାନ୍ତନୁ ବିବାହ ପ୍ରସଙ୍ଗର ବ୍ୟାଖ୍ୟା ନିଜେ କରିବ । ତାର କିନ୍ତୁ ସନ୍ଦେହ ହେଲା ଅଜା ଏଭଳି ଏକ ସୂବର୍ଣ୍ଣ ସୁଯୋଗ ନିତ୍ୟାନନ୍ଦ ଭଳି ଏକ ଅର୍ବାଚୀନ କାରିଗରକୁ ବଢ଼େଇ ଦେବେ । ଅଜା ବଡ଼ ରସିକ । ସତକୁ ସତ ସେମାନେ କୁଞ୍ଜଆଗରେ ପହଞ୍ଚିଯିବାରୁ ଅଜା ଗଳା ସଫା କରି ସାରଳା ମହାଭାରତରୁ ଦିଚାରିପଦ ଗାଇ ଦେଇ କୁଞ୍ଜର ମହିମା ବୁଝେଇବାରେ ଲାଗିଲେ । ସେ କିମିତି କାବ୍ୟଭାଷାରୁ ଏ ପ୍ରସଙ୍ଗ ନେଇ ଚିତ୍ରଭାଷାରେ ରୂପାନ୍ତରିତ କରି ଉପସ୍ଥାପନା କରିଛନ୍ତି । ରାଜପୁରୋହିତ ଓ ଦେବାନ ଏହି କୁଞ୍ଜର ଦୃଶ୍ୟମାନ କାମଭାବନାକୁ ହୃଦୟଙ୍ଗମ କରିପାରି ନିଜକୁ କିମିତି ଅପ୍ରସ୍ତୁତ ଅନୁଭବ କରୁଥିଲେ । ପାଟରାଣୀ ଓ ଛେମାଙ୍କ ଆଗରେ ଏଭଳି ଏକ ଦୃଶ୍ୟ ଶାଳୀନ ନା ଅଶାଳୀନ, ସେଥିନେଇ ସେମାନେ ଚିନ୍ତିତ ଥିଲେ । ସେମାନେ ହୁଏତ ଭାବୁଥିଲେ ମହାରାଜା ପାଖରେ ନାହାନ୍ତି ନହେଲେ ପାଟରାଣୀ ଲଜ୍ଜିତ ହେଇପଡ଼ିଥାନ୍ତେ । ସେମାନେ ପାଟରାଣୀଙ୍କୁ ସଂଭ୍ରମରେ ଅନେଇ ରହିଲେ । ତାଙ୍କର କି ପ୍ରତିକ୍ରିୟା ହେବ ଜାଣିବାପାଇଁ । ରାଣୀଙ୍କ ମୁଖରୁ କ'ଣ ଉଚ୍ଚାରଣ ହେବ ଶୁଣିବାପାଇଁ । ଏ ପରିସ୍ଥିତି ଏକ ବିପତ୍ତି ଭଳି ଲାଗିଲାଣି । ମିଶ୍ରେ ଲକ୍ଷ୍ୟ କଲେ ନଅରର

ସମସ୍ତେ ସ୍ତବ୍ଧ । ଯାହା କେବଳ ଟିକିଏ ଦୂରରେ ଠିଆହେଇଥିବା ଦାସୀଙ୍କ ଭିତରେ ସାମାନ୍ୟ ଗୁଞ୍ଜରଣ । ଦାସୀମାନେ ହୁଏତ ଚାହୁଁଛନ୍ତି ଫୁଲ ହେଇ ଫୁଟିଯିବାପାଇଁ । ସୁଗନ୍ଧ ବିତରିବାପାଇଁ କିନ୍ତୁ ରାଣୀଙ୍କ ଉପସ୍ଥିତିରେ ସବୁ ଯିମିତି ବରଫ ପାଲଟି ଗଲା ।

କଳାକୁଞ୍ଜ ଭିତରର ଶୀତଳ ନିରବତାକୁ ଭାଙ୍ଗିଦେଇ ମନେ ହେଲା ପାଟରାଣୀ ଛଳଛଳ ହେଲେ । ତାଙ୍କ ଭିତରେ ନାରୀର ସମ୍ବେଦନତା ଭାଷା ଖୋଜିଲା । ସେ ଚଂଚଳ ହେଲେ । ଲାଗିଲା ସେ ଆଉ ଦଣ୍ଡେ ପରେ ନଦୀଭଳି ବହିଯିବେ । ଢେମାଙ୍କ ଦେହରେ ଓ ମନରେ ମଧ୍ୟ ପ୍ଲାବନ । ସେ ଦୁହେଁ ନଅରର ସବୁ ସଂଭ୍ରମ, ସବୁ ସଂଯମ, ସବୁ ଅହେତୁକ ଆବରଣ ଫେଡ଼ିଦେଇ ଶୈଳ୍ପିକ ଚେତନାର ଉଷ୍ମତା ଭିତରେ ନିଜ ନିଜକୁ ପହଁରେଇ ଆଣିବାପାଇଁ ଚାହିଁଲେ । ଏ ପରିବର୍ତ୍ତନ ସମ୍ପୂର୍ଣ୍ଣ ସ୍ୱାଭାବିକ ଥିଲା । ନିତ୍ୟାନନ୍ଦ ଓ ଗୌରୀ ଲକ୍ଷ୍ୟ କରୁଥିଲେ ଚିତ୍ରଭାଷାର ଅନାବିଳ ନିବିଡ଼ତା । ଶେଷରେ ପାଟରାଣୀ ମିଶ୍ରେଙ୍କ ଆଡ଼କୁ ଚାହିଁଲେ । କୋଇଲି କୁହୁ କଲା ଭଳି ସେ ପଦଟିଏ ଉଚ୍ଚାରଣ କଲେ । 'ଖୁବ୍ ବଢ଼ିଆ ଲାଗିଲା '। ସେ ଉଚ୍ଚାରଣ ଭିତରେ ତାଙ୍କର ଓ ତାଙ୍କ କନ୍ୟାର ଅନ୍ତରର ପ୍ରେମ ଅନୁଭୂତି ଭରି ରହିଥିଲା । ମିଶ୍ରେଙ୍କ ପାଇଁ ଏହି କଥା ପଦକହିଁ ଯଥେଷ୍ଟ ଥିଲା । ସେ କୃତକୃତ୍ୟ ହେଇଗଲେ । ଏହା ହିଁ ଥିଲା ରାଜପୃଷ୍ଠପୋଷକତା ଓ ରାଜାନୁଗ୍ରହତା । ଏଥିରେ ଭରି ରହିଥିଲା କଳାନୁଗ୍ରହତା ଓ ନାନ୍ଦନିକତାର ଆକର୍ଷଣ । ସେ ଅନୁଭବ କଲେ ଏଇ କଥା ପଦକରେ ହିଁ ଯେମିତି ତାଙ୍କର ସମସ୍ତ ଶ୍ରମ ସାର୍ଥକ ହେଇଯାଇଛି । ଏଇ ପଦକ ବିଦଗ୍ଧ ବାକ୍ୟରେ ତାଙ୍କର ଶୈଳ୍ପିକ ଚେତନା ବର୍ଣ୍ଣମୟ ହେଇଯାଇଛି ।

କଳାକୁଞ୍ଜର ବଳକା ଦିନଯାକ ଭଲରେ ଭଲରେ କଟିଲା । କଳାକୁଞ୍ଜ ବେପାର ଧୁମ୍ ଧାମ୍ ଚାଲିଲା । ପ୍ରତିଦିନ ଲୋକଙ୍କ ଭିଡ଼ ତିନିଶହ ଚାରିଶହରୁ କମ୍ନୁହେଁ । ବେଳେ ବେଳେ ଖାସା ଲୋକ ଆସିଲେ ମିଶ୍ରେ ଆଗରୁ ଖବର ପାଇଯିବେ । ଧୋତିଟେ ହାପ୍ସାର୍ଟ୍‌ଟିଏ ପିନ୍ଧି, ଗାମୁଛାଟେ କାନ୍ଧରେ ଧରି କଳାକୁଞ୍ଜ ଆଗରେ ଠିଆ ହେଇପଡ଼ିବେ । କୁଞ୍ଜଭିତରେ ସେମାନଙ୍କ ସାଙ୍ଗରେ ଥାଇ ବୁଲେଇ ଆଣିବେ । ପାର୍ବତୀପୁରମ୍ ଓ ତା ଆଖ ପାଖ ଗାଁ ପାଲ୍‌କୋଣ୍ଡା, କୋଟ୍ରୁରୁ, ସାଲୁରୁ, ଉଣ୍ଡୁକୁରୁ, ନାଗୁରୁ ରୁ ଲୋକମାନେ ଶଗଡ଼ରେ ରିକ୍ସାରେ ସାଇକଲରେ ବ ସ୍‌ରେ ଓ ଚାଲିକରି ଛୁଟିଆସିଲେ କଳାକୁଞ୍ଜ ଦେଖିବାପାଇଁ ।

କଳାକୁଞ୍ଜର ନାନ୍ଦନିକ ଅନୁଭୂତି ନିତ୍ୟାର ମନ ଓ ପ୍ରାଣକୁ ନୂଆ ଉନ୍ମାଦନାରେ ଭରିଦେଲା । ପୁରାଣପଢ଼ା ଓ ଯନ୍ତ୍ରମାନିକୁ ପାଥେୟ କରି ଲୋକଙ୍କ ପାଖରେ ପହଞ୍ଚିବା ଓ ଏକ ସର୍ଜନଶୀଳ ଅଭିବ୍ୟକ୍ତିକୁ ନେଇ ନିଜକୁ ଅନ୍ୟମାନଙ୍କ ଭିତରେ ଖୋଜିବା ମଧ୍ୟରେ ଆକାଶ ପାତାଳ ଫରକ । ଗୋଟିକରେ ସାମାଜିକ ବ୍ୟବସ୍ଥାର ତାଡ଼ନା ଓ ଅନ୍ୟଟିରେ ପ୍ରାଣ ବିକଶିତ ହେବାର ସୁଯୋଗ । ନିତ୍ୟା ଅନୁଭବ କଲା ପୁରାଣ ପାଠ ଓ ଠାକୁର ପୂଜା ଦିମାସ ବନ୍ଦ ହେଇଯିବାରୁ ସିମିତି କିଛି ସାମାଜିକ ବା ଧାର୍ମିକ ଅଭାବବୋଧ ସୃଷ୍ଟି ହେଲାନି । ପିତୁଳୀ ସର୍ଜନା ଓ ସର୍ଜନା ପ୍ରକ୍ରିୟା ଭିତରର ମାନସିକତା ନିତ୍ୟାନନ୍ଦ ପାଇଁ ବହୁତ କିଛି ପ୍ରେରଣା ଯୋଗାଇ ଦେଲା । ପିତୁଳୀମାନଙ୍କୁ ପ୍ରତ୍ୟହ ଝଡ଼ାଝଡ଼ି ପୋଛା ପୋଛି କରିବା, ଝଲି କରିବା ଓ ମୁଖସିଙ୍ଗାର କରିବାର ନୀତି ନିୟମ ତାକୁ ପୂଜାପାଠର ସଂଯମ ଆଣିଦେଲା । ପ୍ରତିଦିନ କୁଞ୍ଜରେ ଶହ ଶହ ଦେଖଣାହାରିଙ୍କ ମନରେ, ପ୍ରାଣରେ ଆନନ୍ଦ ସଞ୍ଚରେଇ ଦେବା କମ୍ କଥା ନୁହଁ । ପୁରାଣର କାବ୍ୟଭାଷା ସହିତ ଚିତ୍ରଭାଷାର ବର୍ଣ୍ଣାଢ଼୍ୟ ସଂଯୋଗରେ ରୂପ ସୃଷ୍ଟିକରିବା ହିଁ କଳାକୁଞ୍ଜ । ଏହି ସଂଯୋଗ ବା ସମନ୍ୱୟର ଉଦାହରଣ ହେଇ ରହିଗଲା ଶାନ୍ତନୁ ବିବାହ ପ୍ରସଙ୍ଗ । ଯାହା ହେଉ ଅଜା ତାର ପ୍ରସ୍ତାବ ଗ୍ରହଣ କଲେ ଓ ତାର କଳ୍ପନାକୁ ଶୈଳ୍ପିକ ମାନ୍ୟତା ମିଳିଲା, ତା ପୁଣି ଜୀବନରେ ପ୍ରଥମ କରି । ସେତିକିରେ ନିତ୍ୟାନନ୍ଦର ଆନନ୍ଦ ଓ ବିଶ୍ୱାସ ଦ୍ୱିଗୁଣିତ ହେଇଗଲା ।

କଳାକୁଞ୍ଜ ସଂଧ୍ୟା ପାଞ୍ଚରୁ ଖୋଲା ହେଇ ରାତି ନଅ ପର୍ଯ୍ୟନ୍ତ ଚାଲେ । ମାଇକିନିଆ ଯାକ କଳାକୁଞ୍ଜ ଦେଖିବାକୁ ଭାରି ରଙ୍କୁଣା । ପିଲା ପିଚିକା ପଲେ ହାତରେ କାଖରେ ଧରି, ପାତ ପକେଇ ମୁଣ୍ଡ କୁଣ୍ଡେଇ, ଟଭା ଫାଳିଆ ଖୋସାଟି ମାନ ବାଗରେ ପକେଇଦେଇ ଫୁଲମାଳ କାନସନ୍ଧାକୁ ଖୁଞ୍ଚି , ଝଲମଲ ଶାଢ଼ି ପିନ୍ଧି ଟିକଟ କାଉଣ୍ଟର ପାଖରେ ସନ୍ଧ୍ୟା ଚାରି ବେଳକୁ ହାଜର । ସେମାନେ ଗାଣ୍ଡିସୁନ୍ଦରୀ ଆମ୍ବ ଭଳି ସେମାନଙ୍କ ଗାଲକୁ ରଙ୍ଗେଇ ଥାନ୍ତି । ଆଖି ପୋତି ହେଇଗଲା ଭଳି କଜଳ ନାଇଥାନ୍ତି , ଓଠରେ ଅତଡ଼ା ଢ଼େଇଁଲା ଭଳିଆ ଦାନ୍ତକୁ ମିଶାଇ ଆଚୁ ବୋଲି ହେଇଥାନ୍ତି । ସେମାନେ କିଏ ହେଲେ ବ୍ରେସିୟର ପିନ୍ଧିନଥାନ୍ତି । ସ୍ତନମାନେ ଦଲଦଲ, ଓଲମ୍ବିତ, ଦୋଳାୟିତ ଓ

ବେଳେବେଳେ ମଧ ନିସ୍ତବ୍ଧ ହେଇ ରହିଥାନ୍ତି । ସେମାନଙ୍କ ସେଥି ପ୍ରତି ନା ନିଘାଥାଏ ନା ଥାଏ ସଙ୍କୋଚ । ବେଳେବେଳେ ବିଭିନ୍ନ କଉତୁକିଆ ଦୃଶ୍ୟ ଆଖିରେ ପଡୁଥାଏ । କାନ୍ଧରେ ଝୁଲିଥିବା ରଙ୍କୁଣା ଶିଶୁଟି ସାର୍ଟିନ୍ କନାର ଲୋଚାକୋଚା ବ୍ଲାଉଜ୍ ଭିତରୁ ନିର୍ଦ୍ଧୟ ଭାବେ ଘୋଷାଡ଼ି ଆଣି ସ୍ତନ ଫାଳେ ଚୁଚୁମୁଥାଏ ତ ଆଉ ଫାଳେ ନିର୍ବିକାର ଭାବେ ବୁକୁଉପରେ ଝୁଲି ରହିଥାଏ । ସେ ଥନକୁ ଲଙ୍କାଆମ୍ବ ଭଳିଆ ଧୋତଡ଼ା କରି ଦେଇଥାଏ । ଥନକୁ ନେଇ ଯେ ଏତେ କାବ୍ୟ କବିତା ଏତେ ରୂପ ବର୍ଣ୍ଣନା ଏମାନେ କୁଆଡୁ ହେଜିବେ । ହାତଗୋଡ଼ ଯିମିତି, ଥନ ବି ସିମିତି । ସେତେବେଳକୁ ନଚାକଣ୍ଢେଇ ତାର ଖେଳ ଦେଖେଇବା ଆରମ୍ଭ କରିନଥାଏ । ରେକର୍ଡ଼ ନାଚ ହେଲା ବେଳକୁ ସାଢ଼େ ଚାରି । ତା ପରେ ଦି'ଟା ସାଇବ କଣ୍ଢେଇ ହସିବେ ଯେ ସେ ଖଣ୍ଡମଣ୍ଡଳ ଫାଟି ପଡ଼ିବ । ଅଜ୍ଜା ସେମାନଙ୍କ ପେଟ ଭିତରେ କଣ ଯନ୍ତ୍ର ଖଞ୍ଜି ଥାନ୍ତି କେଜାଣି ସେ ଦି'ଜଣ ଖାଲି ହୋହୋ, ହେହେ, ହିହି ହେଇ ହସିବେ ଆଉ ଲୋକଙ୍କୁ ବେଦମ କରିଦେବେ ।

ଏ ମାଇକିନା ଦଳକ ହସ କଣ୍ଢେଇ ଦେଖିବାପାଇଁ ଆଉ ତାଙ୍କ ହସ ଶୁଣିବାପାଇଁ କଳାକୁଞ୍ଜ ପଡ଼ିଆକୁ ସଅଳ ବାହାରି ଆସନ୍ତି । ପାରିବାରିକ ଜଂଜାଳ, ଆର୍ଥିକ ଅନାଟନ ଭିତରେ କେଉଁ କାଳୁ ହଜିଯାଇଥିବା ହସ ବାହୁଡ଼ି ଆସିଲା ଭଳିଆ ଲାଗେ । ସେମାନେ କଣ୍ଢେଇଙ୍କ ହସରେ ହସ ମିଳେଇ ହସି ବି ପକାନ୍ତି । କଳାକୁଞ୍ଜ ଚାଲୁ ହେବା ଦିନ ଠାରୁ ଧାଡ଼ିଧାଡ଼ି ଦୋକାନ ବସିଯାଏ । ଦୋକାନ ଭିତରେ ଚୁଡ଼ି ରିବନ, ମୁଣ୍ଡପିନ୍, ଶାଢ଼ିପିନ୍, ଆଚୁ, ସ୍ନୋ, ପାଉଡ଼ର ଠାରୁ ବିସ୍କେଟ୍ ଚକୋଲେଟ୍ ପର୍ଯ୍ୟନ୍ତ ଖୁନ୍ଦି ହେଇ ରହିଥାଏ । ତା ସହିତ ଥାଏ ସୋନ୍‌ପାମ୍ପୁଡ଼ି, ଆଳୁଚପ୍, ଅଣ୍ଡା ଅମ୍‌ଲେଟ, ଲଡୁ ଝିଲାପି ଓ ଭୂଇଁଚଣା ଆପଡ଼ାଲୁ ଦୋକାନ, ଯାହା ମଧ ଦେଖଣାହାରିଙ୍କୁ ବହଲେଇ ରଖିଥାଏ । ଦେଖଣାହାରି ମାନେ କଳାକୁଞ୍ଜ ଭିତର ଓ ବାହାର ଦୋକାନମାନଙ୍କ ମଧରେ ଉବୁଟୁବୁ ହେଇ ପଡ଼ନ୍ତି । ପିତୁଳୀ ଦେଖିବା ଓ ନିଜକୁ ପିତୁଳୀ ଭଳି ସଜେଇ ହେବାର ସମସ୍ତ ଉପକରଣ ଏଇଠୁ ହିଁ ମିଳିଯାଏ ।

ଗୌରୀ ମାଇପି ଦଳଙ୍କୁ ନାନା ପ୍ରକାର ଚାଟୁକଥା କହି ପ୍ରଲୋଭନ ଦେଖେଇ ହସେଇ ମଜେଇ ଟିକଟ ବିକେ । ସେ ଖାଲି ଟିକଟ ତ ବିକୁନି ତା ସାଙ୍ଗରେ କଳା ରାଇଜର ରହସ୍ୟ ଓ ସୁନ୍ଦରପଣିଆ ବି ବିକୁଛି । ଟିକଟ କାଉଣ୍ଟର୍ ଚାରିଘଣ୍ଟ ଅଧେ ବେଳକୁ ଖୋଲୁଥିଲେ ମଧ ଗୌରୀ ଖୁବ୍ ସଅଳ ଖିଆପିଆ ସାରି କୁଞ୍ଜକୁ

ବାହାରି ଆସେ । ଓପର ଓଳିଟା ମିଶ୍ରେ ରାଧାବିନୋଦ ମଠ ମଣ୍ଡପରେ ହିଁ କଟେଇ ଦିଅନ୍ତି । ମଣ୍ଡପର ଟାଇଲ ଛାତ ତଳେ କୁନ୍ଦା କାଠର କୃଷ୍ଣଲୀଳା କାମର ଲମ୍ବା ଧାଡ଼ି ହୋଇଥାଏ । ମଝିରେ ରାସକ୍ରୀଡ଼ା ମଣ୍ଡଳରେ ଗୋପୀଙ୍କ ସାଙ୍ଗରେ କୃଷ୍ଣ କେଳି କରୁଥାନ୍ତି । କଦମ୍ବ, ଗୋପୀକୃଷ୍ଣ ମଣ୍ଡଳ ମଝିରୁ ତଳକୁ ଖସିଆସିଥାଏ ଓ କଦମ୍ବ ଅଗରେ ଓଲଟ ଶୁଆମାନେ କଦମ୍ବକୁ ଖୁମ୍ପୁଥାନ୍ତି । ମିଶ୍ରେ, କାଠକାମର ଚମତ୍କାରିତା ଦେଖୁ ଦେଖୁ, କାରିଗର ମାନଙ୍କୁ ମନେମନେ ପ୍ରଶଂସା କରୁକରୁ ବେଳେ ଅଧେ ନିଘୋଡ଼ ନିଦରେ ଶୋଇଯାଆନ୍ତି । ସୁବର୍ଣ୍ଣ ଚଂପା ଗୋରଚନା ପଣସ ବଉଳ ଆମ୍ବ କଦମ୍ବ ଗଛ ଭରିହୋଇଥିବାରୁ ମଠ ଭିତରଟା ଥଣ୍ଡା ଥାଏ । ମାଳତୀ ଯୁଇ ଯାଇ ହେନା ବଉଳ ଗଙ୍ଗଶିଉଳି ଫୁଲର ବାସ୍ନା ସମଗ୍ର ମଠକୁ ଉଠଉ ଥାଏ ପକଉ ଥାଏ । ପଲପଲ ମୟୂର ମୟୂରୀ ମଠ ବଗିଚା ଭିତରକୁ ପଶି ଆସି ପରିବେଶକୁ ବର୍ଣ୍ଣିଳ କରିରଖିଥାନ୍ତି । ମଠ ଭିତରକୁ ଆସିଲେ ସିନା ଏସବୁ ଦେଖିହେବ ଉପଭୋଗ କରିହେବ । କାରିଗରଦଳକ ତ ସବୁବେଳେ କୁଞ୍ଜରେ । ସେମାନେ କୁଞ୍ଜ ଖୋଲାହେବା ପର୍ଯ୍ୟନ୍ତ ଚାଞ୍ଚଘେରା କୁଞ୍ଜ ଭିତରଟାରେ ହିଁ ନିଜନିଜ ସୁବିଧା ଦେଖି ଏଠି ସେଠି ଗଡ଼ି ପଡ଼ନ୍ତି । କାରିଗରଙ୍କ ପାଇଁ ଥାନ ଅଥାନର ବିଚାର ନଥାଏ, ମନ ମାନିଲେ ଘୁଷୁରୀ ଗାଡ଼ିଆ ଗଙ୍ଗା ହେଲା । ନିତ୍ୟାନନ୍ଦ ଅଫିସ ବଖରାରେ ଖଜୁରୀ ପଟି ଉପରେ ଦୋସରା ଗାମୁଛାଟା ପାରିଦେଇ ଗଡ଼ପଡ଼ ହେଉଥାନ୍ତି । ମନେମନେ ଭାବୁଥାଏ ହେଇ ଗୌରୀ ଆସିବ ।

ଗୌରୀ କୁଞ୍ଜ ଭିତରେ ପଶିଲେ ମେଥି, ସିକାୟା, ହଳଦି, ଚନ୍ଦନ ଓ କିଆ ଫୁଲ ବାସ୍ନାରେ ପରିବେଶ ମହକି ଉଠେ । ପାଉଁଜୁଲୁର ଝୁମ୍‌ଝୁମ୍ ଶବ୍ଦ ବାରି ହୁଏ । ସେ ପ୍ରଜାପତି ଭଳି କୁଞ୍ଜ ଭିତରେ ଥରେ ନୁହେଁ ମନ ପୂରିଲା ଯାଏଁ ଘୁରି ଆସେ । କୁଞ୍ଜ ତାକୁ ଲାଗେ ଇନ୍ଦ୍ରପୁରୀର ଦେବସଭା ଭଳି । ସେ ପିତୁଳୀମାନଙ୍କ ମାଧୁରିମା ବେଶ ପରିପାଟୀ ଅଙ୍ଗଭଙ୍ଗି ଓ ଗଢ଼ଣ ନିବିଷ୍ଟ ଭାବେ ଦେଖେ । ମିଶ୍ରେ ଅଜାଙ୍କ କଳା କାରିଗରୀକୁ ପ୍ରଶଂସା କରେ । ସେ ପିତୁଳୀମାନଙ୍କ ପାଖରେ ଠିକ୍ ପିତୁଳୀ ଭଳି ଠିଆ ହୋଇପଡ଼ି ସେମାନଙ୍କୁ ଅନୁକରଣ କରେ । ତ୍ରିଭଙ୍ଗିରେ ଠିଆହୋଇ ନିଜ ଅଣ୍ଟା ଭାଙ୍ଗେ, କାକୁସ୍ଥ ହୁଏ, ଚକିତ ହୋଇ ଅନେଇ ରହେ । ଗୋପୀଙ୍କ ବସ୍ତ୍ର ହରଣ , ଦ୍ରୌପଦୀ ବସ୍ତ୍ରହରଣ ଓ ଶାନ୍ତନୁ ବିବାହ କୁଞ୍ଜପାଖରେ ଘଡ଼ିଏ ଘଡ଼ିଏ ସ୍ତବ୍ଧ ହୋଇ ଠିଆହୋଇ ରହେ । ଭାବେ କୃଷ୍ଣଚନ୍ଦ୍ର କେଡ଼େ ରସିକ ଠାକୁର । ଗୋପୀଙ୍କ ଠାରୁ କପଟରେ ବସ୍ତ୍ର ହରଣ କଲେ ଏଣେ ଦ୍ରୌପଦୀକୁ ପ୍ରେମରେ ବସ୍ତ୍ର ବଢ଼େଇ ଦେଲେ । ଗୋପୀମାନେ ତାଙ୍କ ନିଜ ଆପଣାର

ତ, ଉଲଗ୍ନ ହେଲେ ଚଳିବ । କିନ୍ତୁ ଦ୍ରୌପଦୀ, ସଖାଙ୍କ ପତ୍ନୀ ତ, ପ୍ରାଣ୍ଡବଙ୍କ କୁଳ ବୋହୂ ତ ସେଠି ସେ ଚଲାକି ଚଳିବନି । ଷୋହଳ ସହସ୍ର ଗୋପୀଙ୍କୁ କିମିତି ରମଣ କଲେ କେଜାଣି । ପୁରାଣରେ ତ ଗୀତ ହେଇଯାଇଛି । ଚିତ୍ରରେ ପିତୁଳାରେ ରୂପମୟ ହେଇଯାଇଛି । କିଏ ଥରେ ବି ପ୍ରଶ୍ନ କରିଛି ? କି ମାୟା ଭିଆଇଛ କେଜାଣି ପ୍ରଭୁ ! ବୁଝିହେଉନି । ମୁଁ ଗୋପୀଙ୍କ ସାଙ୍ଗରେ ନାଁ ଦ୍ରୌପଦୀ ସାଙ୍ଗରେ । ଶାନ୍ତନୁକୁଞ୍ଜ ପାଖକୁ ଆସିଲେ ଗୌରୀ ମୁରୁକି ମୁରୁକି ହସେ । ଭାବେ ଏତେ ବଡ଼, ରାଜା, ଏତେ ବଡ଼ ଋଷି ପୁଣି ଏମିତି ବାଉଳା ମନ ! ଅଜା ତ ଅସଲ ବୁଦ୍ଧି ପାଞ୍ଚି ଏତେ ବଡ଼ ଗହନ କଥା, ଲାଜ କଥାକୁ ଏମିତିକା ସହଜିଆ କରି ସମ୍ଭାଳି ନେଇଛନ୍ତି । ଗୌରୀ ମଧ ଗଙ୍ଗାକୁ ବହେ ମନେମନେ ଗାଳିଦେଇ ଯାଏ । ଘରଣୀ ହେବ ଯଦି ସ୍ଥିର ହୁଅ, ଧୀର ହୁଅ, ନଦୀ ଭଳି ବହିଗଲେ କିମିତି ଚଳିବ । ଶାନ୍ତନୁ ଗାଙ୍ଗୀ ନ କହିଥିଲେ ତ ଭୀଷ୍ମଭଳି ବୀର ପୃଥିବୀରେ ନ ଥାନ୍ତେ । ମହାଭାରତ ଯୁଦ୍ଧ ବି କିମିତି ହେଇଥାନ୍ତା ?

କଳାକୁଞ୍ଜ କଥାଟା କାନରେ ପଡ଼ିବା ଦିନ ଠାରୁ ଗୌରୀର ଦେହ ମନ ଚହଲି ଯାଇଛି । ସେ ବିଭିନ୍ନ କଳ୍ପନା କରିଛି । କଳାକୁଞ୍ଜକୁ ନେଇ କେତେ ଉଦ୍ଭଟ ଚିନ୍ତା ବି କରିଛି । ଏଣୁ ସେ ନିଜେ ଯାଇ ଡ଼ି. ନାରସେୟାଙ୍କୁ ଅନୁରୋଧ କରିଛି । କଳାକୁଞ୍ଜରେ ଯିମିତି ହେଲେ ସାମିଲ ହେବାପାଇଁ ଚାହିଁଛି । ଅର୍ଥ ଉପାର୍ଜନ କରିବା ଗୌରୀର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । ଗୌରୀ ନୂଆନୂଆ ସୁବିଧା ସୁଯୋଗକୁ ହାତଛଡ଼ା କରିବା ପାଇଁ ଚାହେଁ ନାହିଁ । ପୁଣି କଳାକୁଞ୍ଜ ତ କଳା ସର୍ଜନାର ଗନ୍ତାଘର । କୁଞ୍ଜ ପାଇଁ ଘର ତିଆରି ହେବା ପରଠାରୁ ବେଳେବେଳେ ଏକୁଟିଆ, ବେଳେବେଳେ ସାଙ୍ଗମାନଙ୍କ ସହିତ ସେ ମଠ ପଡ଼ିଆ ଆଡ଼େ ଆସି ଘେରେ ଦି'ଘେର ବୁଲିଯାଏ । ପୁରୁଣା ପିତୁଳାମାନଙ୍କୁ ଦେଖେ । କେତେ କଣ ଭାବି ବସେ, ସେମାନଙ୍କୁ ନେଇ ନିଜ ମନ ମୁତାବକ ବିଭିନ୍ନ କୁଞ୍ଜ ରଚନା କରେ । ଗୌରୀକୁ ଜାଣିଲା ଠାରୁ ଅଜା ମଧ ତାକୁ ନାତୁଣୀ ଭଳି ସ୍ନେହ କରନ୍ତି । ଗୌରୀ ଅଜାଙ୍କ ପାଖରେ ବେଶି ସମୟ କଟାଏ । ଏଣୁ ତେଣୁ ଗପେ, ପ୍ରଶ୍ନ ପଚାରେ ।

ଗୌରୀର ଘର ମଠ ପଛପଟ ପାଟଶାଳିଆ ସାହିରେ । ସାହି ମଝିରେ ରାସ୍ତାର ଏମୁଣ୍ଡ ସେମୁଣ୍ଡ ଟଣାପାଟସୂତା ଥାଇ ତାସଣ ଘୁଡ଼ିଆରେ ବନ୍ଧା ହେଇଥାଏ ।

କଞ୍ଚରେ ପେଜ ମଣ୍ଡନେଇ ପାଟଶାଳିଆ ମାନେ ପାଟସୂତା ଉପରେ ଥରେ ତାପରେ ପାନିଆରେ ଥରେ ବୁଲେଇ ଆଣନ୍ତି । ଛାନ୍ଦ ପାତିଆକୁ ଝାଡ଼ି ଦେଇ ସୂତାକୁ ଫର୍ଚ୍ଚା କରିଦିଅନ୍ତି । ସକାଳ ଖରାରେ ପାଟସୂତା ଯାକ ସୁନାଢ଼ରି ଭଳି ଚମକୁଥାନ୍ତି । ଏହି ସାହିର ପାଟଶାଳିଆ ମାନେ ବାନ୍ଧର ଚମତ୍କାର ପାଟ ବୁଣନ୍ତି । ଦିନ ଯାକ ତନ୍ତ କଣ୍ଡାର ଠକ୍‌ଠାକ୍ ଶବ୍ଦରେ ସାହିଟି ମୁଖରିତ ହେଉଥାଏ । ଖଣ୍ଡୁଆପାଟ ବୁଣାରେ ତାଙ୍କ ପୂର୍ବ ପୁରୁଷଙ୍କ ବୁନିଆଦି ଅଛି । ଏମାନେ ଜାଣନ୍ତି ତାନିର ଓ ଭରଣିର ଡ଼ିଜାଇନ୍ କାମ ଭିତରେ ମେଳ । ଗୌରୀର ଆମ୍ମା ପାଖରେ ତା' ବାପ ଅଜା ଅମଳର ଖଣ୍ଡେ ପୁରୁଣା ଗୀତଗୋବିନ୍ଦ ଖଣ୍ଡୁଆ ପାଟ ସାଇତା ଅଛି । ସେହି ପାଟର ହଳଦି ଗୁରୁଗୁରୁ ଦେହ ଉପରେ ନାଲି ନାଲି ଅକ୍ଷରରେ ଗୀତଗୋବିନ୍ଦର ପଦ 'କଂସାରିରପି ସଂସାରବାସନାବଦ୍ଧଶୃଙ୍ଖଳାମ୍ । ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜ ସୁନ୍ଦରୀଃ 'ଧାଡ଼ି ଧାଡ଼ି ହେଇ ବୁଣା ହେଇଅଛି । ପଣତରେ କୁମ୍ଭ ଓ ମାଛମାନଙ୍କର ଜ୍ୟାମିତିକ ରୂପଛଟାରେ . ଶାଢ଼ିଟି ଲୋଭନୀୟ ଦେଖାଯାଏ । ଧାଡ଼ିରେ କଦମ୍ବ ଓ ରୁଦ୍ରାକ୍ଷର ଛୋଟ ଛୋଟ ଫୁଲ । ଧାଡ଼ିର ଉପର ମୁଣ୍ଡକୁ କୁମ୍ଭ । ଆମ୍ମା ବେଳେ ବେଳେ ତା ସିନ୍ଦୁକ ଖୋଲି ଶାଢ଼ି ବାହାର କରି ଦେହରେ ପକାଏ । ଆଖି ଛଳଛଳ କରେ । କିଛି ପଚାରିଲେ ଚୁପ୍ ରହେ । କଥା ବାଆଁରେଇ ଦିଏ । ଗୌରୀ ପିଲାହେଇଥିଲା ତା ବାପାଙ୍କ କାଳ ହେଇଯାଇଛି । ଘରେ ସେ ଆଉ ଆମ୍ମା ଦୁହେଁ ରହନ୍ତି । ଆମ୍ମା ପାଟ ସୂତା ଜଉରଙ୍ଗ କରନ୍ତି । ଜଉ ରଙ୍ଗେଇବା କୌଶଳ ଏହି ଗାଁରେ ତାର ଆମ୍ମାକୁ, ଆଉ ଆମ୍ମା ବୟସର ଦି' ଚାରିଜଣକୁ ହିଁ ଜଣା । ଏବେ କେମିକେଲ୍ ରଙ୍ଗ ବାହାରି ଗଲା ପରଠୁ ପାଟଶାଳିଆମାନେ ଆଉ ଜଉ ରଙ୍ଗକୁ ବେଶି ଧରାକ କରୁ ନାହାନ୍ତି । ଜଉପାଟ ମଧ୍ୟ କେମିକେଲ୍ ରଙ୍ଗକରା ପାଟଠାରୁ ଦାମିକା ବୋଲି ଲୋକେ କିଣୁନାହାନ୍ତି ।

ଗୌରୀର ସେମିତି ଫିକା ମନେଅଛି । ସେ ପିଲାଟିଏ ହେଇଥାଏ । ଶକ୍ତ ବେମାର ପଡ଼ିଥିଲା । ଆମ୍ମା ନା'ନା ବଂଚିବାର ଆଶା ଛାଡ଼ି ଦେଇଥିଲେ । ଆଗରୁ ତ ପାଞ୍ଚପୁଅ ତିନିଝିଅ ଅକାଳରେ ଆମ୍ମାର କୋଳ ଖାଲି କରି ଘର ଶୂନ୍ୟ କରି, କସି ଆମ୍ବ ଭଳି ଝିଡ଼ି ପଡ଼ିଥିଲେ । ଏଣୁ ନା'ନା ଅକାଳେ ସକାଳେ ରୋଗ ବିରାଗରେ ରାଧାବିନୋଦ ମଠକୁ ଦୌଡ଼ନ୍ତି । ମହନ୍ତ ଲାଗିତୁଳସୀଧଣ୍ଡା ଦେଲେ, ଦଉଡ଼ି ଆସି ମୋ ଶେଯ ତଳେ ଯାକି ଦିଅନ୍ତି । ଲାଗି ଚନ୍ଦନ ଦେଲେ ମୋ କପାଳରେ ଆଣି ଲେପିଦିଅନ୍ତି । ଠାକୁରଙ୍କ ଚନ୍ଦନ ଜରୁଆ କପାଳରେ ଲେପିଦେଲେ ହାଇ ଲାଗେ । ଜର

ଛାଡ଼ିଗଲା ଭଳି ଲାଗେ । ମନେହୁଏ ପ୍ରଭୁଙ୍କ ମହିମା ଅଛି ।  ନା'ନା ହାତ ଯୋଡ଼ି ଜଣା କରନ୍ତି ପ୍ରଭୁ, ମୋ ପିଲାକୁ ବଂଚେଇଦିଅ । ବଂଚିକରି ରହିଲେ ତାକୁ ତୋତେ ହିଁ ସମର୍ପି ଦେବି । ତୋ ପିଲାକୁ ତୁ ହିଁ ନେଇଯିବୁ । ମାରିବୁ ଯଦି ମାର, ତାରିବୁ ଯଦି ତାର । ରାଧାବିନୋଦ ଠାକୁର ଦୟାକଲେ । ମୁଁ ବିଛଣାରୁ ଉଠି ଠିଆ ହେଲି । ଦୋରନ୍ଧା ଭାତ ଖାଇଲି, ଚାଲିଲି, ଖେଳିଲି, ବୁଲିଲି । ଗୌରୀ କେତେବେଳେ ଏକୁଟିଆ ବସିଲେ ପଛକଥା ଯାକ ମନେ ପକାଏ । ଦୁଃଖର କଥା କାହାକୁ ବା କହିବ । କିଏ ବା ବୁଝିବ । ଦୁଃଖ କାହାକୁ ବା କବଳିତ କରିନି । ଗୌରୀ ଆପଣାର ଭାବିଲା, ଏବେ ଅଜାଙ୍କ ପାଖରେ ସବୁକଥାଯାକ ଗୋଟି ଗୋଟି କରି କହିପକେଇଲା । ଅଜା ମଝି ମଝିରେ ଆହା ଆହା, ଚୋ ଚୋ କରି କଥା ଶୁଣିଲେ । ତାଙ୍କ ପିତୃହୃଦୟ ବାତ୍ସଲ୍ୟ ସ୍ନେହରେ ବିଗଳିତ ହେଇଗଲା । ସେ ମୋ ମା' ଟା ପରା କହି ଗୌରୀ ମୁଣ୍ଡରେ ହାତ ବୁଲେଇ ଆଣିଲେ ପିଠିରେ ହାତ ଥାପୁଡ଼େଇଲେ । ଗୌରୀ ଭକ୍ତିରେ ସଂଭ୍ରମରେ ଅଜାଙ୍କ ଗୋଡ଼ ତଳେ ମୁଣ୍ଡିଆ ମାରିଲା ।

ନିତ୍ୟା ଅଜାଙ୍କଠୁ ଟିକିଏ ଦୂରରେ ରହି ପିତୁଳାଙ୍କ ଉପରେ ଖଳି କନା ପକଉଥାଏ । ସୀମାଞ୍ଚଳ ଆପୁଚି ଅଠା ଓ ଖଡ଼ିର ବୋଳ କାଠ ମୂର୍ତ୍ତିଙ୍କ ଉପରେ ଲେପୁଥାଏ । ନିତ୍ୟାର ଆଖିଥାଏ କାମରେ କିନ୍ତୁ କାନ ଥାଏ ଗୌରୀର କଥାରେ । ଗୌରୀ ଗଡ଼ ଗଡ଼ ହେଇ ଗେଲେଇ ମେଲେଇ ହେଇ କଥା କହି ଚାଲିଥାଏ ଓ ନିତ୍ୟା ମର୍ମ ବୁଝିବାକୁ ଚେଷ୍ଟା କରୁଥାଏ ।

ମୁଁ ତ ଭଲ ହେଇଗଲି । ମୋ ପରେ ପରେ ନା'ନା ରୋଗରେ ପଡ଼ିଲେ । ଦିନେ ଦି ଦିନ ଭିତରେ ଶେଯ ଧରିଗଲେ । ଯେତେ ଓଷମୁଷ ବିଷମହୁରା କଲେ ମଧ ରୋଗ ଭଲ ହେଲାନି । ଆମ୍ମା ଭାବିଲା କିଏ ଗୁଣିଆ ପେଶିଦେଇଛି । ବାଣ ମାରିଦେଇ ଅଙ୍ଗ ପକେଇ ଦେଇଛି । ମୋ ବଡ଼ ମାଓ୍ବା ଆତାକୁ ନେଇ ପାତପାଟନମ୍‌ରୁ ଆସିଲେ । ସାଙ୍ଗରେ ଜବର ଗୁଣିଆକୁ ନେଇଆସିଥିଲେ । ଗୁଣିଆ ମୟୂର ପିଛ ଭଳିଆ ନିଶ ହଳେ ରଖିଥିଲା । ସୂର୍ଯ୍ୟ ଦାଉ ଦାଉ ହେଲା ଭଳିଆ ସିନ୍ଦୂର ଟୋପାଟେ ପିନ୍ଧିଥିଲା । ବେଶ୍ ପୁରୁଷ ବପୁର ଖାସା ମଣିଷଟେ । ବେକରେ ଛଅ ସାତ ପ୍ରକାର ମାଳି ପିନ୍ଧିଥିଲା । ରୁଦ୍ରାକ୍ଷ ବାଘନଖୀ ପୋହଳା ଆଉ ଧାନୁଆ କଣ୍ଠିମାଳି । କଥା କହିଲା ବେଳେ ଛାମୁ ସୁନା ଦାନ୍ତ ତକ ବାରି ହେଇ ପଡୁଥିଲା ,

ଲାଗୁଥିଲା ବିଜୁଳି ଚମକୁଛି । ସେ ସଦା ନିଶାସକ୍ତ ଥିଲା ଭଳି ତାର ଆଖିଗୁଡ଼ିକ କଷାୟ ଲାଗୁଥିଲା । ଗୁଣିଆ ତା ଝୁଲି ମୁଣିରୁ ମଣିଷ ହାଡ଼ଟେ ବାହାରକଲା । ହଳଦି ସିନ୍ଦୂରରେ ହାଡ଼ଟା ପାଚି ଯାଇ କୋଉ ଶହେ ଦେଢ଼ଶ ବର୍ଷ ତଳର ଭଳି ଦିଶୁଥିଲା । ଆମ୍ମାକୁ ଅରୁଆ ଚାଉଳ ସାତଟା ମାଗିଲା ଧାଡ଼ିକରି ତଳେ ଥୋଇଲା । ଚାଉଳ ଧାରରେ ଯିମିତି ହାଡ଼ଟାକୁ ସେ ଘୋଷାଡ଼ି ଆଣିଛି ଚାଉଳ ଯାକ ଛିଡ଼ିକିଗଲେ, ଫିଡ଼ିକିଗଲେ । ଗୁଣିଆ ସ୍ୱଗତୋକ୍ତି କଲାଭଳି କହିଲା, ଶଳା ବୀର ପେଶିଛୁନା । ଭୂତ ଏକାଥରେ ଛଡ଼େଇ ଦେବି । ଥେଇ ଥେଇ ନାଚୁଥିବ । ଶଳାକୁ ଫରୁଆରେ ପୂରେଇ ନଦୀ ଡ଼ିଆଁଇ ଦେବି ।

ମଙ୍ଗଳବାର ରାତି ନିଶା ଗର୍ଜୁଛି । ନା'ନା ଶୋଇଥିବା ଘରେ ସେ ମଣ୍ଡଳ କାଟିଲା ପଞ୍ଚବର୍ଣ୍ଣୀ ମୁରୁଜରେ, ଚାରି ଦିଗକୁ ନ୍ୟାସ କରି କଉଡ଼ି ବସେଇଲା, ଗୋଟିଏ ଦିଗ ଖାଲି ରଖିଲା ସେବାଟେ ଭୂତକୁ ତଡ଼ିଦେବ । ଏକୋଇଶି ମନ୍ଦାର ଫୁଲ ମଣ୍ଡଳ ଉପରେ ଥୋଇଲା । ମଣ୍ଡଳ ଚାରିଦିଗେ ଅରୁଆ ଚାଉଳ ଧଡ଼ି ଭଳି ବାନ୍ଧିଲା । ତା ମୁଣାରୁ ମଣିଷ ହାଡ଼ର ଖପୁରି ବାହାର କରି ମଣ୍ଡଳରେ ଥାପନା କଲା, ଖପୁରିରେ ମେଞ୍ଚେ ସିନ୍ଦୂର ମାରି ପୁଣି ସେଥିରୁ ସିନ୍ଦୂର ଆଣି ନିଜ ମୁଣ୍ଡରେ ଲଗାଇଲା । ତାପରେ ପଦ୍ମାସନରେ ବସି ଆଖି ବୁଜିଲା, ଧ୍ୟାନରେ ବସିଲା । ଘଡ଼ଘଡ଼ି ଭଳି ମନ୍ତ୍ର ପଢ଼ିବା ଆରମ୍ଭ କଲା । ଆମ୍ମା ମୋତେ କହିଲା ଗୌରୀ, ତୁ ଶୋଇପଡ଼ ପିଲାମାନେ ଏ ପୂଜା ଦେଖନ୍ତିନି । ସେ ମନ୍ତ୍ର ପଢୁଥାଏ ଓ ଝୁଲୁଥାଏ । ମୁଁ ଆଉ ଘରକୁ ଯାଇ ଶୋଇପଡ଼ିଲି । ମୋତେ ଏସବୁ ଯୋଗାଡ଼ ଦେଖି ଛାନିଆ ବି ଲାଗୁଥାଏ । ସକାଳ ଫର୍ଚ୍ଚା ହେଲାବେଳକୁ ପୂଜା ହାଣ୍ଡି ବିସର୍ଜନ କରି ମାଓ୍ୱା ଆଉ ସେ ଘର ଫେରିଲେ । ଗୋଡ଼ ଧୋଇ ବାକୁ ହଳଦୀପାଣି ଧରି ଆମ୍ମା ଓ ଆତା ଠିଆହେଇଥିଲେ । ନଦୀ ଆରପଟକୁ ଭୂତକୁ ତଡ଼ି ଦେଲୁ ବୋଲି କହିଲେ ।

ମୁଁ ସକାଳୁ ଉଠି ଦେଖିଲି ବାଡ଼ି ଅଗଣାରେ କୁକୁଡ଼ାର ନିର୍ଜୀବ ଦେହଟା ପଡ଼ିଛି । ବେକ ସଣ୍ଢାକୁ ପିମ୍ପୁଡ଼ି ଆବୋରି ଗଲେଣି । କାଉମାନେ ଚାଳ ଉପରେ ବସି କା କା କରୁଛନ୍ତି । ଚାରିଆଡ଼ ଖାଁ ଖାଁ ଲାଗୁଛି, ପବନ ଟୋପାଏ ନାହିଁ, ଗଛର ପତ୍ରଟିଏ ବି ହଲୁନି, କିମିତି ଗୋଟିଏ ରୁନ୍ଧୁରୁନ୍ଧିଆ ସକାଳ । କିଛି ଦିନ ପରେ ସତକୁ ସତ ନା'ନା ଉଠି ବସିଲେ । ଦେହ କାଇଲା ହେଇଯାଇଥାଏ । ଧୀରେ ଧୀରେ ସେ କଥା କହୁଥାନ୍ତି ।

କିଛି ଦିନ ପରେ ଚଲାବୁଲା ବି କଲେ । ଦୋରନ୍ଧା ଅନ୍ନ ଖାଇଲେ । ରାଧାବିନୋଦ ମଠକୁ ଆମ୍ମା ସାଙ୍ଗରେ ଗଲେ । ଆମ୍ମା ମଠରେ ମାଜଣାଟିଏ କଲା । ହରିକୀର୍ତ୍ତନଟିଏ ହେଲା । ନାରସେୟାଙ୍କୁ ଡ଼କରା ହେଇଥିଲା । ସାଇପଡ଼ିଶା କୁଣିଆ ମଇତ୍ର ହେଇ ଷାଠିଏ ଜଣ ପଙ୍ଗତ ସେବା କଲେ । ମାସେ ପନ୍ଦର ଦିନ ଯାଇଛି କି ନାହିଁ ନା'ନା ପୁଣି ବେମାର ପଡ଼ିଲେ । ଆମ୍ମା କହିଲା ଆଉ ମନ୍ତ୍ର କାଟୁ କରୁନି । ପୁଣି ଗୁଣିଆ ବାଟୁଲି ମାରିଲା । ନା'ନା ଭଲ ବାନ୍ଧ ପାଟ ବୁଣନ୍ତି ତ, ସିଏ ଚାହୁଁଚି ହାତ ପକେଇଦେବାକୁ । ହିଂସାରେ ଏତକ କରିବାକୁ ଚାହୁଁଛି । ହାତ ତ କାରିଗରର ଜୀବନ । ହାତ ପଡ଼ିଗଲେ ପେଟ ପୋଷା କିମିତି ହେବ ? ଆମେ ସମସ୍ତେ ରାଧାବିନୋଦ ଠାକୁରଙ୍କ ଶରଣ ପଶିଲୁ । କହିଲୁ , ପ୍ରଭୁ! ତମେ ହିଁ ଆମକୁ ଏ ବିପତ୍ତିରୁ ଉଦ୍ଧାର କର ।

ରାଜଯକ୍ଷ୍ମା, ଆଉ କିଏ ଉଦ୍ଧାର କରିପାରିବ । ଗୁଣିଆ ନା'ନାଙ୍କ ବାହାରେ ଯେଉଁ ଡ଼େଉଁରିଆଟି ବାନ୍ଧିଦେଇଥିଲା ବେଶି କାଇଲା ହେଇଯିବାରୁ ଡ଼େଉଁରିଆଟି ଗଳି ପଡ଼ିଲା । ଆମ୍ମା ଖୋଜା ଖୋଜି କରି ପୁଣି ଡ଼େଉରିଆକୁ ତାଙ୍କ ବେକରେ ପିନ୍ଧେଇଦେଲା । ଗାଁରେ ଯେଉଁ ଡ଼ାକ୍ତରଖାନା ଅଛି ସେଇଟା କୋଉ କଥାକୁ ନୁହଁ । ସେଠିକି ଗଲେ ଭଲଲୋକଟା ମଧ୍ୟ ବେମାର ପଡ଼ିଯିବ । ବିଜୟନଗର ବଡ଼ ଡ଼ାକ୍ତରଖାନାକୁ ଯିବାକୁ ଆମର ତ୍ରାବୁ ନଥିଲା । ମାଓ୍ୱା ଘର ଆମ ପାଇଁ ଯେତିକି କଲେ କଲେ । ସେମାନଙ୍କୁ ମଧ୍ୟ ଦୋଷ ଦେଇ ହେବନି । ନା'ନା ରାତିଦିନ କାଶିଲେ । ଆମ୍ମା ଫଳ ରସକରି ନା'ନାକୁ ପିଆଇଲା, ପେଟରେ କିଛି ରହୁନଥାଏ , ବାନ୍ତି ହେଇଯାଉଥାଏ । କଫରେ ଦଲଦଲ୍ ହେଇ ରକ୍ତ ପଡ଼ିଲା । ଆଖି କୋରଡ଼ିଆ ମାରିଗଲା । ନା'ନା କାଶି କାଶି ଆତକାତ ହେଇଯାଉଥାନ୍ତି । କହୁଥାନ୍ତି ଗୌରୀ, ମୋ ପାଖରେ ବସ । ତାଙ୍କ ଗାଲ ଭିତରକୁ ପଶି ଠକରା ହେଇଗଲା । ହନୁହାଡ଼ ଦିଟା ବାହାରିପଡ଼ିଲା । କାନ୍ଧର ଠଙ୍ଗ ହାଡ଼ ଦିଟା ଦିଶିଲା । ନା'ନାଙ୍କୁ ଆଉ ଚାହିଁ ହେଲାନି । ଆମ୍ମା ନା'ନାଙ୍କୁ ଟେକା ରଖା କରୁଥାଏ । ମୁଁ କଫ ବାନ୍ତି ମାଟି ହାଣ୍ଡିରେ ପାଉଁଶ ପକେଇ ଉଠେଇ ଦେଉଥାଏ । ଶେଷରେ ମୋ ନା'ନା ଆଉ ବଂଚିଲେନି । ଗୌରୀ କଥା କହୁକହୁ ତାର କଣ୍ଠ ବାଷ୍ପରୁଦ୍ଧ ହେଇଗଲା । ତୁହାକୁ ତୁହା କୋହ ଆସିଲା । ସେ ଆଉ କଥା କହିପାରିଲାନି । ଧକେଇ ଧକେଇ କାନ୍ଦିଲା ।

ଅଜା ମାଟିହାତ ହେଇଥିଲେ ନିତ୍ୟାକୁ କହିଲେ ବାପ, ଝିଅଟାକୁ

ତୁନେଇ ଦେ ରେ। ପିଲାଟା କେତେ ଦୁଃଖ ସହିଚି। ଆହା ରାଧାବିନୋଦ ତା ବାପାଟାକୁ ଶେଷରେ ନିଜ ପାଖକୁ ନେଇଗଲେ। ସଂସାରର ଲୋକଙ୍କ ହିସାବ ଅଲଗା କିନ୍ତୁ ତମ ହିସାବ ଅଲଗା, ସେ ରାଧାବିନୋଦଙ୍କୁ ଲକ୍ଷ୍ୟକରି କହିଲେ। ମୁଁ ବି ତ ତୁମକୁ ଆଶ୍ରାକରିଥିଲି। ମୋର ତୁମେ କଣ ନକଲ ? ଯିଏ ତମକୁ ଭରସା କରେ ତମେ ତାକୁ ହିଁ ଦୁଃଖଦିଅ, ପରୀକ୍ଷା କର। ତମେ ଭାବ ଦୁଃଖରେ ଜଳିଲେ ହିଁ ମଣିଷ ତମକୁ ମନେ ପକେଇବ।

ଗୌରୀ ଏଇମିତି ସବୁଦିନ କଳାକୁଞ୍ଜକୁ ଆସେ। ଦିନେ ଅଧେ ପାଇଟି ଥିଲେ ଘରେ ରହିଯାଏ। ଅଜାଙ୍କ ହାତରେ ସେମିତି କାମ ନଥିଲେ ପାଖରେ ବସି ନିଜ ଜୀବନ କାହାଣୀ ଅଜାଙ୍କୁ ଶୁଣାଏ। ନିତ୍ୟାନନ୍ଦକୁ ବି ଗୌରୀ ସ୍ନେହକରେ। ତାର ଗୋରା ତକ ତକ ଉଦଣ୍ଡ ଦୀପଶିଖା ଭଳି ଦେହ ଓ କଳା କଳା ଘଞ୍ଚ ଦାଢ଼ି ଗୌରୀକୁ ପ୍ରଲୋଭିତ କରିଛି। ଗୌରୀକୁ ନିତ୍ୟାନନ୍ଦ ଏକ ସାତ୍ତ୍ୱିକ ଭାବର ନିର୍ମଳ ମଣିଷ ଭଳି ଦେଖାଯାଏ। ଗୌରୀ ବି ଚେହେରାରେ କିଛି କମ୍ ଲୋଭନୀୟ ନୁହଁ। ପିଲାଟି ଭଳି ଦେଖାଯାଉଥିଲେ ମଧ ବୟସ ଅଠର ପୂରିଲାଣି। ଚମ୍ପାରଙ୍ଗର ଗୋରା, ପତଳୀ ଉଚ୍ଚା, ସରୁ ଅଣ୍ଟା, ଘନ ନିତମ୍ବ, କୁନ୍ଦା ଫରୁଆ ଭଳି ନିଦା ବକ୍ଷୋଜ, ସଳଖ ଗ୍ରୀବା, ଲମ୍ବା ମୁହଁ, ଉନ୍ନତ ନାସିକା, ବିସ୍ତାରିତ କଜଳ ମଖା ଆଖି, ଚଳ ଚଂଚଳ କଳା ଡ଼ୋଳା। ଲାଙ୍ଗା ଓ୍ୱାଣୀ ପିନ୍ଧିଥାଏ। ବେଣୀ ଲମ୍ବା ହେଇ ନିତମ୍ବ ଉପରେ ଝୁଲୁଥାଏ । ହାତବୁଣା ଲୁଗାର ଓପରାଣ ଘୋଡ଼େଇ ହେଇଥାଏ। ମୁଣ୍ଡରେ ଇଟମଳା ଫୁଲର ମାଳ ନାଇଥାଏ। ଚାଲିରେ ନର୍ତ୍ତକୀର ଭଙ୍ଗିମା। ଉଦାସିଆ ଭାବ। ନିଷ୍ପାପ ହୃଦୟ। ସରଳ ପ୍ରାଣ। ଝରଣା ଜଳଭଳି ସ୍ୱଚ୍ଛ।

ଗୌରୀ ଅଜା ପାଖରେ ପହଞ୍ଚିଲେ ଅଜା କହିପକାନ୍ତି ମା ଆସିଲୁ। ଯା ଦେଖ, ନିତ୍ୟାଭାଇନା କଣ କରୁଛି। ନିତ୍ୟା ଭାଇନା ଶାନ୍ତନୁ ବିବାହ ପାଇଁ ସୀମାଞ୍ଚଳଟ ସହାୟତାରେ ନଡ଼ା ଭିଡୁଥିଲେ ସେ ସେଇଠି ଅଟକିଯାଏ। ପିତୁଳୀ ଗଢ଼ଣ ଦେଖିବାକୁ ବସିପଡ଼େ। ସେ ଜାଣିବ ପିତୁଳା ପିତୁଳୀମାନେ କିଭଳି ଜନ୍ମ ନେଉଛନ୍ତି। ମା'ର ଗର୍ଭରେ ଦେହ ବଢ଼ିଲାଭଳିଆ କଥା ବୋଲି ନିତ୍ୟାନନ୍ଦ ଟିପ୍ପଣୀ ଦିଏ। ନିତ୍ୟା ହୁରୁଡ଼ା ଭଳି ନଡ଼ାରେ ଖାଲି ଛାଞ୍ଚଯାକ ଭିଡ଼େ। ତା ହାତର ଗଣ୍ଠି ଟାଣ ବୋଲି ଅଜା ତାକୁ ଏ କାମ ଧରେଇଛନ୍ତି। ପୁରୀ ଦଉଡ଼ିରେ କସି କରି ଭିଡ଼ି ଦେଇ ସେ ପିତୁଳାର ଛାଞ୍ଚଯାକକୁ

ସାଷ୍ଟାଙ୍ଗ କରିଦିଏ । ପିତୁଳୀ ଗଢ଼ଣ ତ, ମାଟି ଅଧିକା ଖାଇଯିବ ବୋଲି ସାମାଞ୍ଜଳ ସେମାନଙ୍କ ନିତମ୍ବମାନଙ୍କ ଉପରେ ନଡ଼ାର ନେଦା ଦେଇ ବହଳ କରେ । ଯିମିତି ପତଳା କରି ମାଟି ଲଗେଇଲେ ମଧ ପୁରୁଷ୍ଟ ଦେଖାଯିବ । ଛାତିଉପରେ ଥନର ଆକୃତି ଆଣିବାପାଇଁ ନଡ଼ାର ଚିମୁଳାମାନ ଠେକେଇ ଦିଏ । ଧୀରେ ଧୀରେ ପିତୁଳି ମାନ ନଡ଼ା ଭିଡ଼ା ଭିତରେବି ଉତୁରି ଆସୁଥାନ୍ତି । ଗୌରୀକୁ ଲାଗେ ପିଲାଟିଏ ମା କୋଳରେ ବଢୁଛି । ଧୀରେ ଧୀରେ ବଡ଼ ହେଉଛି । ଶୈଶବରୁ କୈଶୋର ଆସୁଛି । କୈଶୋର ପୁଣି ଯୌବନରେ ପରିଣତ ହେଇଯିବ ।

ନିତ୍ୟାଭାଇନା ଗୌରୀକୁ ମୂର୍ତ୍ତିତତ୍ତ୍ୱ ବଖାଣି ବସନ୍ତି । ଭାଗ ମାପ, ତାଳଭେଦ ସମ୍ପର୍କରେ ସୂଚନା ଦିଅନ୍ତି । ସେ କହନ୍ତି, ଆମ ଭଳି ଯେତେକ ମଣିଷ ସାତ ତାଳ ଅଧେ, ଅସୁର ମାନେ ନବ ତାଳ, ପିଲାମାନେ ପାଞ୍ଚତାଳ । ନାରୀ ପିତୁଳୀକୁ ଗୁଣ୍ଠୁଣି କରିବାକୁ ହେଲେ ସାତ ତାଳ । ଗୀତର ତାଳରେ ଯିମିତି ହ୍ରସ୍ୱ ଦୀର୍ଘ ଅଛି, ମୂର୍ତ୍ତି ତତ୍ତ୍ୱରେ ବି ସେମିତି ମାନ ନିର୍ଦ୍ଧାରଣ ଅଛି । ଆମର ଦେହ ଭିତରେ ଯିମିତ ହାଡ଼ ସେମିତି ନଡ଼ାଛାଞ୍ଚ ଭିତରେ ବାଉଁଶ । ନଡ଼ା ହେଲା ଆମର ଶିରା ପ୍ରଶିରା, ମାଟି ହେଲା ମାଂସ, ମାଟି ଉପରର କନାର ଆସ୍ତରଣ ହେଲା ଚମ , କନାଉପରେ ଖଡ଼ିର ମଣ୍ଡ ଓ ରଙ୍ଗ ହେଲା ଦେହର ଲାବଣ୍ୟ । ଏହି ମାଟି ପିତୁଳି ଭିତରେ ଜୀବନ୍ୟାସ କଲେ ପ୍ରାଣର ସଂଚାର ହୁଏ । ତୁ ଆଉ କଥା ଜାଣିବାକୁ ଥିଲେ ଅଜାଙ୍କୁ ପଚାରିବୁ । ପ୍ରାଣ ସଂଚାର ମାଟିର ପିତୁଳାରେ ହେଉ ବା ମା ଗର୍ଭରେ ଥିବା ସନ୍ତାନ ଭିତରେ ହେଉ ଏହା ହିଁ ସୃଷ୍ଟିର ସବୁଠାରୁ ରହସ୍ୟମୟ ଓ ଗୋପନ କାହାଣୀ । ଅଜା ହିଁ ପିତୁଳିମାନଙ୍କର ଚକ୍ଷୁଦାନ କରନ୍ତି । ଅଜା କହନ୍ତି, ପିତୁଳିମାନଙ୍କର ଆଖି ଫୁଟିଗଲେ ସେମାନେ ଜୀଅନ୍ତା ହେଇଯାଆନ୍ତି । ଆଖି ଫୁଟେଇସାରି ଅଜା ସେମାନଙ୍କ ମୁହଁକୁ କନାରେ ଘୋଡ଼େଇ ରଖନ୍ତି ନହେଲେ ଭେଟଣା ହେଇଯିବ । ପିତୁଳିର ଆଖି ଦିଓଟିରେ ପ୍ରାଣ ନା ଆଉ କିଛି ଅଧିକା ରହସ୍ୟ ଅଛି ମୁଁ ଏ ପର୍ଯ୍ୟନ୍ତ ଜାଣିପାରିନି । ଅଜା ସହଜେ ଏ ରହସ୍ୟ ପ୍ରକଟ କରିବେ ନାହିଁ । କିଏ ବି କାରିଗର ଏ ଭେଦ କହନ୍ତି ନାହିଁ । ଖୋଳେଇ ତାଡ଼େଇ ପଚାରିଲେ ଜଗନ୍ନାଥ ମହାପ୍ରଭୁଙ୍କ ନବକଳେବର ବିଧିକୁ ଉପଲକ୍ଷ କରି କହିବେ । ଦାରୁ ଭିତରେ ବ୍ରହ୍ମନ୍ୟାସ ତ ଅତି ମଜା କଥା । କହିବେ ଜଗନ୍ନାଥଙ୍କ ଗୁଣ୍ଡିଆ ଭିତରେ କୃଷ୍ଣଙ୍କ ଅର୍ଦ୍ଧଦଗ୍ଧ ପିଣ୍ଡର ଅବଶେଷ ଆଜି ଯାଏଁ ରହିଛି । ପ୍ରତି ନବକଳେବର ବେଳେ ଦଇତାପତି ପୁରୁଣା ମୂର୍ତ୍ତିରୁ ଏହି ବ୍ରହ୍ମପଦାର୍ଥ କାଢ଼ିଆଣି ନୂଆମୂର୍ତ୍ତି ଭିତରେ ସ୍ଥାପନା କରିଦିଏ ।

ତାର ଆଖି ଉପରେ ଅନ୍ଧ ପଟି ବନ୍ଧା ହୋଇଥାଏ । ହାତରେ ପାଟକନା ଗୁଡ଼ିଆ ହୋଇଥାଏ । ସେ ଦୃଶ୍ୟ ଓ ସ୍ପର୍ଶ ରହିତ ହେଇଥାଏ ଏଇଥିପାଇଁ ଯେ ସେ ବ୍ରହ୍ମ ପଦାର୍ଥକୁ ଦର୍ଶନ କରିବା ବା ଅନୁଭବ କରିବା ବିଧେୟ ନୁହେଁ । କିଏ କିଏ କହୁଛନ୍ତି ଜଗନ୍ନାଥଙ୍କ ହୃଦ ଭିତରେ ଜିଅନ୍ତା ଶାଳଗ୍ରାମ ଆଉ କଞ୍ଚା ତୁଳସୀ ଥୁଆହେଇଛି । ସବୁ ବେଳେ ତୁଳସୀ ଓ ଚନ୍ଦନ ସତେଜ ହେଇ ରହିଥାଏ । କିଏ ଦେଖିଚି ଯେ ଏ ମହିମା କଳିବ । ଚର୍ମ ଚକ୍ଷୁକୁ ଏହା ଦୃଶ୍ୟ ହେବନି । ତତେ ଦିବ୍ୟ ଚକ୍ଷୁ ଦେବ କିଏ ଯେ ବ୍ରହ୍ମଙ୍କର ଏ ସୃଷ୍ଟିଲୀଳା ଦେଖିବୁ ଓ ଜନ୍ମ ଜନ୍ମାନ୍ତରରୁ ମୁକ୍ତି ପାଇବୁ ।

ଗୌରୀ ନିତ୍ୟାଭାଇନାଠୁ ନିର୍ଜୀବ ପିତୁଳୀରେ ପ୍ରାଣ ସଂଚାରର ବ୍ୟାଖ୍ୟା ଶୁଣିଲା ପରେ ତାର ମନ ଅନୁସନ୍ଧିତ୍ସୁ ହେଇଉଠେ । ସେ ଭାବେ ନିଜେ ଗର୍ଭରେ ଛୁଆ ନଧରିଲେ ସେ ପ୍ରାଣ ସଂଚାର କଥା କାହୁଁ ବୁଝିବ । ତାକୁ ମା ହେବାକୁ ପଡ଼ିବ । ଏ ରହସ୍ୟ ଭେଦ କରିବାକୁ ପଡ଼ିବ । ଏ ସବୁ କଥା ଅନୁଭୂତି ସିଦ୍ଧ । ପିତୁଳୀ ନିର୍ମାଣ ଭିତରେ ନିଶ୍ଚୟ ଜନ୍ମ ମୃତ୍ୟୁର ଗୂଢ଼ ଲୁଚି ରହିଛି ।

ଗୌରୀ ପିତୁଳା ଗଢ଼ା ଦେଖିବାପାଇଁ ହିଁ ବାରମ୍ବାର କଳାକୁଞ୍ଜ ଭିତରକୁ ଆସେ । ଦିନ ପରେ ଦିନ ବିତିଯାଏ । ଶୁକ୍ଳପକ୍ଷର ଚନ୍ଦ୍ର ବ ଢ଼ିଲାଭଳି ପିତୁଳା ଓ ପିତୁଳୀମାନେ କାରିଗରମାନଙ୍କ ହାତରେ ବଢ଼ନ୍ତି । ନଡ଼ା ଭିଡ଼ା ପରେ ତସୁମିଶା ବିଲାମାଟିରେ ଏକମାଟିଆ ହୁଏ । ତା' ପରେ ପିତୁଳିମାନେ ଖରାରେ ଅଗଣାରେ ଦିନେ ଦୁଇ ଦିନ ଶୁଖନ୍ତି ଓ ଦିମାଟିଆ ପାଇଁ ପ୍ରସ୍ତୁତ ହେଇଯାଆନ୍ତି । ନିତ୍ୟାନନ୍ଦ ମାଟି ପାଗ ତିଆରନ୍ତି ଓ ସୀମାଞ୍ଚଳର ହାତକୁ ବଢ଼େଇ ଦେଉଥାନ୍ତି । ଗୌରୀର ଇଚ୍ଛା ହୁଏ ସେ ବି ନିତ୍ୟାନନ୍ଦ ଭାଇନାଙ୍କ ସାଙ୍ଗରେ ମିଶି ମାଟି ହାତ ହେଇ ପିତୁଳାମାନଙ୍କ ଉପରେ ମାଟି ନେସିବ । ପିତୁଳାମାନେ ତା ହାତରେ ପୁରୁଷ୍ଟ ହେଇ ଉଠିବେ । ସୀମାଞ୍ଚଳ ବାରଣ କରେ । କହେ ଏଇ କାମ ପାଇଁ ଅଭ୍ୟାସ ଦରକାର, ତୁ ଖାଲି ଦେଖୁଥା । ଆଗ ପାଳିକୁ ହୁଏତ ତୁ ପିତୁଳାରେ ମାଟି ଦେବା ଶିଖିଯିବୁ । ଗୌରୀ ପଚାରେ, ତମ କଳାକୁଞ୍ଜ ପୁଣି ଆସନ୍ତା ବର୍ଷକୁ କଣ ଆଉଥରେ ପାର୍ବତୀପୁରମ ଆସିବ ? ନିତ୍ୟା କହେ, ତୁ ଅଜାକୁ ପଚାରେ ।

ଗୌରୀ ଭାବେ କାରିଗରମାନଙ୍କ ପିତୁଳା ଗଢ଼ଣ କାମର ଧୈର୍ଯ୍ୟ ମା

ମାନଙ୍କର ଗର୍ଭବାସର ଅପେକ୍ଷମାଣ ମୁହୂର୍ତ୍ତମାନଙ୍କ ସହିତ ସମାନ । ଗୌରୀ ପଡ଼ିଶା ଘର ପିଳିର ପ୍ରଥମ ଗର୍ଭର ଅନୁଭୂତି ସବୁ ଶୁଣିଛି । ନାରୀ ମାନଙ୍କର ମା ହେବାପାଇଁ କି ବ୍ୟାକୁଳତା । ନିଜର ଜନ୍ମିବାକୁ ଥିବା ସନ୍ତାନକୁ ଦେଖିବାପାଇଁ ଦିନ ଦିନ ମାସ ମାସର ଦୀର୍ଘ ପ୍ରତୀକ୍ଷା । ଗର୍ଭ ଭାରରେ ଅବଶ ଦେହରେ ଗର୍ଭଭାର ସମ୍ଭାଳିବାର ଯନ୍ତ୍ରଣା କି ଆନନ୍ଦଦାୟକ । ପୁଣି ସେଥିରେ କି ଆଶଙ୍କା । ଶଙ୍କା ଓ ପୁଲକର ଏକ ମିଶା ମିଶି ଅନୁଭବ । ମା ତା ପେଟ ଭିତରେ ନିଜ ଖାଦିରୁ ଆଧାର ଦେଇ ପିତୁଳାକୁ ଗଢ଼େ । ଦିନ ଦିନ ଧରି ଯନ୍ତ୍ରଣାର, ପୂର୍ଣ୍ଣତାର ଓ ପ୍ରାପ୍ତିର ସେହି ମାହେନ୍ଦ୍ର ମୁହୂର୍ତ୍ତଟିର ଅପେକ୍ଷାରେ ଥାଏ । କାରିଗରମାନେ ମଧ୍ୟ ଦିନ ଦିନ ଧରି ପିତୁଳା ଗଢ଼ନ୍ତି, ସ୍ୱପ୍ନ ଦେଖୁଥାନ୍ତି ସେମାନଙ୍କର ପିତୁଳୀମାନେ କିମିତି ଉକୁଟି ଉଠିବେ । ପୂର୍ଣ୍ଣିମାର ଚନ୍ଦ୍ର ଭଳି ହସିବେ ଓ ସମସ୍ତ ଦର୍ଶକଙ୍କୁ ହସାଇବେ । ଏହାହିଁ ମୂର୍ତ୍ତିତତ୍ତ୍ୱର ଦାର୍ଶନିକତା ଓ ସେ ଦାର୍ଶନିକତା ଭିତରେ ସୃଷ୍ଟ ହେଉଥିବା ଆନନ୍ଦ ।

ଗୌରୀ ବହୁଦିନରୁ ନିତ୍ୟାନନ୍ଦ ଭାଇନାକୁ କଣ ଗୋଟିଏ ଅତି ଗହନ କଥା କହିବ କହିବ ବୋଲି ହେଲାଣି । ସେ ସେଦିନ କଳାକୁଞ୍ଜ ଭିତରେ ପଶି ନିତ୍ୟା ଭାଇନାଙ୍କୁ ବହେ ଖୋଜିଗଲା । ଅଜାଙ୍କୁ ପଚାରିଲା, ସୀମାଞ୍ଚଳକୁ ପଚାରିଲା । ଭାଇନାଙ୍କ ଖବର ସମସ୍ତଙ୍କୁ ପଚାରିଲା । ସୀମାଞ୍ଚଳ କହିଲା, ଭାଇନା ହୁଏତ ଅଫିସ ବଖରାରେ ଗଡ଼ପଡ଼ ହେଉଥିବେ । ସେ ଆଜି ଖରାବେଳ ଯାକ ପିତୁଳାମାଠ କାମରେ ଧନ୍ଦି ହେଇ ହାଲିଆ ହେଇପଡ଼ିଛନ୍ତି । ଏବେ ମୂର୍ତ୍ତି ଗଢ଼ଣ ସରି କନା ପଡ଼ି, ଖଡ଼ିଲେପ ପ୍ରଥମ ମାଠ ହେଇଗଲାଣି । ପିତୁଳୀକୁ ବତା କାଠିରେ ଓ ଗରଡ଼ା ପଥରରେ ଯେତେ ଘସିବ ସେତେ ଚିକ୍କଣ ଦିଶିବ, ମାଠ ଉଠିବ । ଗୌରୀପାଇଁ ଏବେ କଳାକୁଞ୍ଜ ଭିତରେ ଆଉ କୌଣସି କଟକଣା ନାହିଁ । ସେ କଳାକୁଞ୍ଜର କେବଳ ବେତନ ଭୋଗୀ ଟିକଟ ବିକ୍ରେତା ନୁହେଁ, ସେ କଳାକାର ପରିବାରର ଜଣେ ଅନ୍ତରଙ୍ଗ ମଣିଷ । ସେ ପରୀଟି ଭଳି ଏ କୁଞ୍ଜରୁ ସେ କୁଞ୍ଜ ଘୁରିବୁଲୁ ଥାଏ , ଯାହାକୁ ଯାହା ପଚାରୁଥାଏ ଓ ଯାହା ତା ମନକୁ ଆସିଲା ଗପୁଥାଏ । ଗୌରୀ ଯାଇ ଯାଇ ଅଫିସବଖରାରେ ପହଞ୍ଚିଲା । ନିତ୍ୟାନନ୍ଦ ଭାଇନା ସେମିତି ସେମିତି ଗଡ଼ପଡ଼ ହେଉଥିଲେ । ଗୌରୀକୁ ଦେଖି ନିର୍ଘାତ ଖୁସିଟେ ହୋଇଗଲେ । କହିଲେ, ଆସିଲୁ ଭଲ କଲୁ, ବସ ।

ଗୌରୀ ସାହସ ସଂଚୟ କରି ଭାଇନାଙ୍କ ପାଖରେ ତା ଜୀବନର ଅନ୍ୟ

ଏକ ଅଧ୍ୟାୟ ଖୋଲି ବସିଲା । ନା'ନାଙ୍କ କାଳ ହେବା ଛଅ ସାତ ବର୍ଷ ହେଲା, ମୋତେ ବାର ପୂରି ତେର ଚାଲିଲା । ମୋ ଜୀବନରେ ଏହା ଏକ ସମ୍ପୂର୍ଣ୍ଣ ନୂଆ ଅନୁଭୂତି ଆଣିଦେଲା । ଦେହ ଭାରି ଭାରି ଲାଗିଲା । ଧୀରେ ଧୀରେ ନିତମ୍ବ ଗୁରୁ ହେଲା, ମନ ଉଚ୍ଚାଟ ହେଲା, ଦେହରେ ବସନ୍ତର ଜୁଆର ଆସିଲା ଭଳି ଲାଗିଲା । ନିଜ କଣ୍ଠ ସ୍ୱର ନିଜକୁ ଅଚିହ୍ନା ଅଚିହ୍ନା ଶୁଭିଲା । ଦେହରୁ କିମିତି ଗୋଟିଏ ନୂଆ ଗନ୍ଧ ବାରିହେଲା । ଆମ୍ମା ତାଗିଦା ଦେଇ କହିଲା, ଗୌରୀ ! ତୁ ଏଥର ନିଜକୁ ସମ୍ଭାଳି ଜଗି ରଖି ଚାଲ । ନା'ନା ତ ନାହାନ୍ତି । ମୁଁ ତୋର ଆମ୍ମା, ମୁଁ ତୋର ନା'ନା ।

ନା'ନା ମନାସିଥିବା କଥାଟି ଆମ୍ମାର ସମ୍ପୂର୍ଣ୍ଣ ମନେଥାଏ । ହେ ରାଧାବିନୋଦ ତମେ ହିଁ ମୋ ଝିଅକୁ ଜୀବନ ଦେଇଛ, ବଞ୍ଚେଇ ରଖିଛ, ତୁମରି ପାଖରେ ମୁଁ ତାକୁ ସମର୍ପି ଦେବି । ସେଦିନ ଫଗୁ ପୂର୍ଣ୍ଣମୀ ହେଇଥାଏ । ବସନ୍ତର କଅଁଳିଆ ପତ୍ର ଓ ଫୁଲରେ ଗଛ ସବୁ ଅଜାଡ଼ି ହେଇ ପଡୁଥାଏ । ଆକାଶରେ ପବନରେ ଦିଗରେ ବିଦିଗରେ ରଙ୍ଗର ମହକ ଭରିଯାଇଥାଏ । ଗାଁରୁ ଓ ଗାଁ ପାଖରୁ ଦଳ ଦଳ ସଂକୀର୍ତ୍ତନ ମଠରେ ଜମା ହେଉଥାନ୍ତି । ଉଦଣ୍ଡ କୀର୍ତ୍ତନ କରୁଥାନ୍ତି । ମୃଦଙ୍ଗର ଗୁରୁଗମ୍ଭୀର ଟିଣ୍‌ଟିଣ୍‌ ନାଦରେ ବିରାଗର ମହକ ଲାଗିଥାଏ । ଠାକୁରମାନଙ୍କ ବିମାନ ସବୁ ମଠ ବାହାରେ ମେଇଣ ପଡ଼ିଆରେ ଧାଡ଼ି ବାନ୍ଧି ବିଜେ ହେଇଥାଏ । କେତେ ପ୍ରକାରରେ , କେତେ ଢ଼ଙ୍ଗରେ ମଣ୍ଡଣି ହେଇଥାଏ । ମଠ ଭିତରେ ଲୋକେ ଚାନ୍ଦନୀରେ ଠାକୁରଙ୍କ ଲାଗିଫଗୁ ଖେଳୁଥାନ୍ତି ।

ସକାଳୁ ସକାଳୁ ଆମ୍ମା ନିଜେ ହଳଦୀ ଲଗେଇ ମୋତେ ଗାଧେଇଦେଲା । ମୁଣ୍ଡ ବାଳକୁ ମୁକୁଳେଇ ମେଥି ସିକାୟା ଦେଇ ଧୋଇ ଶୁଖେଇ ଦେଲା । ମୋ ଆଖିରେ କଜଳ ନାଇ ଦେଲା । ଶୁଭ ବୋଲି ହଳଦୀ ଚୂନ ମିଶେଇ ଅଳତା କରି ପାଦରେ ପିନ୍ଧେଇ ଦେଲା । ମୋ କପାଳରେ ବଟା ହଳଦୀର ଲେପ ପରସ୍ତେ ଲଗେଇ ଦେଇ ତା ଉପରେ ଚାଉଳ ଥାପି ଦେଲା । ମୁଁ ହୁଏତ ଠାକୁରାଣୀ ଭଳି ଦିଶିଥିବି । ମୁଁ ବୁଝି ପାରୁନଥିଲି ଆମ୍ମା ମୋତେ ଏଭଳି କରି କାହିଁକି ସଜଉଛି । ପଚାରିବାରୁ ସେ କହିଲା, ମୁଁ ତତେ ରାଧାବିନୋଦଙ୍କ ପାଖରେ ଆଜି ସମର୍ପି ଦେବି । ମୁଁ ଭାବିନେଲି ଯେ ମୋ ଆମ୍ମା ମୋତେ ମଠ ଭିତରେ ଏକୁଟିଆ ଛାଡ଼ିଦେବ ଓ ମୁଁ ଦାସୀଭଳି ରାଧାବିନୋଦଙ୍କ ସେବା କରିବି ଓ ତାଙ୍କରି ପାଖରେ ହିଁ ସାରା ଜୀବନ

କଟେଇଦେବି । ମୋ ମନ ଭିତରେ ଅଜଣା ଆତଙ୍କ ଖେଳିଗଲା । ମୋର ଦେହ ହାତ କାଠ ପଡ଼ିଗଲା । ମୁଁ ଅନୁଭବ କଲି ସତେ ଯିମିତି ମୋ ପିଣ୍ଡରେ ଆଉ ପ୍ରାଣ ନାହିଁ । ମୁଁ ପଥର ହେଇଯାଉଛି ।

ଆମ୍ମା ପିତୁଳୀ ଭଳି ମୋ ଦେହଟାକୁ ସଜେଇ ଦେଉଥାଏ । ସେ ତା ନିଜ ବାହାଘର ବେଳର ଜଉରଙ୍ଗର ନାଲି ପାଟଟାକୁ ପେଡ଼ିରୁ ବାହାର କରି କୁଞ୍ଚକରି ପିନ୍ଧେଇଦେଲା । ସେ ତା ହାତସିନ୍ଦୁକ ଖୋଲି ଗୀତଗୋବିନ୍ଦ ଖଣ୍ଡୁଆ ପାଟକୁ ପଦାକୁ ବାହାର କଲା । ମୁଁ ଲକ୍ଷ୍ୟ କରିଥାଏ ସେ ଥର ଥର ହାତରେ ପାଟଟିକୁ ଖୋଲିଲା ଓ ମୋ ଦେହରେ ବେଢ଼ଣ କରି ପିନ୍ଧେଇ ଦେଲା । ସିନ୍ଥିରେ ପାପିଡ଼ି ବିନ୍ଦି, ବାଳକୁ ବେଣୀ କରି ଜୋଡ଼ାଗାଣ୍ଠଲୁ ଝୁଲେଇ ଦେଲା, ବେଣୀ ମୂଳରେ ନାଗରମ୍ ଓ ବେଣୀ ଧାରରେ ଧାଡ଼ି ଧାଡ଼ି ସେଓ୍ବନ୍ତି । ନାକରେ ନାକ ପୁଡୁକ, କାନରେ ଚନ୍ଦ୍ରକାନଫୁଲ ପିନ୍ଧେଇ ଦେଲା, ବେକରେ ଦନ୍ତି ଖାଣ୍ଟୁ, ଜିଗିନ୍ ନାକୁ ଆଉ କାଣ୍ଠି । ମୁଁ କିମିତି ଦିଶିଲି ସେ କଥା ଜାଣିବାର ଉପାୟ ନାହିଁ । ଅଜାଙ୍କର ରାଧା ପିତୁଳୀ ଭଳି ମୁଁ ଦେଖାଯାଉଥିଲି ବୋଧେ । ଆମ୍ମା ବୋଧହୁଏ ଆଗରୁ ସାଇ ପଡ଼ିଶାର ପାଞ୍ଚ ଜଣ ଅହ୍ୟ ମାଇକିନାଙ୍କୁ ଖବରଦେଇଥିଲା । ପାତପଉନମ୍ଭ୍ରୁ ମାଓ୍ବା ଓ ଆତାଙ୍କୁ ଡ଼କେଇ ଆଣିଥିଲା । ଆତା ଓ ପିନିଙ୍କୁ ମିଶାଇ ସାତଜଣ ସଧବା ପାଟ ପତନିରେ ସଜେଇ ହେଇ ହାତରେ ମଙ୍ଗଳ ଥାଳି ଧରି ମଠକୁ ଯିବାପାଇଁ ଆମ ଘରେ ପ୍ରସ୍ତୁତ ହେଲେ । ଏ ଭିତରେ ମୋର ସ୍କୁଲ ପାଠପଢ଼ାବେଳର ସାଙ୍ଗମାନେ ଘରେ ପହଞ୍ଚିଗଲେ । ଲକ୍ଷ୍ମୀ, ସୁଜାତା, ଗୀତା, ନେତ୍ରମଣି ଓ ଚମ୍ପା ମୋତେ ବେଢ଼ିଯାଇ ପରିହାସ କରିବା ଆରମ୍ଭ କରିଦେଇଥାନ୍ତି ଓ ମୋ ବେଣୀରେ ଇଟମଳା ଫୁଲ ବାନ୍ଧିଦେଉଥାନ୍ତି , ଭ୍ରୂ ଉପରେ ଚନ୍ଦନର ଟୋପି, ଗଣ୍ଡରେ ଭ୍ରମରୀ ଲେଖିଦେଉଥାନ୍ତି । ସେମାନେ ମୋ ହାତ ପାପୁଲିକୁ ଗୁଡ଼ ଓ ସିନ୍ଦୂର ମିଶେଇ ରଙ୍ଗେଇ ଦେଲେ ।

ଘରେ ଠାକୁରଙ୍କ ପାଇଁ ମଙ୍ଗଳ ଥାଳି ଯୋଗାଡ଼ ହେଲା । ଆମ୍ମା ଥାଳିରେ ହଳଦିଆ ପାଟଜୋଡ଼ ସାଙ୍ଗକୁ ଦୁଇଟି ବାସିକା, ବାସିକା କଦଳୀ ପଟୁଆରେ ତଳେ ହଳଦିଆ ଡ଼ାକ ଜରି ଓ ଉପରେ ଏକୋଇଶି ଗୋଟି ଚାଉଳରେ ଗୁନ୍ଥା ମକୁଟ, ମଙ୍ଗଳସୂତ୍ର ଓ ତା ସାଙ୍ଗକୁ ଫୁଲ, ବଟାହଳଦି, ରକ୍ତଚନ୍ଦନ, କସ୍ତୁରୀ, କୁଙ୍କୁମ ଓ ମଲ୍ଲିଫୁଲର ବରଣମାଳା ମଧ ରଖିଲେ । ସେଥିରେ ଗୁଆଘିଅ ଦୀପ ମଧ ରଖାହେଇ ଥାଏ । ଏ ସବୁ ଆଡ଼ମ୍ବର ଦେଖି ମୋର ସନ୍ଦେହ ହେଲା ଆମ୍ମା ବୋଧହୁଏ ମନ୍ଦିର

ମହନ୍ତ ସାଙ୍ଗରେ ବା ପୁରୋହିତ ସାଙ୍ଗରେ ମୋ ବାହାଘର କରିଦେଇ ନିଜେ ନିଜ ଦାୟିତ୍ୱ ରୁ ମୁକ୍ତି ପାଇଯିବ । ଏଣୁ ମୋତେ ସବୁ କଥା ଲୁଚେଇ ରଖିଚି । ମୁଁ ତ ବଳିମୁହଁକୁ ଯାଉଥିବା ଛେଳି ଭଳି ଅସହାୟ ହେଇଯାଇଥିଲି । ମୋ ଅନ୍ତର ଓ ବାହାର ସ୍ତବ୍ଧ ଓ ଶଙ୍କିତ ହେଇଯାଇଥିଲା ।

ନିତ୍ୟା ଖୁବ୍ ଉତ୍କଣ୍ଠାର ସହିତ ଗୌରୀର ବୟାନ ଶୁଣୁଥାଏ । ପାଟି ଫିଟେଇ କିଛି କହିବା ପାଇଁ ତା ତୁଣ୍ଡରେ କଥା ପଇଟୁ ନଥାଏ । ସେ ବଲ ବଲ କରି ଗୌରୀକୁ ଚାହିଁ ରହିଥାଏ ଆଉ ଗୌରୀ କଦମ୍ବ ଗଛର ଶିଖର ଡ଼ାଳରୁ ଫୁଲ ତୋଳିଲା ପରି କଥାଗୁଡ଼ିକୁ ଗୋଟି ଗୋଟି ତୋଳି ଆଣି ନିତ୍ୟା ଭାଇନା ପାଖରେ କୁଢ଼େଇ ଦେଉଥାଏ । ନିତ୍ୟାକୁ ଲାଗୁଥାଏ ଗୌରୀ ତା ଜୀବନର ଅତ୍ୟନ୍ତ ଦୁଃଖ ଓ ବିଷାଦ ଭରା ଅଧ୍ୟାୟଟିଏ ଏତେ ସହଜ ସୁଲଭ ଢ଼ଙ୍ଗରେ ପୁରାଣ ପଢ଼ିଲା ଭଳିଆ ପଢ଼ି ତାକୁ ଶୁଣେଇଦେଉଛି । ଦୁଃଖ ସାମୟିକତାରୁ ଉତୁରି ପଡ଼ି ସତ୍ତାକୁ ଜାଳି ପୋଡ଼ି ଦେଲା ପରେ ଦୁଃଖ ସମ୍ପର୍କରେ କହିଲେ ମନରେ ଆଉ କିଛି ପ୍ରତିକ୍ରିୟା ହୁଏନା । କାରଣ ମନଟି ବି ସବୁରି ଭିତରେ ଶେଷ ହେଇଯାଇଥାଏ ।

ଗୌରୀ କହି ଚାଲିଲା ।

ମୋ ଆଖିରେ ଲୁହ ଭରିଗଲା । ମୋ ଅନ୍ତର ବ୍ୟଥାରେ ଓ ବେଦନାରେ ଆଉଟୁ ପାଉଟୁ ହେଇଗଲା । ମୋ ପ୍ରାଣ ଭାରି ହେଇ ପଡ଼ିଲା । ମୁଁ ନିଜକୁ ଆଉ ସମ୍ଭାଳି ପାରିଲିନି । ଭୋ ଭୋ କରି କାନ୍ଦିଲି ଯିମିତି ନଦୀ ବନ୍ଧ ପାଣି ଭରି ହେଇଗଲେ ଭାଙ୍ଗିପଡ଼େ । ଆମ୍ମା ମୋତେ କୁଣ୍ଢେଇ ନେଲା କହିଲା ଗୌରୀ, ମୁଁ ତୋତେ ଅନ୍ତର କରିଦେଉନି । ନା'ନା ରାଧାବିନୋଦଙ୍କ ପାଖରେ ମନାସିଥିଲେ ମୁଁ ଯଦି ସେକଥାକୁ ଖାତିରି ନକରେ, ଭଲ ମନ୍ଦ ହୁଏ ! ନା'ନା ତ ନାହାନ୍ତି, ମୁଁ ହତାଶ ହେଇଯିବି । ଆଜି ଖାଲି ମନ୍ଦିରରେ ତୋର ପୂଜାଟିଏ ହେବ । ରାଧାବିନୋଦ ତୋତେ ଆପଣାର କରି ଗ୍ରହଣ କରିବେ ଆଉ ତୁ ଆଜିଠାରୁ ଠାକୁରଙ୍କର ହେଇ ରହିବୁ । ଠାକୁର ତୋତେ ଶଙ୍ଖେ ପୁରାଇ ଚକ୍ର ଆଢୁଆଳ କରି ଏ ସଂସାରରେ ବଞ୍ଚେଇ ରଖିବେ । ମା, ତୁ ଏମିତି ବ୍ୟସ୍ତ ହେଲେ କିମିତି ଚଳିବ । ଆମ୍ମାଙ୍କ ସାଇ ପଡ଼ିଶା ସାଙ୍ଗ ଓ ମୋ ସାଙ୍ଗମାନେ ମୋତେ ସବୁମନ୍ତେ ବୁଝେଇ ବସିଲେ । ଏଇ କଥାକୁ ତୁ କାନ୍ଦୁଛୁ । ରାଧାବିନୋଦ ପରା ଆମ କୁଳଠାକୁର ।

ତା ପରେ ଯୋଡ଼ି ନାଗରା ଆମ ଘର ଦାଣ୍ଡରେ ବାଜିଲା । ମୁଖବୀଣା ସ୍ୱର ଲମ୍ୱେଇଲା । ଶଙ୍ଖ ହୁଳହୁଳିରେ ଦାଣ୍ଡ ଫାଟିପଡ଼ିଲା । ବାଜାବଜନ୍ତ୍ରୀର ଆଡ଼ମ୍ବର ମାଙ୍ଗଳିକ ଉତ୍ସବର ମୁହୂର୍ତ୍ତକୁ ଆହୁରି ମୁଖର କରିଦେଲା । ସରପଞ୍ଚ ଡ଼ି.ନାରସେୟା ଓ ମୋତେ ସ୍କୁଲରେ ପାଠ ପଢ଼େଇଥିବା ଆମ ଦିଦି ଇଶ୍ୱରାମ୍ମା ନାଇଡୁ ଆସି ଆମ ଘରେ ପହଞ୍ଚିଗଲେ । ଆମ ଗାଁର ଦିଜଣ ଧୋବା ପିଲା ଆମ ଦାଣ୍ଡଦୁଆରେ ପାହାଡ଼ା ବିଛେଇବା ଆରମ୍ଭ କଲେ । ଆମ୍ମା ମୋତେ ଡ଼ାହାଣ ଗୋଡ଼ କାଢ଼ି ଆମ ଘରର ଏରୁଣ୍ଡି ବନ୍ଧ ଡ଼େଇଁବାକୁ କହିଲା । ତା ପଛେ ପଛେ ସାତଜଣ ଅହ୍ୟ ମଙ୍ଗଳ ଥାଳି ଧରି ମୋ ପଛେ ପଛେ ଆସିଲେ । ଆମ ମୁଣ୍ଡ ଉପରେ ପାଟଶାଳିଆ ଦିଜଣ ରଙ୍ଗଶାଢ଼ୀ ଟିଏ ଓଢ଼ଣ ଭଳି ଟାଣି ଧରିଥାନ୍ତି । ମଝିରେ ଆଉଜଣେ ବାଡ଼ିଟିରେ ଉଠେଇ ଓଢ଼ଣକୁ ଟେକି ଧରିଥାଏ । ବାଜା ବାଜୁଥାଏ । ବାଜାର ପ୍ରତି ଉଚାଟରେ ମୋର ପ୍ରାଣ ଡ଼ହଳ ବିକଳ ହେଉଥାଏ । ମୋ ମନ ଭିତରେ ବାହାଘରର ଆନନ୍ଦ ଉଲ୍ଲାସ ନଥାଏ । ମୋ ପ୍ରାଣରେ ତୁହାକୁ ତୁହା ପ୍ରଶ୍ନ, ସତେ ଏମିତି କଣ ବାହାଘର ସମ୍ଭବ ହେଇପାରେ ? ପୁଣି ପିତୁଳା ସାଙ୍ଗରେ ? ବର କନିଆ ଦେଖାଚାହାଁ ନାହିଁ, ପସନ୍ଦ ଅପସନ୍ଦର କଥା ନାହିଁ, ଉଁ ନାହିଁ କି ଚୁଁ ନାହିଁ , ଏ କିଭଳି ବାହାଘର ? ମୋ ସାଙ୍ଗମାନେ ବି କିମିତି ତଟସ୍ଥ ହେଇ ପଡ଼ିଥାନ୍ତି । ଲାଗୁଥାଏ ଗୋଟିଏ ବିଧି ପ୍ରେରିତ ପର୍ବ ଭଳି । ମୁଁ ଯିମିତି ଏ ମଣିଷ ମାନଙ୍କ ପଟୁଆରରେ ଏକା ଚିତ୍ରିତ ପିତୁଳୀ । ଅହ୍ୟ ସ୍ତ୍ରୀ ଲୋକମାନେ ହଳଦିଆ ଉଆ ଚାଉଳ ମୁଠା ମୁଠା ମୋ ଉପରକୁ ପକାଉଥାନ୍ତି । ଆମେ ଧୀରେ ଧୀରେ ରାଧାବିନୋଦ ମଠରେ ପହଞ୍ଚିଲୁ ।

ନିତ୍ୟାଭାଇନାକୁ ଗୌରୀର ଏତକ ବର୍ଣ୍ଣନା ମଜେଇ ଦେଲା । ସେ ସ୍ୱପ୍ନ ଦେଖିବାକୁ ଲାଗିଲେ । ସେ ଖିରୋଦର ପାଟ ପିନ୍ଧିଛି । କାନ୍ଧରେ ଉତ୍ତରୀୟ ନାଇଛି । ଗଳାରେ ଚମ୍ପାଫୁଲର ବରଣ ମାଳା, ଆଖିରେ କଜଳର ଧାର । ମୁହଁରେ ତାର ଆଉ ଦାଢ଼ି ନାହିଁ , ସେ ବରବେଶ ସାଜିଛି, ବାଜା ବାଜୁଛି । ବରଯାତ୍ରୀ ପଟୁଆର ପାର୍ବତୀପୁରମ୍ ଗାଁ ଭିତରକୁ ପଶୁଛି । ଅଜା ବରହମ୍‌ପୁରୀ ଜଉ ପାଟଟେ ପିନ୍ଧି କାନ୍ଧରେ ଛଥାଟେ ଧରି ନିତ୍ୟାକୁ ବାଟ କଢ଼େଇ କଢ଼େଇ ପଟୁଆର ଆଗରେ ରାଧାବିନୋଦ ମଠ ଆଡ଼କୁ ଆସୁଛନ୍ତି । ସେ ରାତିରେ ବି ଛତାଟି ଫୁଟେଇ ଧରିଛନ୍ତି । ଅନ୍ଧାର ରାତି ପଟୁଆର ଆଗରେ ପେଟ୍ରୋମାକ୍ସ ଲାଇଟ ଧରି ଦଳେ ମାଇକିନା ଚାଲିଛନ୍ତି । ତା ପଛକୁ ପଛ ମିଶ୍ରେ ଅଜାଙ୍କ ଦୁଇପୁଅ ଗୋବିନ୍ଦ ଓ ସଂଜୟ, ସୀମାଞ୍ଚଳ, ମୀନକେତନ ଓ

ଭୁବନା ପାଇକରା ହାତରେ ମଲ୍ଲିଫୁଲ ମାଳ ପିନ୍ଧି ଢ଼ଳି ଢ଼ଳି ଚାଲିଛନ୍ତି । ନିତ୍ୟାନନ୍ଦଙ୍କୁ ଲାଗୁଛି ସେ ରାଧାବିନୋଦ ମଠ ତୋରଣ ପାଖରେ ପହଞ୍ଚିଯାଇ ଅପଲକ ନୟନରେ ଗୌରୀକୁ ଚାହିଁରହିଛି । ସେ ହଠାତ୍ ପ୍ରକୃତିସ୍ଥ ହେଇଯାଇ ନିଜକୁ ସଜାଡ଼ି ନେଲା ଓ ଗୌରୀକୁ ପଚାରିଲା, ଗୌରୀ, ତା ପରେ କଣ ହେଲା ।

ତା ପରେ ଆମେ ରାଧାବିନୋଦ ମଠ ବେଢ଼ାରେ ପହଞ୍ଚିଲୁ । ରାଧାବିନୋଦଙ୍କ ତରଫରୁ ବରଯାତ୍ରୀରେ ମହନ୍ତ, ପୁରୋହିତ, ପୂଜାରୀ, କରଣ, ଟହଲିଆ, ଖୁଣ୍ଟିଆ ଆଉ ମଠର ଯେତେକ ଖମ୍ଭାରି ହଳିଆ ମୋତେ ଦେଖିବାକୁ ପହଞ୍ଚିସାରିଥିଲେ । ଗାଁ ମୁଖିଆମାନଙ୍କର ଛୋଟ କାଟର ଭିଡ଼ଟିଏ ମଧ୍ୟ ମଠ ଭିତରେ ଅଟକି ରହିଥାଏ । ମହନ୍ତକୁ ଦେଖି ମୋ ଦେହ ଯିମିତି ରାଗରେ ଜଳି ଉଠିଲା । ମହନ୍ତ ଲାଗୁଥାଏ କଳା ମୁଗୁନି ପଥରର ଏକ ଅଲୋଡ଼ା ପିତୁଳା ଭଳି, ଲଣ୍ଡିତମୁଣ୍ଡ, ଚିକ୍କଣ ଦେହ, ବହଳିଆ କାନ୍ଧ ଓ ବେକ । ବେକରେ ଚର୍ବିର ପରସ୍ତ ଓ ଗଳାରେ ତୁଳସୀର ଚାରିସୋରା ଚିପା ମାଳି । ସେ ତାର ମୋଟା ଓଠକୁ ପାନ ଖାଇ ରଙ୍ଗେଇଥାଏ । ମୋତେ କିମିତି ଲୋଭେଇଲା ଆଖିରେ ଚାହିଁରହିଥାଏ । ଆମ୍ଭାର ସାଙ୍ଗମାନେ ମତେ ଠାକୁର ଘଜ ଭିତରକୁ ନେଇଗଲେ । ମନ୍ଦିରର ବାହାରମଣ୍ଡପରେ ହୋମର ଆୟୋଜନ ହେଲା । ମଝିରେ ମୁରୁଜରେ କୋଠି କଟା ହେଲା, ଠାକୁରଙ୍କ ଆଡ଼କୁ ମୁହଁ କରି ସେମାନେ ମୋତେ ବସେଇଦେଲେ । ମୁଁ ପ୍ରାଣ ନଥିବା ପିତୁଳୀ ଭଳି ବସିରହିଥାଏ । ଲାଗୁଥାଏ ରାଧାବିନୋଦ ମୋତେ ବାଙ୍କ ଚାହାଣୀରେ ଦେଖୁଛନ୍ତି ଆଉ ମୁରୁକି ମୁରୁକି ହସୁଛନ୍ତି । ମତେ ଶୁଭୁଥାଏ ମନ୍ଦିରର ଗମ୍ଭୀରା ଘରେ ବଂଶୀ ବାଜୁଛି । ରାଧାବିନୋଦ ଆମ ଘରୁ ଆସିଥିବା ପିତାମ୍ବରୀ ପିନ୍ଧିଲେ । ଫୁଲ ସଜ ହେଲେ । ମଥାରେ ବାସିକା ନାଇଲେ । ପୂଜାରୀ ଠାକୁରଙ୍କ ଗଳାରେ ମଲ୍ଲିଫୁଲର ବରଣ ମାଳା ମଣ୍ଡିଦେଲା । ରସିକ ପ୍ରବର କୃଷ୍ଣଚନ୍ଦ୍ର ଆହୁରି ସୁନ୍ଦର ଦେଖାଗଲେ । ମୋ ଡ଼ାହାଣରେ ଆମ୍ଭା ମୋ ପାଖକୁ ଲାଗି ବସିଥାଏ, ମୋ ଡ଼େବିରି ପଟେ ବସିଥାନ୍ତି, ଆମ କୁଳପୁରୋହିତ , ତାଙ୍କ ପାଖକୁ କୋଠିର ଉତ୍ତର ପଟେ ମହନ୍ତ । ମହନ୍ତଙ୍କୁ ମୁହଁ କରି ମଠର ପୁରୋହିତ ଓ ତାଙ୍କ ପଛକୁ ଅନ୍ୟମାନେ । ପୁରୋହିତ ଠାକୁରଙ୍କୁ ଛୁଁଆଇ ଆଣି ମୋ ମଥାରେ ମଧ୍ୟ ବାସିକା ପିନ୍ଧେଇଦେଲେ । ବାହାଘରର ଏସବୁ ଜଂଜାଳ ଭିତରେ ରାଧାବିନୋଦ ହିଁ ମୋ ପାଇଁ ଆଶା ଓ ବିଶ୍ୱାସର ବିଗ୍ରହ ରୂପେ ଉଭା ହେଇଥାନ୍ତି ଆଉ ସେହି ରାଧାବିନୋଦଙ୍କୁହିଁ ମନରେ ପ୍ରାଣରେ ଚିନ୍ତି ଚିନ୍ତି ମୁଁ ସଂଦିଗ୍ଧତାର ମୁହୂର୍ତ୍ତଗୁଡ଼ିକୁ ସହିନେଉଥାଏ ।

ହୋମ, ପୂଜା, କର୍ମ ସରିଗଲା ପରେ ପୁରୋହିତ ମଙ୍ଗଳସୂତ୍ରକୁ ନେଇ ମନ୍ଦିର ଗମ୍ଭୀରା ଭିତରକୁ ଆସିବାକୁ ଇଙ୍ଗିତ ଦେଲା । ଆମ୍ଭା ହାତ ଧରି ମୋତେ ବସିବା ଜାଗାରୁ ଉଠେଇଦେଲା, ମୋ ମୁଣ୍ଡ ଉପରେ ହାତ ବୁଲେଇ ଆଣି କହିଲା ମା ଯା ରାଧାବିନୋଦଙ୍କୁ ମଙ୍ଗଳସୂତ୍ର ଦେଇ ବରଣ କର । ଠାକୁରେ ତୋତେ ନିଶ୍ଚୟ ସାହା ହେବେ । ମୁଁ ଅତି ସଂତର୍ପଣରେ ଗୋଡ଼ କାଢ଼ି ପୁରୋହିତ ସାଙ୍ଗରେ ମନ୍ଦିର ଗମ୍ଭୀରା ଭିତରେ ପ୍ରବେଶିଲି । ଆମ୍ଭା ସାଙ୍ଗମାନେ ବାହାରେ ହୁଳହୁଳି ଦେବା ଆରମ୍ଭ କଲେ । ମନ୍ଦିର ବାହାରେ ଯୋଡ଼ି ନାଗରା, ଶଙ୍ଖ ଆଉ ମୁଖବୀଣା ବାଜି ଉଠିଲା । ମନ୍ଦିରର ପରିବେଶ ପ୍ରକମ୍ପିତ ହେଲା ।

ଗୌରୀ ତା ଜୀବନର ଅନୁଭୂତିକୁ ବଖାଣିବାରେ ଲାଗିଛି ।

ମୁଁ ପୁରୋହିତ କହିବା ପ୍ରକାରେ ରାଧାବିନୋଦଙ୍କ ଗଳାରେ ମଙ୍ଗଳସୂତ୍ର ବାନ୍ଧିଦେଲି । ପୁରୋହିତ ମଙ୍ଗଳସ୍ତୁତି ଗାନ କଲେ । ମୁଁ ରାଧାବିନୋଦଙ୍କ ପାଦ ତଳେ ମୁଣ୍ଡିଆ ମାରି ଜଣାକଲି, ହେ ଠାକୁର ! ତମେ ଆଜିଠୁ ମୋ ପ୍ରଭୁ ହେଲ । ମୋର ଜୀବନର ଚଲାପଥକୁ ତୁମେ ହିଁ ପୁଷ୍ପିତ କର । ସଂସାରର ଦୁଃଖ ଜଂଜାଳ ସହିବାପାଇଁ ମୋତେ ଶକ୍ତି ଦିଅ । ମୋ ଜୀବନକୁ ଶାଶ୍ୱତ ଆନନ୍ଦରେ ପୂର୍ଣ୍ଣ କର । ସଂସାରର ଲୀଳାଖେଳ ସରିଗଲା ପରେ ତୁମରି ପାଦପଦ୍ମରେ ହିଁ ମୋତେ ସ୍ଥାନ ଦିଅ । ଏଭଳି କଥା କହିବା ପାଇଁ ମୋ ତୁଣ୍ଡରେ କିଏ ଯେ ଭାଷା ଦେଲା ମୁଁ କହିପାରିବିନି । ବିସ୍ମୟ ଆନନ୍ଦରେ ମୋ ଆଖିରୁ ଲୁହ ଗଡ଼ିଯାଉଥାଏ । ମୋ ପ୍ରାଣରେ ଏକ ଅଦ୍ଭୁତ ପୁଲକ ଖେଳିଯାଉଥାଏ ।

ଆମେ ମନ୍ଦିର ଗମ୍ଭୀରାରୁ ଗୋଡ଼ କାଢ଼ି ବାହାର ବଖରାକୁ ଆସିଲୁ । ରାଧାବିନୋଦଙ୍କ ଗଳାରୁ ମଙ୍ଗଳସୂତ୍ରଟି ଫିଟେଇ ପୁରୋହିତ ଆମ ପଛେ ପଛେ ଆସିଲେ । ଆମ୍ଭାର ସାଙ୍ଗମାନଙ୍କୁ ମଙ୍ଗଳସୂତ୍ରଟି ବଢ଼େଇଦେଇ କହିଲେ ତମେ ଗୌରୀ ବେକରେ ଠାକୁରଙ୍କ ପାଖରେ ଅର୍ପିତ ମଙ୍ଗଳସୂତ୍ରଟି ପ୍ରେମବନ୍ଧନର ସ୍ୱୀକୃତିରେ ବାନ୍ଧିଦିଅ । ଠାକୁରଙ୍କ ସହିତ ସମ୍ପର୍କ କେବଳ ଗୋଟିଏ ଜୀବନର ନୁହେଁ , ଏହି ସମ୍ବନ୍ଧ ଦେହର ନୁହେଁ ମନର ବି କେବଳ ନୁହେଁ । ଏହି ସମ୍ପର୍କ ପ୍ରାଣର, ଚେତନାର, ଜନ୍ମ ଜନ୍ମାନ୍ତରର । ଆମ ସାଙ୍ଗରେ ଆସିଥିବା ଆତା, ପିନି ଓ ଆମ୍ଭାର ପାଞ୍ଚ ଜଣ ସଧବା ସାଙ୍ଗ ନିଜ ନିଜ ବେକରେ ମଙ୍ଗଳସୂତ୍ରକୁ ଛୁଆଇଁ ଶେଷରେ ମୋ ବେକରେ

ବାନ୍ଧିଦେଲେ । ଆମ୍ଭା ମତେ କୁଣ୍ଢେଇ ନେଲେ । ମୁଁ ମହନ୍ତ, ପୁରୋହିତ, ପୂଜାରୀ, ଆତା, ପିନି, ଆମ୍ଭାଙ୍କ ସାଙ୍ଗ ଓ ଶେଷରେ ଆମ୍ଭାକୁ ମୁଣ୍ଡିଆ ମାରି ଘରକୁ ଫେରିଲି ।

ନିତ୍ୟାନନ୍ଦ ଭାଇନା ସବୁ କଥା ଶୁଣିଲେ । କଥା ର ତାତ୍ପର୍ଯ୍ୟ ବୁଝିଲେ ନା ନାହିଁ ତାଙ୍କ ମୁହଁରୁ ଜଣା ଗଲାନି । କାହିଁ ସେ ତ ବିଚଳିତ ହେଲେନି, ଭାଙ୍ଗିପଡ଼ିଲେନି । ତାଙ୍କ ମୁହଁରେ ସେଇ ସେମିତି ଔଜ୍ଜଲ୍ୟ ଥିଲା । ସେ ଅତି ନିର୍ଲିପ୍ତ ଭାବେ ପ୍ରକାଶ କଲେ, ଏଥିରେ ଦୁଃଖ କରିବାପାଇଁ କିଛି ତ ଉପାଦାନ ନାହିଁ । ବିବାହ ଜଣେ ନାରୀ ଜୀବନରେ ଅତି ଗୁରୁତ୍ୱପୂର୍ଣ୍ଣ ଓ ସୁଖଦ ଘଟଣା । ପୁଣି ବାହାଘର ଠାକୁରଙ୍କ ସାଙ୍ଗରେ । ଏହା କମ୍ ଗୌରବ ଓ ଆସ୍ୱର୍ଦ୍ଧାର କଥା ନୁହେଁ । ଏମିତି ଘଟିବା ହିଁ ଅଲୌକିକତା । ଯୋଗୀ ମୁନି ଋଷିମାନେ ଯାହାଙ୍କର କ୍ଷଣିକ ଦର୍ଶନ ପାଇଁ, ଟିକିଏ କରୁଣା ପାଇଁ ଯୁଗ ଯୁଗ ଧରି ସାଧନା କରନ୍ତି, ଯାହାଙ୍କ ପଦାରବିନ୍ଦକୁ ଭଜି ଭଜି ନପାଇ ବାରମ୍ବାର ମଣିଷ ଯୋନିରେ ଜନ୍ମ ହୁଅନ୍ତି , ସଂସାରର ଜଂଜାଳ ଭିତରେ ଘାଣ୍ଟି ହୁଅନ୍ତି, ତୁ ତାଙ୍କର କେବଳ ଦର୍ଶନ ନୁହେଁ ସାନ୍ନିଧ୍ୟ, ପ୍ରେମ ଓ ସଖ୍ୟ ପାଇଲୁ । ତୁ ତ ଭାଗ୍ୟବତୀ । ରାଧାବିନୋଦ ଠାକୁରଙ୍କୁ ତୁ ପତି ରୂପେ ପାଇଲୁ । ଗୋପର ସହସ୍ର ଗୋପୀ ଜୀବନରେ ଏତେ ପ୍ରେମ କରି ତପ କରି ଯାହାକୁ ପାଇଥିଲେ, ଶ୍ରୀରାଧା ଏତେ ଲାଞ୍ଛନା ଦୁଃଖ କଷ୍ଟ ସହି, ମାନ ଅଭିମାନ କରି, ଏତେ ତ୍ୟାଗ କରି ଯାହାକୁ ଲଭିଥିଲେ ତୁ ଅନାୟାସରେ ତାଙ୍କୁ ପାଇଗଲୁ । ଏହାଠୁ ବଳି ଭାଗ୍ୟ ଆଉ କ'ଣ ବା ହେଇପାରେ ।

ଗୌରୀ ଧରିନେଇଥିଲା ନିତ୍ୟାନନ୍ଦ ଭାଇନା ତା ଜୀବନର ସବୁ ଠାରୁ ଗୁରୁତ୍ୱପୂର୍ଣ୍ଣ ଓ ମହତ୍ୱପୂର୍ଣ୍ଣ ଅଧ୍ୟାୟଟି ଶୁଣିଲା ପରେ ହତାଶାରେ ଭାଙ୍ଗିପଡ଼ିବେ, ସମବେଦନାରେ ତାଙ୍କ ପ୍ରାଣ ବ୍ୟାକୁଳ ହେଇ ଉଠିବ । ଏତେ ନିରୀହ ଝିଅଟିକୁ ଗୋଟିଏ ପିତୁଳା ସାଙ୍ଗରେ ଛନ୍ଦି ଦେଇଥିବାରୁ ଗୌରୀର ପରିବାର ପ୍ରତି ବିଦ୍ରୋହରେ ତାଙ୍କର ସ୍ୱର ରୁକ୍ଷ ହେଇଉଠିବ । କିନ୍ତୁ ଏସବୁ କିଛି ଘଟିଲାନି । ଭାଇନାଙ୍କ ସହଜ ଟିପ୍ପଣୀରେ ସେ ହତୋତ୍ସାହ ହେଇପଡ଼ିଲା । ନିତ୍ୟା ଭାଇନା ଏ ସମସ୍ତ ଶୁଣିଲାପରେ ବି ଗୌରୀ ପ୍ରତି ତାଙ୍କର ଆସକ୍ତି ଜନ୍ମି ନଥିଲା ପରି ଲାଗୁଥିଲା ।

ଗୌରୀ ହୁଏତ ଅସଲ ଯାହା କହିବାପାଇଁ ଚାହୁଁଥିଲା ନିତ୍ୟାନନ୍ଦ ଭାଇନାଙ୍କୁ ସେକଥା ଆହୁରି କହିପାରିନି । ତା ଜୀବନର ସମ୍ପୂର୍ଣ୍ଣ ଘଟଣା ପ୍ରବାହଟି

ସହିତ ପରିଚିତ ନହେଲେ ସମବେଦନାରେ ଆନ୍ଦୋଳିତ ହେଇ ହେବନି ।

ଠିକ୍ ଏତିକି ବେଳେ ଅଜା ଡ଼ାକ ପକାଇଲେ, ହଇରେ ନିତ୍ୟା, ଆଉ କେତେବେଳ ପର୍ଯ୍ୟନ୍ତ ଶୋଇ ରହିବୁ କି ? ଖରା ଗଡ଼ିଗଲାଣି । ପିତୁଳା ଯାକକୁ କୁଣ୍ଡାଭିତରକୁ ଟେକି ଆଣ ।



ନିତ୍ୟାନନ୍ଦ ଭାବିଲା ପାର୍ବତୀପୁରମ୍‌ରୁ ବାହୁଡ଼ିଲାବେଳେ ଗୌରୀକୁ କିଛି ଗୋଟିଏ ଭଲ ଦରବ ଭେଟିଦେବ । ଗୌରୀ ଏତେ ସ୍ନେହ ଅଯାଚିତ ଭାବେ ଅଜାଡ଼ି ଦେଇଛି । ତାକୁ, ଅଜାଙ୍କୁ ଆଉ କଳାକୁଞ୍ଜର ସମସ୍ତଙ୍କୁ ଅତି ଆପଣାର ଭଳି ଭଲ ପାଇ ବସିଛି । ଏଣୁ ସମସ୍ତଙ୍କ ତରଫରୁ ଉପହାରଟିଏ ଦେଲେ ସମୀଚୀନ ହେବ । ଏମିତି ଏମିତି ହେଇ କଥା ଅଜାଙ୍କ କାନକୁ ଗଲା । କଳାକୁଞ୍ଜର ସବୁ କାରିଗରଙ୍କ ଇଚ୍ଛା ସେମାନେ ସମସ୍ତେ ମିଶି ଗୌରୀକୁ କୃଷ୍ଣଙ୍କର ତ୍ରିଭଙ୍ଗି ଠାଣିର ମୂର୍ତ୍ତିଟିଏ ଉପହାର ଦେବେ । ଗୌରୀ ଘରେ ଥାପିବ, ପୂଜା କରିବ, ନିତି ମନେ ପକେଇବ । ଅଜା ସୀମାଞ୍ଚଳକୁ ଚନ୍ଦନ କାଠରେ ପିତୁଳାଟିଏ ଖୋଦେଇବା ପାଇଁ କହିଲେ । ସୀମାଞ୍ଚଳର ହାତ ଖୁବ୍ ସରସ । କୁଆଡୁ ରଖିଥିଲେ କେଜାଣି ଅଜା ଫୁଟେ ଉଚ୍ଚର ଚନ୍ଦନ କାଠଟେ ସୀମାଞ୍ଚଳକୁ ଦେଇ ତା ଉପରେ ନକ୍ସାରେ ଠାରିଦେଲେ । କହିଲେ ବାପ ହାତ ଫୁର୍ତ୍ତି କରେ । ସାତ ଦିନ ଭିତରେ କାମଟେ ଉତୁରେଇ ଦେ । ସୀମାଞ୍ଚଳ ମଧ ଘଟଣାଟିର ଗୁରୁତ୍ୱ ହୃଦୟଙ୍ଗମ କଲାପରେ କାମରେ ପେଟେଇ ପଡ଼ିଲା । ରାତି ଦିନ ଲାଗି କାମଟି ଉଠେଇ ଦେଲା । ସେ ମଝି ମଝିରେ ଅଜାଙ୍କୁ ଦେଖେଇ ତାଙ୍କ ମନ ମୁତାବକ ଖୋଦେଇ କାମ ବଢ଼େଇ ନେଉଥାଏ । ହଉ ହଉ ଚମତ୍କାର ପ୍ରତିମାଟିଏ ହେଇଗଲା । ତିନି ଥାକିଆ ପଦ୍ମବଇଠା ଉପରେ ଗୋଡ଼ ଛନ୍ଦି ତ୍ରିଭଙ୍ଗି ଠାଣିରେ ମୋହନସୁନ୍ଦର ଉଭା ହେଇଗଲେ । ନିତ୍ୟାକୁ ସୁନାରି ପାଖକୁ ପଠେଇ ଅଜା ରୁପାର ବଂଶୀଟିଏ ମଧ ଗଢ଼େଇ ଦେଲେ ।

କଳାକୁଞ୍ଜଭିତରେ ଟୁପୁରୁ ଟାପର ଫୁସୁରୁ ଫାସର ଭିତରୁ ଗୌରୀ ଠଉରେଇ ନେଲା ଅଜା ଓ କାରିଗରମାନେ ତାକୁନେଇ କଣ ଗୋଟିଏ ଚର୍ଚ୍ଚା ଚଳେଇଛନ୍ତି । ନିତ୍ୟାଭାଇନା ବି ସେଥିରେ ସାମିଲ ଅଛନ୍ତି । କଳାକୁଞ୍ଜ ଶେଷ ହେବା ଦିନ ପାଖେଇ ଆସୁଥାଏ । ଆଉ ପାଞ୍ଚଟା ଦିନ ପରେ କଳାକୁଞ୍ଜ ଭଙ୍ଗା ହେଇଯିବ । ତାର ଦୁଇ ତିନି ଦିନ ପରେ ଅଜା ଓ ନିତ୍ୟାଭାଇନା ପାର୍ବତୀପୁରମ୍ ଛାଡ଼ି ଚାଲିଯିବେ । ଗୌରୀ ତା ଜୀବନର ଅସଲ କଥାଟକ କହିବ କହିବ ବୋଲି ସମୟ ପାଉ ନଥାଏ । ଉପରଓଳିଟାରେ ନିତ୍ୟାଭାଇନା ସୁନାରି ଶାଳରୁ ବଂଶୀନେଇ କୁଞ୍ଜକୁ ଫେରୁଛନ୍ତି ।

ଗୌରୀ ତାଙ୍କୁ ବାଟରେ ଭେଟିଲା ଓ ଚମ୍ପାବତୀନଦୀ ଆଡ଼େ ଯିବାପାଇଁ ପ୍ରବର୍ତ୍ତେଇଲା । ନିତ୍ୟା ଭାଇନା ଗୌରୀକଥାରେ ପ୍ରଥମେ ଥତମତ ହେଇଗଲେ । ଭାବିଲେ ଅଜା ଅନ୍ୟଥା ଚିନ୍ତାକରିବେନିତ । ଅର୍ଥରୁ ଅନର୍ଥ ହେବନିତ? ଗୌରୀ ନିତ୍ୟାଭାଇନାଙ୍କ ଦୋଦୋପାଞ୍ଚ ଭାବକୁ ଠଉରେଇ ନେଲା । ତାଙ୍କୁ କହିଲା ତମେ ଯଦି ଡ଼ରୁଛ ମୁଁ ଅଜାଙ୍କୁ ଜଣେଇ ଦେଇ ଆସିବି ।

ରାଧାବିନୋଦ ମଠ ପଛପଟେ ଝଞ୍ଜାବତୀ ନଦୀବହିଯାଇଛି । ଗୌରୀ ଆମ୍ମାଠୁ ଶୁଣିଛି ଝଞ୍ଜାବତୀ ଖାଲି ନଦୀ ତ ନୁହେଁ । ତା ସାଙ୍ଗରେ ଯିମିତି ବହି ଆସିଛି ଇତିହାସ ଓ କିମ୍ବଦନ୍ତୀର ଗାଥା । ପାର୍ବତୀପୁରମ୍ ଟିକିଏ ଆଗରୁ ଚମ୍ପାବତୀ ମିଶିଛି ଝଞ୍ଜାବତୀ ସାଙ୍ଗରେ । ଦୁହେଁ ଚମ୍ପାନଗରର ଅଧୀଶ୍ୱର ଲାଙ୍ଗୁଳା ବିଶ୍ୱମ୍ବର ଦେବଙ୍କ ରାଣୀ । ଅଭିଶାପ ପାଇ ସେମାନେ ଏବେ ନଦୀ । ସମୁଦ୍ରରେ ମିଶିଯିବା ପାଇଁ ଦୁର୍ବାର ବାସନା । ଏଣୁ ଏମାନେ ସଦା କଳକଳ ଓ ଛଳଛଳ । ଝଞ୍ଜା ପାଟରାଣୀ ଆଉ ଚମ୍ପା ସାନରାଣୀ । ସେମାନେ କୁଳମାନ ମହତ ଲଘି ରାଜ୍ୟର ସେନାପତିଙ୍କ ସାଙ୍ଗେ ନିଭୃତ ପ୍ରେମ ରଚୁଥିଲେ । ସେନାପତିଙ୍କ ଅନିନ୍ଦ୍ୟ ସୁନ୍ଦର ରୂପ ସେମାନଙ୍କୁ ପାଗଳ କରିଦେଇଥିଲା ଆଉ ସେମାନେ ଉଚ୍ଛୃଙ୍ଖଳ ହେଇପଡ଼ିଥିଲେ ଓ ସମସ୍ତ ରାଜକୀୟ ମର୍ଯ୍ୟାଦାକୁ ପଛରେ ପକେଇ ନିଜନିଜର କାମବାସନାକୁ ଚରିତାର୍ଥ କରିଥିଲେ । ଏହାହିଁ ବୋଧହୁଏ ଥିଲା ସେମାନଙ୍କର ପାପ କର୍ମ ଓ ସେହି ପାପ କର୍ମ ଯୋଗୁଁ ହିଁ ସେମାନେ ଅଭିଶପ୍ତ ହେଇଥିଲେ । ରଜା ବିଶ୍ୱମ୍ବର ଥିଲେ ଖୁବ୍ କଳ୍ପନା ବିଳାସୀ ଓ ଅସମ୍ଭବ ଖିଆଲି । ଝଞ୍ଜାବତୀ କୂଳରେ ସେ ଗଢ଼ିଥିଲେ ଗୋଟିଏ ସୁରମ୍ୟ ଉଆସ । ନଦୀ ଗର୍ଭରୁ ଗଡ଼ ପାଚେରି କାହିଁ କେତେ ଉଚକୁ ଉଠି ସତେ ଯିମିତି ଆକାଶକୁ ଛୁଇଁଥିଲା । ଗଡ଼ ଭିତରୁ ଶୁଡ଼ଙ୍ଗ ଲମ୍ୱି ଆସିଥିଲା ନଦୀ ଗର୍ଭକୁ । ସେଇଠି ରାଜା ଗଢ଼ିଦେଇଥିଲେ ଶଙ୍ଖମର୍ମର ପଥରର ଘାଟ । ଏ ଅଞ୍ଚଳ ଯାକର ରୂପବତୀ ଲଳନାମାନଙ୍କୁ ଆଣି ଦାସୀ କରି ରଜା ଗଡ଼ଭିତରେ ଉଆସରେ ରଖେଇଥିଲେ । କୃଷ୍ଣ ଗୋପୀଙ୍କ ସାଙ୍ଗରେ କେଳି କଲା ଭଳି ରଜା ଜଳକ୍ରୀଡ଼ାରେ ରତୀଲୀଳାରେ ଦିନ ରାତି ମଜ୍ଜି ରହୁଥିଲେ । ଦାସୀଏ ଝଞ୍ଜାଘାଟରେ ଜହ୍ନରାତିରେ ଉଲଗ୍ନ ହେଇ ସ୍ନାହାନ କଲା ବେଳେ ଲାଗୁଥିଲା ଗୋପୀମାନେ ଯମୁନା ନଦୀରେ ଜଳକ୍ରୀଡ଼ା କରୁଛନ୍ତି । କୃଷ୍ଣ ଓ ଗୋପୀଙ୍କ ରାହାସ ଦୃଶ୍ୟ ଆଖି ଆଗରେ ଭାସିଯାଉଥିଲା । ଗୌରୀ ଚମ୍ପାନଗରର ଅବଶେଷ ନିତ୍ୟାନନ୍ଦଙ୍କୁ ଦେଖଉ ଦେଖଉ ନିଜେ କିମ୍ବଦନ୍ତୀର ସମ୍ମୋହନ ଭିତରେ ହଜିଯାଇଥିଲା ।

ସେ ପ୍ରକୃତିସ୍ଥ ହେଲା ଓ ନିତ୍ୟାନନ୍ଦଙ୍କୁ କହିଲା ଏବେ ଝଞ୍ଜାବତୀ ତାର ଗତିପଥ ବଦଳେଇ ଦେଇଛି । ଏଇଠୁ ବାଟ ଫାର୍ଲାଙ୍ଗେ ବି ହେବନି । ମଠରୁ ଡ଼ାକିଲେ ଓ' କରିହେବ । ମଝିରେ ଖାଲି ଯାହା ଆମ୍ବତୋଟାଟା । ତୋଟାର ଗହଳିଟା ପାରିହେଇଗଲେ ତା ପରେ ପୁଣି ଫର୍ଚ୍ଚା । ନଦୀ ପଠାରେ କାଶତଣ୍ଡୀ ଫୁଲର ସୁଦୀର୍ଘ ପଟୁଆର । ପଠାରେ ବସି ଗୌରୀ ତା ଜୀବନର ସବୁଠୁ ଜଟିଳ ସମୟର କଥା ଯାକ ଗପି ଚାଲିଲା ।

ରାଧାବିନୋଦଙ୍କୁ ବରଣ ମାଳା ଦେଇ ପତିରୂପେ ଗ୍ରହଣ କରିସାରିବାର ତିନି ବର୍ଷ ପୂରିଲାଣି । ମୁଁ ଏଭିତରେ ଗୃହଯୋଗ୍ୟା ହେଇପଡ଼ିଲି । ଆମ୍ମା ଦିନେ ମୋତେ ପାଖରେ ବସେଇ କହିଲା ଗୌରୀ ତୁ ଦେବକନ୍ୟା ହେଇଥିଲୁ । ତୁ ଏବେ ଦେବତାର ଭୋଗ ପାଇଁ ଯୋଗ୍ୟା ହେଇ ଗଲୁ । ଏକଥାର ଗୁରୁତ୍ୱ ଓ ଗଭୀରତା ମୁଁ ପ୍ରଥମେ ବୁଝିପାରିନଥିଲି । କୃଷ୍ଣ ଦିନେ ରାତିରେ ପୀତାମ୍ବର ପାଟ ପିନ୍ଧି, ମୁଣ୍ଡରେ ଶିଖୀ ଚୂଳର କିରଟୀ ଲଗେଇ, ପାଦରେ ନୁପୂର, ହାତରେ କଂକଣ ନାଇ ହେଇ, ଗଳାରେ କୌସ୍ତୁଭ ମାଳା ପିନ୍ଧି, ଚନ୍ଦନ ତିଳକ କରି ବଂଶୀ ବଜେଇ ବଜେଇ ମୋ ଶୋଇବା ବଖରାକୁ ପଶିଆସିବେ ବୋଲି ମନେ ମନେ କଳ୍ପନା କରିଥିଲି । ଘରଟି ଦିବ୍ୟ ଆଲୋକରେ ଭାସିଉଠିବ । ସେ ବଂଶୀ ବଜେଇବେ, ବଂଶୀ ଗୌରୀ ଗୌରୀ ବୋଲି କୁହାଟିବ । ବଂଶୀ ସ୍ୱର କାନରେ ପଡ଼ିଲେ ମୋ ନିଦ ଭାଙ୍ଗିଯିବ । ମୁଁ ଚଟାପଟ୍ ଶେଯରୁ ଉଠି ଲାଜଲାଜ ହେଇ ଠିଆ ହେଇଯିବି । ମୋ ଶାଢ଼ି ମୋ ମୁଣ୍ଡବାଳ ସବୁ ଅସଜଡ଼ା ଥିବ । ମୋ ସ୍ୱାମୀ ତ, ମୋ ପ୍ରଭୁ ତ । କୃଷ୍ଣଙ୍କ ପାଦ ତଳେ ମୁଣ୍ଡିଆଟିଏ ମାରିବି । ପ୍ରଭୁ ମୋତେ ସ୍ନେହରେ କୋଳ କରିନେବେ । ମୋ ଗଣ୍ଡରେ, ଅଧରରେ, କପୋଳରେ, ସର୍ବାଙ୍ଗରେ ଚୁମ୍ବନ ଭରି ଦେବେ । ମୋ ଦେହରେ ଅପୂର୍ବ ଶିହରଣ ଖେଳିଯିବ । ମୋତେ କହିବେ, ଗୌରୀ ଯମୁନା କୂଳ କୁଞ୍ଜକୁ ମୋ ସାଙ୍ଗରେ ଚାଲ, ସେଠି କେଳି ରଚିବା । ମୁଁ ତାଙ୍କ ପଛରେ ଲାଜେଇ ଲାଜେଇ ଚାଲୁଥିବି । ହଠାତ୍ ସେ ହୁଏତ କୁଆଡ଼େ ଅଦୃଶ୍ୟ ହେଇଯିବେ । ମୁଁ ଖୋଜିବି ଗଛଗହଳିରେ, ଲତାର ଆଢୁଆଳରେ । ନଦୀକୁ, ଅକାଶକୁ, ପବନକୁ ପଚାରିବି ମୋ ପ୍ରଭୁକାହାନ୍ତି ? ମୁଁ ଅସ୍ଥିର ହେଇ ଉଠିବି । ବିଳପିବି । ହା ନାଥ । ହା ନାଥ। କହି କପାଳରେ କର ତାଡ଼ିବି । ସେ କୁଆଡ଼େ ସ୍ୱପ୍ନଭଳି ହଜିଯିବେ । ଲାଗିବ ବଂଶୀ ସ୍ୱନଟିଏ ଯମୁନା ଜଳରେ ମିଶିଗଲା । ମୋ ଦେହ ସୁଗନ୍ଧରେ ଭରିଯିବ । ମୁଁ ତରକି ମୋ ଦେହକୁ ଚାହିଁବି । ଦେଖିବି ମୋ

ଗଳାରେ ହୀରା ନୀଳା ମୋତି ମାଣିକ୍ୟର ହାର ଲମ୍ବିଯାଇଛି । ମୋ ଦେହ ଦିବ୍ୟ ଆଭୂଷଣରେ ଭରିଯାଇଛି । ମୁଁ ଅନୁଭବ କରିବି ରତିପର କ୍ଳାନ୍ତିର ଅବସ୍ଥା, ଆଖିପତା ଖୋଲି ହେଉନି । ମୋହନ ତ ଆଉ ପାଖରେ ନଥିବେ, କା ଆଗେ ଆଉ ଅଭିମାନ କରିବି, କାହାକୁ ଆଉ କହିବି, ଦେଖ ମୋ ଦେହ ସାରା କେତେ ନଖ, ଦନ୍ତ ଚିହ୍ନ । କାହାକୁ ଆଉ ପଚାରିବି । ମୋହନ, ଏକି କଲ । ମୋତେ ଲଜ୍ଜାରେ ବୁଡ଼େଇ ମାରିଲ । ମୋ ମହତ ସାରିଦେଲ । ମୋତେ ଦାରୀଆଣୀ କରିଦେଲ । ଗୋପଦାଣ୍ଡେ ଆଉ ମୁହଁ ଟେକି ଚାଲି ପାରିବି ତ ? ହେଉ ତମ ଇଚ୍ଛା ପ୍ରଭୁ ।

ମୁଁ ରାତି ରାତି ଏମିତି ସ୍ୱପ୍ନ ଦେଖେ । ମୋହନ କେତେ ବେଳେ କାଚରା ବେଶରେ ଆସି ମୋ ହାତରେ କାଚ ପିନ୍ଧେଇ ଦେଉଛନ୍ତି । କହୁଛନ୍ତି, ଗୌରୀ ତୋ କରକୁ କଳାକାଚ ମାନିବ । ଆଉ କେତେବେଳେ ଶବର ବେଶରେ ଆସି ପଞ୍ଜୁରୀରେ ଶାରୀଟି ଆଣି ଘରେ ଛାଡ଼ି ଦେଇଛନ୍ତି । ଶାରୀ ଡ଼ାକୁଛି ଗୌରୀ ଗୌରୀ ବୋଲି । କହୁଛି ଗୌରୀ, ଦେଖ ତୋ ମୋହନ ଆସିଲାଣି । ବେଳେ ବେଳେ ମୁଁ ଦେଖେ ସେ ଚିତାକୁଟା ମାଳୁଣୀ ବେଶରେ ଆସି ମୋ ହାତରେ ବାହୁରେ ରାଧାବିନୋଦ ଅକ୍ଷର କୁଟେଇ ଦେଇ ଯାଇଛନ୍ତି ।

ନିତ୍ୟାଭାଇନା ! ଏ ସବୁ କେବଳ ସ୍ୱପ୍ନ ଥିଲା । ଗୋଟିଏ ଯୁବତୀର କାମନାର ରୂପକଥା । ଭାଇନା କହିଲେ, ଗୌରୀ ! ତୁ ତ ବିବାହିତା, ପୁଣି କୃଷ୍ଣଙ୍କ ଘରଣୀ ରାଧାରାଣୀ । ଗୌରୀ ନିତ୍ୟା ଭାଇନା କଥାରେ ଖୁବ୍ ଲାଜେଇ ଗଲା । ଗୌରୀ ପୁଣି କଥା ଦୋହରେଇଲା । କହିଲା, ତମ ତୁଣ୍ଡରେ ଏଭଳି ଟାପରା ଶୋଭା ପାଉନି । ସମଗ୍ର ଜୀବନଟା ଏମିତି ଗୋଟିଏ ଦୀର୍ଘ ସ୍ୱପ୍ନ ହେଇଯିବା ଭଲ । କିନ୍ତୁ ସ୍ୱପ୍ନରୁ ବାସ୍ତବତାକୁ ପୁଣି ପୁଣି ଓହ୍ଲେଇ ଆସିବା ବଡ଼ ଦୁଃଖଦାୟକ । ବାସ୍ତବ ଜୀବନରେ ନିରାଶା, ହତାଶା, ନପାଇବାର, ପାଇସାରି ହଜାଇଦେବାର ବେଦନା ଭରି ରହିଛି । ବାସ୍ତବତା ମରୁଭୂମି ଭଳି ଖାଁ ଖାଁ । ସେଠି ନିଦାଘର ଧୂଳି ଝଡ଼ ମଣିଷକୁ ଅଥର୍ବ କରିଦିଏ । ଅନ୍ଧ କରିଦିଏ । ଟୋପାଏ ପାଣିପାଇଁ ମଣିଷ ତତଲା ବାଲିରେ ଜୀବନ ସାରା ଖାଲି ଧାଉଁଥାଏ । ଶେଷରେ ସେହି ବାଲିରେ ହିଁ ସେ ଟଳିପଡ଼େ । ପାଏ କଣ ?

ଗୌରୀ ତାର ଅନୁଭୂତି ସବୁ କହିଚାଲିଲା । ନିତ୍ୟାନନ୍ଦ ସବୁ କଥା

ସହୃଦୟତାର ସହିତ ଶୁଣିଦେଲେ । ଗୌରୀର ଜୀବନ କେତେ ବେଦନା ସିକ୍ତ । ତାହା ଅନୁଭବ କଲେ । ଗୌରୀ ଏଭଳି ନିର୍ବେଦ ଅଥଚ ଅପାର୍ଥିବ ପ୍ରେମ ବନ୍ଧନର ଜାଗତିକ ମୂଲ୍ୟ ବୁଝେନା । ଏଭଳି ବନ୍ଧନରେ ଉଷ୍ମତା ଥାଇପାରେ କିନ୍ତୁ ଜ୍ୱଳନର ଆନନ୍ଦ ନାହିଁ। ପ୍ରେମ ହିଁ ଜ୍ୱଳନ । ଗୌରୀ ପାଖରେ ଅଛି କେବଳ ଏକ ସ୍ତବ୍ଧ ଚକିତ ପ୍ରାଣ ଓ ତାର ପ୍ରାଚୁର୍ଯ୍ୟ । ଏକ ସ୍ୱପ୍ନଭରା ମନର ଦରଦ ମିଶା ପ୍ରକାଶ । ନିତ୍ୟାଭାଇନା କହିଲେ ଗୌରୀ ତାପରେ କଣ ସବୁ ହେଲା । ତମ ମୋହନ ତମକୁ ସ୍ୱପ୍ନରେ ଆଉ କଣ ସବୁ କହିଲେ ।

ସେ ପୁଣି ଆରମ୍ଭ କଲା ।

ଆତ୍ମା କହିଲା, ଗୌରୀ ତୁ ଠାକୁରଙ୍କୁ ସେବିବୁ ତ, ଭଜନ, ଜଣାଣ ବୋଲିବା ଶିଖ । ଗୀତଗୋବିନ୍ଦ ସଙ୍ଗୀତରେ ବୈଷ୍ଣବ ଭକ୍ତିର ନିଦାନ ଅଛି । ଗୀତଗୋବିନ୍ଦ ଗାନ ରାଧାବିନୋଦଙ୍କ ପ୍ରାଣକୁ ଶୀତଳ କରେ । ଗୀତଗୋବିନ୍ଦ ଶୁଣିଲେ ଠାକୁର ରାଧାପ୍ରେମରେ ପାଗଳା ହେଇ ଯାଆନ୍ତି । ମୁଁ ଗୀତ ଶିଖିବି ବୋଲି ମଠ ମହନ୍ତ ଆମ ଘରକୁ ହାରମୋନିୟମ୍‌ଟିଏ ପଠେଇଦେଲେ । ମତେ ଗୀତ ଶିଖେଇବାପାଇଁ ଆମ ଅଞ୍ଚଳର ସବୁ ଠାରୁ ଜଣାଶୁଣା ସଙ୍ଗୀତଜ୍ଞ ବିନାୟକ ଶାସ୍ତ୍ରୀଙ୍କୁ ମୋ ସାଙ୍ଗରେ ଯୋଖି ଦେଲେ । ଘରକୁ ପ୍ରତିଦିନ ସକାଳୁ ଶାସ୍ତ୍ରୀ ମାଷ୍ଟ୍ରେ ଆସନ୍ତି । ଶାସ୍ତ୍ରୀ ମାଷ୍ଟ୍ରେ ସଙ୍ଗୀତ ବିଦ୍ୟାରେ ବଡ଼ ଧୁରନ୍ଧର । କେବଳ ନାମଜାଦା ଗାୟକ ନୁହନ୍ତି ବଡ଼ ଟାଣୁଆ ପଣ୍ଡିତ ମଧ । ମାଷ୍ଟ୍ରେ ମୋ ନା'ନାଙ୍କ ବୟସର ଲୋକ । ଆଗରୁ ମଧ ବହୁଥର ଆମ ଘରକୁ ଆସିଚନ୍ତି । ନା'ନାଙ୍କ ସାଙ୍ଗରେ ତାଙ୍କର ସଙ୍ଗୀତ ଆଲୋଚନାରେ ଭଲ ମେଳକ । ନା'ନା ମଧ ବେଳେ ଅଧେ ମନ ଭଲ ଥିଲେ ପଦେ ଦିପଦ ଗାଇଦେଉଥିଲେ । ତନ୍ତରେ ବସିଲେ, ଗୀତଗୋବିନ୍ଦ ପାଟ ବୁଣିଲେ ଠାକୁରଙ୍କ ଜଣାଣ ଗାଇ ହେଇ ଯାଉଥିଲା । ଶାସ୍ତ୍ରୀଗାରୁ ସବୁବେଳେ ନାନାଙ୍କର ହାତବୁଣା ତନ୍ତ ଲୁଗା ପିନ୍ଧିଥିବେ, କୁମ୍ଭ ଧଡ଼ିର ଓଢ଼ଣି ଧରିଥିବେ । ହାତରେ ସୁନାର ଖଡ୍ଡୁ, ଖାଇଲା ବାହୁରେ କଂକଣ, କାନରେ ମକର କୁଣ୍ଡଳ । ବେକରେ ତୁଳସୀ ମାଳି । ଦେହରେ କାବା । ତାଙ୍କର ମୋ ନାନାଙ୍କ ଭଳି ମୁଣ୍ଡରେ ବାଳ, ତିନିଥାକିଆ । ଆଗପଟ ଖୁର ଲଗେଇ ପୁରା ଚିକ୍କଣ ତା ପଛକୁ କତୁରେଇଦେଇ ବାଳ ନିହାତି ଛୋଟ ଛୋଟ ଓ ପଛରେ ଚୁଟି ବାନ୍ଧିଲାଭଳି ଲମ୍ବା ଫରଫର । କପାଳରେ ହରିତିଳକ ଘେନିଥିବେ । ନା'ନାଙ୍କୁ ପ୍ରଶଂସା କରି କେତେ

କଥା କହୁଥିବେ । ଯେତେ ବେଳେ ଗୀତ ଶିଖେଇବାକୁ ଘରକୁ ଆସିଲେ ପ୍ରଥମେ ବାପାଙ୍କ ସଂପର୍କରେ ଚର୍ଚ୍ଚା ତାପରେ ସଙ୍ଗୀତ ଶିକ୍ଷା । ଆମ୍ମା କ୍ଷୀରସର ପକେଇ ଚା କରି ଆଣି ଥୋଇଦେବ । ପାଖରେ ବସିପଡ଼ି ଏଣୁ ତେଣୁ କେତେ କଥା ଗପିବ ।

ଶାସ୍ତ୍ରୀଙ୍କୁ ସଙ୍ଗୀତ ଗୁରୁରୂପେ ପାଇ ମୁଁ ନିଜକୁ ସୌଭାଗ୍ୟବତୀ ବୋଲି ଭାବିଲି । ଶାସ୍ତ୍ରୀ ମାଷ୍ଟ୍ରେ ମୋତେ କର୍ଣ୍ଣାଟକ ରାଗ ରାଗିଣୀ ପରଂପରାରେ ଅଭ୍ୟସ୍ତ କରିବା ପାଇଁ ଚାହିଁଲେ । ମୁଁ ଗୀତଗୋବିନ୍ଦ ଶିଖିବା ଜରୁରୀ ବୋଲି ଆମ୍ମା ଶାସ୍ତ୍ରୀ ମାଷ୍ଟ୍ରେଙ୍କୁ କହିଲା । ଶାସ୍ତ୍ରୀଗାରୁ ଏତେ ବିଚକ୍ଷଣ ଯେ ସେ ଗୋଟିଏ ଗୀତକୁ ବିଭିନ୍ନ ପଦ୍ଧତିରେ ଗାନ କରିପାରନ୍ତି । ବିଭିନ୍ନ ଗାୟକି ଲକ୍ଷଣ ପ୍ରକାରେ ବୋଲି ପାରନ୍ତି । ସେ ସ୍ୱର ସାଧିବାର ଅସଲ ବାଟ ବତେଇ ଦେଲେ, ସବୁ ରହସ୍ୟ ପୁରାପୁରି ବୁଝେଇଦେଲେ । ମୁଁ ତାଳଲୟରେ ସ୍ୱର ବାନ୍ଧି, ବେଳେବେଳେ ବିସ୍ତାର କରି ଗାଇ ପାରିବାରୁ ମାଷ୍ଟ୍ରେ ଖୁସି ହେଇଯାଉଥିଲେ ଓ ଆମ୍ମା ପାଖରେ ମୋର ପ୍ରଶଂସା କରୁଥିଲେ । ଶାସ୍ତ୍ରୀ ମାଷ୍ଟ୍ରେ ଯେତେବେଳେ 'ଲଳିତଲବଙ୍ଗଲତାପରିଶୀଳନକୋମଳମଳୟସମୀରେ ମଧୁକରନିକରକରମ୍ବିତ କୋକିଳକୂଜିତକୁଞ୍ଜକୁଟୀରେ' ହାରମୋନିୟମ୍‌ରେ ଆଳାପ କରି ଗାନ କରୁଥିଲେ ଲାଗୁଥିଲା ସତେ ଯିମିତି କୋମଳ ମଳୟ ପବନ ଆମ ଘର ଭିତରକୁ ବହି ଆସୁଛି । ବା ଯେତେବେଳେ ସେ 'ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ । ପୀନପୟୋଧରପରିସରମର୍ଦ୍ଦନଚଂଚଳକରଯୁଗଶାଳୀ ।' ବୋଲୁଥିଲେ, ସେହି ଏକାଭଳି ମଳୟ ପବନ ଆମ ଘର ସାରା ଖେଳିଯାଉଥିଲା । ମୁଁ ନିଜକୁ ଫୁଲଭଳି ହାଲୁକା ଅନୁଭବ କରୁଥିଲି । ମୋର ମନେ ହେଉଥିଲା କୃଷ୍ଣଚନ୍ଦ୍ର ଏହି କେଉଁଠି ନଦୀକୂଳରେ କୁଞ୍ଜ ରଚନା କରି ରାଧାଙ୍କ ପ୍ରତୀକ୍ଷାରେ ଅଛନ୍ତି । ମୁଁ ରାଧାହେଇଯାଇ ଧୀରେ ଧୀରେ ଧୀର ସମୀରର ମନ୍ଦ ମନ୍ଦ ପ୍ରବାହ ସାଙ୍ଗରେ ଲୁଚି ଲୁଚି ଛପି ଛପି କୁଞ୍ଜରେ ପହଞ୍ଚି ଯାଉଥିଲି । ସେ ମୋତେ କୋଳକରି ନେଉଥିଲେ । ସେ କି ଆନନ୍ଦ ! ସେ ଆନନ୍ଦ କିଭଳି ବର୍ଣ୍ଣିବି । କୃଷ୍ଣଚନ୍ଦ୍ରଙ୍କୁ ଏତେ ନିକଟରେ ପାଇଗଲେ ମୋ ମନ କି ଉଚ୍ଚାଟ ହେଇଯାଉଥିଲା ସେ ଅନୁଭୂତି ବା କିମିତି କହିବି । ଏହାକୁ ହିଁ ତାଙ୍କ ପ୍ରେମ ବୋଲି ଜାଣିଲି । ମୁଁ ତାଙ୍କ ଦାସୀ ବୋଲି ଏତେ ରସ ଏତେ ସ୍ନେହ ଏତେ ଆଦର ପାଇଲି । ଧନ୍ୟ କୃଷ୍ଣଚନ୍ଦ୍ର ! ଧନ୍ୟ ତମ ରସିକତା ।

ମୁଁ ଗୀତଗୋବିନ୍ଦର ପ୍ରବନ୍ଧ ପରେ ପ୍ରବନ୍ଧ ଅଳ୍ପ ଆୟାସରେ ଆୟତ

କରି ଚାଲିଲି । ଶାସ୍ତ୍ରୀ ମାଷ୍ଟ୍ରେ ପ୍ରତିଦିନ ନୂଆ ନୂଆ ଗୀତ ନିଜେ ବୋଲି ମୋତେ ବୋଲିବାପାଇଁ କହନ୍ତି । ମୁଁ ତା ପରେ ପରେ ତାଙ୍କୁ ଅନୁସରଣ କରି ଗୀତ ଗାଇ ପାରୁଥାଏ ଓ ତାଙ୍କ ଭଳି ବୋଲିବା ପାଇଁ ଚେଷ୍ଟା କରୁଥାଏ । ଭାବିଲି କୃଷ୍ଣଚନ୍ଦ୍ରଙ୍କର ଅପାର କରୁଣା ନହେଲେ କଣ ଏଭଳି ସମ୍ଭବ ହେଇ ପାରନ୍ତା । ଗୀତ ଓ ନୃତ୍ୟରେ ପାରଙ୍ଗମ ନହେଲେ ନଟବର କୃଷ୍ଣଚନ୍ଦ୍ରଙ୍କୁ କଣ ସହଜରେ ରସିହେବ । ବଡ଼ ନଟଖଟିଆ ଠାକୁର ସେ । ଖାଲି ତ ବଂଶୀ ବଜେଇ ସମସ୍ତଙ୍କୁ ମୋହି ଦେବେ ।

ଦିନେ ମଠରେ ଜନ୍ମାଷ୍ଟମୀ ମଉଛବର ଆୟୋଜନ ହେଉଥାଏ । ଅଗଷ୍ଟ ମାସର ଧାରା ଶ୍ରାବଣର ସଂଧ୍ୟା କାଳ । ଝଞ୍ଜାବତୀ ନଦୀରେ ବଢ଼ି ଆସିଥାଏ । କୂଳ ଲଙ୍ଘି ଆମ୍ବତୋଟା ଭିତରକୁ ପାଣି ମାଡ଼ିଯାଇଥାଏ । ମୁହଁ କିଟ୍ କିଟ୍ ଅନ୍ଧାର ଭିତରେ ବି ବାରି ହେଉଥାଏ ପିଠଉ ଭଳି ବଢ଼ି ପାଣି ଚାରିଆଡ଼କୁ ବହିଯାଉଛି । ଆମେ ଏବେ ଯେଉଁଠି ବସିଛେ ତା ଉପରେ ଆଣ୍ଠୁଏରୁ ବେଶି ପାଣି ଚାଲୁଥାଏ । ଆକାଶରେ ଗର୍ଭିଣୀ କଳାମେଘ ଛାଇ ହେଇଯାଇଥାଏ । ମଝି ମଝିରେ ଘଡ଼ଘଡ଼ି ଓ ବିଜୁଳି ଘନଘନ ଚମକୁଥାଏ ।

କୃଷ୍ଣଚନ୍ଦ୍ର ଜନ୍ମହେବେ । କେତେ ଆଶା ଓ କେତେ ଭରସାରେ ଦେବକୀ ଅଷ୍ଟମ ଗର୍ଭରେ କୃଷ୍ଣଚନ୍ଦ୍ରଙ୍କୁ ଧରିରଖିଛନ୍ତି । କୃଷ୍ଣଚନ୍ଦ୍ର ଆଜି ଜନ୍ମ ହେବେ । ଜଗତରୁ ଦୁଃଖ ହଟିଯିବ । ଅସୁରକୁଳ ନାଶଯିବେ । କଂସ ନିଧନ ହେବ । ମଣ୍ଡପ ଉପରେ ଦୋଳିରେ ରାଧାବିନୋଦଙ୍କ ଚଳନ୍ତି ପ୍ରତିମା ଆଣ୍ଠୁଆ ଗୋପାଳ ମୂର୍ତ୍ତି ବିଜେ ହେବେ । ଆମ୍ମା ଓ ମୁଁ ମହନ୍ତଙ୍କ ଆମନ୍ତ୍ରଣ ପାଇ ମଠକୁ ଯାଇଥାଉ । ଶାସ୍ତ୍ରୀ ମାଷ୍ଟ୍ରେ ବି ଆମ ସାଙ୍ଗରେ ଥାଆନ୍ତି । ଗାଁଟା ଯାକରୁ ବଛା ବଛା ଲୋକ ଡ଼କରା ପାଇ ଆସିଥାନ୍ତି । ଏତେ ବର୍ଷା ପାଣି ପବନରେ ବି ମଠ ଭିତରେ ଲୋକଙ୍କ ଅସମ୍ଭାଳ ଭିଡ଼ । ମୁଁ କ'ଣ କ'ଣ ଗୀତ ଶିଖିଲିଣି, କିଭଳି ଗାଇପାରୁଛି ତାର ପରୀକ୍ଷାହେବ । ମହନ୍ତ ବରାଦ ଦେଉଥାନ୍ତି । ସମସ୍ତଙ୍କ ଦୃଷ୍ଟି ମୋ ଉପରେ ଥାଏ । କାମରାଜୁ ସେନାପତିର ଝିଅ ଗୌରୀ କିମିତି ଗୀତ ଗାଇଲାଣି ଶୁଣିବା । ଗୀତ ଶିଖିବା ପାଇଁ ମହନ୍ତ ତ ହାରମୋନିୟମ୍ ଦେଇଛନ୍ତି । ମଠରୁ ଶାସ୍ତ୍ରୀମାଷ୍ଟ୍ରେ ଦରମା ବାବଦକୁ ଚାଉଳ ଡ଼ାଲି ଘିଅ, ଉତ୍ସବ ମହୋତ୍ସବରେ ଯୋଡ଼ ଓ ମାମୁଲୁ ମଧ ପାଉଛନ୍ତି । ସେ ଏ ଝିଅକୁ କେତେ ବାଟ ଗୀତ ଶିଖେଇନେଲେଣି ତାର ବି ହିସାବ ନିକାସ କରିବା ଏ ପରୀକ୍ଷାର ଅନ୍ୟ ଏକ ଲକ୍ଷ୍ୟ ।

ଶାସ୍ତ୍ରୀ ମାଷ୍ଟ୍ରେ ମୋତେ " ପଶ୍ୟତି ଦିଶି ଦିଶି ରହସି ଭବନ୍ତମ୍ , ତ୍ୱଦଧରମଧୁରମଧୁନି ପିବନ୍ତମ , ନାଥ ହରେ ସୀଦତି ରାଧା ବାସ ଗୃହେ । " ଗାଇବା ପାଇଁ କହିଲେ । ମୁଁ ହାରମୋନିୟମ୍ ପାଖକୁ ଟାଣି ଆଣି ପ୍ରଥମେ ଆଳାପ କଲି । ସ୍ୱର ବିସ୍ତାର କରି ଦଶବିଧ ଗମକର ବିଭିନ୍ନ ବିଭାବରେ ରୂପ କରି ଆଳଙ୍କାରିକ ଛଟାସହିତରେ ଗାଇଦେଲି । ଭାବ ଗଦ୍ ଗଦ୍ ହେଇ ନିଷ୍ଠାର ସହିତ ସଂପୂର୍ଣ୍ଣ ଗୀତଟି ଗାନ କରିସାରିଲା ପରେ ମୋର ଦେହ ଭିତରେ କଂପନ ଜାତ ହେଲା । ରାଧାଙ୍କ ଭଳି ମାନିନୀଙ୍କର ନିଜର ଅନ୍ତରର ବେଦନା ପ୍ରକାଶ କରିବା ପାଇଁ କବିଶ୍ରେଷ୍ଠ ଜୟଦେବ ଯାହା ଯାହା ପଦ୍ୟରେ ବର୍ଣ୍ଣି ଯାଇଛନ୍ତି ତାକୁ ଜଣେ ଯଦି ହୃଦୟଙ୍ଗମ ନକରି ପ୍ରକାଶ କରିବାକୁ ଚେଷ୍ଟାକରେ ତା ହେଲେ ସେ ବିଫଳ ହେବା ସ୍ୱାଭାବିକ । ଗୀତଗୋବିନ୍ଦ ତ ସାଧାରଣ ଗୀତ ନୁହେଁ ତେଣୁ ସେ ଯଦି ରାଧାଭାବରେ ନିଜକୁ ହଜେଇ ନ ଦେବ ତା ହେଲେ , ସେ ଗୀତର ଭାବ ପ୍ରକଟିତ ହେବନାହିଁ । ଶୃଙ୍ଗାର ଓ ଭକ୍ତି, ଉଭୟ ଭାବକୁ ଏକାଭଳି ପ୍ରକାଶ କରି ପାରିଲେ ଗୀତଗୋବିନ୍ଦ ଗାନ ସାର୍ଥକ ହେବ । ଗୀତଗୋବିନ୍ଦର କାବ୍ୟପ୍ରାଣ ମଧୁମୟ । ଏଣୁ ଗାନରେ ମଧୁସଞ୍ଚରେଇ ପାରିବା ବଡ଼ କଥା । " ଭବତି ବିଳମ୍ବିନୀ ବିଗଳିତଲଜ୍ଜା, ବିଳପତି ରୋଦିତି ବାସକସଜ୍ଜା", ଗାଇଲା ବେଳକୁ ମୋ ଗୀତରେ ବିହ୍ୱଳିତ ହୋଇ ମହନ୍ତ ଭାବିନେଲେ ବୋଧହୁଏ ମୁଁ ହିଁ ମୋର ନିଜର ପ୍ରେମ ଓ ଶୃଙ୍ଗାରଭାବକୁ ତାଙ୍କ ଆଗରେ ପ୍ରକାଶ କରିବା ପାଇଁ ଖୁବ୍ ଦରଦ ଭରା ହୃଦୟରେ , ଆକୁଳ କଣ୍ଠରେ, ବ୍ୟାକୁଳ ହେଇ ଗାଇ ଚାଲିଛି । ମୁଁ ହୁଏତ ବାସକସଜ୍ଜା ନାୟିକା ହେଇ ପ୍ରିୟର ଆଗମନ ପ୍ରତୀକ୍ଷାରେ ଅତି ହରଷ ମନରେ ନିଜକୁ ସୁସଜ୍ଜିତ କରି କାମରଙ୍କୁଣୀ ଭଳି ପ୍ରତୀକ୍ଷାରେ ଅଛି । ମହନ୍ତଙ୍କ କୁଟିଳ ବୁଦ୍ଧି ଭାବିନେଲା ଗୌରୀ ତ ଅର୍ପିତା ଦେବକନ୍ୟା, ସେ ତେଣୁ ମହନ୍ତର ଭୋଗ୍ୟା । ଏଣୁ ଗୀତରେ ଇଙ୍ଗିତ ଦେଉଛି ।

ମହନ୍ତ ମୋ ଗୀତଗୋବିନ୍ଦ ଗାନରେ ଉତ୍‌ଫୁଲ୍ଲିତ ହେଇଗଲେ । ମଦନ ଶରରେ ସେ କୁଣ୍ଠିତ ହେଇ ପୁଣି ଆଉ ଗୀତଟିଏ ବୋଲିବା ପାଇଁ ମୋତେ ଅନୁରୋଧ କଲେ । ଅନ୍ୟମାନେ ମଧ ମୋର ସୁଲଳିତ କଣ୍ଠର ସ୍ୱର ଓ ଗାୟନର ଶୁଦ୍ଧତା ଯୋଗୁଁ ପ୍ରଶଂସାରେ ମୋତେ ଭରି ଦେଲେ । ମଠମଣ୍ଡପ ଗୁଞ୍ଜରିତ ହେଇ ଉଠିଲା । ଶାସ୍ତ୍ରୀ ମହାଶୟଙ୍କ ତତୋଧିକ ସାଧୁବାଦ ତାଙ୍କ ଛାତ୍ରୀର ନିଷ୍ଠାକୁ ଆହୁରି ବଢ଼େଇ ଦେଲା ।

ମୁଁ ଆଉ କଣ ବୋଲିବି ବୋଲି ମନସ୍ଥ କରୁଛି , ଶାସ୍ତ୍ରୀମାଷ୍ଟ୍ରେ ସପ୍ତଦଶ

ପ୍ରବନ୍ଧରୁ ବୋଲିବା ପାଇଁ ଇଙ୍ଗିତ ଦିଅନ୍ତେ ମୁଁ ଆରମ୍ଭକରିଦେଲି । ."ରଜନିଜନିତଗୁରୁ ଜାଗରରାଗକଷାୟିତମଳସନିମେଷମ୍, ବହତି ନୟନମନୁରାଗମିବ ସ୍ଫୁଟମୁଦିତ ରସାଭିନିବେଶମ୍। ହରିହରି ଯାହି ମାଧବ, ଯାହି କେଶବ ମା ବଦ କୈତବବାଦମ୍ ।" ମୁଁ ଏତକ ଗାଇ ସାରିଲା ପରେ ମହନ୍ତଙ୍କ ମନରେ ପୁଣି ସେହି ଦୁର୍ବାର କାମନା । ସତେ ଯିମିତି ମୁଁ ତାଙ୍କ ଅନ୍ତରର କାମନାକୁ ଉପେକ୍ଷା କରି ଗୀତରେ ଉତ୍ତର ଫେରଉଛି । ଉନ୍ମାଦନାରେ ତାଙ୍କର ଚକ୍ଷୁକଷାୟିତ ହେଇ ଆସୁଥାଏ । ସେ ମତ୍ତହାତୀ ଭଳି ଝୁଲୁଥାନ୍ତି । ଗୀତଗୋବିନ୍ଦ ଗାନର ଭକ୍ତିରସରେ ସେ ଭୋଳ ହେଇଯାଇଥାନ୍ତି ନା କାମ ଉତ୍ତେଜନାରେ ତାଙ୍କ ଦେହ ନିଆଁ ଭଳି ଜଳୁଥାଏ ତାହା ଅନ୍ୟମାନେ ଲକ୍ଷ୍ୟ କରିପାରୁନଥିଲେ ମଧ୍ୟ ମୁଁ ଭଲଭାବରେ ଅନୁଭବ କରିପାରୁଥିଲି । ମହନ୍ତ ନିଜ ଦୈହିକ ପ୍ରେମ ଭାବନାକୁ ଘୋଡ଼େଇ ଦେବା ପାଇଁ, ସଭାଜନଙ୍କ ମଧ୍ୟରେ ନିଜର ଭକ୍ତିଭାବର ବଡ଼ିମା ଦେଖେଇବା ପାଇଁ ଗାଇ ଉଠିଲେ,

ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସକଳାସୁ କୁତୂହଳମ୍ ।
ମଧୁର କୋମଳକାନ୍ତ ପଦାବଳୀଂ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ॥

ଗୀତଗୋବିନ୍ଦ ଗାନ ସରିଲାବେଳକୁ ରାତି ଦଶ ହେଇସାରିଥିଲା । ତାପରେ କୃଷ୍ଣଚନ୍ଦ୍ର ବିଧାନ ହେଇ ଉତ୍ସବ ଉଜେଇଲା ବେଳକୁ ରାତି ଏଗାର । ସବୁ ଶେଷରେ ପୁଣି ପ୍ରସାଦ ସେବନର ବ୍ୟବସ୍ଥା ଥିଲା , ଘିଅ ପଟପଟ ଖେଚୁଡ଼ି ସାଙ୍ଗକୁ ପୁଳିହାରମ୍ ଖିରି ଓ ଲଡୁ । ଖାଇବା ପର୍ବ ସରିଲା ସାଢ଼େ ଏଗାରରେ । ସମସ୍ତେ ଜଣ ଜଣ ହେଇ ଉଠିଲେ, ମଠରୁ ଘର ମୁହେଇଁଲେ । ମେଘ ଅଳ୍ପ ଫର୍ଚ୍ଚା ହେଇଯାଇଥିଲା । ଶାସ୍ତ୍ରୀ ମାଷ୍ଟ୍ରେ ମଧ୍ୟ ମହନ୍ତଙ୍କୁ ଓଳଗି ହେଇ ଘର ବାହୁଡ଼ିଲେ । ମହନ୍ତ କହିଲେ , ଶ୍ୟାମାନନ୍ଦ ଗୌରୀ ଓ ଆମ୍ଭାକୁ ଘରେ ଛାଡ଼ିଦେଇ ଆସିବ। ସାଙ୍ଗରେ ହାରମୋନିୟମ୍‌ଟା ବି ନେଇ ଦେଇଦେବ । ଶ୍ୟାମାନନ୍ଦ ମହନ୍ତଙ୍କ ଖାସ୍ ଚେଲା, ପାଠରେ ନୁହେଁ ଶାଠରେ । ଏଇ ନିପଟ ମାଇଚିଆ ଏଣୁ ଦାସୀର ଭୂମିକାରେ । ହାତରେ ବାହୁରେ ଗଳାରେ ମାଳି କାନରେ କଣ୍ଠି, ଚାଲିରେ ଛନ୍ଦ । ସବୁ ମଠରେ ମହନ୍ତଙ୍କ ଆଜ୍ଞାବହ ଏମିତି ଜଣେ ଜଣେ ଥାଆନ୍ତି । ସେମାନେ ଆଖିଥାଇ ମଧ୍ୟ ଅନ୍ଧ । ସେମାନଙ୍କ ନିଜସ୍ୱ ବୋଲି କିଛି ନଥାଏ ।

ସେମାନେ ମଠାନ୍ନ ଖାଇ ବଚସ୍କର ହେଇ ପଡ଼ିଥାନ୍ତି ମହନ୍ତଙ୍କ କାମାଗ୍ନିକୁ ତେଜେଇବା ପାଇଁ ଘିଅ ଢ଼ାଳୁଥାନ୍ତି । ଶ୍ୟାମାନନ୍ଦ ମଠର ଲୋକମାନଙ୍କ ଖାଇବା ତଦାରଖ କରୁଥିଲା ।

ମହନ୍ତ ରାଧାବିନୋଦଙ୍କୁ ଭକ୍ତିରେ ମୁଣ୍ଡିଆଟି ମାରି ପହୁଡ଼ ପାଇଁ ବିଜେ ହେଲେ । କିଛି ସମୟ ପରେ ଶ୍ୟାମାନନ୍ଦ ଭିତର ବଖରାରୁ ଦଉଡ଼ି ଆସି ଆମ୍ଭାକୁ ଖବର ଦେଲା ମହନ୍ତ ମାହାରାଜ ଗୌରୀକୁ ତାଙ୍କ ଶୟନ ବଖରାକୁ ଡ଼କେଇ ପଠେଇଛନ୍ତି । ମୁଁ ଥତମତ ହେଲି । ଏତେ ରାତିରେ ମହନ୍ତ ପାଖକୁ ଏକୁଟିଆ ଯିବା ପାଇଁ ଅମଙ୍ଗ ହେଲି । ଆମ୍ଭା ଆଡ଼େ ଚାହିଁଲି । ଆମ୍ଭା କଣ ଏତେ କଥା ହେଜିଛି କି ? ସେ କହିଲା କଥା ଅସୁନ୍ଦର ହେବ, ଗୌରୀ ତୁ ମହନ୍ତ ମହାରାଜଙ୍କୁ ହେୟ ଜ୍ଞାନ କରନା । ଯା । ମୁଁ ତ ଅଛି । ମୁଁ ଖୁବ୍ ଶଙ୍କାରେ ଭିତର ଖଞ୍ଜାକୁ ଯିବାପାଇଁ ବାହାରିଲି ! ବୈଠକ ଖାନା, କଚେରି ଘର, କୋଠଘରର ଉଞ୍ଚା ଉଞ୍ଚା ଏରୁଣ୍ଡି ବନ୍ଧ ସବୁ ଡ଼େଇଁ ଡ଼େଇଁ ଆଗଉଥାଏ । କେଉଁ ଘରେ କାନ୍ଥ ଠଣାରେ ଦୀପଟିଏ ଜଳୁଥାଏ ତ ଆଉକେଉଁ ଘରେ ମହମବତୀ ଲଗା ବ୍ରିଟିଶ ଅମଳର କାଚର ଝାଡ଼ ଛାତରୁ ଓହଳିଥାଏ । ଆଉ କେଉଁ ଘରେ ବଡ଼ ପିତଳ ରୁଖା ଉପରେ କରଞ୍ଜ ତେଲର ଦୀପ ହୁତାସନ ହେଇ ଚଟାଣକୁ କୁଞ୍ଚିତ ଆଲୋକରେ ଭର୍ତ୍ସେଇ ରଖିଥାଏ । ମୁଁ ପ୍ରତିଟି ବଖରା ଅତିକ୍ରମ କରୁଥିଲା ବେଳେ ଲାଗୁଥାଏ ଅର୍ଗଳରୁ ଅର୍ଗଳ ଡ଼େଇଁ କେଉଁ ଏକ ଅଜଣା ରାଇଜର କୋଠରୀ ଭିତରକୁ ପ୍ରବେଶୁଛି । ହଠାତ୍ ଆଖିରେ ପଡ଼ିଲା କୁନ୍ଦା କାଠର ଏକଫାଳିଆ ପ୍ରକାଣ୍ଡ କବାଟ, ଅସ୍ପଷ୍ଟ ଆଲୁଅରେ ମଧ ତାର ପିତଳ ବଦୁଅ ଓ ବାଡ଼ିଆ ଛତିକଣ୍ଟା ଚମକି ଉଠୁଥାଏ । ମୁଁ ଧରି ନେଲି କବାଟ ଡ଼େଇଁଲେ ମହନ୍ତଙ୍କ ପହୁଡ଼ ବଖରା ହେଇଥିବ । କବାଟର ଶିକୁଳି ଝଣ୍ ଝଣ୍ କଲି । ଭିତରୁ ମହନ୍ତ ଗମ୍ଭୀର ଗଳାରେ ଆଦେଶିବା ଭଙ୍ଗିରେ କହିଲେ, କିଏ ? ଗୌରୀ, ଆ ଭିତରକୁ ଆ । ମୁଁ ଡ଼ରି ଡ଼ରି ଭିତରକୁ ଯାଇ ଖଣ୍ଡେ ଦୂର ରେ ଠିଆହେଲି । ମହନ୍ତ ହାତୀଦାନ୍ତ ପଲଙ୍କଟା ଉପରେ ଚର୍ବିବହୁଳ, ସଯତ୍ନେ ପାଳିତ କାଠଗଣ୍ଡି ଭଳି ଦେହଟାକୁ ଅଶ୍ଳୀଳ ଭଙ୍ଗିରେ ଗଡ଼େଇ ଦେଇ । ମାଣ୍ଡିଉପରେ ଭରା ଦେଇ ମୋତେ କଣେଇ କଣେଇ ଚାହୁଁଥାନ୍ତି । ବିଶାଳ ଗଜସିଂହ ଖୁରା ଯୋଚା ପଲଙ୍କ । ଲାଗୁଥାଏ ଶିଶୁକାଠର, କେତେ ପୁରୁଷର ପୁରୁଣା । ଏଭଳି ଅନେକ କାମାସକ୍ତ ମହନ୍ତମାନଙ୍କ ଅପକର୍ମର ମୂକସାକ୍ଷୀ । ଘରର ଆସବାବପତ୍ର ଓ ଅନ୍ୟାନ୍ୟ ଆଡ଼ମ୍ବର ପ୍ରତି ମୋର ନିଘା ନଥାଏ । ମୁଁ ଭାବୁଥାଏ ଚଟାପଟ୍ ମୋ କାମ ତୁଟେଇ ଆମ୍ଭା

ପାଖକୁ କିମିତି ଫେରି ଯିବି । ମହନ୍ତ ମୋର ପ୍ରଶଂସା ଆରମ୍ଭ କଲେ । ତୁ ଏତେ ଚମତ୍କାର ଗୀତଗୋବିନ୍ଦ ଗାଇଲୁ, ମୋ ମନ ଓ ପ୍ରାଣକୁ ଦୋହଲାଇ ଦେଲୁ । ରାଧାବିନୋଦଙ୍କ ହୃଦୟକୁ ରାଧାପ୍ରେମରେ ଉଚ୍ଛୁଳେଇ ଦେଲୁ । ମୁଁ ତୋ ଗୀତର ମାଧୁରିମାରେ ଏତେ ନିମଜ୍ଜି ଯାଇଥିଲି ଯେ ମୋର କର୍ତ୍ତବ୍ୟ ମୁଁ ଭୁଲିଗଲି । ଏଭଳି ଏକ ମର୍ମସ୍ପର୍ଶୀ ,ହୃଦଗ୍ରାହୀ ଉପସ୍ଥାପନା ପାଇଁ ତୁ ଉପଢୌକନର ଯୋଗ୍ୟା । ସେଇଥିପାଇଁ ତୋତେ ଡ଼କେଇ ପଠେଇଲି । ତୋ ଭଳି ଅପରୂପ ଗୁଣ ସମ୍ପନ୍ନା, ସଙ୍ଗୀତ ପ୍ରବୀଣା, କୋକିଳ କଣ୍ଠୀ ଦେବଦାସୀ ରିକ୍ତ ହସ୍ତରେ ମଠରୁ ବିଦାୟ ନେଇଗଲେ କଳାର ଅମର୍ଯ୍ୟାଦା ହେବ, ପରଂପରାର ଅବମାନନା ହେବ । ଏଣୁ ମୁଁ ଭାବିଲି ତୋ ହାତରେ ମୋ ପ୍ରୀତିର ସନ୍ତକଟିଏ ଭେଟିଦେବି । ଏତକ କହିସାରି ମହନ୍ତ ତାଙ୍କ ହାତ ସିନ୍ଦୁକ ଖୋଲି ସୁନାର ଧାନୁଆ ମାଳିଟିଏ ବାହାର କରି ମୋ ପାଖକୁ ଆଗେଇ ଆସିଲେ । ଧାନୁଆ ମାଳିର ପ୍ରତ୍ୟେକ କଣ୍ଟିରେ ଧଳାପଥର ଖଞ୍ଜା ହେଇଛି । ଆଲୁଅରେ ମାଳି ଝଟକି ଉଠୁଛି । ମଝି ମଝିରେ ଆମ୍ବକଷିର ପଦକ । ମାଳିର ମଝି ଭାଗର ପଦକ ଲାଗୁଛି ସତେ ଯିମିତି ଆମ୍ବ ଡ଼ାଳରେ ଗୁନ୍ଥା ତିନୋଟି ଆମ୍ବ କଷିର ସମାହାର । ମୁଁ ଏଭଳି ସୁନ୍ଦର ଓ କାରୁକାର୍ଯ୍ୟ ଖଚିତ ମାଳି କେବେହେଲେ ଦେଖିନଥିଲି । ମୋ ହୃଦୟ ଭିତରଟା ଏକ ଅଜଣା ଆତଙ୍କରେ କୋରି ହେଲା ଭଳି ଲାଗିଲା । ଲାଗିଲା ମୁଁ ଏକ କେଉଁ ଅଜଣା ରାଇଜର ଧନୀ ସାହୁକାରର ବିଳାସପୂର୍ଣ୍ଣ ଘରଟି ଭିତରେ ଧରାପଡ଼ିଯାଇଛି । ଯେଉଁଠି ନା ଅଛି ଭକ୍ତି ନା ଅଛି ବୈରାଗ୍ୟ ।

ମହନ୍ତ କହିଲେ ଗୌରୀ ଆ ମୋ ପାଖକୁ ଲାଗି ଆ । ତାଙ୍କ କଥା ପଦକ ଶୁଣି ମୋତେ ଘୃଣା ଲାଗିଲା । ସେ ପୁଣି କଥାରେ ଆଗେଇଲେ । କହିଲେ ବେକ ଦେଖା ମୁଁ ମୋ ହାତରେ ନିଜେ ତୋ ଗଳାରେ ହାରଟି ପିନ୍ଧେଇ ଦେବି । ତୋର ଏତେ ସୁନ୍ଦର ଗଳା, ଏତେ ଚମତ୍କାର ବୀଣାଜିଣା କଣ୍ଠ, ଏଡ଼େ ନିପୁଣ ତାଳ ଲୟ ଜ୍ଞାନ ମୁଁ ଜୀବନରେ ପ୍ରଥମ କରି ହିଁ ଅନୁଭବ କରିଛି ।

ଏତେ ଦରଦରେ ଅଜାଡ଼ି ହେଇ ପଡୁଥିବା ପ୍ରଶଂସା ଭିତରେ ହିଂସ୍ର କାମୁକର ରକ୍ତ ମଖା ନଖ ଥାଇପାରେ, ମୁଁ ମୋ ସରଳ ମନରେ କିମିତି ବା ହେଜିପାରିଥାନ୍ତି । କିନ୍ତୁ ମୋ ଭିତରୁ କିଏ ଜଣେ କହିଦେଉଥାଏ ଗୌରୀ ହୁସିଆର । ଏ ପ୍ରଶଂସା ତୋ ଗୀତ ପାଇଁ ନୁହେଁ ତୋ ରୂପ ପାଇଁ, ତୋ ଦେହର ସମ୍ଭାବନା ପାଇଁ ।

ମୁଁ ତଥାପି ଚକିତ ମୃଗୁଣୀଟି ଭଳି ଶଙ୍କାରେ ମୋ ଗଳାକୁ ଉଠେଇ ମହନ୍ତ ପାଖରେ ଠିଆହେଲି । ସେ ହୁଏତ ବ୍ୟାଧ ଭଳି ମୋତେ ଭେଦିବାପାଇଁ ତାର ଅଦୃଶ୍ୟ କାମଶରକୁ ମୋ ଆଡ଼କୁ ଲକ୍ଷ୍ୟ କରୁଥିଲା । ମୁଁ ମହନ୍ତର ମଠଅନ୍ନରେ ଲାଳିତପାଳିତ ଚିକ୍କଣ ଦେହଟିକୁ ଚାହିଁପାରୁନଥାଏ । ମହନ୍ତ ତାଙ୍କ ଥର ଥର ହାତରେ ମାଳିଟି ଆଣି ମୋ ବେକରେ ପିନ୍ଧେଇଦେଲେ । ମୁଁ କୃତଜ୍ଞତାରେ ପାଦ ତଳେ ମୁଣ୍ଡିଆଟିଏ ମାରି ତାଙ୍କ ପାଖରେ ମୁଣ୍ଡ ନୁଆଇ ଠିଆ ହେଲି । ଯିବା ପାଇଁ ମେଲାଣି ମାଗିଲି । ମୁଣ୍ଡ ଉଠେଇ ଚାହିଁଲା ବେଳକୁ ଲାଗିଲା ମହନ୍ତ ମୋ ଦେହଟା ଉପରେ ଲୋଭାଣିଆ ଆଖିରେ ଡ଼ଗ ଡ଼ଗ କରି ଚାହିଁରହିଛନ୍ତି । ମୁଁ ମହନ୍ତଙ୍କ ଏଭଳି କଷାୟିତ, କାମାସକ୍ତ ଆଖି ଦୁଇଟିକୁ ଦେଖି ଚମକିଗଲି । ସେ କ୍ଷଣକ ଭିତରେ ନିଜ ପାଖକୁ ଜବରଦସ୍ତ ଭିଡ଼ିନେଇ ମୋତେ କୋଳ କରି ନେଲେ ଓ ତାଙ୍କର ଦୁଇ ଶକ୍ତ ବାହୁ ଭିତରେ ମୁଁ ଯିମିତି ଚିପିହେଇଗଲି ସିଂହ ପଂଝାରେ ଠେକୁଆଟେ ଭଳି । ଲାଗୁଥାଏ ଯେକୌଣସି ମୁହୂର୍ତ୍ତରେ ମୁଁ ଅଣନିଶ୍ୱାସି ହେଇଯିବି । ମହନ୍ତଙ୍କ ଦେହର ଲୁଣିଆ ଝାଳର ବାସିଗନ୍ଧ ଓ ତାଙ୍କ ମୁହଁରୁ ପାଣିଆ ସୁବୁଦ୍ଧି ମସଲାର ହଳାହଳ ଲାଗୁଥିଲା ମୋତେ କ୍ଷଣିକ ଭିତରେ ଆକ୍ରାନ୍ତ କରିନେବ । ମୁଁ ଚେତାଶୂନ୍ୟ ହେଇଯିବି । ସେ ମୋତେ ଜୋର କରି ଉଠେଇ ନେଇ ପଲଙ୍କ ଉପରେ କଚାଡ଼ିଦେଲେ । ମୁଁ ଯିମିତି ତାଙ୍କର ଖେଳଣା କଣ୍ଢେଇ । ମୋ ଦେହରୁ ଯିମିତି ନିଆଁ ଝୁରିବାକୁ ଲାଗିଲା । ମୁଁ ସେତେବେଳକୁ ରକ୍ତମୁଖା ହେଇଯାଇଥିଲି । ମୋ ଦେହରେ କିଏ ଯିମିତି ଶତସିଂହର ବଳ ଭରି ଦେଇଗଲା । ମୁଁ ରାଧାବିନୋଦଙ୍କୁ ସ୍ମରଣା କରି କାନ୍ଥଠଣାରେ ଥୁଆ ହେଇଥିବା ପିତଳର ଅତରଦାନିଟାକୁ ହାତରେ ଉଠେଇ ନେଇ ଘୃଣାରେ ଓ ପ୍ରତିହିଂସାରେ ମହନ୍ତର ମୁହଁ ଉପରକୁ ଫୋପାଡ଼ିଦେଲି । ମହନ୍ତଙ୍କ ନାକଦଣ୍ଡାରୁ ଝର ଝର ହେଇ ରକ୍ତ ସ୍ରବିବାକୁ ଲାଗିଲା । ମହନ୍ତ ଏତିକିରେ ପ୍ରକୃତିସ୍ଥ ହେଇଗଲା । ନିଜକୁ ସମ୍ଭାଳି ନେଲା ।

ମୁଁ ନିଜେ ଦମ୍ଭ ଧରି ପଲଙ୍କରୁ ଉଠି ଆସି ତଳେ ଠିଆହେଲି । ମୋ ଅନ୍ତର ଭିତରୁ କିଏ ଯିମିତି ଇଙ୍ଗିତ ଦେଲା, ମୁଁ କଠୋର ଗଳାରେ ମହନ୍ତଙ୍କୁ ଶୋଧିଦେଇ ଗଲି । ତୁ ଧର୍ମର ରକ୍ଷକ ହେଇ ଭକ୍ଷକ ହେବାକୁ ଚେଷ୍ଟା କରୁଛୁ , ତୁ ଟା ଗୋଟିଏ ବିଧର୍ମୀ କାମୁକ! ତୋର ଟିକିଏ ହେଲେ ଲାଜ ନାହିଁ । ଏହାହିଁ କ'ଣ ତୋର ବୈରାଗୀ ପଣିଆ । ଏହା ହିଁ କଣ ଏ ମଠରେ ଓ ମଠର ମହନ୍ତମାନଙ୍କର ପରଂପରା । ତୁଟା ଗୋଟିଏ ନିପଟ ପାପିଷ୍ଠ । ତୁ ଆଉ ପାଦେ ଆଗେଇବାକୁ ଚେଷ୍ଟା କଲେ ତୋର

ଇଜ୍ଜତ ଦିଗଣ୍ଡା ଦିକଡ଼ା ହେଇଯିବ ।  ନିଜର ଇଜ୍ଜତ ସମ୍ଭାଳି ଯେଉଁଠି ଅଛୁ ସେଇଠି ରହିଯା । ମନେରଖ, ମୋର ପ୍ରାଣକୁ ତିଳେ ହେଲେ ଡ଼ର ନାହିଁ । ମୁଁ ଆଜି ତୋତେ ଜିଅନ୍ତା ଛାଡ଼ିଦେବି ନାହିଁ । ତୁ ମର କି ମୁଁ ମରେ ।

ମୁଁ ମହନ୍ତକୁ ଏତକ ଏକଥା କହିସାରିଲା ବେଳକୁ ପଛେଇ ପଛେଇ ଏରୁଣ୍ଡିବନ୍ଧ ପାଖକୁ ବାହାରି ଆସିଯାଇଥାଏ ।  ଏରୁଣ୍ଡିବନ୍ଧର ବାହାର ପଟକୁ ପାଦଟିଏ କାଢ଼ି ନେଇ ମହନ୍ତକୁ ଆଉଥରେ ଚେତାବନୀ ଦେଲି । କହିଲି, ତୁ ହୁଏତ ଏମିତି ଅନେକ ସରଳ ଗରୀବ ଘର ଝିଅ ବୋହୂଙ୍କୁ ହିନସ୍ତା କରିଥିବୁ । ତୁ ଭାବିଥିଲୁ ମୁଁ ଅସହାୟା, ମଠ ଅନ୍ନରେ ପ୍ରତିପାଳିତ, ଏଣୁ ସୁନା ଲୋଭରେ ତୋ ଆଗରେ ନଇଁଯିବି । ତୁ ଭାବିନେଇଥିଲୁ ମୁଁ ଆଉ ମୋ ଆମ୍ମାକୁ ମଠ ଭାତ ଗଣ୍ଡେ ଫିଙ୍ଗି ଦେଇ ମୋତେ ତୋର ମାଇପ ଭଳି ବ୍ୟବହାର କରିବୁ ।  ନିଜର କାମବାସନାକୁ ମେଣ୍ଟେଇନେବୁ । ତୁ ଧରିନେଇଥିଲୁ ଗୌରୀ ଯେତେବେଳେ ରାଧାବିନୋଦଙ୍କ ଅର୍ପିତା, ତୁ ଯେତେବେଳେ ରାଧାବିନୋଦଙ୍କ ପ୍ରଥମ ସେବକ, ତାକୁ ଉପଭୋଗ କରିବାରେ ତୋର ପୂର୍ଣ୍ଣ ଅଧିକାର ଅଛି । ଏହା ତ ! ଏତକ କହି ବେକରୁ ମାଳଟି କାଢ଼ି ମହନ୍ତର ଗୋଡ଼ ପାଖକୁ ଫିଙ୍ଗିଦେଲି । ଛି! ଧିକ୍ ତୋର ଉଦାର ପଣିଆ ।

ତା'ପରେ ମୁଁ ଆହତ ନାଗୁଣୀ ପରି ତା ବଖରା ପାଖରୁ ଗୋଡ଼କାଢ଼ି ଏକା ନିଶ୍ୱାସରେ ବାହାରି ଆସିଲି । ଲାଗିଲା ପ୍ରଥମ ଚୁମ୍ବନରେ ହିଁ ମହନ୍ତର ଛାମୁ ଦାନ୍ତ ଉପାଡ଼ି ପଡ଼ିଲା । ସେ କେଡ଼େ ନିର୍ଲଜ୍ଜ, କବାଟ ଖୋଲି ନିଜର କ୍ରୋଧକୁ ଲଜ୍ଜାକୁ ଓ ନପାରିଲା ପଣକୁ ସଂଯତ କରି, ଉପଦେଶ ଦେବା ଛଳରେ ଅପରକୁ ଶୁଣେଇଲା ଢ଼ଙ୍ଗରେ କହିଲା, ମା ! ଯା ଖବର ଦେଲେ ଏଇମିତି ଆସୁଥିବୁ । ମୁଁ ନିଜକୁ ସମ୍ଭାଳି ନେଇ ଏକା ଧାପରେ ଘର ପରେ ଘର ଡ଼େଇଁ ଡ଼େଇଁ ଆମ୍ମା ପାଖରେ ପହଞ୍ଚିଲା ବେଳକୁ ମୋର ସର୍ବାଙ୍ଗ ଥରୁଥାଏ । ଖର ନିଶ୍ୱାସ ତୁହାକୁ ତୁହା ବାହାରୁଥାଏ । ଆମ୍ମାକୁ କହିଲି ଚାଲ ଯେତେ ଶୀଘ୍ର ପାରୁ ଏଠାରୁ ଚାଲିଯିବା । ଶ୍ୟାମାନନ୍ଦ ପାଳିତ ଠେକୁଆଟିଏ ଭଳି ମଣ୍ଡପ କଣେ ଠିଆହେଇ ମୋ ଫେରିବାକୁ ଅପେକ୍ଷା କରୁଥାଏ । ଶ୍ୟାମାନନ୍ଦ ନିଶ୍ଚୟ ଠଉରେଇ ସାରିଥାଏ ଏ ଭିତରେ କ'ଣ ଘଟି ଯାଇଛି ।

ଆମ୍ମା କଣ ଏସବୁର ରହସ୍ୟ ବୁଝିବ । ତାର ଭାବନାରେ ତ ମହନ୍ତ

ଧର୍ମର ସବୁଠୁ ବଡ଼ ପଣ୍ଡା । ତ୍ୟାଗର ଓ ସାଧନାର ମୂର୍ତ୍ତି । ତା ପାଇଁ ମହନ୍ତ ତ ସାକ୍ଷାତ ଦେବତା, ଚଳନ୍ତିପ୍ରତିମା । ଆମ୍ମା ମୋତେ କୁଣ୍ଢେଇ ପକେଇ ମୋ ମୁଣ୍ଡରେ ହାତ ବୁଲେଇ ଆଣି କହୁଥାଏ, ମା ତୁ ଏମିତି କାହିଁକି ରାଗୁଛୁ । କାହା ଉପରେ ରାଗୁଛୁ । ତୋର କଣ ହେଇଛି । ସେତେବେଳକୁ ମଣ୍ଡପରେ ଆଉ କିଏ ଲୋକବାକ ନଥାନ୍ତି । ଠାକୁରଙ୍କ ଭିତର କବାଟ ଓ ବାହାର କବାଟ ପଡ଼ିସାରିଥାଏ । ଖାଲି ଚୌକିଆଟିଏ ବାହାରେ ଛଗିଥାଏ । ଅପେକ୍ଷା କରିଥାଏ ଆମେ ଗଲା ପରେ ମନ୍ଦିରର ଘାଟ କବାଟରେ କଞ୍ଚି ପକେଇବ ।

ମୁଁ ଆମ୍ମାକୁ ଏକ ରକମ ମଣ୍ଡପରୁ ଭିଡ଼ି ଭିଡ଼ି ମଠ ବାହାରକୁ ନେଇଗଲି । କହିଲି ତୁ ଶୀଘ୍ର ଘରକୁ ଚାଲ ପରେ ତୋତେ ସବୁ କଥା କହିବି । ସେତେବେଳକୁ ପୁଣି ବର୍ଷା ଆରମ୍ଭ ହେଇଯାଇଥାଏ । ଧାରା ଶ୍ରାବଣର ବର୍ଷା । ଲାଗୁଥାଏ ପାର୍ବତୀପୁରମ୍ ଗାଁକୁ ସତେ ଯିମିତି ଏ ବର୍ଷା ଭସେଇ ନେଇ ଝଞ୍ଜାବତୀ ନଦୀ ଭିତରେ ମିଶେଇ ଦେବ । ଆମ୍ମା ଆଉ ମୁଁ ସେ ବର୍ଷାଟାରେ ତିନ୍ତି ତିନ୍ତି ଘରକୁ ଫେରିଲୁ । ଘରେ ପହଂଚିଲା ବେଳକୁ ମୋ ଦେହ ହାତ ଥଣ୍ଡାରେ କାଲୁଆ ପଡ଼ିଯାଇଥା ଏ । ଆମ୍ମା ମୋ ମୁଣ୍ଡ ବାଳ ମୁକୁଳା କରିଦେ ଇ ଶୁଖିଲା ଗାମୁଛାରେ ଚିପୁଡ଼ି ଦେଲା; ମୋର ପିନ୍ଧା ଲୁଗା ବଦଳେଇ ଦେଲା । କହିଲା, ଗୌରୀ ଯା, ଏବେ ଘୋଡ଼େଇ ହେଇ ଶୋଇପଡ଼ । ସକାଳ ହେଲେ ସବୁ କଥା । ମୁଁ ବିଛଣା ସିନା ଧରିଲି, ମୋ ଆଖିକୁ ନିଦ ଆସୁନଥାଏ । ମୋ ମନକୁ ମହନ୍ତର ସେହି ନାଲିଆ ଆଖି ଦୁଇଟି ଓ ବଳଦିଆ ବଧିଆ ଅଲାଜୁକ ଚେହେରା ବାରମ୍ବାର ବିଚଳିତ କରିଦେଉଥାଏ । ମୋ ଆଖିରୁ ବର୍ଷାର ଧାରା ଭଳି ଲୁହ ଗଡ଼ିଯାଉଥାଏ । ମୋ ଦେହ ଭିତରୁ ତୁହାକୁ ତୁହା କୋହ ଉଠି ସାରା ଦେହକୁ କମ୍ପେଇ ଦେଉଥାଏ । ମୁଁ ନିଜ ଶୋଇବା ଜାଗାରୁ ଉଠିଯାଇ ଆମ୍ମା ପାଖରେ ମୁଣ୍ଡ ଗୁଞ୍ଜି ଶୋଇବାକୁ ଚେଷ୍ଟା କଲି । ତଥାପି ନିଦ ଆସିଲାନି । ମୁଁ ଅମ୍ମାକୁ ସବୁ କଥା ଗୋଟି ଗୋଟି କରି କହିଦେଲା ପରେ ନିଜକୁ ଉଶ୍ୱାସ ଲାଗିଲା । ଆମ୍ମା କିନ୍ତୁ ମୋ କଥା ଶୁଣିଲା ପରେ ଭାଙ୍ଗି ପଡ଼ିଲା ।

ସକାଳୁ ଉଠି ଦେଖେ ମୋ ଦେହରେ ଜର ଖଇ ଫୁଟୁଛି । ମୁଣ୍ଡ ଭାରି ଭାରି ଲାଗୁଛି । ଅସମ୍ଭବ ଟିଣ୍ଡୁକୁଛି । ଚାଲିବାକୁ ଗୋଡ଼ରେ ବଳ ନଥିଲା ଭଳି ମନେ ହେଉଛି । ଆମ୍ମା ଖୁବ୍ ବ୍ୟସ୍ତ ହେଲା । ଔଷଧି ମୌଷଧି କଲା । ପଥି ରାନ୍ଧି ଖାଇବାକୁ ଦେଲା । ମୋ ପାଖରେ ରାତି ଦିନ ବସିରହିଲା । ଦେହରେ ମୁଣ୍ଡରେ ହାତ ବୁଲେଇଦେଲା ।

ଜର ସମ୍ପୂର୍ଣ୍ଣ ଭଲ ହେଲା ବେଳକୁ ଏଭିତରେ ପନ୍ଦର କୋଡ଼ିଏ ଦିନ ବିତିଗଲାଣି ।

ଆମ୍ମା କହିଥାଏ ପ୍ରତିଦିନ ମୋ କାମହେଲା, ରାଧାବିନୋଦଙ୍କ ପାଇଁ ମଲ୍ଲି ଫୁଲର ମାଳଟିଏ ଗୁନ୍ଥିବା, ନହେଲେ ତୁଳସୀର ଧଣ୍ଡାଟିଏ କରିବା, ପ୍ରତିସଂଧ୍ୟାରେ ମଠକୁ ଯାଇ ଠାକୁରଙ୍କ ପାଖରେ ଚଢ଼େଇବା, ସଂଧ୍ୟା ଆଳତି ବେଳେ ଗୀତଗୋବିନ୍ଦରୁ ପ୍ରବନ୍ଧଟିଏ ବୋଲିବା । ଆଗରୁ ଦେହ ଭଲ ଥିଲା ବେଳେ ମୁଁ ଏତକ ନିଷ୍ଠାର ସହ କରୁଥିଲି ।

ରାଧାବିନୋଦଙ୍କୁ ସତରେ ମୁଁ ମନ ଖୋଲି ଜଣା କରେ, ପ୍ରଭୁ! ମୋତେ ଆଉ ମଣିଷ ଜନ୍ମ ଦିଅନି । ଏ ଜନ୍ମ ମୋର ଶେଷ ଜନ୍ମ ହେଉ । ଠାକୁରଙ୍କ ପାଇଁ ଫୁଲ ଗୁନ୍ଥିବାକୁ ମୋତେ ଖୁବ୍ ଭଲଲାଗେ । ମୋ ପ୍ରାଣ ସୁଗନ୍ଧରେ ଭରିଯାଏ । ଆମ୍ମା ସକାଳୁ ଗାଧୋଇସାରି ନଦୀରୁ ଫେରିଲାବେଳେ ମଠ ବଗିଚାରୁ ଫୁଲ ତୋଳି ଆଣେ । ଜର ଦିନ ତକ ଆମ୍ମା ଠାକୁରଙ୍କ ପାଇଁ ନିଜେ ଫୁଲମାଳ ଗୁନ୍ଥିଲା ଓ ସଂଧ୍ୟାବେଳେ ଚଢ଼େଇବାପାଇଁ ମନ୍ଦିରକୁ ଗଲା । ସେଦିନର ଦୁଃଖଦ ଘଟଣା ପରେ ମଠକୁ ଯିବା ପାଇଁ ଆଉ ମୋ ମନ କହୁନଥାଏ । ଆମ୍ମା ବି ମୋ ଦେହ ଭଲ ହେଇଗଲା ପରେ ମଠକୁ ଯିବାକୁ ମୋତେ ବାଧ୍ୟକଲାନି, ଆମ୍ମା ଭାବୁଥାଏ ରାଧାବିନୋଦଙ୍କ ପ୍ରତିମାଟିଏ ହେଲେ ଘରେ ରଖି ପୂଜା ସେବା କରିବା ।

ନିତ୍ୟା ଗୌରୀ ଠାରୁ କଥାତକ ଶୁଣିନେଲା ପରେ ସେ ଅସମ୍ଭାଳ ହେଇ ଉଦ୍‌କ୍ଷିପ୍ତ ହେଇ ଉଠିଲେ । ସେ ଅନୁଭବ କଲେ ଗୌରୀ ବୋଧହୁଏ ଏବେ ଏବେ ମହନ୍ତ ପାଖରୁ ପ୍ରତାରିତ, ଅପମାନିତ ହେଇ ଫେରି ତାଙ୍କୁ କଥାତକ କହିଛି । ତାର କହିବା ଭିତରେ କେବଳ ମହନ୍ତ ପ୍ରତି କ୍ରୋଧନୁହେଁ, ଏ ସମଗ୍ର ମଠ ବ୍ୟବସ୍ଥା ପ୍ରତି ତାର ଆସ୍ଥା ଭାବ ସମ୍ପୂର୍ଣ୍ଣ ଉଭେଇଯାଇଛି । ଧର୍ମ, ଠାକୁର, ସଂଯମ, ନୀତିନିୟମ, ସତେ ଯିମିତି ତା ପାଇଁ ଅଲୋଡ଼ା ହେଇପଡ଼ିଛି । ନିତ୍ୟା ତ ଅଡ଼ବାୟା । ସେ ନିଜର କର୍ତ୍ତବ୍ୟ ସ୍ଥିର କରିନେଲେ । ସେ ଗୌରୀକୁ ଭରସା ଦେଇ କହିଲେ ମୁଁ ଏଇ ମୁହୂର୍ତ୍ତରେ ମଠକୁ ସିଧା ଚାଲିଲି । ମହନ୍ତକୁ ତା ମଠ ଆଡ଼୍‌ଡ଼ାରୁ ବାହାରକୁ ଓଟାରି ଆଣିବି ଆଉ ସେ ଯେଉଁହାତରେ ତୋ ଦେହକୁ ଛୁଇଁ ଅପବିତ୍ର କରିଥିଲା ତାର ସେ ହାତ ଦିଟାକୁ ଅକାମୀ କରିଦେବି । ମହନ୍ତକୁ କହିବି ତୁ ପାଷଣ୍ଡ, କୁଳାଙ୍ଗାର, ଧର୍ମଭକ୍ଷକ, ଗୌରୀର

ଗୋଡ଼ତଳେ ପଡ଼ । କ୍ଷମା ମାଗିନେ । ସେ ଶଳାଟା ଗାଁଟା ଯାକର ଲୋକଙ୍କ ଆଗରେ ତୋ ଗୋଡ଼ତଳେ ପଡ଼ିବ, ତାକୁ ଲୋକେ ଛି ଛାକର କରିବେ । ଦରକାର ହେଲେ ମୁଁ ଅଜାଙ୍କୁ ମଧ ଏ କାର୍ଯ୍ୟରେ ସାମିଲ କରିବି । ମୁଁ ଜାଣେ ଅଜା ଏଭଳି ଅନୀତି କଥାରେ ନଛୋଡ଼ବନ୍ଧା ।

ଗୌରୀ ନିତ୍ୟାନନ୍ଦ ଭାଇନାଙ୍କୁ ଶାନ୍ତ ହେବାକୁ ଅନୁରୋଧ କରି ତା ବଳଜା କଥା ତକ ବଖାଣିବାରେ ଲାଗିଲା । ଲାଗୁଥିଲା ଗୌରୀ ଏତେ କ୍ଷୁବ୍ଧ, ଏତେ ଆହତ, ଏତେ ଅପମାନିତ ଯେ ତା ହୃଦୟରେ ପ୍ରତିଶୋଧର ନିଆଁ ଆଜି ଯାଏଁ ଜଳୁଛି । ସେ ପ୍ରତିଜ୍ଞାବଦ୍ଧ । ନିଜେ ହିଁ ଏହି ସମସ୍ୟାର ସମାଧାନ କରିବ । ସେ ମୁହୂର୍ତ୍ତକ ପାଇଁ ହେଲେ ଆଉ ମହନ୍ତର ମୁହଁ ଚାହିଁବାପାଇଁ ଇଚ୍ଛା କରୁନଥିଲା ।

ସେ ଭାବୁଥିଲା ରାଧାବିନୋଦ ଭଳିଆ ପ୍ରତ୍ୟକ୍ଷ ଠାକୁର କିମିତି ଏଭଳି ଜଣେ କାମୁକ, ଲମ୍ପଟ, ନୀତିହୀନ ମହନ୍ତଟାକୁ ସମ୍ଭାଳି ମଠର ପବିତ୍ର ପରିବେଶ ଭିତରେ ଆଶ୍ରୟ ଓ ପ୍ରଶ୍ରୟ ଦେଇଛନ୍ତି । ମହନ୍ତକୁ କେମିତି କାଳିୟ ନାଗ ଦଂଶି ଦେଉନି, ସୁଦର୍ଶନ ଚକ୍ର ଛେଦିଦେଉନି ! ସେ କଂସ ଭଳି ତା ମଞ୍ଚାରୁ ଗଡ଼ିପଡ଼ି ମରିଯାଉନି ! 'ରାଧାବିନୋଦ, ଏଭଳି ପାପୀଟାକୁ ତମେ ଘଣ୍ଟ ଘୋଡ଼େଇ ରଖିଚ ? ଏ ଅପମାନ କଣ ତମର ଅପମାନ ନୁହେଁ ? ତୁମରି ନାଁରେ ଅବଳା ନାରୀର ମହତ ଲୁଣ୍ଠନ, ତମରି ନାଁରେ ସତୀ ସ୍ତ୍ରୀର ଧର୍ଷଣ, ତମରି ନାଁରେ ମାନମହତ ହରାଇ ନେବାର ଉପକ୍ରମ । ତମେ ଏ ସବୁ ଦେଖି କେମିତି ସହୁଚ ହେ ପ୍ରଭୁ । ତମେ ତ ଦ୍ରୌପଦୀର ଲଜ୍ଜା ନିବାରଣ ପାଇଁ ଶାଢ଼ି ପରେ ଶାଢ଼ି ବଢ଼େଇ ଚାଲିଲ ଯେ ଶେଷରେ ଦୁଃଶା ଭଳି ବୀର ଥକିଗଲା । ଘୋର ବନେ ଗର୍ଭିଣୀମୃଗୁଣୀ ସ୍ତୁତି କଲା, ତାକୁ ବ୍ୟାଧ ମୁହଁରୁ ଉଦ୍ଧାର କଲ । ଗଭୀର ଜଳେ ଥାଇ ଗଜରାଜ ତୁମକୁ ଡ଼ାକିଲା ବୋଲି ଚକ୍ର ପେଶି ନକ୍ର ନାଶିଲ । ଗଜକୁ ଉଦ୍ଧାରିଲ । ତମର ତ ମହିମା ଅପାର । ମୁଁ ଆଉ କି ବର୍ଣ୍ଣିବି । ମୁଁ ଦୁଃଖିନୀ । ମୋ ବେଳକୁ ତମ ଚକ୍ର ନିସ୍ତେଜ ହୋଇଗଲା କିପରି? ମହନ୍ତ ବା କି ଛାର ମଣିଷ । ଗୌରୀ ରାଧାବିନୋଦଙ୍କୁ ଅଭିମାନରେ ବହେ ଶୋଧିଦେଇଗଲା । ଆଖି ଛଳ ଛଳ କରି କହିଲା ମୁଁ ଆଉ ତମ ପାଖକୁ ଯିବିନି । ଯେତେ ଦିନ ପର୍ଯ୍ୟନ୍ତ ଏ ଅନୀତି କଥାର ମିମାଂସା ନହେଇଛି ସେତେଦିନ ପର୍ଯ୍ୟନ୍ତ ମୁଁ ତମକୁ ମୋ ମୁହଁ ଦେଖେଇବିନି । ମୁଁ ନଗଲେ ତମର କିଛି ଅତୁଆ ହେବନି ମୁଁ ଜାଣେ, ତମର ତ ସହସ୍ର ଗୋପୀ ଅଛନ୍ତି ।

ଅନ୍ତର ଭିତରେ ଆଉଟୁ ପାଉଟୁ ହେଉଥିବା କଥା ତକ ନଦୀ ପଠାରେ ବସି ନିତ୍ୟାନନ୍ଦ ଭାଇନାଙ୍କୁ କହିଦେଲା ପରେ ଗୌରୀ ନିଜକୁ ଖୁବ୍ ଆଶ୍ୱସ୍ତ ଅନୁଭବ କଲା । ସେ ଏତକ କଥା ହିଁ କହିବ ବୋଲି ବେଳ ଉଣ୍ଡୁଥିଲା । ନିତ୍ୟା ଭାଇନା ତ ସାଦା ସିଧା ସଚ୍ଚୋଟ ପିଲା, ଏଣୁ ଗୌରୀ ଅନୁମାନ କରିନେଇଥିଲା ଭାଇନା ଜାଣିଲେ ଅଜା ମଧ ବଳେ ଜାଣିଯିବେ ।

ସେମାନେ ନଈକୂଳରୁ କଳାକୁଞ୍ଜକୁ ଫେରି ଆସିଲା ବେଳକୁ ମୁହଁ ସଂଜ ହେଇଗଲାଣି । ମାଇକିନା କାଉଣ୍ଟର ଆଗରେ ମାଇକିନିଆଙ୍କ ଭିଡ଼ ଜମିଗଲାଣି । ଅଜା ଗୌରୀକୁ ହୁରି ପକେଇଛନ୍ତି । ନିତ୍ୟାକୁ ଖୋଜୁଛନ୍ତି । ଭାବୁଛନ୍ତି ଦୁହେଁ ଗଲେ କୁଆଡ଼େ ? ମନରେ ସଂଶୟ ଆସୁଛି । ନିତ୍ୟା ଆଉ ଟୋକୀଟାକୁ ନେଇ ସିନେମା ଆଡ଼େ ପଳେଇଲାକି । ଅଜା, ଖୁବ୍ ବ୍ୟସ୍ତ ହେଇ ଏଣେ ତେଣେ ଚାହୁଁଛନ୍ତି ଆଉ ମନେ ମନେ ନିତ୍ୟାକୁ ଶୋଧୁଛନ୍ତି । ସେ ଦୁହିଁଙ୍କୁ କୁଞ୍ଜଆଡ଼କୁ ଆସୁଥିବା ଦୂରରୁ ଦେଖି ଟିକେ ଥଣ୍ଡା ପଡ଼ିଲେ । ଅଜା ନିଜ ପିଲାଙ୍କୁ ତ ସହଜେ କିଛି କହନ୍ତିନି, ପର ପିଲାଙ୍କୁ ବା ବାଧିଲା ଭଳି କଣ କହନ୍ତେ । ପୁଣି ନିତ୍ୟାକୁ ଅଜା ଖୁବ୍ ଭଲ ପାଆନ୍ତି । ଏବେ ଭଲ ପାଇବା ଲୋକଙ୍କ ଭିତରେ ଗୌରୀ ବି ଯୋଡ଼ି ହୋଇଯାଉଛି ।

ଅଜା ଗୌରୀକୁ ଦେଖିଲା ଦିନଠାରୁ ଓ ତା ଠାରୁ ତାର ଜୀବନର ସବୁ ବୃତ୍ତାନ୍ତ ଶୁଣିଲା ପରଠାରୁ ମନେମନେ ଭାବୁଥିଲେ ଗୌରୀ ଓ ନିତ୍ୟା ବାହା ହେଇ ଘର କରି ରହିଲେ ବଡ଼ ଚମତ୍କାର ହୁଅନ୍ତା ଓ ଆଜି ସେମାନଙ୍କୁ ନଦୀ ପଠାରୁ ଆସୁଥିବା ଦେଖିସେ ମନେମନେ ଖୁସିଟେ ହେଇଗଲେ ।

ପାର୍ବତୀପୁରମ୍‌ରେ କଳାକୁଞ୍ଜର ଦିନ ସରିସରି ଆସୁଛି । ଆଉ ଦି ଦିନ ପରେ କୁଞ୍ଜଭଙ୍ଗା କାମ ଆରମ୍ଭ ହେଇଯିବ । ଅଜାଙ୍କୁ ଆଉ ନିତ୍ୟାନନ୍ଦ ଭାଇନାଙ୍କୁ ଘରକୁ ଡ଼ାକି ଖାଇବାକୁ ଦେବାକୁ ଗୌରୀର ଭାରି ଇଚ୍ଛା । ସେ ଆମ୍ମାକୁ ଏକଥା କହିବାରୁ ଆମ୍ମା ମଧ ଗୌରୀର କଥା ଖୁବ୍ ଆନନ୍ଦରେ ଗ୍ରହଣ କଲେ । ଆମ୍ମା ଶଙ୍କାରେ କହିଲା ଗୌରୀ, ସେମାନେ ତ ବ୍ରାହ୍ମଣ ଲୋକ, ପାଟଶାଳିଆ ଘରେ କଣ ରନ୍ଧା ଅନ୍ନ ଗ୍ରହଣ କରିବେ । ଫଳାନ୍ନ ହେଲେ ହୁଏତ ସେମାନେ ହଁ ଭରି ପାରନ୍ତି । ଗୌରୀର ଆଶା ଓ ବିଶ୍ୱାସ ଥାଏ ଯେଉଁଠି ପ୍ରେମ ଅଛି, ଯେଉଁଠି ସ୍ନେହ ବନ୍ଧନ ଅଛି, ସେଠି ଜାତି ଭେଦର

ଅହେତୁକ ବନ୍ଧନ ତୁଛ । ଗୌରୀ କହିଲା, ଆମ୍ମା ତୁ କଣ କଣ ରାନ୍ଧିବୁ ରାନ୍ଧ, ଭଲ ଭାବରେ ରାନ୍ଧେ କିମିତି ପରିବେଷଣ କରିବୁ ସ୍ଥିର କର ଓ ତାର ଯୋଗାଡ଼ କର, ମୁଁ ଆଜି କୁଞ୍ଜରେ ଅଜାଙ୍କୁ ପ୍ରଥମେ ମନେଇ ନେବି । ତା ପରକୁ ନିତ୍ୟାନନ୍ଦ ଭାଇନା ବଳେ ହଁ ଭରିବେ ।

ଗୌରୀ ଖୁବ୍ ଆତ୍ମପ୍ରତ୍ୟୟର ସହିତ କୁଞ୍ଜରେ ତାର ଦାୟିତ୍ୱ ସଂପାଦନ କଲା । ଶେଷ ଦିନ ଯାକରେ କୁଞ୍ଜରେ ଦେଖଣାହାରିଙ୍କ ଅସଂଭବ ଭିଡ଼ । ରାତି ନଅ ଗଡ଼ିଗଲା । ଘରକୁ ଫେରିବା ପୂର୍ବରୁ ଗୌରୀ, ଅଜାଙ୍କ ଠାରୁ ବିଦାଗି ନେଇ ଆସେ । ସେ ଅଜାଙ୍କୁ ମୁଣ୍ଡିଆ ମାରିସାରି ମୁଣ୍ଡପୋତି ଚୁପ୍‌ହେଇ ଠିଆ ହେଲା । ଅଜା ପଚାରିଲେ ଗୌରୀ କଥା କଣ? ଗୌରୀ ଗେଲେଇ ହେଇ କହିଲା ତମେ ହଁ ଭରିଲେ କହିବି । ମୁଁ ଯାହା କହିବି ତମେ ହଁ କରିବ । କଳାକୁଞ୍ଜର ସଫଳତାରେ ଅଜା ଉଲ୍ଲସିତ ଥିଲେ । ସେ ଅଜା ନାତୁଣୀ ସଂପର୍କକୁ ଟିକିଏ ବର୍ଣ୍ଣିଳ କରିଦେବା ପାଇଁ ହାସ୍ୟରେ କହିପକେଇଲେ ତୁ ଅଜାଟାକୁ ବିଭାହେବି ବୋଲି ମନସ୍ଥ କରିଛୁତ ମୁଁ ରାଜି ହେଲି । ଦେ ହାତ ଆଣ । ନିତ୍ୟାକୁ ଡ଼ାକ ସେ ଶ୍ଳୋକ ପଢ଼ିଦେବ ।

ଯଥା ରାବଣସ୍ୟ ମନ୍ଦୋଦରୀ, ଯଥା ବାଳୀସ୍ୟ ତାରା
ଯଥା ରାମସ୍ୟ ସୀତା, ତଥା ଅଜାସ୍ୟ ଗୌରୀ ଆମ୍ମା

ହେଲା ତ । ଆସରେ ସମସ୍ତେ ଅଜାର ବାହାଘର ଦେଖିବ ପରା । ଦିଅ, ଆଇ ଗୋଡ଼ତଳେ ମୁଣ୍ଡିଆ ମାର । ଅଜାଙ୍କ ଡ଼ାକରେ କୁଞ୍ଜଟା ଯାକର କାରିଗର ଏକାଠି ହେଇଗଲେ । ସୀମାଞ୍ଚଳ ପଛଆଡୁ ଟାପରା କଲାପରି କହିଲା, ବୁଢ଼ା ଅଜା ବାହା ହେଉଛି ରେ । ବେଙ୍ଗ ବେଙ୍ଗୁଲୀ ବିଭାଘର । ସାରୁପତ୍ରକୁ ଛତା କରି ଟେକିଧର ହୁଳ ହୁଳି ପକା, ଶଙ୍ଖ ବଜା, ରେକର୍ଡ଼ ଲଗାରେ - ମନଡ଼ୋଲେ ମେରାମନ ଡ଼ୋଲେ । ଅଜା ହଠାତ୍ ପ୍ରକୃତିସ୍ଥହେଇ ଉପଲବ୍ଧିକଲେ ହାସ୍ୟରସର ବି ସୀମା ଅଛି । ଘଡ଼ ଘଡ଼ି ଭଳି ପାଟିଟେ କଲେ । ଶଳେ ନାତିଆ ଯାକ ଏଠୁ ବାହାର , ନିତ୍ୟାନନ୍ଦ କିନ୍ତୁ ସମସ୍ତଙ୍କ ସାଙ୍ଗରେ ମିଶି ହସି ପାରୁନଥାଏ । ଗୌରୀ ଖୁବ୍ ଲାଜେଇ ଗଲା । ଅଜାଙ୍କ କାନ୍ଧ ଉପରେ ମୁହଁ ଗୁଞ୍ଜି ଦେଇ କାନରେ ଚୁପ୍ ଚୁପ୍ କହିଲା ଅଜା! ସତେରେ ମୋତେ ତମ ସାଙ୍ଗରେ ପାରଳାଖେମଣ୍ଡି ନେଇଯିବ ତ । ମୁଁ ତମର ଭାରିଯା

ହୁଏ ନ ହେଲେ ତମର ନାତୁଣୀ ହୁଏ ପ୍ରସ୍ତାବ ମଞ୍ଜୁର ହେଲାତ । ଅଜା ପ୍ରଥମରୁ ଏହା ହିଁ ଭାବି ଏ ହାସ୍ୟ ପସରା ରଚିଥିଲେ । ଗୌରୀର ସେତକ ଫୁସ୍‌ଫାସ୍ କଥାଶୁଣି ତା ଗାଲକୁ ମୋଡ଼ି ଦେଲେ । କହିଲେ ବାସ୍, ତୋ କଥା ଏତିକିରେ ସରିଲାତ ।

ଗୌରୀ ଏବେ ହସିଲା ଗଳାରେ କହିଲା, ଅଜା ଆମ୍ମା ଡ଼ାକିଛି ତମେ ଆଉ ନିତ୍ୟାଭାଇନା କୁଞ୍ଜସରିଲା ଆରଦିନ ରାତିରେ ଆମ ଘରେ ଖାଇବ । ଆମେ ପାଟଶାଲିଆ ମୂର୍ଖ ଲୋକ । ତମ ଜାତିର ନୁହଁ । ତମର ପାଦଧୂଳିକୁ ଆମେ ସମାନ ନୁହଁ । ତଥାପି ସାହସ କରି ନିମନ୍ତ୍ରଣ କଲି । କହ, ଗୌରୀ ! ହଁ ଯିବି । ତମେ ହଁ କହିଦେଲେ ନିତ୍ୟାଭାଇନାଙ୍କର ବି ଆଉ ଆପତ୍ତି ରହିବ ନାହିଁ ।

ଅଜା ଗୌରୀକୁ କହିଲେ, ମା, ତୁ ଭାବୁଛୁ କ'ଣ? ଏତିକିରେ କଥା ସରିଗଲା ବୋଲି । ଆମ୍ମାକୁ ଯା କହ ସେଦିନ ତମ ଘରେ ପ୍ରତିମା ପ୍ରତିଷ୍ଠା ବିଧାନଟେ ହେବ । ନିତ୍ୟାକୁ ମାଗ ସେ ଯାବିତା ଦେବ । ମୋ ପାଇଁ ଜଥା ହଳେ ରଖିଥିବୁ । ନିତ୍ୟାପାଇଁ ମଧ୍ୟ ଆଉ ହଳେ । ତୁ କାହିଁକି ଖର୍ଚ୍ଚାନ୍ତ ହେବୁ ଏଣୁ ଆଉ କାରିଗରମାନଙ୍କୁ ସାଙ୍ଗରେ ନେବିନି । ସୀମାଞ୍ଚଳ କିନ୍ତୁ ନିଶ୍ଚୟ ଯିବ । ତା ପାଇଁ ମଧ୍ୟ ଧୋତି ଓ ଚାଦର ଦେବୁ । ଗୌରୀ ତୁ ଭାବିଥିଲୁ ବୋଧହୁଏ ଦିଜଣ ବ୍ରାହ୍ମଣଙ୍କୁ ଡ଼ାକିଦେଇ ଭାତ ପାରୁସେ ପାରୁସେ ଦେଇ ଦେଇ କାମ ବଢ଼େଇ ଦେବୁ । ଦେ, ଏବେ ସମ୍ଭାଳ । ନିତ୍ୟାକୁ ପଚାରେ କୁଞ୍ଜରେ ବି ହଳେ ଦିହଳ ଧୋତି ଥିବ । ନେଇଯିବୁ । ଛାନିଆ ହେଏନା । ତମର ଆଉ କିଣିବା ଦରକାର ନାହିଁ ।

ଗୌରୀ ସେଦିନ ଘର ଫେରିଲା ବେଳକୁ ରାତି ସାଢ଼େ ଦଶ । ଆମ୍ମା ଆଉ ଗୋଟିଏ ଅଘଟଣ କଥା ମନେ ମନେ ଭାବିନେଇଛି । ଦାଣ୍ଡକୁ ବାଡ଼କୁ ହେଉଛି । ଭାତ ବାଢ଼ି ଅଣ୍ଡାହେଲାଣି । ନିଜ ପେଟ ଭୋକରେ ଜଳିଲାଣି । ଗୌରୀ ଉପରେ ମଧ୍ୟ ରାଗିବା ସମୟ ଆସିଗଲାଣି । ଦିଣ୍ଡାଟେ କଳାକୁଞ୍ଜ କରୁଚି ବୋଲି କଣ ମାନ ଇଜ୍ଜତ ବିକିଦେବ । ଠିକ୍ ଏମିତି ଗୋଟିଏ ବିସ୍ଫୋରଣର ମୁହୂର୍ତ୍ତରେ ଗୌରୀ ସୀମାଞ୍ଚଳ ଓ ସାହିର ଆଉ ଗୋଟିଏ ଟିକଟ ବିକା ପିଲାକୁନେଇ ପହଞ୍ଚିଗଲା । ଆମ୍ମା ଯେତିକି ରାଗ ହେଇଥିଲା ସେତିକି ଶାଗି ଗଲା । ମନେମନେ ଆଶ୍ୱସ୍ତି ଅନୁଭବ କଲା, ଭାବିଲା ଗୌରୀଟା ଗୁଣର ଝିଅଟିଏ । ବଂଶ ମର୍ଯ୍ୟାଦା କେବେହେଲେ ତଳେ ପକେଇବାକୁ ଦେବନି ।

ଗୌରୀ ଘରେ ପହଞ୍ଚି ଆମ୍ମାକୁ ଅଜାଙ୍କ ପ୍ରସ୍ତାବଟି ଦେଲା । ଆମ୍ମାର ଆନନ୍ଦ କହିଲେ ନ ସରେ । ଏ ଗରିବ ଘରେ ଏତେ ବଡ଼ ବଡ଼ ଲୋକଙ୍କ ପାଦ ପଡ଼ିବ, ପୁଣି ଠାକୁରଙ୍କ ପ୍ରତିମାଟେ ପ୍ରତିଷ୍ଠାହେବ । ଗୌରୀପ୍ରତି ମହନ୍ତର ଅମାନୁଷିକ ବ୍ୟବହାର ପରେ ଆମ୍ମା ତ ମନେମନେ କେତେ ଖୋଜୁଥିଲେ କୃଷ୍ଣ ମୂର୍ତିଟିଏ ପାଇଁ । ଘରେ ପ୍ରତିଷ୍ଠା ହେଇ ପୂଜା ହେଲେ ଆଉ ମନ୍ଦିର ଯିବା ଦରକାର ବା କଣ । ଆମ୍ମା ପଚାରିଲା ଗୌରୀ ତୁ ଜାଣିଲୁ କିମିତି କୃଷ୍ଣ ପ୍ରତିମା ବୋଲି । ଗୌରୀ କହିଲା ଅନୁମାନରୁ, ସୁନାରି ଦୋକାନରୁ ନିତ୍ୟାଭାଇନା ରୂପାର ବଂଶୀ ଗଢ଼େଇ ଆଣିବା ଘଟଣାରୁ ମୁଁ ଠଉରେଇ ନେଇଥିଲି ଯେ ନିଶ୍ଚୟ ରାଧାବିନୋଦ ମୂର୍ତିହିଁ ହେଇଥିବ । ଅଜାତ କୃଷ୍ଣଙ୍କ ପରମ ଭକ୍ତ, ରାଧାତ ତାଙ୍କ ପ୍ରାଣ ପ୍ରତିମା । ଆଉ ତାର ଜାଣିବା କଣ ବାକି ରହିଲା ।

ନିତ୍ୟାଭାଇନାର ଯାବିତା ପ୍ରକାରେ ଗୌରୀ ଓ ଆମ୍ମା ହୋମ ପାଇଁ ଓ ପ୍ରତିମା ପ୍ରତିଷ୍ଠା ପାଇଁ ସଜ ତକ ଯୋଗାଡ଼ କରି ଦେଲେ । ପ୍ରତିଷ୍ଠାକାମରେ ଘିଅଟା ହେଲା ଅସଲ । ଆମ୍ମା ଡ଼ି.ନାରସେୟାଙ୍କ ଘରୁ କହିପୋଛି ଗୁଆଘିଅ ସେରେ ଖଣ୍ଡେ ଯୋଗାଡ଼ କରିଦେଲା । ନିତ୍ୟାନନ୍ଦ କହିଥିଲେ ସୁନା ବଦଳରେ ପାର୍କାହେଲେବି ଚଳିବ । ବ୍ରାହ୍ମଣ ବରଣ ପାଇଁ ଧୋତି ଯୋଡ଼ । ପୂର୍ଣ୍ଣକୁମ୍ଭପାଇଁ ଧୋତି ବଦଳରେ ଅଜା କହି ଦେଇଥିଲେ ଝଜି ହେଲେବି ଚଳିବ । ବ୍ରାହ୍ମଣ ଯାବିତାରେ ଲେଖିବେ ବଡ଼ ବଡ଼ କଥା । କିନ୍ତୁ କହିବେ ନ ହେଲା ନାଇଁ ଚଳେଇଦେବା । 'ବସ୍ତ୍ରାଭାବେ ସୂତ୍ରମ୍ ଦଦ୍ୟାତ୍' ହୋମ ପାଇଁ ଖଇର କାଠ, ସମିଧ ନବଧାନ, ପଞ୍ଚଶସ୍ୟ, ଗଙ୍ଗୋଦକ, କୁମ୍ଭଜୁଆ ପିଲିସଜ, ପଇଡ଼, ନଡ଼ିଆ, ଗୋଟାଗୁଆ । ସଂକଳ୍ପ ପାଇଁ ପଇତା ତିନି ସଂଘାଡ଼ି, ଠାକୁରଙ୍କ ମିଶେଇ ସବୁ ଚିଜ ଯୋଗାଡ଼ ସରିଲା । ଭୋଗପାଇଁ ଉଖୁଡ଼ା, ନବାତ, କଦଳୀ ମଧ ଅଣା ସରିଥିଲା ।

ଅଜା ନିତ୍ୟାକୁ କହିଲେ ବାପ, ପ୍ରତିଷ୍ଠା ପାଇଁ ଆମର ଏଆଡୁ ଯାହା ଯୋଗାଡ଼ କରିବା କଥା ବେଲସୁ କରିନେ । ଦେଖ ଆମ୍ମା ପାଇଁ ଭଲମଠାଟେ ଗୌରୀ ପାଇଁ ପୋନ୍ଦୁରୁର ବାନ୍ଧ ପାଟ, ଖଣ୍ଡେ ଓଢ଼ଣି ସହ କିଣିପକା, ନେ' ପଇସାନେ । ଅଜା କୋ ହାତରୁ ଦେଉଛନ୍ତି ଯେ ମନକଷ୍ଟ ଲାଗିବ । ସବୁତ କଳାକୁଞ୍ଜ ରାବାଡ଼ି ପଇସା । ବାପ, ତୁ ସୁନା ରକମ ତ କରିପାରିବୁନି, ଥାଉ ।

କଳାକୁଞ୍ଜ ଗତ ସଂଧ୍ୟାରେ ଶେଷ ହେଇଯାଇଛି । ଲୋକ ବାକ ଲଗେଇ ପିଲାମାନେ ଫିଟା ଫିଟି କରୁଛନ୍ତି । ଅଜା କହିଛନ୍ତି ସୀମାଞ୍ଚଳ ଶେଷ ପାଦିଆକୁ ଗୌରୀ ଘରକୁ ଗଲେ ଚଳିବ । ପ୍ରଥମରୁ ପ୍ରତିମାଟା ଗୌରୀ ଘରେ ଥୋଇଦେଇ ପଳେଇଆସିବ । ସୀମାଞ୍ଚଳ ଧୁମ୍‌ଧାମ୍ କଳାକୁଞ୍ଜ ଫିଟେଇବା କାମ ବଢ଼େଇନେଉଛି । ଆଗେ ପିତୁଳା ଯାକର ପାଟ ପତନି ଅଳଂକାର କିରଟୀ; ଧନୁ ଗଦା ଆଉ ଆୟୁଧ ଖୋଲା ଖୋଲିହେଇ ବଡ଼ ବଡ଼ ଟ୍ରଙ୍କରେପଶିବ, ତାପରେ ପିତୁଳା ପିତୁଳୀମାନଙ୍କ କଥା । ପିତୁଳୀ ମାଇକିନା ଓ ପିତୁଳା ଅଣ୍ଡିରା । ତେଣୁ ପିତୁଳୀ ଗୋଟିଏ ପଟେ, ଆଉ ପିତୁଳା ଅନ୍ୟ ଥାକରେ ଖୋଲା ହେଇ ରହିବ । ପିତୁଳାମାନଙ୍କର ନିଶ, ଦାଢ଼ି, ଜଟା, ପରଚୁଲା ଓ ପିତୁଳୀଙ୍କ ବେଣୀ ଓ ମୁଣ୍ଡବାଳ ଉତୁରା ହେଇଯିବ । ସମସ୍ତେ ଧୁମ୍ ଲଙ୍ଗଳା ହେଇପଡ଼ିବେ । ରାଧା, ଲଳିତା ଦ୍ରୌପଦୀ ସୀତା ଏମାନଙ୍କ ଇଜ୍ଜତକୁ ବଂଚେଇବା ପାଇଁ ଏମାନଙ୍କ ନିତମ୍ବ ଉପରେ ରୋକଡ଼ କନା ଖଣ୍ଡେ ଖଣ୍ଡେ ବେଢ଼ିଆ ହେଇଥିବ । ଅଣ୍ଟା ଉପରକୁ ଉଦଣ୍ଡ ମେଲା । ସଦ୍ୟ ଚିତ୍ରିତ କରାଯାଇଥିବା ମୂର୍ତ୍ତି ଗୁଡ଼ିକର ସ୍ତନ, ଜଘନ ବେଶ ଲୋଭନୀୟ ଦେଖାଯାଉଥିବ, ଗାଁର ବଗୁଲିଆ ଟୋକାମାନେ ପିମ୍ପୁଡ଼ି ଭଳି କଳାକୁଞ୍ଜ ଚାରିପଟେ ଘେରି ଯାଉଥିବେ । ଲଙ୍ଗଳା ମୂର୍ତ୍ତିମାନଙ୍କୁ ଦେଖି କୁରୁଳି ଉଠିବେ । ତାଙ୍କୁ ଲଙ୍କାଗଡ଼ ଜିଣିଲା ଭଳିଆ ଲାଗିବ । ଅଜା ସୀମାଞ୍ଚଳକୁ ତାଗିଦା ଦେଇଥିବେ, ହୁସିଆର, ଏ ଅଦିନିଆ ପିଲାଯାକକୁ ହୁସିଆର ଥିବୁ । କିଛି ପିଲା ଡ଼ାକଜରି, ସ୍ପ୍ରିଙ୍ଗ୍‌ଜରି, ସୁନେଲି, ରୁପେଲି ଜରିର ଟୁକୁଡ଼ା ଯାକ ଗୋଟେଇବାରେ ବ୍ୟସ୍ତଥିବେ ଯିମିତି ବଇଠାରୁ ଘର ଶାଳ ପାଉଁଶରୁ ସୁନାଲୋଭରେ ଧୂଳିଝାଡ଼ି ପିଲେ ନେଇଯାଆନ୍ତି ।

ବଡ଼ିଭୋରରୁ ଉଠି ହଳଦି ଲଗେଇ ଆମ୍ମା ଓ ଗୌରୀ ଗାଧେଇ ପଡ଼ିଛନ୍ତି । ଦି'ଦିନ ଆଗରୁ ଘର ଲିପାପୋଛା ହେଇଯାଇଛି । ତନ୍ତ ପାଖ କାନ୍ଥରେ ଆମ୍ମା ଚଉଖୁଣ୍ଟିଆ ଝୋଟିଟିଏ ଦେଇଛି । ଅଷ୍ଟଦଳ ପଦ୍ମ ମଝିରେ ନାନା ଅଳଂକାର ଖୁନ୍ଦି ଦେଇଛି । ଲକ୍ଷ୍ମୀ ଠାକୁରାଣୀଙ୍କ ପାଇଁ ଏମିତିକା ଝୋଟି ଦିଆଯାଏ । ଦାଣ୍ଡଦୁଆରୁ ଆରମ୍ଭକରି ବାଡ଼ିମୁଣ୍ଡ ପର୍ଯ୍ୟନ୍ତ ମୁରୁଜ ଚିତା ଗୌରୀ ପକେଇଛି । ପୂର୍ଣ୍ଣକୁମ୍ଭ, ଯୋଡ଼ିମାଛ, ଦୀପ, କଦଳୀଗଛ, ଧେନୁପଲ , ନାଗବନ୍ଧ ଆଉ ଏମିତି ଯେତେ ଶୁଭ ଚିହ୍ନ ଅଛି ସବୁ ଗୌରୀ ପଞ୍ଚବର୍ଣ୍ଣି ମୁରୁଜ ଭିତରେ ବନକ କରି ଦେଇଛି । ଠାକୁର ଘରେ ପ୍ରତିଷ୍ଠା ବିଧାନ ହେବ । ଆମ୍ବ ଅଁଳା ଡ଼ାଳର ତୋରଣ ସବୁ ଦୁଆରବନ୍ଧରେ ଝୁଲୁଛି । ଏରୁଣ୍ଡିବନ୍ଧ ଦି କଡ଼େ ତଳକୁ ହଳଦି ଲଗେଇ କୁଙ୍କୁମର ବେଙ୍ଗେଇ ଚିତା ଦିଆ ସରିଛି । ମକମଲି ଫୁଲର ଝରୋମଧ ପ୍ରତି

ଦୁଆର ବନ୍ଧ ଆଗରେ ଦୋଳୁଛି । ଘର ସାରା ଉସବ ଆୟୋଜନ ବେଳର ମହମହ ଗନ୍ଧ । ପ୍ରତିମା ପ୍ରତିଷ୍ଠା ନୁହେଁ ଲାଗୁଛି ଗୋଟିଏ ବାହାଘରର ଆୟୋଜନ । ଆମ୍ମା ଓ ଗୌରୀର ଗୋଡ଼ ଆଉ ତଳେ ଲାଗୁନି । ସେମାନେ ଖାଲି ଘର ଭିତରେ ପହଁରି ଯାଉଛନ୍ତି । ଗୋବର, ରଙ୍ଗମାଟି, ଅଁଳା, ମକମଲି, ଗୋଗୁଳ, ଚନ୍ଦନ, ହଳଦୀ, ଚୁଆ, କିଆ ମାଳତୀ ଫୁଲର ବାସ୍ନାରେ ଘରଟି ମନ୍ଦିର ଭଳିଲାଗୁଛି । ଗୌରୀ ଘରର ସବୁ ଯୋଗାଡ଼ ଯନ୍ତ କରିସାରି ଅଜା ଓ ନିତ୍ୟାଭାଇନାଙ୍କୁ ଡ଼ାକିବା ପାଇଁ କୁଞ୍ଜକୁ ଆସିଲା ବେଳକୁ ଚାଉଁ ଚାଉଁଆ ଖରା ପଡ଼ିଗଲାଣି । ବାଛୁରୀମାନେ ତାଙ୍କ ମାମାନଙ୍କ ଠାରୁ କ୍ଷୀର ଖାଇସାରି ଖୁଣ୍ଟିରେ ବନ୍ଧା ହେଇ ସାରିଲେଣି । ପଛସାହିରୁ ଗୋଲା ମାନେ ଛେଳି ଗୋଠ ନଦୀ ଆଡ଼େ ଅଡ଼େଇ ନେଉଛନ୍ତି । ପନ୍ଦରା ଘର ମାଉସୀ ଲହ୍ନି, ପୋଟଳ, ବାଇଗଣ ଦେବାପାଇଁ ଗୌରୀ ଘର ଦୁଆରେ ଟୋକେଇ ମୁଣ୍ଡରୁ କାଢ଼ି ଥୋଇଛି । ରାଧାମା ଗଉଡୁଣୀ କ୍ଷୀର ଦେବ ବୋଲି ଆମ୍ମାକୁ ହୁରି ଛାଡ଼ି ଡ଼ାକୁଛି ।

ଗୌରୀ ଘର ଓ ଗାଁ ଦାଣ୍ଡର ସବୁ ଜଂଜାଳକୁ ଅତିକ୍ରମ କରି କଳାକୁଞ୍ଜରେ ପହଞ୍ଚିଲା । ଗୌରୀକୁ ଦେଖିଲା ପରେ ଅଜା ପାଟ ପିନ୍ଧି କାନ୍ଧରେ ଗାମୁଛାଟେ ଧରି ଠିଆହେଲେ । ନିତ୍ୟା ର ପିନ୍ଧାପିନ୍ଧିରେ ସେମିତିକା ସ୍ୱତନ୍ତ୍ରତା ନାହିଁ ଆଣ୍ଠୁଢ଼େଉଁ ନଢ଼େଉଁଣୁ ଧୋତିଟେ । ଖାଲି ଆଜି ଆଗପଟ ମୁଣାଥିବା କାବାଟେ ପିନ୍ଧିଲା । ସୀମାଞ୍ଚଳ ପେଣ୍ଟ ସାର୍ଟ ପିନ୍ଧିଥିଲା । ଅଜା ଏଡ଼େ ପାଟିଟା କଲାରୁ ପେଣ୍ଟଟା ବଦଳେଇ ଦେଇ ଧୋତିଟେ ପିନ୍ଧିଲା । କିରେ ତୁ ପ୍ରତିମା ନେବୁ ପରାରେ , ଶଳା ସାଇବ ଡ୍ରେସ୍ ପକେଇଲେ ଚଳିବ କିମିତି ? ଅଜା କହିଲେ, ତା ମାମୁଁ ପ୍ରକାଶଟା ଭଲ ପିଲାଟେ , ପରଂପରାରେ ଥାଏ । ପୂଜା ପାଠକୁ, ଭଲ ମନ୍ଦରେ ଧୋତିଟେ ନିଶ୍ଚୟ ପିନ୍ଧିବ । ଗାମୁଛାଟେ କାନ୍ଧରେ ପକେଇବ । ଆଜି କାଲିର ପିଲାଙ୍କ ଦସ୍ତୁରୁ ନିଆରା । ସୀମାଞ୍ଚଳ ହଳଦିଆ କନା ଗୁଡ଼େଇ କୃଷ୍ଣ ପ୍ରତିମାକୁ ଯତ୍ନରେ କାନ୍ଧେଇ ଧରିଲା । ଚନ୍ଦନ କାଠର ପ୍ରତିମା, ବାସନା ଭଣ ଭଣ । ଗୌରୀର ମନ ଉଚ୍ଚାଟିତ ହେଇଗଲା । ଘରେ ପହଞ୍ଚିଲା ବେଳକୁ ଆମ୍ମା ଦାଣ୍ଡ ଦୁଆରେ ଠିଆହେଇଛନ୍ତି । ଅଜାଙ୍କୁ ସାଷ୍ଟାଙ୍ଗ ମୁଣ୍ଡିଆଟିଏ ମାଇଲେ, ନିତ୍ୟାଭାଇନାକୁ ବି । ବ୍ରାହ୍ମଣ ଲୋକ ସେମାନେ । କେଡ଼େ ଦୟା ନକରିଛନ୍ତି । ଏ ଗରିବ ଘରେ ପାଦପକେଇ ଖାଲି ତାଙ୍କୁ ନୁହେଁ ତାଙ୍କ ପୂର୍ବପୁରୁଷଙ୍କୁ ମଧ ପବିତ୍ର କରିଛନ୍ତି । ଆମ୍ମା ଗୌରୀର ବାପାଙ୍କୁ ମନେ ପକେଇଲେ । ସେ ଥିଲେ କେଡ଼େ ଖୁସିଟା ନ ହେଇଥାନ୍ତେ । ଆଜି ତାଙ୍କ ଘରକୁ ରାଧାବିନୋଦ ଠାକୁର ବିଜେ ହେଲେ ।

ଘର ପବିତ୍ର ହେଇଗଲା । ଭିଟାମାଟି ପୁଣ୍ୟ ହେଇଗଲା ।

ନିତ୍ୟାନନ୍ଦ ପୂଜା ଘରେ ମୁରୁଜରେ କୋଠି କାଟିଲା । ଗୌରୀ ଲୋଡ଼ା ହେଉଥିବା ଜିନିଷ ପତ୍ର ହାତକୁ ବଢ଼ାବଢ଼ି କରୁଥାଏ । କୁମ୍ଭ ପାଇଁ ପିତଳ ଢ଼ାଳ, ଚେମ୍ଡୁ, ଆମ୍ବ ଡ଼ାଳ, ନଡ଼ିଆ ଆଣି ସେ ଥୋଇଲା । ଅଜା ଶୁଭ କଳସ ଥାପନା କଲେ । ଭୂମିଶୁଦ୍ଧି ଆସନ ଶୁଦ୍ଧି ଭୂତଶୁଦ୍ଧି ଓ ପୁରଶ୍ଚରଣ ଇତ୍ୟାଦି କରି ବୈଦିକ ମନ୍ତ୍ର ପାଠ କରି ପ୍ରତିଷ୍ଠା କାର୍ଯ୍ୟ ଆରମ୍ଭ କଲେ । ପୁରୁଷ ଲୋକ ନଥିବାରୁ ନିତ୍ୟାନନ୍ଦ କର୍ତ୍ତା ହେଲା । ଚନ୍ଦନ କାଠର ପ୍ରତିମାକୁ ଗଙ୍ଗାଜଳ, ପାଦୋଦକ ଓ ପଞ୍ଚାମୃତରେ ସ୍ନାନ କରି ମଣ୍ଡଳର ପୂର୍ବପାର୍ଶ୍ୱରେ ସ୍ଥାପନା କରାଗଲା । ସେ କି ଚମତ୍କାର କମନୀୟ ମୂର୍ତ୍ତି । ପାରଳାଖେମଣ୍ଡି ବିନ୍ଧାଣିହିଁ ସେମିତିକା, ସମାନେ ନଖୁଣିଲା ଭଳିଆ ଗଢ଼ିଦେବେ । ଆମ୍ମା ଓ ଗୌରୀ ପ୍ରତିମାର ଲାବଣ୍ୟ ଆଭା ଦେଖି ମୁଗ୍ଧ ହେଇଗଲେ । ପଦ୍ମବଇଠା ଉପରେ ତ୍ରିଭଙ୍ଗି ଠାଣିରେ ରାଧାମୋହନ ରୁପାର ବଂଶୀ ଧରି ଠିଆ ହେଇଛନ୍ତି । ଗୌରୀ ଆଣିଥିବା ପୀତାମ୍ବରୀ ପାଟ ନିତ୍ୟାନନ୍ଦ କୃଷ୍ଣଙ୍କୁ କାଛି କରି ପିନ୍ଧେଇଦେଲା । ଉପରାଣକୁ କାନ୍ଧରେ ପକେଇ ଛନ୍ଦ କରି ଦିଆଡ଼କୁ ଛାଟେଣୀ କରିଦେଲା । ଗୌରୀ କୀରଟିରେ ମୟୂର ପିଛ ଖୋସି ଦେଲା । ଗଳାରେ ମଲ୍ଲି ଫୁଲର ବରଣ ମାଳା ଲମ୍ବେଇ ଦେଲା । ନିତ୍ୟାନନ୍ଦ ସାଙ୍ଗରେ ଆଣିଥିବା କଳା ତୁଳସୀ ଢଟର ମାଳା ପ୍ରତିମା ଗଳାରେ ପିନ୍ଧେଇ ଦେଲା । କୃଷ୍ଣ ଅପରୂପ ଆଭୂଷଣରେ ବିମଣ୍ଡିତ ହୋଇ ଦିବ୍ୟଶୋଭା ଧାରଣ କଲେ । ଗୌରୀ ଦେଖିଲା ଏ ତ ସାକ୍ଷାତ ମଠର ରାଧାବିନୋଦମୂର୍ତ୍ତି । ଅବିକଳ ତାଙ୍କ ଭଳି ଗଢ଼ଣ, ଅବିକଳ ସେ ବାଙ୍କ ଚାହାଣି , ସାକ୍ଷାତ ବୃନ୍ଦାବନ ବିହାରୀ, ଘନଶ୍ୟାମଙ୍କ ଭଳି ଦୃଶ୍ୟ ହେଉଛନ୍ତି । ଧନ୍ୟ ପ୍ରଭୁ ତମ ମହିମା । ମୁଁ ତମ ଉପରେ ଅଭିମାନ କରି ତମ ପାଖକୁ ଗଲିନି ବୋଲି ତମେ ମୋ ଅନ୍ତର କଥା ହୃଦୟଙ୍ଗମ କଲ । ତମେ ଭକ୍ତର ଦୁଆରକୁ ଚାଲି ଆସିଲ । ମୁଁ ହାରିଗଲି ।

ଅଜା ହୋମ ଆରମ୍ଭ କଲେ । ମନ୍ତ୍ର ପାଠ କରି ଶ୍ରୁବରେ ଘିଅ ଢ଼ାଳିଲେ । ଗୌରୀ ହାତରେ ନେଇ ଅଗ୍ନିରେ ନଡ଼ିଆ ଥାପିଲେ । ଅଗ୍ନି ହୁତାଶନ ହେଇ ଜଳିଲା । ଘୃତର ଗନ୍ଧରେ ପୂଜା ଘର ତ ମହକିଲା, ତା ସହିତି ଗୌରୀର ରହିବା ଘର ଓ ସାଇପଡ଼ିଶାକୁ ମିଶେଇ ପାଞ୍ଚ ଦଶ ଘର ଯାଏଁ ସୁବାସ ଚହଟି ଗଲା । ହୋମ କର୍ମ ସରିଲାବେଳକୁ ମଧ୍ୟାହ୍ନ ଗଡ଼ି ଦୁଇ ଅଢ଼େଇ ହେଇସାରିଥିଲା । ଅଜା ନିତ୍ୟାକୁ

ଆଦେଶିଲେ ତୁ ଆଣିଥିବା ପାଟ ଲୁଗା ଘରେ ଦେଇଦେ । ସେମାନେତ ଆମକୁ ଛଥା ଛଞ୍ଚା ମାନ୍ୟ ଦେଇ ବନ୍ଦିଲେ । ଏବେ ଆମ ପାଳି । ବନ୍ଧୁ ବାନ୍ଧିବା ରେ । ସେମାନେ ଖାଲି ଯଜମାନ ହେବେନିରେ । ଗୌରୀ ସାଧାରଣ ଝିଅ ନୁହେଁ । ଏକଥା ହେଜ । ସେ ରାଧାଅଂଶରେ ଜନ୍ମ ନେଇଛି । ନହେଲେ ତା ଘରକୁ ରାଧାବିନୋଦ ଅଯାଚିତ ଭାବରେ ଏମିତି ଆସନ୍ତେନି ।

ନିତ୍ୟାନନ୍ଦ ସାଙ୍ଗରେ ଆଣିଥିବା ମଠା ଓ ପୋହ୍ଳୁରର ବାନ୍ଧ ପାଟ ଗୌରୀ ହାତକୁ ବଢ଼େଇଦେଲା । ଅଜା କହିଲେ ମା ଆଉ ବିଳମ୍ବ କରନା । ଦେ ପିନ୍ଧିପକା । ଆମ୍ମା ଓ ଗୌରୀ ଉତ୍‌ଫୁଲ୍ଲ ହେଇ ଉଠିଲେ । ସ୍ନେହ ଓ ଶ୍ରଦ୍ଧାର ନିଦର୍ଶନ ଏତେ ଆକର୍ଷଣୀୟ ଓ ଆତ୍ମୀୟ ହେଇପାରେ ସେମାନେ ସେଦିନ ମର୍ମେ ମର୍ମେ ଅନୁଭବ କଲେ । ଆମ୍ମା ଓ ଗୌରୀ ନୂଆ ଲୁଗା ପିନ୍ଧିସାରି ରାଧାବିନୋଦ ମୂର୍ତ୍ତିଙ୍କ ପାଖରେ ମୁଣ୍ଡିଆ ମାରିଲେ । ତା ପରେ ଅଜାଙ୍କ ଗୋଡ଼ ଧରି ଦିହେଁ ପ୍ରଣାମ କଲେ । ଆମ୍ମା କହିଲା ଅଜା ତମେ ମୋ ବୟସ ପାଖାପାଖି ହେଲେ ମଧ ମୁଁ ତମକୁ ଆଜିଠୁ ବାପା ଡ଼ାକିବି । ମୋର ବୋଲି ଏ ସଂସାରରେ ଆତ୍ମୀୟ କିଏ ନାହିଁ । ତମେ ମତେ ଗ୍ରହଣ କର ଓ ଗୌରୀକୁ କନ୍ୟାର ସ୍ନେହ ଦିଅ ଓ ତା ହାତକୁ ଦିହାତ କରିଦିଅ ।

ଗୌରୀ ଆମ୍ମାର କଥାରେ ସଂଭ୍ରମି ଗଲା । ପ୍ରତ୍ୟେକ ମା ଚାହେଁ ତାର କନ୍ୟା ମଧ ମା ହେଉ ଓ ମା ହେବାର ପରଂପରା ସମଗ୍ର ସଂସାରକୁ ବ୍ୟାପିଯାଉ । ମା ହେବାରେ ତ ନାରୀ ଜୀବନର ସାର୍ଥକତା । ଲାଗିଲା ଆମ୍ମା ଗୌରୀକୁ ଅଜାଙ୍କ ପାଖରେ ଏଭଳିଆ ସମର୍ପି ଦେଲା । କହିଲା ଦେଖିଲ ତ ରାଧାବିନୋଦଙ୍କୁ ସମର୍ପି ଥିଲି ଯେ ମହନ୍ତ କି ଅନୀତି ନକଲା । ସମର୍ପଣ ତ ବିଧାନ, ଠାକୁର ବଞ୍ଚେଇ ରଖିବେ ବୋଲି । ମୋ ବାପା ବି ମୋତେ ସମର୍ପି ଦେଇଥିଲେ ଆମ ଗାଁ ଠାକୁର ବାଙ୍କବିହାରୀଙ୍କ ପାଖରେ । ମୁଁ ପୁଣି ଗୌରୀ ବାପାର ହାତ ଧରିଲି । ଘର ସଂସାର କଲି, ମା ହେଲି । ଗୌରୀ ବାହା ହେଇଗଲା ପରେ ମୁଁ ଏକୁଟିଆ ରାଧାବିନୋଦଙ୍କ ପାଖରେ ଶରଣ ପଶି ଚଳିଯିବି । ଭୂମିରୁ ଯେତେକ ଧାନମୁଗ ଆସୁଛି ଗୋଟିଏ ପେଟ ଅଚଳ ରହିବନି । ହାତ ଗୋଡ଼ ଚଳୁଥିବା ଯାଏଁ ପାଟସୂତା ରଙ୍ଗ କାମ କରିବି । ପ୍ରଭୁଙ୍କ କୃପାରୁ ମୋର ଦିନ ତକ କଟିଯିବ ।

ଆମ୍ମା ଭାବବିହ୍ୱଳ ହୋଇ ତା ଅନ୍ତରର କଥା ସବୁ କହିଗଲା । ଗୌରୀ ମୁହଁ ତଳକୁ କରି ଚୁପ୍ ହେଇ ଶୁଣୁଥାଏ । ଭାବୁଥାଏ ଅଜା ଦରଦ ବୁଝିବା ଲୋକ । ଆମ୍ମା କଥା ତ ହେଇସାରିବେଣି । ଆଉ ଅଧିକା ଆମ୍ମା କେତେ ଫେଣେଇଥାନ୍ତା । ଅଜା ଚାହିଁଲେ ସବୁ ଠିକ୍ ହେଇଯିବ । ଆମେ ପାଟଶାଲିଆ ହେଲେ ମଧ ବୈଷ୍ଣବ । ବାବା ତ କହୁଥିଲେ ଆମ ପୂର୍ବ ପୁରୁଷ ମହାରାଷ୍ଟ୍ରର ବ୍ରାହ୍ମଣ ଥିଲେ । ଗଜପତି ରାଜା ଠାକୁରଙ୍କ ପାଟ ବୁଣିବାପାଇଁ ସେମାନଙ୍କୁ ଡ଼ାକିଆଣିଲେ । ସେମାନେ ଏମିତି ରହୁରହୁ ଶେଷରେ ଏଇଠି ହିଁ ରହିଗଲେ ଓ ପାଟଶାଲିଆ ହେଇଗଲେ । ତଥାପି ଲାଗୁଚି ଆମ ଦେହରେ ବ୍ରାହ୍ମଣ ରକ୍ତ ବହୁଛି । ପୁରୁଷ ପୁରୁଷ ଧରି ଆମେ କୃଷ୍ଣଙ୍କ ଭକ୍ତ । ଘରେ ମାଛ ମାଂସତ ଚଳେନି । ପିଆଜ ରସୁଣ ବି ପଶେନି । ବାପା ଚାଲିଗଲା ପରଠାରୁ ଆମ ଘର ଯିମିତି ଗୋଟାଏ ମଠ । ଯିଏ ବାକି ଥିଲେ ସିଏ ତ ଶେଷରେ ଉଭା ହେଇଗଲେ , ଘର ମନ୍ଦିର ହେଇଗଲା ।

ଗୌରୀ ପେଟ ଭିତରର ସବୁ କଥା ସତେ ସର୍ବଜ୍ଞ ଭଳିଆ ଅଜା ଜାଣିସାରିଥିଲେ । ନିତ୍ୟାଟା ସତେଇଶି ଅଠେଇଶି ବର୍ଷର ଭେଣ୍ଡାଟେ ହେଲାଣି । ତାର ଆଉ କିଏ ଅଛି ଯେ ତା କଥା ବୁଝିବ । ଅଜା ସ୍ଥିର କରିନେଲେ ଏହା ହେଉଛି ଅସଲ ବେଳ । କହିବେ କହିବେ ହେଇ କହିପକେଇଲେ । ଆମ୍ମା ! ତମକୁ ମୋର ଗୋଟିଏ କଥା କହିବାର ଅଛି । ରାଧାବିନୋଦ ଗଲାକାଲି ରାତିରେ ମୋତେ ସପନେଇଛନ୍ତି । ଠାକୁର ଚାହାନ୍ତି ସେ ନିଜେ ତାଙ୍କର ଗୌରୀକୁ ନିଜର ଜଣେ ଅସଲ ଭକ୍ତ ହାତରେ ସମର୍ପି ଦେବେ । ତାଙ୍କ ଭକ୍ତ ବି ଏଇଠି , ସମସ୍ତେ ଏଇଠି । ତମେ କଥା ଦେଲେ କାମ ବଢ଼େଇ ଦେବା । ନିତ୍ୟା ଅଜାଙ୍କ କଥାର ଗୁରୁତ୍ୱ ହୃଦୟଙ୍ଗମ କରି କିମିତିକା ଅତସୀ ଫୁଲ ଭଳି ଶିହରି ଗଲା । ଯଦିଓ ସେ ବି ଏମିତିକା ଘଟୁ ବୋଲି ଭାବୁଥିଲା, ଏଭଳି ଅପ୍ରତ୍ୟାଶିତ ଭାବେ, ପୁଣି ଗୌରୀ ସମକ୍ଷରେ ରୋକ ଠୋକ ହେଇ ଘଟିଯିବା ସେ ଧାରଣା କରିନଥିଲା । ଗୌରୀ ମଧ ଲାଜେଇ ଯାଇ ଆମ୍ମା ପଛକୁ ମୁହଁ ବୁଲେଇ ଠିଆ ହେଲା । ଅଜା ପୁଣି ଘୋଷଣା କରିଦେଲେ ପ୍ରସାଦ ସେବନ କଲା ପରେ ଆଜି ରାତିରେ ହିଁ କନ୍ୟା ସମର୍ପଣ କାମଟି ବଢ଼ିବ ।

ଆମ୍ମାକୁ ଅଜାଙ୍କ ପ୍ରସ୍ତାବଟି ବଡ଼ ପସନ୍ଦ ଲାଗିଲା । ନିତ୍ୟାନନ୍ଦକୁ ଦେଖିଲା ଦିନୁ ଆମ୍ମା ବି ମନାସୁଥିଲା, ପ୍ରଭୁ ! ଗୌରୀକୁ ଗୋଟିଏ ନିର୍ମଳ ଚରିତ୍ରର

ପିଲା ହାତରେ ଛନ୍ଦିଦିଅ । ଧନ ସମ୍ପତ୍ତି ମୋର ଲୋଡ଼ା ନାହିଁ । ପିଲାଟେ ଗୁଣର ହେଲେ ଲକ୍ଷେ ଟଙ୍କା । ନିତ୍ୟାନନ୍ଦ ତ ବ୍ରାହ୍ମଣ ପିଲା, କୃଷ୍ଣଭକ୍ତ, ନିଷ୍କଳଙ୍କ ହୃଦୟ । ଆମ୍ମା ଭାବିଲେ ବାହାଘରଟା ହେଇଯାଉ ।

ବାହାଘର ନିଦାନ ହେଇଗଲା ପରେ ଆମ୍ମାଙ୍କର ଆଉ ଗୋଡ଼ ତଳେ ଲାଗିଲାନି , ହାତରେ ଆଉ ମାତ୍ର ଦି ଚାରି ଘଣ୍ଟା ସମୟ, କଣ କରିବେ , ଏତେ ବଡ଼ କାମ କିମିତି ଏକଲା ଉଠେଇବେ ଚିନ୍ତାରେ ପଡ଼ିଗଲେ । ସାଇପଡ଼ିଶାରୁ ପାଞ୍ଚ ଦଶ ଜଣ ସାଙ୍ଗସାଥି କୁଣିଆମଇତ୍ର ଡ଼କାହେଇ ଆସିଲେ । ଆମ୍ମା ସେମାନଙ୍କ ଆଗରେ ଗୌରୀର ବାହାଘର ପ୍ରସ୍ତାବଟା ବାଢ଼ିଲା । କଳାକୁଞ୍ଜରେ ସମସ୍ତେ ତ ନିତ୍ୟାନନ୍ଦକୁ ଦେଖିଥିଲେ । ବ୍ରାହ୍ମଣ ପିଲା, ସମସ୍ତଙ୍କର ପସନ୍ଦ ହେଲା । ଆମ୍ମାର ବ୍ୟସ୍ତତା ଦେଖି ସମସ୍ତେ କହିଲେ ତୁ ଅଣ୍ଟା ଭିଡ଼ି ବାହାର ଆମେ ହାତେ ହାତେ କରି କାମ ବଢ଼େଇ ନେବା । ଆମ୍ମା ତୁ କଣ ବାୟା ହେଲୁ, ବର ଯେତେବେଳେ ଆମ ଘରେ ହାଜର ଆଉ ବାହାଘର କଣ ଅଟକି ଯିବ । ଦେ' ଚାଉଳ ଆଣେ ବାଟିବା, ଦେ' ବିରି ଆଣେ ଚୂରିବା ସାତ ମଙ୍ଗୁଳା ପାଇଁ ହାଣ୍ଡି ଆଣେ ମଙ୍ଗୁଳିବା । ମଙ୍ଗଳାରୋପଣ ଥାଳି ଆଣେ ସଜାଡ଼ି ଦେବା । ଆସଲୋ ଆସ, ସମସ୍ତେ ଆସ ହୁଳହୁଳି ଦିଅ ।

ଗୌରୀ ନିତ୍ୟା ଭାଇନା ସାମନାକୁ ଆଉ ଆସିଲାନି । ଘର ଭିତରେ ସିଆଡ଼େ କୁଆଡ଼େ ଲୁଚି ରହିଲା । ଆମ୍ମା ଯେତେ ଡ଼କେଇ ପଠେଇଲେ ବି ଉଁ ଚୁଁ ହେଲାନି । ଗୌରୀର ପ୍ରାଣ କୁରୁଳି ଉଠିଲା । ପ୍ରେମ ଭାବନାର ପ୍ରାବଲ୍ୟରେ ଗୌରୀ ସତେ ଯିମିତି ସଦ୍ୟ ପ୍ରସ୍ଫୁଟିତ ଫୁଲଟି ପରି ହାଲୁକା ହେଇପଡ଼ିଲା । ଗୌରୀ ନିତ୍ୟା ଭାଇନା ସହିତ କଳାକୁଞ୍ଜରେ ଓ ନଦୀ ପଠାରେ ବିତେଇଥିବା ଏକାନ୍ତ ମୁହୂର୍ତ୍ତ ଗୁଡ଼ିକୁ ମନେ ପକେଇ ଶଙ୍କିଗଲା । ପାଞ୍ଛୁ ଥିବା ବସ୍ତୁ ପାଇଗଲେ ମଣିଷ ଯିମିତି ଆନନ୍ଦର ଆତିଶଯ୍ୟରେ ସ୍ତବ୍ଧ ହେଇପଡ଼େ , ପାଇଯିବାର ସାର୍ଥକତା ଯିମିତି ତାକୁ କ୍ଷଣିକ ପାଇଁ ବାଷ୍ପରୁଦ୍ଧ କରିଦିଏ, ଯିମିତି ଆନନ୍ଦାଶ୍ରୁ ଆପଣା ଛାଏଁ ଆଖିରୁ ଗଡ଼ିପଡ଼େ ସିମିତି ସିମିତି ଗୌରୀ ଅନୁଭବ କଲା । ରାଧାବିନୋଦଙ୍କ ଚରଣରେ ସହସ୍ରେ ମୁଣ୍ଡଆ ମାରିଲା । ଧନ୍ୟ ପ୍ରଭୁ! ଧନ୍ୟ ମହିମା ତୁମର । ଏମିତି ମୋତେ ନିତ୍ୟାନନ୍ଦଙ୍କ ସାଙ୍ଗରେ ଛନ୍ଦି ଦେଲ ବୋଲି ନିଜ ହୃଦୟରୁ ଆଉ ଅନ୍ତର କରିଦେବନି । ମୁଁ ରାଧାଙ୍କ ଭଳି ସଦାସର୍ବଦା ତୁମର ପ୍ରାଣର ଦାସୀ । ବାଟ କଢ଼େଇଛ, ବଞ୍ଚିବାର ଶକ୍ତି ଓ ସାମର୍ଥ୍ୟ ଦିଅ । ମୁଁ ଯେଉଁଠି

ରହିଥିଲେ ବି ତମରି ପାଖରେ ହିଁ ଥିବି ।

ପ୍ରସାଦ ସାରିବା ଶେଷ ହେଲା । ଖେଚୁଡ଼ି, ଦହିଅନ୍ନ, ସାମ୍ଭାରୁ, ଅମ୍ବିଳ ସାଙ୍ଗକୁ ନଡ଼ିଆପାଚେଡ଼ି ଖୁବ୍ ସ୍ୱାଦିଷ୍ଟ ଓ ପସନ୍ଦ ହେଲା । ଶେଷରେ ଖିରି ସାଙ୍ଗକୁ ବୁରଲୁ , ସଜିଆପାଲୁ, ଆରିସାରେ ପେଟ ଓ ମନ ପୂରିଉଠିଲା ।

ଅଜା ଶୀତଳାପଟିଟି ପକେଇ ଦେଇ ଦାଣ ଘରଟାରେ ଦଣ୍ଡେ ଗଡ଼ିପଡ଼ିଲେ । ନିତ୍ୟାକୁ ପାଖକୁ ଡ଼ାକିଆଣି ଗୃହସ୍ଥାଶ୍ରମର ଗୂଢ଼ତତ୍ତ୍ୱ ମାନ କହିଚାଲିଲେ । ଅଜା ତାଙ୍କ ଢ଼ୋଲ ପେଟଟି ଉପର ବାଗିଆ କରି ପିଠି କଡ଼େ ଗଡ଼ୁଥାନ୍ତି ଓ ଭୀଷ୍ମ ଶରଶଯ୍ୟାରେ ରହି ଯୁଧିଷ୍ଠିରଙ୍କୁ ନୀତିବାଣୀ ଶୁଣେଇଲାପରି ସେ ନିତ୍ୟାକୁ ପଦେ ପଦେ କହୁଥାନ୍ତି ଓ ଆଖି ପଡ଼ିଗଲେ ଘୁଙ୍ଗୁଡ଼ି ମାରୁଥାନ୍ତି । ସେପଟ ଘରୁ ଗୌରୀର ଖିଲଖିଲ ହସ ନିତ୍ୟାନନ୍ଦ କାନରେ ପଡ଼ୁଥାଏ । ନିତ୍ୟା ମଝି ମଝିରେ ଅଜାଙ୍କ ଗୋଡ଼କୁ ହଲେଇଦେଇ କହୁଥାଏ , ଏମିତି କଣ ପରଘରଟାରେ ଶୋଇପଡ଼ୁଛ ହେ? ତମର ତ କର୍ତ୍ତବ୍ୟ ସରିଗଲା, ନାତୁଣୀ ବୋହୂଟିଏ ଆଣିପକେଇଲ । ବାସ୍, ଏବେ ଘୁଙ୍ଗୁଡ଼ି ହିଁ ମାର । ମୁଁ ଭାଲୁ ଲାଙ୍ଗୁଡ଼ ଧରିବି । ବନ୍ଧନରୁ ଯେତେ ନିଜକୁ ହାଲୁକା କରିଦେଲେ ମଧ ଭାଲୁ ମୋତେ ଆଉ କଣ ଛାଡ଼ିବ ? ନିତ୍ୟାନନ୍ଦର ହତାଶିଆ କଥା ତକ ଶୁଣି ପକେଇ ଗୌରୀ ଫେଁ କରି ହସି ଦେଲା । ନିଜକୁ ସମ୍ଭାଳି ପାରିଲାନି ।

ଏମିତି ଏମିତି ହେଇ ସଂଧ୍ୟା ହେଲା । ତା ଆଗରୁ ଅଜା ଉଠିପଡ଼ି ପୋଖରୀ ପାଣି ସାରି ଫେରି ଆସିଥିଲେ । ସେ ରାଧାଗୋବିନ୍ଦଙ୍କୁ ଆଳତି କରିବା ସଜ ଯୋଗାଡ଼ିଲେ । ଗୌରୀ ଖଡ଼ିକା କାଠିରେ ତୁଳା ଗୁଡ଼େଇ ଘିଅରେ ବୁଡ଼େଇ ଆଳତି ଦାନି ସଜାଡ଼ିଲା । ଅଜା ମନ୍ତ୍ର ପଢ଼ି ହାତ ଘଣ୍ଟି ଠଣ୍ ଠଣ୍ କରି ସାୟଂକାଳ ଆଳତି କଲେ । ଘିଅ ଆଳତି ପରେ କର୍ପୂର ଆଳତି, ତା ପରେ ଶଙ୍ଖରେ ଜଳ ଆଳତି ସାରି ଅଜା ଆଳତି ବଇଠାକୁ ଆମ୍ମା ହାତକୁ ବଢ଼େଇଦେଲେ । ଆମ୍ମା କହିଲା, ଗୌରୀ ! ଅନ୍ୟମାନଙ୍କୁ ସେବା କରେଇଆଣେ । ଗୌରୀ ଆଳତିକୁ ନେଇ ନିତ୍ୟାନନ୍ଦ ଭାଇନାଙ୍କ ପାଖକୁ ଆସିଲା । ମୁହଁ ତଳକୁ ପୋତିଥାଏ । କିନ୍ତୁ ମୁହଁ ଉଠେଇ ଭାଇନାଙ୍କୁ ଦେଖିବାପାଇଁ ତାର ଖୁବ୍ ଇଚ୍ଛା ଥାଏ । ଆଳତିର ଆଲୁଅରେ ତା ମୁହଁ ଆହୁରି ଉଜ୍ଜ୍ୱଳ ଦେଖାଯାଉଥାଏ । ସେ ପିତଳର ଢ଼ଳେଇ ରାଧାମୂର୍ତ୍ତି ଭଳି ଦିଶୁଥାଏ । ନିତ୍ୟା ଭାଇନା

ଦୁଇ ହାତକୁ ଆଳତିର ପ୍ରଜ୍ୱଳିତ ଶିଖା ଉପରେ ବୁଲେଇ ଆଣି ଆଖି ବନ୍ଦ କରି ପତା ଉପରେ ସ୍ପର୍ଶ କଲେ । 'ପ୍ରଭୁ !' ବୋଲି ରାଧାବିନୋଦଙ୍କୁ ସ୍ମରଣା କଲେ । ଏଭିତରେ ଗୌରୀ ମୁହଁ ଉଠେଇ ନିତ୍ୟା ଭାଇନାଙ୍କୁ ଆଉଥରେ ମନ ପୂରାଇ ଦେଖିନେଲା । ଆଳତିର ନମ୍ର ଆଲୁଅ ତାଙ୍କ ମୁହଁରେ ପଡ଼ିଲାରୁ ଦାଢ଼ି ତମ୍ବାରଙ୍ଗ ଧରିଲା ଓ ସେ ମଧ୍ୟ ପିତଳର ଜଣେ ଭବ୍ୟ ଋଷି ଭଳି ଲାଗିଲେ ।

ଆଳତି ପରେ ବିବାହର ଆୟୋଜନରେ ସମସ୍ତେ ଲାଗିପଡ଼ିଲେ । ପାଖଗାଁ, ଏମିତିକି ମାମୁଁଘର ବନ୍ଧୁ ବାନ୍ଧବ, କୁଣିଆ ମଇତ୍ରଙ୍କୁ ଡ଼ାକିବା ପାଇଁ ଆଉ ତର କାହିଁ ? ଅଜା ନିତ୍ୟାନନ୍ଦ ଓ କାରିଗର ଦଳକ ତ ସକାଳୁ ସକାଳୁ ଲେଉଟିଯିବେ । ସୀମାଞ୍ଚଳ ଗୌରୀ ଘରେ ପ୍ରତିମା ଥୋଇ ଦେଇ କଳାକୁଞ୍ଜ ଫିଟେଇବାରେ ଲାଗିଛି । କହିଲା ସେ ଏକାଥରକେ ବିବାହ ଭୋଜି ବେଳକୁ ଆସିବ । ପିତୁଳି ଯାକକୁ ଖାଲି ଯାହା ସଜେଇ ରଖିବା କଥା , ହେପାଜତ କରିବା କଥା । ଚାଳଛପର, ଚାଞ୍ଚବାଉଁଶ, ଇଲେକ୍‌ଟ୍ରିକ୍ ଲାଇଟ୍ କଥା ନାରସେୟାଗାରୁ ବୁଝିବେ । ଶଗଡ଼ଯାକ ମଠ ପାଖକୁ ସଅଳ ସଅଳ ଆସିଯିବ । ଅଜା, ନିତ୍ୟା ଓ ଗୌରୀଙ୍କୁ ନେଇ ରାତି ରାତି ନାରସେୟାଙ୍କ କାର୍‌ରେ ପାରଳାଖେମଣ୍ଡି ଫେରିଯିବେ । ଗୌରୀକୁ ବାଟେଇ ଦେବା ପାଇଁ ନାରସେୟାଙ୍କ ସାନ ପୁଅ ନାରଣା ସେମାନଙ୍କ ସାଙ୍ଗରେ ଯିବ ଓ କାର୍‌ରେ ପୁଣି ଫେରିଆସିବ ।

ସାଇ ପଡ଼ିଶାରୁ ସଧବା ସ୍ତ୍ରୀମାନେ ଗୌରୀ ଘରେ ରୁଣ୍ଡ ହେଇଗଲେ । ଗୌରୀ ବିଭା ହେବ । ଅନନ୍ଦ ଉଲ୍ଲାସରେ ଘର ଫାଟି ପଡ଼ିଲା । ସେମାନେ ଗୌରୀକୁ ପିଲାଟେ ବେଳରୁ ଦେଖିଛନ୍ତି । ପିଲାଟା କେତେ କଷ୍ଟ ନ ସହିଚି । ବାପ ମଲା, ମା ବିଧବା ହେଲା, ଗୌରୀ ଶେଷରେ ଦେବଦାସୀ ହେଲା । ପିଲାଟା ଦେଖୁ ଦେଖୁ ତାଳଗଛ ଭଳିଆ ବଢ଼ିଗଲା । ଅଠର ପୂରି ଉଣେଇଶି ହେବ ବୋଧେ । ଭଲହେଲା ହାତକୁ ଦିହାତ ହେଇଗଲା । ବଡ଼ ସୁଧାର ପିଲା । ପାଠଚାଠରେ ମଧ୍ୟ ଭଲ, ଘରେ ଟିଉସନ୍ କରି ପିଲାଙ୍କୁ ପଢ଼ାଏ । ହଉ, ଏବେ ସମସ୍ତଙ୍କ ଦୁଃଖ ଯିବ । ଡ଼ି.ନାରସେୟା ଆଚ୍ଛା କରି ନାଲି ପାଟର ପାଗଟିଏ ଭିଡ଼ି ନିଜର ରୋଗଣା ଭାରିଯାକୁ ସାଙ୍ଗରେ ଧରି ଗୌରୀ ଘରେ ହାଜର ହେଇଗଲେ । ନାରସେୟାଙ୍କ ଭାରିଯା ଲକ୍ଷ୍ମୀ ସିନା ରୋଗିଣା ହେଲେ ସୁନା କେଜିଟେ ହେବ ପିନ୍ଧିଛି । ଶଙ୍ଖ ହୁଳହୁଳିରେ ଖଣ୍ଡମଣ୍ଡଳ ଉଚ୍ଛୁଳିଗଲା ।

ଅଜା କହିଲେ ଗୌରୀତ ରାଧାବିନୋଦ ଠାକୁରଙ୍କ ଅର୍ପିତା କନ୍ୟା ଏଣୁ ଆଉଥରେ ବୈଦିକ ରୀତିରେ ବାହାଘର ହେବା ଲୋଡ଼ା ନାହିଁ। ବୈଷ୍ଣବ ପରଂପରାରେ ବରଣ ମାଳା ପିନ୍ଧେଇ ଦେଇ ଆମେ ବୋହୂକୁ ନେଇଯିବୁ। ବର ପକ୍ଷରୁ ଅଜା ଓ କନ୍ୟା ପକ୍ଷରୁ ନାରସେୟା ମାନି ରହିଲେ। ରାଧାଗୋବିନ୍ଦ ଠାକୁରତ ଏଥକୁ ସାକ୍ଷୀ। ତାଙ୍କରି ଇଚ୍ଛାରେ ତାଙ୍କରି କରୁଣାରେ ତାଙ୍କରି ସମକ୍ଷରେ ଏ କର୍ମ ତ ବଢୁଛି। ଏଣୁ ଆଉ କିଛି ଭାବିବାର ନାହିଁ।

ଚାହୁଁ ଚାହୁଁ ଗୋଧୂଳି ବେଳ ହେଲା। ଗାଈଗୋଠ ଘରକୁ ଲେଉଟିଗଲା ପରେ ସଂଧ୍ୟା। ସମସ୍ତେ ବାହାଘର ପାଇଁ ତତ୍ପର ହେଲେ। ଶଙ୍ଖ ଆଉ ହୁଳହୁଳି ଘନଘନ ବାଜି ଉଠିଲା। ମାହେନ୍ଦ୍ର ବେଳା ଉପସ୍ଥିତ ହେଲା।

ଅଜା ଡ଼କା ପକେଇଲେ। ଆମ୍ମା, ଆଣ, ଆଣ କନ୍ୟାକୁ ଆଣ। ଅହ୍ୟ ମାଇକିନିଆମାନେ ଗୌରୀକୁ ବାଟ କଢ଼େଇ ଠାକୁରଙ୍କ ଆଗକୁ ଆଣି ଠିଆ କଲେ। ଠାକୁର ଘର ପୂରି ଉଠୁଥାଏ। ସୋରିଷ ପକେଇବାକୁ ମଧ ଜାଗା ନଥାଏ। ଗୌରୀ ପୋନ୍ଥରୁର ହଳଦିଆ ବାନ୍ଧ ପାଟଟେ ପିନ୍ଧିଥିଲା। ଆମ୍ମାର ଗୀତଗୋବିନ୍ଦ ଖଣ୍ଡୁଆ ପାଟଟି ଓଢ଼ଣା ଦେଇଥିଲା। ସାକ୍ଷାତ ରାଧାରାଣୀ ଭଳି ଆସି ଠିଆହେଲା। ଅଜା ନିତ୍ୟାକୁ ବୁଝେଇ ଶୁଝେଇ ତାକୁ ପାଟଟେ ପିନ୍ଧେଇ ଦେଇଥିଲେ। ସେ କାନ୍ଧରେ ଉତ୍ତରୀୟ ଘେନିଥିଲା। କପାଳରେ, ନାସାଗ୍ରରେ ହରିତିଳକ ସାଙ୍ଗକୁ ଦେହରେ ଚନ୍ଦନର ପ୍ରଲେପ ବୋଳିଥିଲା। ବକ୍ଷରେ ତାର ଘନ କୃଷ୍ଣ ଘଞ୍ଚ ବାଳ। ତାରି ଉପରେ ଶୁଭ୍ର ଉପବୀତ। ସେ ଦାମୋଦର ଭଳି ନିଶ୍ଚଳ ହେଇ କାୟୋତ୍ସର୍ଗ ମୁଦ୍ରାରେ ଠିଆହେଇଥିଲା।

ଅଜା ନାରସେୟାଙ୍କୁ ପାଖକୁ ଡ଼ାକିଲେ, ସମୁଦି ଆସହେ ,ଏବେ ପର୍ଯ୍ୟନ୍ତ ମୁଁ ହିଁ କଳାକୁଞ୍ଜ କରୁଥିଲି। ଏବେଠୁ ତମେ ଆମେ ମିଶି ପିତୁଳି ଗଢ଼ିବା। ନାରସେୟା ଘଡ଼ ଘଡ଼ି ଭଳି ହସଟେ ହସି ଦେଇ ମିଶ୍ରେଙ୍କ ପାଖରେ ଆସି ଠିଆହେଲେ। ଅଜା ରାଧାବିନୋଦଙ୍କ ଗଳାରୁ ମଲ୍ଲିର ହାରଟି କାଢ଼ି ନେଇ ନିତ୍ୟା ହାତରେ ଦେଲେ। ଆଉ କହିଲେ, ନିତ୍ୟା, ଗୌରୀ ବେକରେ ମାଳଟି ପିନ୍ଧେଇ ଦେଇ ତୋ ପତ୍ନୀକୁ ବରଣ କର। ରାଧାବିନୋଦଙ୍କ ମାଳଟି ନିତ୍ୟା ଗୌରୀ ମୁହଁ ଆଗରେ ଉଠେଇ ଧରିଲା। ଅଜା ତ ବଡ଼ ରସିକ ଲୋକ ଗୀତଗୋବିନ୍ଦ ଖଣ୍ଡୁଆ ପାଟରଓଢ଼ଣାଟି

ଗୌରୀ ମୁଣ୍ଡ ଉପରୁ ଖସେଇ ଦେଇ କହିଲେ ମା ବେକ ଦେଖା, ନିତ୍ୟା ବରଣ ମାଳା ଦେବ ।  ଅଜାଙ୍କ ଉପରେ ଗୌରୀ ମନେମନେ ରାଗିଯାଉଥାଏ । ଭାବୁଥାଏ ଅଜା ମଉଜ କରିବାକୁ ଏବେ ହିଁ ବେଳ ପାଇଲେ । ପୁଣି ନିଜକୁ ସଂଯତକରି ଭାବୁଥାଏ ଅଜା ନଥିଲେ ତା ଜୀବନରେ ଏଭଳି ସୌଭାଗ୍ୟ କଣ ଜୁଟିଥାନ୍ତା ।  ଗୌରୀର ଆଖି ନିତ୍ୟା ଭାଇନାଙ୍କ ଆଖି ଉପରେ ପଡ଼ିଲା । ଚାରି ଚକ୍ଷୁର ମିଳନ ହେଲା । ଅଜା ମନଖୋଲା ହସଟିଏ ହସିଦେଇ ଗୌରୀକୁ କହିଲେ, ମା' ତୁ ଏଥର ଠାକୁର ବେକରୁ ତୁଳସୀ ଧଣ୍ଡାଟି ନେଇ ନିତ୍ୟା ଗଳାରେ ଲମ୍ବେଇ ଦେ ।

ହଁ ତମେ ଦୁହେଁ ମୋ ସାଙ୍ଗରେ ବିଷ୍ଣୁଙ୍କ ଧ୍ୟାନ ମନ୍ତ୍ରଟେ ବୋଲ । ହାତ ଯୋଡ଼, ଆଖି ବନ୍ଦ କର । ହୃଦୟରେ ଲକ୍ଷ୍ୟ ରଖ ।

ଶାନ୍ତାକାରଂ ଭୁଜଗଶୟନଂ ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନସଦୃଶଂ ମେଘବର୍ଣ୍ଣଂ ଶୁଭାଙ୍ଗମ୍ ।
ଲକ୍ଷ୍ମୀକାନ୍ତଂ କମଳନୟନଂ ଯୋଗିଭିର୍ଧ୍ୟାନଗମ୍ୟଂ
ବନ୍ଦେ ବିଷ୍ଣୁଂ ଭବଭୟହରଂ ସର୍ବଲୋକୈକନାଥମ୍ ।।

ତା ପରେ  ଅଜା ଶ୍ଲୋକ ପରେ ଶ୍ଲୋକ ଗାଇଚାଲିଲେ । ଏସବୁ ଆବୃତ୍ତି ଭିତରେ ରୂଢ଼ି ଦେଖେଇବା ତାଙ୍କ ମୂଳ ଉଦ୍ଦେଶ୍ୟ ଥିଲା । ତାଙ୍କୁ ଲୋକେ କଳାକୁଞ୍ଜର କେବଳ କାରିଗର ବୋଲି ନଜାଣନ୍ତୁ , ସେ ଯେ ବିଦ୍ୱାନ, ସଂସ୍କୃତ ପଣ୍ଡିତ, ନୈଷ୍ଠିକ ବ୍ରାହ୍ମଣ ଏକଥା ବି ହେଜନ୍ତୁ ।

ଏବେ ଅଜା ଋଗବେଦର ମଧୁମତୀ ସୂକ୍ତି ଆବୃତ୍ତି କଲେ । ଆବୃତ୍ତି ଆଗରୁ ଅର୍ଥଟା କହିଦେବା ଉଚିତ ମନେ କରି ବଖାଣି ବସିଲେ । ଏହା ତ ପଣ୍ଡିତିଆ ବ୍ୟାପାର ।

ସଦ୍‌କର୍ମ ପରାୟଣ ବ୍ୟକ୍ତି ପ୍ରତି ବାୟୁ ମଧୁର ହେଉ । ସବୁ ନଦୀ ମଧୁମୟ ରସ କ୍ଷରଣ କରନ୍ତୁ । ଔଷଧି ସମୂହ ଆମ ନିକଟରେ ମଧୁମୟ ହୁଅନ୍ତୁ । ମଧୁମୟ ହେଉ ଦିନ ରାତି । ପୃଥିବୀଲୋକ ମଧୁମୟ ହେଉ, ପିତୃ ଓ ଦ୍ୟୁଲୋକ ମଧ୍ୟ ମଧୁମୟ ହେଉ ।

ମଧୁ ବାତା ଋତାୟତେ  ମଧୁ କ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ ।
ମଧୁ ନକ୍ତମୁତୋଷସୋ  ମଧୁମତ୍ ପାର୍ଥିବଂ ରଜଃ
ମଧୁ ଦ୍ୟୌରସ୍ତୁ ନଃ ପିତା ।
ମଧୁମାନ୍ନୋବନସ୍ପତିଃ  ମଧୁମାଁ ଅସ୍ତୁ ସୂର୍ଯ୍ୟଃ
ମାଧ୍ୱୀର୍ଗାବୋ ଭବନ୍ତୁ ନଃ ॥

ଅଜା ଏଥର ଦାମ୍ପତ୍ୟ ଜୀବନର ଗୁରୁତ୍ୱ ଦାୟିତ୍ୱ ଓ ଆଦର୍ଶ ଉପରେ ଛୋଟିଆ ଭାଷଣ ଟିଏ ଦେଲେ । ଦାମ୍ପତ୍ୟ ମିଳନକୁ ବେଦରେ ଏକ ପବିତ୍ର ମିଳନ ଭାବରେ ପରିକଳ୍ପନା କରାଯାଇଛି । ଋଗ୍‌ବେଦର ବିବାହ ମନ୍ତ୍ର ଗୁଡ଼ିକ ଭାରତରେ ହଜାର ହଜାର ବର୍ଷ ଧରି ବିବାହ ବନ୍ଧନକୁ ଓ ଏହି ଅନୁଷ୍ଠାନକୁ ପବିତ୍ର ରଜ୍ଜୁରେ ବାନ୍ଧିରଖିପାରିଛି । ଦାମ୍ପତ୍ୟ ଜୀବନ ଏକପତ୍ନୀବ୍ରତ ଆଦର୍ଶ ଉପରେ ପ୍ରତିଷ୍ଠିତ ।

ନବବିବାହିତ ଦମ୍ପତିଙ୍କୁ ଏଭଳି ବାକ୍ୟରେ ଆଶୀର୍ବାଦ କରାଯାଏ କହି ହଳଦିଆ ଚାଉଳ ଦିଟା ହାତରେ ଧରି ମନ୍ତ୍ରଟି ପଢ଼ିଲେ ଓ ମଝି ମଝିରେ ପ୍ରତିଟି ବାକ୍ୟ ଶେଷରେ ବର କନ୍ୟାଙ୍କ ଉପରେ ଚାଉଳ ବୃଷ୍ଟି କଲେ ।

ଇହୈବ ସ୍ତଂ ମା ବି ଯୌଷ୍ଟଂ ବିଶ୍ୱମାୟୁର୍ ବ୍ୟଶ୍ନୁତମ୍ ।
କ୍ରୀଳନ୍ତୌ ପୁତ୍ରୈର୍ନପ୍ତୃଭିର୍ମୋଦମାନୌ ସ୍ୱେ ଗୃହେ ॥

ନିତ୍ୟା ଓ ଗୌରୀ ତମେ ଦୁହେଁ ଅବିଚ୍ଛିନ ଭାବରେ ରହ । ପୁତ୍ର ନାତି ସହ କ୍ରୀଡ଼ାକରି ଗୃହରେ ଆନନ୍ଦ ଉପଭୋଗ କର । ପୂର୍ଣ୍ଣ ଓ ସଫଳ ଜୀବନଯାପନ କର ।

ଅଜା ଗୌରୀକୁ କହିଲେ, ଗୌରୀ ! ତୋ ସ୍ୱାମୀକୁ ଚାହିଁ ତୁ କହ, ପ୍ରାର୍ଥନା କର ।

ଦୀର୍ଘାୟୁରସ୍ୟା ଯଃ ପତିର୍ଜୀବାତି ଶରଦଃ ଶତମ୍

କହ ମୋ ସ୍ୱାମୀ ଦୀର୍ଘଜୀବୀ ହୁଅନ୍ତୁ, ସେ ଶତବର୍ଷ ଜୀବନ ଧାରଣ

କରନ୍ତୁ । ଗୌରୀ ଅଜାଙ୍କ କଣ୍ଠରେ କଣ୍ଠ ମିଳେଇ ପ୍ରାର୍ଥନା କଲା ।

ନିତ୍ୟାକୁ ଅଜା କହିଲେ ତୁ ଅଥର୍ବ ବେଦର ପଦକ ବୋଲ । ନିତ୍ୟା ତାର ନବ ବିବାହିତା ସ୍ତ୍ରୀକୁ ସମ୍ବୋଧନ କରି କହିଲା

ସାମାହମସ୍ମି ଋକ୍ ତ୍ୱଂ
ଦ୍ୟୌରହଂ ପୃଥିବୀ ତ୍ୱମ୍ ।।

ମୁଁ ହେଉଛି ସାମ, ତୁମେ ଋକ୍; ମୁଁ ହେଉଛି ଆକାଶ ତମେ ପୃଥିବୀ ।

ବିବାହ କାର୍ଯ୍ୟ ସଂପନ୍ନ ହେଲା ବୋଲି ଅଜା ଘୋଷଣା କରନ୍ତେ ଗୌରୀ ନିତ୍ୟାନନ୍ଦଙ୍କ ଗୋଡ଼ତଳେ ପ୍ରଣାମ କଲା । ଉଭୟେ ସ୍ୱାମୀ ସ୍ତ୍ରୀ ରାଧାବିନୋଦଙ୍କ ପ୍ରତିମା ପାଖରେ ମୁଣ୍ଡିଆ ମାରିଲେ ତାପରେ ଅଜାଙ୍କୁ ଓଳଗି ହେଲେ । ସେଠୁ ଯାଇ ନାରସେୟା ଦମ୍ପତିଙ୍କ ପାଖରେ, ଶେଷରେ ଆମ୍ମାଙ୍କ ପାଖରେ । ଅମ୍ମାଙ୍କ ସାଙ୍ଗସୁଖଙ୍କ ପାଖରେ ମୁଣ୍ଡିଆ ମାରି ଓଳଗି ହେଇ ମେଲାଣି ମାଗିଲେ ।

ହୁଳହୁଳିରେ ଘର ପୁଣି ଉଚ୍ଛୁଳି ପଡ଼ିଲା । ଯୋଡ଼ାଶଙ୍ଖ ବାଜିଉଠିଲା । ଉପସ୍ଥିତ ସମସ୍ତେ ଆଶୀର୍ବାଦ ଦେବାପାଇଁ ବରକନ୍ୟାଙ୍କ ଉପରେ ଚାଉଳ ବୃଷ୍ଟି କଲେ । ଅଜା ସ୍ୱସ୍ତି ବାଚନ ପଢ଼ିଲେ ।

ବାହାରେ ଡ୍ରାଇଭର ଗାଡ଼ିରେ ଷ୍ଟାର୍ଟ ଦେଲା । ଆମ୍ମା ଓ ସଧବା ମାନେ ବର କନ୍ୟାଙ୍କୁ ବାଟ କଢ଼େଇ କଢ଼େଇ ଗାଡ଼ି ପାଖକୁ ନେଇଗଲେ । ଗୌରୀ ଆମ୍ମାକୁ ସତୃଷ୍ଣ ଆଖିରେ ଚାହିଁ ଦେଇ ଗାଡ଼ି ପଛ ସିଟ୍‌ରେ ବସିଲା । ତା ପଛେ ପଛେ ନିତ୍ୟା ଓ ନାରଣା ମଧ୍ୟ । ଆମ୍ମା ଡ୍ରାଇଭର୍‌କୁ ଟିକିଏ ଅଟକିବାକୁ ଇଙ୍ଗିତ ଦେଇ ଗୌରୀକୁ ଚାହିଁ କହିଲା , କିଛି ତ ନେଲୁନୁ ସାଙ୍ଗରେ ହାରମୋନିୟମ୍‌ଟା ନେଇଥା । ସୀମାଞ୍ଚଳ ଘରୁ ହାରମୋନିୟମ୍ ପେଡ଼ିଟାକୁ ଟେକି ଆଣି ଗାଡ଼ି ପଛରେ ଲଦିଦେଲା ।

ଅଜା ଏଭିତରେ ଡ୍ରାଇଭର ପାଖ ସିଟ୍‌ରେ ବସିଯାଇଥିଲେ । ଗାଡ଼ି

ଛାଡ଼ିଲା । ଗୌରୀ ଧକେଇ ଧକେଇ କାନ୍ଦୁଥାଏ ।

ଆମ୍ମା ପଣତ କାନିରେ ଆଖିରୁ ଲୁହ ପୋଛିଲା । ପାଖ ସାଇପଡ଼ିଶା ମାଇକିନାମାନେ ମଧ୍ୟ ।

ଗାଡ଼ି ରାଧାବିନୋଦ ମଠ ମୋଡ଼ଦେଇଗଲା ବେଳେ ଗୌରୀ ଠାକୁରଙ୍କୁ ମନେମନେ ମୁଣ୍ଡିଆଟି ମାରିଲା ।

ମହନ୍ତର ଆରକ୍ତ ମୁହଁ, କଷାୟିତ ଚକ୍ଷୁ ଓ ତାର କାମନାସକ୍ତ ଦେହର କଳାଛାଇଟିଏ ଗାଡ଼ିର ଅଲୋଡ଼ା ଧୂଆଁ ଭଳି ବାହାରି ଯାଇ ଅନ୍ଧାର ଭିତରେ ମିଶିଗଲା ।



ନୀଳାମ୍ବର ମିଶ୍ରେଙ୍କ ବିଶ୍ୱାସ ଥିଲା ପାରଳାଖେମଣ୍ଡି ପହଞ୍ଚିଲା ପରେ ନିତ୍ୟା ଓ ଗୌରୀକୁ ନେଇ ଯେଉଁ ଗୁଞ୍ଜରଣ ଉଠିବ, ତାହା ଝଡ଼ରେ ପରିଣତ ହେବାର ସମ୍ଭାବନା କମ୍। ନିତ୍ୟାନନ୍ଦ ଆଡ଼ପାଗଳା, ତାକୁ ଆକ୍ଷେପ କଲେ ସେ ସହଜେ ଛାଡ଼ିବା ପିଲା ନୁହେଁ। ଅବଶ୍ୟ ଥୋକେ ଚର୍ଚ୍ଚାକରିବେ। କହିବେ ଏଠି କଣ ତାକୁ କିଏ ମାଇପ ଦିଅନ୍ତା ଯେ ସେ ବାହା ହେଇପଡ଼ନ୍ତା। ତାକୁ ବାହା ବି କିଏ କରନ୍ତା। କୋଉଠୁ ଉଠେଇ ଆଣିଲା ତେଲୁଗୁ ହେଉ, ତାମିଲ ହେଉ, ରକ୍ତ ମାଂସର ମଣିଷଟେ ତ। ଗୌରୀ ବି କମ୍ ଗୁଣର ପିଲା ନୁହେଁ। ରୂପ ଯିମିତି ଗୁଣ ସେମିତି। ମିଶ୍ରେ ଗୌରୀର ପରିବାର ସମ୍ପର୍କରେ ପରିବାରର ଐତିହ୍ୟ ଓ ପରଂପରାକୁ ନେଇ ସୁକ୍ଷ୍ମ ଅବାହାଓ୍ୱା ଟିଏ ସୃଷ୍ଟି କରିଦେଇ ପାରିଛନ୍ତି। ଅଢା କଥାକୁ ଦୋହରେଇ କହିଛନ୍ତି ସେମାନେ ବୈଷ୍ଣବ ଭକ୍ତ। ସଂପୂର୍ଣ୍ଣ ନିରାମିଷ ସେମାନେ। ବଡ଼ ନୈଷ୍ଠିକ, ପୁଣ୍ୟବନ୍ତ ସେ ପରିବାର।

ନିତ୍ୟାନନ୍ଦର ବାଲ୍ୟବିଧବା ଖୁଡ଼ୀ, ବଡ଼ ଖୁସିଟେ ହେଇଗଲା ଗୌରୀ ବୈଷ୍ଣବ ଭକ୍ତ ବୋଲି। ନିଜେ ତ ନିଷ୍ଠାରେ ଚଳୁଛି। ତାକୁ ଆହୁରି ଦମ୍ଭ ମିଳିଗଲା। ବଡ଼ ଗୁଣର ବୋହୂପିଲାଟେ। ଢ଼ଙ୍ଗ ଢ଼ାଙ୍ଗ ମାର୍ଜିତ, କଥାରେ ଶାଳୀନ, ଆଚାରରେ ଭଦ୍ର, ବିଚାରରେ ବୁଦ୍ଧିମତୀ। ଖୁଡ଼ୀ ଗୌରୀକୁ ଖୁବ୍ ଶୀଘ୍ର ନିଜର କରିନେଲେ। ଗୌରୀ ମୁହଁ ଅନ୍ଧାରରୁ ଉଠେ। ଘର ଦ୍ୱାର ଓଳାଏ। ଛୁଞ୍ଚପାଣି ପକାଏ। ଦାଣ୍ଡଦୁଆରେ ମୁରୁଜ ଦିଏ। ଠାକୁରଙ୍କ ପାଇଁ ଫୁଲତୋଳିଦିଏ। ଗାଧେଇ ପାଧେଇ ତୁଳସୀ ଚଉରାରେ ପାଣିଦିଏ। ଓଧାଣି ବସାଏ। ଶାଗମୁଗ ଯାହାଥିଲେ ଗଣ୍ଡେ ଫୁଟେଇଦିଏ। ସେ ଖୁଡ଼ୀଙ୍କ ହାତକୁ କେବେ ଅପେକ୍ଷା କରେନି। ଖୁଡ଼ୀଙ୍କ ଅଳସ ଦେହରେ ହାତ ବୁଲେଇ ଆଣେ। ବେଳେବେଳେ ଗୋଡ଼ ତଳିପାରେ ତେଲ ଫୁଟେଇ ଆଣି ଘଷି ଦିଏ। ଖୁଡ଼ୀ କହନ୍ତି ମୋ ପୁତୁରା ବୋହୂତ ନୁହେଁ ମୋ ଝିଅଟୁ ବଳି।

ଗୌରୀ ଘରେ ପହଞ୍ଚି ଦେଖିଲା ନିତ୍ୟାନନ୍ଦ ଗୋଟିଏ ଦୁଃସ୍ଥ ବ୍ରାହ୍ମଣ ପରିବାରର ଶେଷ ସନ୍ତକ। ଲିଭି ଆସୁଥିବା ଆତ୍ମପ୍ରତ୍ୟୟକୁ ଏକ ପରିବର୍ତ୍ତିତ ସାମାଜିକ ବ୍ୟବସ୍ଥା ଭିତରେ ଗ୍ରାହ୍ୟ କରେଇ ନେବାରେ ନିତ୍ୟାନନ୍ଦର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ।

କିନ୍ତୁ ପରିବାର ପ୍ରତିପୋଷଣ ପାଇଁ ନା ଅଛି ତାର ଭୂସଂପତ୍ତି ନା ପ୍ରତିପତ୍ତି । ସମ୍ବଳ ଭିତରେ ନିତ୍ୟାନନ୍ଦର କେବଳ ଅଛି ଗୋଟିଏ ଚଳଚଂଚଳ ବିଶୁଦ୍ଧ ପ୍ରାଣ ଓ ଦରଦ ଭରା ଖୋଲା ହୃଦୟ । ଗୌରୀ ଚିନ୍ତିଲା, ସେ ନିତ୍ୟାନନ୍ଦକୁ ଯାହା ଭାବି ସ୍ୱାମୀ ରୂପେ ଗ୍ରହଣ କରିଥିଲା, ନିତ୍ୟାନନ୍ଦ ସେଇଆ । ଏକ ସଚ୍ଚୋଟ, ସରଳ ମଣିଷ ।

ନିତ୍ୟାନନ୍ଦର ଦୈନନ୍ଦିନୀ ଭିତରେ ଗୌରୀ ନିଜକୁ ମିଶେଇ ନେଲା । ନିତ୍ୟାନନ୍ଦ ସକାଳପହରୁ ଗୋଡ଼କାଢ଼ି ବାହାରିଯାଏ ଯେ ଏକାବେଳେକେ ମନ୍ଦିରର ସଂଧ୍ୟା ଆରତି ବଢ଼େଇ ଦେଇ ଘରକୁ ଫେରେ । ଯଜମାନ ଘରେ ଯେଉଁଠି ଯାହା ପାଇଲା, ତାର ପେଟ ଅପୋଷା ରହେନି । ଅଧିକାଂଶ ଦିନ ମିଶ୍ରେ ଅଜାଙ୍କ ଘରେ ଭୋଜନ ବଢ଼ିଯାଏ । ଗୌରୀ ସଂଧ୍ୟା ଆରତି ଦେଖିବା ପାଇଁ ଖୁଡ଼ୀଙ୍କୁ ସାଙ୍ଗରେ ନେଇ ରାଧାକାନ୍ତ ମନ୍ଦିରକୁ ଯାଏ । ହାତଗୁଣ୍ଠା ମାଳ ଠାକୁରଙ୍କୁ ଲାଗିକରେ । ସକାଳୁ ଯେମିତି ନିତ୍ୟାନନ୍ଦ ଘର ଛାଡ଼େ, ଘର କାମଧାମ ତ ସରିଯାଇଥାଏ, ଗୌରୀ ବାଲାଜି ମଠରେ ପହଞ୍ଚେ । ବାସି ଫୁଲ ଓ ତୁଳସୀ ଗୋଟେଇ ନେଇ ବାହାରେ ପକେଇଦିଏ । ଠାକୁରଙ୍କ ମଣ୍ଡପ ପାଣି ଦେଇ ଧୋଇଦିଏ । ବେଢ଼ା ପହଁରି ଆଣେ । ଠାକୁରଙ୍କ ବଗିଚାର ଗଛମାନଙ୍କରେ ପାଣି ଦିଏ । ଠାକୁରଙ୍କ ପୂଜା ବାସନ କୁସନ ମାଜି ସଫା କରିଦିଏ, ପୂଜାରୀ କହୁ ବା ନ କହୁ ଫୁଲ ଗୁନ୍ଥି ବସେ, ଠାକୁରଙ୍କୁ ବେଶ କରିବାରେ ସାହାଯ୍ୟ କରେ, ଠାକୁରଙ୍କ ଧୂପ ବଢ଼ିଲା ପରେ ପହଡ଼ ପୂର୍ବରୁ ଠାକୁରଙ୍କ ଆଲଟ ଚାମର ସେବା କରେ । ଦିପହର ଭୋଗ ଉଠି ପହୁଡ଼ ପାଇଁ ଭିତର ମନ୍ଦିର ବନ୍ଦ ହେବା ଯାଏଁ ସେ ବାଲାଜିଙ୍କ ପାଖରେ ହିଁ ରହେ । ଗୌରୀର ଅନନ୍ୟ ନିଷ୍ଠା ଓ ତାର ଏକାନ୍ତ ଭକ୍ତିଭାବ ତାକୁ କୁଳବୋହୂ ର ମର୍ଯ୍ୟାଦା ଆଣିଦିଏ ।

ନୈଷ୍ଠିକ ରକ୍ଷଣଶୀଳ ବ୍ରାହ୍ମଣ ଗୋଷ୍ଠୀ ଗୋଟିଏ ରୁଗ୍ଣ ପରଂପରାର ପ୍ରତିନିଧିତ୍ୱ କରିକରି ସହଜଲଭ୍ୟ ମଠାନ୍ନ ଓ ଯଜମାନଙ୍କର ରକ୍ତ ଶୋଷି ଶୋଷି ଆଳସ୍ୟ ଭିତରେ ଜୀବନ ବିତଉଥିବାରୁ ସେମାନେ ବେଳେ ବେଳେ ସତ୍ୟ ଓ ମର୍ଯ୍ୟାଦାର ସୀମା ଲଙ୍ଘନ କରିବାକୁ ପଛଉନଥିଲେ । ଗୌରୀର କାର୍ଯ୍ୟକଳାପ ପ୍ରତି ଏମାନେ ଅସୂୟାଯୁକ୍ତ ହେଉଥିଲେ ମଧ୍ୟ ନିତ୍ୟାନନ୍ଦ ଭଳି ରୋକ୍‌ଠୋକ୍ ଜବାବ ଦେଉଥିବା ପିଲାଟେ ସାଙ୍ଗରେ ବଳ ପରଖିବାକୁ ସେମାନଙ୍କ ସାହସ ନହେବାରୁ ନିତ୍ୟାନନ୍ଦ ଆପାତତଃ ଏକ ଦୁର୍ଦ୍ଦିନରୁ ବର୍ତ୍ତି ଯାଇଥିଲା । ଏମାନଙ୍କର ଚାଛଲ୍ୟ,

ଅସୂୟା ଓ ଅସହିଷ୍ଣୁତା ଗୋଟାଏ ସାମୟିକ ଗୁଂଜରଣ ଭିତରେ ନିବଦ୍ଧ ହେଇଗଲା ।

ପାରଳାର ବିତ୍ତଶାଳୀ ତେଲୁଗୁ ସଂପ୍ରଦାୟର କେତେକ ବଡ଼ ପଣ୍ଡା ଗୌରୀର ସାମାଜିକ ସ୍ୱୀକୃତିର ଦୈନ୍ୟ ଓ ଆର୍ଥିକ ନ୍ୟୁନତା ପ୍ରତି ସମବେଦନା ଜଣେଇ ସେହି ପରିବାରକୁ ସାହାଯ୍ୟ କରିବା ପାଇଁ ଆଗଭର ହେଇପଡ଼ିଥିଲେ । ସେମାନଙ୍କ ସହାୟତାରେ ଗୌରୀ ବାଲାଜି ମନ୍ଦିର ପ୍ରାଙ୍ଗଣରେ ଛୋଟ ପିଲାମାନଙ୍କୁ ସଙ୍ଗୀତ ଶିକ୍ଷା ଦେବା ପାଇଁ ଅନୁଷ୍ଠାନଟିଏ ଆରମ୍ଭକଲା ଓ ତା ନାଁ ରଖିଲା ରାଧାବିନୋଦ ସଙ୍ଗୀତକୁଞ୍ଜ । ପାରଳା ସଙ୍ଗୀତ ପରଂପରାର ମହନୀୟ ପଟ୍ଟଭୂମି ଉପରେ ଅନୁଷ୍ଠାନଟି ଗଢ଼ି ଉଠିଲା ଓ ଦୀପ ଭଳି ଆଲୋକ ଆଉ ଆନ୍ତରିକତା ବିତରିବାକୁ ଲାଗିଲା ।

ଦିନକୁ ଦିନ ପିଲାଙ୍କ ସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଲା । ଅନୁଷ୍ଠାନରେ ଅପରାହ୍ନ ତିନିରୁ ସଂଧ୍ୟା ପାଞ୍ଚଟା ଭିତରେ ସଙ୍ଗୀତ ଶିକ୍ଷାଦେବାର ବ୍ୟବସ୍ଥା ହେଲା । ଗୌରୀ ପାର୍ବତୀପୁରମ୍‌ରୁ ଆଣିଥିବା ହାରମୋନିୟମ୍‌ର ପିକମାନଙ୍କ ଉପରେ ହାତବୁଲେଇ ଆଣୁ ଆଣୁ ତାର ମନେ ପଡ଼ିଯାଉଥିଲା ଗୁରୁ ବିନାୟକ ଶାସ୍ତ୍ରୀଙ୍କର କଣ୍ଠ ଝଙ୍କାରର ଔଜ୍ଜ୍ୱଲ୍ୟ ଓ ତାରୁଣ୍ୟ । ଜୀବନରେ ସେତକ ଆୟତ୍ତ କରି ଓ ତାର ସଙ୍ଗୀତ ଶିକ୍ଷା ରାଧାବିନୋଦଙ୍କ ଚରଣ କମଳରେ ସମର୍ପଣ କରିଥିଲା ବୋଲି ସେ ଆଜି ନିଜର ଅଭାବୀ ସଂସାରକୁ ହରି କୀର୍ତ୍ତନ ପରିବେଷଣ ମାଧ୍ୟମରେ ସରସ ସୁନ୍ଦର କରିପାରିଲା ।

ହେ ରାଧାବିନୋଦ, ତମର ନାମ କୀର୍ତ୍ତନ ହିଁ ମୋର ଜୀବନର ପାଥେୟ । ପିଲାଙ୍କୁ ସଙ୍ଗୀତ ଶିକ୍ଷା ଦେବା ଆରମ୍ଭରେ ସେ ଗୋପାଳକୃଷ୍ଣଙ୍କ ପଦ୍ୟାବଳୀରୁ ମନେ ପକାଏ । ମାୟାମାଳବଗୌଡ଼ା ରାଗ, ରୂପକତାଳର ରସରସିଆ ଯଶୋଦାଙ୍କ ଗୀତଟିଏ ପିଲାଙ୍କ ମନ ବହଲେଇବା ପାଇଁ ବୋଲେ ।

ଉଠିଲୁ ଏଡ଼େ ବେଗି କାହିଁକିରେ ଦୁଃଖିଧନ !
ଦଧି ମନ୍ଥାଇ ଦେବୁ ନାହିଁକିରେ ।
ଦେହ ପାସୋରି ଦଣ୍ଡେ ନିଦ ନ ଗଲୁ ଏଡ଼େ

ବିଟୋଳ ହେଲୁ ମୋର ପାଇଁକି ରେ ।
ଖେଳିବୁ ରାମ ତୁଲେ       ପଛେରାତି ପାଇଲେ
ଶୁଆଇ ଦେବି ଗୀତ ଗାଇକି ରେ ।

ତାର କଣ୍ଠର ଲାଳିତ୍ୟରୁ ଝରି ଆସେ ବାତ୍ସଲ୍ୟର ପ୍ରେମମୟତା । ପିଲାମାନେ ବଲବଲହେଇ ଗୌରୀମ୍ମାର ଶୂନ୍ୟରେ ବିଳସୁ ଥିବା ଚଂପାକଳି ଭଳି ଆଙ୍ଗୁଳିମାନଙ୍କୁ ଆଉ ସରାଗରେ ମୁଦି ହେଇଯାଉଥିବା ଆଖି ଦିଓଟିର ଭାବାବେଶକୁ ଲକ୍ଷ୍ୟ କରି ମୁଗ୍ଧ ହେଇଯାଆନ୍ତି ।

ମଛିବି ମୁଁ କେମନ୍ତ                ଖୁଆ ଦଣ୍ଡରୁ ତାତ
ଛାଡ଼ ଦେଉଛି ସର ଖୋଇକି ରେ ।
ଆହା ଏ କି ପ୍ରମାଦ                ଛନ୍ଦନା ବାବୁ ପାଦ
ଡ଼ାକି ଯା ବଳରାମ ଭାଇକି ରେ ।

ଗୋପାଳକୃଷ୍ଣ ଯଶୋଦାଙ୍କ କେତେ ବ୍ୟସ୍ତତା ପ୍ରକାଶ କରିନାହାନ୍ତି ! ଯଶୋଦା କୃଷ୍ଣଙ୍କ ଉପରେ ମିଛିମିଛିକା ରାଗିବା, ରୋଷ କରିବା, ନାଲିଆଖି ଦେଖେଇବା, ପୁଣି ପର ମୁହୂର୍ତ୍ତରେ କେତେ ଅନୁନୟ ବିନୟ ହେବା ଭିତରେ ମାତୃତ୍ୱର ସାଫଲ୍ୟ ପ୍ରକାଶ ପାଇଛି । ସଫଳ ଅଭିନୟ ବି ଜାଣି ହେଉଛି । ସର ଖୋଇଦେଲେ ଖୁଆଦଣ୍ଡ ଛାଡ଼ିଦେବୁ ପରା ! ମାତୃତ୍ୱର କି ବୈକଲ୍ୟ ! ମୋ ପାଖରେ ଏମିତି ପାଦଛନ୍ଦି ଠିଆ ହୁଅନା, ବଳରାମ ଭାଇକି ଡ଼ାକି ଯା । ସତରେ କଣ ସେ ଚାହୁଁଛନ୍ତି କୃଷ୍ଣ ତାଙ୍କ ପାଖରୁ ହଟିଯାଆନ୍ତୁ । ବାତ୍ସଲ୍ୟ ମମତା ତ ଏମିତିକା ! ଗୌରୀ ନିଜର ପ୍ରିୟତମଙ୍କୁ ପୁତ୍ର ଭୂମିକାରେ ଥାପିଦେଇ, ମାତୃତ୍ୱର ବ୍ୟଞ୍ଜନାରେ, ବେଦନାରେ, ସ୍ୱପ୍ନାବେଶରେ ପଦ ପରେ ପଦ ଗାଇ ଚାଲିଛି । ପିଲାମାନେ ମଜ୍ଜିଗଲେଣି କଣ୍ଠର ମହକରେ, କଥାର ମାଧୁରୀମାରେ । ସମସ୍ତେ କୃଷ୍ଣ ପ୍ରେମରେ ସ୍ତବ୍ଧ । ଗୌରୀମ୍ମା ଆଖିରୁ ଆନନ୍ଦାଶ୍ରୁ ଗଡ଼ିଯାଉଛି । ସେ ତଲ୍ଲୀନ, ଯିମିତି କୃଷ୍ଣଦାସୀ ମୀରା ସଙ୍ଗୀତ ଗାନ କରୁକରୁ ତଲ୍ଲୀନ ହେଇ ଯାଉଥିଲେ, ଯିମିତି ଭକ୍ତ ସାଲବେଗ ନୀଳଚକ୍ର ବାନାକୁ ଚାହିଁ ଭକ୍ତିର ପ୍ଲାବନରେ ବୁଡ଼ି ଯାଉଥିଲେ । ମୀରା ଗାଉଥିଲେ 'ମେରେ ତୋ ଗିରିଧରଗୋପାଳ ଦୁସରା ନ କୋଇ ।' ସାଲବେଗ ବି ସେଇଆ କହୁଥିଲେ 'ଆନ ଦରଶନ ନ ଲୋଡ଼େ ନୟନ, ଏକା ତୁମ୍ଭ ଦେଖା

ବିନା ।' ଏବେ ଗୌରୀ ଗୋପାଳକୃଷ୍ଣଙ୍କ ଭାଷାରେ ସେଇ ବାଣୀ ହିଁ ଉଚ୍ଚାରୁଛି :

ମୋ କୃଷ୍ଣ ଚନ୍ଦ୍ରମାପରି ଆନଟି କେ ଅଛିସରି ମା ।
ରତ୍ନ ଚିନ୍ତାମଣି ମୋର ତ୍ରିଭୁବନ ଅଲଂକାର
ଦୁଃଖିର ସଙ୍ଗାଳି ଦରିଦ୍ରର ଧନ ମୋ ଶ୍ରୀହରି ।
ଝାଳରେ ତିନ୍ତି ଅଳକ ଲିଭିଯାଇଛି ତିଳକ
ସ୍ତନ୍ୟ ଦେଇ ମୁଖବାସେ ପୋଛି ବ୍ରଜେଶ୍ୱରୀ ॥

ସଙ୍ଗୀତ ଭିତରେ ମଜ୍ଜିଯିବା, ସଙ୍ଗୀତ ଶିଖେଇବା, ପିଲାଙ୍କ କଅଁଳ କଣ୍ଠରେ ରାଧାକୃଷ୍ଣ ପ୍ରୀତିର ଗହନ ତତ୍ତ୍ୱକୁ ହେଜିବା, ପିଲାଙ୍କୁ ନଚାଇବା, ନାଚିବା ଭିତରେ ଗୌରୀର ଦିନ ଗୁଡ଼ିକ ସାର୍ଥକ ହେଇ ବିତିବାକୁ ଲାଗିଲା । ଗୌରୀ ଘରପାଇଟି ଚଟାପଟ ସାରିଦେଇ ସଙ୍ଗୀତ କୁଞ୍ଜରେ ହାଜର ହେଇଯାଏ । ରାଧା ଆସନ୍ତି, ଲଳିତା, ବିଶାଖା, ଚଂପକଲତା ଆସନ୍ତି, କୁଞ୍ଜ ଭରପୂର ହେଇଯାଏ । ସେ ଚପଳମତି ବାଳିକାଙ୍କ ଭିତରେ ରାଧାଭାବକୁ ହିଁ ବହୁ ଭାବରେ, ବହୁ ରୂପରେ ଦେଖେ । କେତେ ନିଷ୍ପାପ ପ୍ରାଣର ଚେତନ ପିତୁଳୀମାନେ ଏମାନେ । ଗୌରୀ ପିଲାଙ୍କୁ ଅତ୍ୟନ୍ତ ସ୍ନେହ କରେ । କୋଳରେ ବସେଇ ଚୁମିଦିଏ । ସଖୀ ବୋଲି ସେମାନଙ୍କୁ ଜ୍ଞାନ କରେ । କାହାକୁ ଲଳିତା, କାହାକୁ ବିଶାଖା ସମ୍ବୋଧେ । ହାତରେ ହାତ ଛନ୍ଦି କୁଞ୍ଜ ରଚନା କରେ । ତା ପ୍ରାଣରେ ପ୍ରେମର ଜୁଆର ଛୁଟିଲେ ସେ ଗାଇ ବସେ :

ଶ୍ୟାମକୁ ଜୁହାର ତାର ପ୍ରେମକୁ ଜୁହାର ମା
ସେ କରୁ ଗୋ ସେ ପୀରତି ଯା ଦେହ ଲୁହାର ମା
ଶୁଣିଛି ପ୍ରସଙ୍ଗରେ ଚନ୍ଦ୍ରାବଳୀର ସଙ୍ଗରେ
ନାଗରା ବାଜୁଛି ବ୍ରଜଯାକରେ ଯାହାର ମା
ମଥୁରା ଦଧି ବିକି ପଥେ ଗଲା ଗୁଆଳୁଣୀକି
ଶେଯେ ଶୁଆଉଛି ସେ ଗୋବର୍ଦ୍ଧନ ଗୁହାର ମା
ପଡ଼ିଲେ କା ଆଗରେ ବୁଡ଼ିବି ଦୁଃଖ ସାଗରେ
ପ୍ରାଣ ଧରି ଚାହିଁବି ମୁଁ ମୁଖକୁ କାହାର ମା ।

କଳିନ୍ଦଜା କୂଳରେ　　　　　　ଚାହିଁଲି ନୀପ ମୂଳରେ
ପଳାଇ ଆସିଲି ଠାରି ଜାଗୁଥିଲେ ଦ୍ୱାର ମା ।
ଗୋପାଳକୃଷ୍ଣ ଭାଷେ　　　　　　ସ୍ୱାମିନି ତୁମ୍ଭ ପାଇଁ ସେ
ବ୍ରଜ ବିଧୁ ହୋଇଛନ୍ତି ସୁରଭି ମାହାର ମା ।

ନିତ୍ୟା ଓପରଓଳି କାଖରେ ପୋଥିଯାକି ଅଜାଙ୍କ ଘର ଆଡ଼େ ପୁରାଣ ପଢ଼ିବା ପାଇଁ ଆସିଲେ ଅଜା ବାଆଁରେଇ ନିତ୍ୟାକୁ ସାଙ୍ଗରେ ନେଇ ଗୌରୀର ସଙ୍ଗୀତ ଅନୁଷ୍ଠାନ ଆଡ଼େ ବୁଲି ଆସନ୍ତି । ଅଜାଙ୍କୁ ଦେଖିଲେ ଗୌରୀର ଗୋଡ଼ ଆଉ ତଳେ ଲାଗେନି । ଦୌଡ଼ି ଆସି ମୁଣ୍ଡିଆ ମାରେ । ପିଲାଙ୍କୁ ମୁଣ୍ଡିଆ ମାରିବା ପାଇଁ ଶିଖେଇ ଦିଏ । ଏ ମୁଣ୍ଡିଆ ଭିତରେ ନିତ୍ୟା ମଧ ତାର ଯେତିକି ପାଇବା କଥା ପାଇଯାଏ ।

ଗୌରୀ ପଚାରେ, ଅଜା, ପିଲାଙ୍କଠୁ ଗୀତ ଶୁଣିବ ?

ଅଜା କହନ୍ତି, ଆମେ ସେତକ ପାଇଁତ ଆସିଛୁ । ଦେ, ଶୁଣା । ତୋର ସବୁଠୁ ଭଲ ପିଲା ଯିଏ, ତାକୁ କହ ଆମକୁ ଶୁଣେଇବ । ଗୌରୀ ଲଳିତାକୁ ଡ଼ାକେ । ହାରମୋନିୟମ୍ ପାଖରେ ବସାଏ । ସେ ତା ପଛକୁ ବସେ । ଲଳିତା ଦଶ ବର୍ଷର ଝିଅ । ଟିକିଟେ । ହାରମୋନିୟମ୍ ପିକ ଉପରକୁ ତା ହାତ ପାଏ ନପାଏ ହୁଏ, ଗୌରୀ କେବଳ ସୁର ଧରେ । ଲଳିତା ଗେଲେଇ ହେଇ ପଚାରେ କି ଗୀତ ଗାଇବି ?

ଗୌରୀ କହିଲା ଭଜନଟିଏ ଗା । ଲଳିତା ଗାଇଲା :

ମଣିମାହେ, ଏତିକି ମାଗୁଣି ମୋର
ମରଣ କାଳରେ　　　　　　ଦରଶନ ଦେବ
କଳାମୁଖ କଳାକର ।
ମଥାରେ ଥିବମୋ　　　　　　ତୁମ୍ଭ ଛଡ଼ାମାଳ
ମୁଖରେ ଥିବ ତୁଳସୀ
ମନେ ମନେ ଭାବି　　　　　　ରଟି ହେଉଥିବି
ନୀଳାଦ୍ରି ଶିଖର ବାସୀ ।

ମହାବାହୁ ଟେକା ଶ୍ୱେତପଦ୍ମଚକା
ନୟନକୁ ନିତି ଚାହିଁ ।

ପିଲାଟି ମୁହଁରେ ଚକାଡ଼ୋଳା ପାଖରେ ଆଶ୍ରମରଣର ମାଗୁଣି ଅଜାଙ୍କୁ କାରୁଣ୍ୟରେ ଭରିଦେଲା । ଅଜା ଲଳିତାକୁ ସ୍ନେହରେ ଉଠେଇ କୋଳକରିନେଲେ । ମା, ତୁ ସତେରେ ମୋ ମନକଥାତକ ଗାଇ ଦେଲୁ । ତୁ ଏବେ ବି କଳିକା, ଫୁଟିବୁ , ଗନ୍ଧ ବିତରିବୁ, ଭଅଁର ଆସିବ, ତୋର ଜୀବନ ସାର୍ଥକ ହେବ । ତାଙ୍କ ଆଖିରେ ଲୁହ ଭରିଗଲା । ସେ ଆଉ ଆଗେଇ ପାରିଲେନି । ଗାମୁଛାରେ ଆଖିପୋଛିଲେ । ଅଜା ବଡ଼ ଭାବ ପ୍ରବଣ ମଣିଷ । ତାଙ୍କର ବି ଝିଅ ଥିଲା ଲଳିତା । କଳିଟି ପ୍ରସ୍ଫୁଟିତ ହେବା ଆଗରୁ ଅକାଳରେ ଝିଡ଼ିଗଲା । ମା, ମୋ ବୟସ ନେଇ ବଂଚିଥା, ବୁଢ଼ୀଟିଏ ହେଇଥା । ଏମିତି ଗାଉଥା । ଜଗନ୍ନାଥ ତତେ ଦୀର୍ଘାୟୁ କରିଥାନ୍ତୁ । ଆଉ ଯେତେକ ରହିଲା ଗାଇଦେ ମା, ତୋତେ ଗୌରୀ ଆମ୍ମା ଶିଖେଇଛିନା !

ଲଳିତା ସମ୍ମତିରେ ମୁଣ୍ଡ ଟୁଙ୍ଗାରିଲା । ଅଜା ଶୁଣ ମୁଁ ଗାଉଛି :

ମଜାରେ ପୁଲକପୁରୁଥାଇ ରଙ୍କ-
ନିଧି, ଦୁଃଖୀଜନ ସାଇଁ
ମଙ୍ଗଳ ଆଳତି ଅବକାଶ କାଳେ
ଗରୁଡ଼ ପଛରେ ଥାଇ
ମୋହି ହେଉଥିବି ପ୍ରତି ନିଶାନ୍ତରେ
ତୁମ୍ଭଗୁଣ ଗାଥା ଗାଇ ।
ମଞ୍ଜୁଳ ବଡ଼ ସିଂ- ହାରବେଶ ଦେଖି
ମାରୁଥିବି କକ୍ଷ ତାଳି
ମରୁଆ ଦୟଣା ମାଳିଆଙ୍କୁ ଏତେ
ଅଳିକରେ ବନମାଳୀ ।

ନିତ୍ୟାର ପ୍ରତ୍ୟୟ ହୁଏ ଗୌରୀ ସାକ୍ଷାତ ରାଧା । ସେ ବିଚାରେ ରାଧାରାଣୀର ଅଙ୍ଗସେବାରେ ମନ ଓ ପ୍ରାଣ ଦେଇ ଜୀବନ ବିତେଇ ଦେବା ଶ୍ରେୟସ୍କର

ହେବ । ରାଧେ, ରାଧେ କହି ସେ ବେଳେ ବେଳେ ତନ୍ମୟ ହେଇ ପଡ଼େ । ଗୌରୀ କୋଳରେ ଢ଼ଳି ପଡ଼େ । ସତେରେ ତା ଅଙ୍ଗରେ କଂପନ ଜାତହୁଏ । ଦେହରୁ ଗମ୍ ଗମ୍ ଝାଳ ବହେ । ସେ ଅର୍ଦ୍ଧନିମିଳିତ ଚକ୍ଷୁକରି ଯିମିତି ସମାଧିସ୍ଥ ହେଇପଡ଼େ । ସେ ଦୈହିକ ପ୍ରେମ କେତେ ଗଭୀର ଜାଣେନା । ସେ ଶୃଙ୍ଗାର କିମିତି ରଚିହୁଏ ତା ବି ଜାଣେନା । କିଭଳି ଅଧର ଚୁମ୍ବିବାକୁ ହୁଏ, କିଭଳି ଉଚାଟନ କରି ଭାଷି ବାକୁ ହୁଏ , କିଭଳି ପ୍ରେୟସୀର ଅଙ୍ଗଲତାକୁ ଚଂଚଳିତ କରାଯାଏ, କିଭଳି ନୀବୀବନ୍ଧକୁ ହଗୁଳା କରାଯାଏ, କିଭଳି ରତିକ୍ରୀଡ଼ାରେ ନିମଜ୍ଜିହୁଏ ସେ ହୁଏତ ଜାଣେନା । ଗୌରୀ ନିତ୍ୟାକୁ ସବୁ ରଙ୍ଗ ରେ ମଜେଇ ଦିଏ । କୋଳରେ ଟୋକି ଧରି ଗଣ୍ଡରେ ଅଧରରେ କପୋଳରେ ଚୁମ୍ବଦିଏ । ତାର ମୃଣାଳଭଳି ବାହୁଲତାରେ ନିତ୍ୟାକୁ ବେଢ଼େଇ ଆଣେ । ନିତ୍ୟା ପୁରାଣ ପଢ଼ିଥିଲା, ଶାସ୍ତ୍ର ଆଲୋଚନା କରିଥିଲା । ଠାକୁରଙ୍କ ସେବା ପୂଜା କରିଥିଲା । ମନେ ମନେ ଗୌରୀକୁ ଇଚ୍ଛିଥିଲା । କିନ୍ତୁ ଗୌରୀ, ସେତ ରାଧାମୟୀ, ରାସମୟୀ, ରାସେଶ୍ୱରୀ । ନଟନାଗର ସତେ ଯିମିତି ଗୌରୀକୁ ସବୁ କଉତୁକରେ ପାରଙ୍ଗମ କରିଦେଇଛନ୍ତି । ନିତ୍ୟା ଗୌରୀ ପାଖରେ ସହଜରେ ଚିହ୍ନା ପଡ଼ିଯାଏ ।

ଗୌରୀ ନିତ୍ୟାନନ୍ଦର ମନକୁ କାମନାର ଉତ୍କଣ୍ଠାରେ ଭରିଦେବା ପାଇଁ କବିସୂର୍ଯ୍ୟ ବଳଦେବ ରଥଙ୍କ ଛାନ୍ଦରୁ ପଦେ ଦିପଦ ଗାଇଦିଏ ।

କାହିଁରେ ମନ ସହି ପ୍ରସନ୍ନ ହେଉନାହିଁ
ଏଥିକି କହ ମୋର ଗତିକି ରେ
କି କରି ଅରଜିବି କି କରି ବରଜିବି
ସେ ନବଘନ ଶ୍ୟାମ ପ୍ରୀତିକି ରେ ।
ଯୁଗଠାରୁ ଅଧିକ ହୋଇଲାନି ପଳକ
କେମନ୍ତେ ସମ୍ଭାଳିବି ଧୃତିକିରେ ।
ତ୍ରିଭୁବନ ମୋହନ ବିଷମ ବଂଶୀ ସ୍ୱନ
କାହୁଁ ଚୁମ୍ବିଲା ମୋର ଶ୍ରୁତିକିରେ ।

ନିତ୍ୟାର ଅବବୋଧ ଭିତରେ ଦୁଇଟି ସ୍ରୋତ ବାରି ହେଇ ପଡ଼େ । ଗୋଟିକରେ ଦେହଭାବନା; ସମ୍ବେଦନା ଆବେଗ ଉତ୍କଣ୍ଠା ଇତ୍ୟାଦି, ଯାର ଶିଖରରେ

ପ୍ରେମମୟୀ ସଙ୍ଗୀତମୟୀ ରାଧାସ୍ୱରୂପିଣୀ ଗୌରୀ । ଅନ୍ୟଟିରେ ବୈରାଗ୍ୟ; ନଶ୍ୱରତାର ଅବଚେତନର ଅପାର୍ଥିବ ଆଧ୍ୟାତ୍ମିକ ଅନୁଭୂତି । ଉଭୟ ଅନୁଭୂତି ପରିପୁଷ୍ଟ ହେଉଛି ସେହି ଏକା ପିତୁଳି ଭାବରୁ । ମଣିଷ ଚିତ୍ରିତ ପିତୁଳି । ଅଜାଙ୍କ କଳାକୁଞ୍ଜର ଖୁଡ଼ ଖୁଡ଼ ଅବୟବ ଭିତରୁ ଚୟିତ ଏକ ସଂପୂର୍ଣ୍ଣ ବୋଲି ଭାବିହେଉଥିବା ରୂପ । ପିତୁଳି କଥାକହେ, ପ୍ରାଣକୁ ବହଲାଏ, ଦୁଃଖ ସୁଖର ସରହଦ ଭିତରେ ଉବୁଟୁବୁ ହେଉଥାଏ । ଲବଣ ପିତୁଳି ପାରାବାରର ଗଭୀରତା କଳିବାକୁ ଯାଏ ଓ ପାଣିର ଘନନୀଳ ସାନ୍ଦ୍ରତା ଭିତରେ ହଜିଯାଏ ।

ପିତୁଳି ପ୍ରତିମା ହେଇଗଲେ ସେ ପାର୍ଥିବ ସଂସାରର ତୁଚ୍ଛପଣିଆକୁ ହେଜି ସାରି ବିରାଗର ମନ୍ଦାକିନୀରେ ଅବଗାହୀ ଏକ ଅଲୌକିକ ବିଭାରେ ତେଜୀୟାନ ହେଇ ଆମକୁ ଆଶିଷ ପ୍ରଦାନ କରେ । ସେ ଗୌରୀଙ୍କୁ କୋଳରେ ଘେନି ମଧ ଶିବଙ୍କ ଭଳି ନିର୍ଲିପ୍ତ ହୁଏ । ତାର ତୃତୀୟନେତ୍ରର ସ୍ଫୁରଣ ଘଟେ ।

ଅଜା ଅନୁଭବୀ, ଜ୍ଞାନୀ, ସ୍ରଷ୍ଟା । ସେ ନିତ୍ୟାନନ୍ଦର ଭାବ ସୌଷ୍ଠବକୁ ହେଜି ପାରନ୍ତି । ସେ ଗୌରୀର ମାଧୁର୍ଯ୍ୟ ପଣିଆକୁ ଅନୁଭବ କରିପାରନ୍ତି । ରାଗ ଓ ବିରାଗର ବିଭାଜନକୁ ଅନ୍ତର ଭିତରେ କଳି ପାରନ୍ତି । ଅଜା ତ ନିଜ ଜୀବନରେ ଏହି ଦ୍ୱନ୍ଦ୍ୱକୁ ସମାହିତ କରି ତାର ଉର୍ଦ୍ଧ୍ୱକୁ ଉଠି ପୁଣି ପିତୁଳିର ମାୟାରେ ସାରା ବିଶ୍ୱକୁ ରସ ମୟ କରିପାରନ୍ତି । କେବଳ କ'ଣ ଦେହ ଧରି ବଂଚିବା ପାଇଁ ଏ ପ୍ରୟାସ, ନା ସଂସାରକୁ ପିତୁଳା ଜ୍ଞାନ କରି ସେଥିରୁ ଅତିକ୍ରମିବା ପାଇଁ ସର୍ଜନାର ଅବଲମ୍ବନ ?

ଆଖଡ଼ାର ମାଷ୍ଟ୍ରେ ନବଘନ ଭଲ ମର୍ଦ୍ଦଳ ବଜାଏ ବୋଲି ଗୌରୀ ତା କୁଞ୍ଜକୁ ତାକୁ ସପ୍ତାହରେ ଥରେ ଅଧେ ଡ଼ାକି ଆଣେ । ନବଘନକୁ ତାର ଉଚିତ ପାଉଣା ଦିଏ । ନବଘନ ମର୍ଦ୍ଦଳରେ ସଂଗତ କରେ । ତାର ବୋଲ ଖୁବ୍ ପରିଷ୍କାର ଓ ଉଚ୍ଛାଟ । ନବଘନ ନାଟ ମାଷ୍ଟ୍ର । ନାଟ୍ୟ ଜଗତର ସବୁ ରଙ୍ଗରେ ତା ପ୍ରବେଶ । ତା ଆଖିରେ ସମସ୍ତେ ନାଟକର ଚରିତ୍ର, ରାଧା ବି, ଲଳିତା ବି, ସୀତା ବି ଗୌରୀ ବି । ଏଣୁ ତାର ଏମାନଙ୍କ ପ୍ରତି ଅଭିରୁଚି ଏକାପ୍ରକାର । ଆଖଡ଼ା ଭିତରେ ଯାହା ବାହାରେ ତାହା । ନବଘନର ସୁଠାମ ଦେହ, ଘନ ମାଂସପେଶୀର ଲମ୍ବିତ ବାହୁଯୁଗଳ, ବିକର୍ତ୍ତିତ ଭୂରୁ, ମାଦକ ଭରା ଆଖି, ପତ୍ରଚିରା ଓଠ । ସୁନାର ଖଡୁ କଂକଣ ଓ ପଦ୍ମକୁଣ୍ଡଳରେ ସଦା ଭୂଷିତ ହେଇଥାଏ । ମୁଣ୍ଡ ପଛକୁ

ବେଣ୍ଟି , ସଦା ଗୈରିକ ବେଶ । ନବଘନର କାତର ଭରା ଚାହାଣୀ ଓ ଜଘନ କଂପି ଉଦ୍‌ଗାରୁଥିବା ମର୍ଦ୍ଦଳର ବୋଲ୍ ପ୍ରତି ଗୌରୀ ସଚେତନ । ତଥାପି ସଙ୍ଗୀତର ଏଭଳି ଯୁଗଳ ବନ୍ଦୀକୁ ସମାଜ ସହୃଦୟତାର ଚକ୍ଷୁରେ ଦେଖେନା ।

ନୈଷ୍ଠିକ, ରକ୍ଷଣଶୀଳ, ପରାଙ୍ଗପୁଷ୍ଟ ବ୍ରାହ୍ମଣ ଦଳକ ଉତ୍ତେଜିତ ହେଇ ଉଠନ୍ତି । ଯେଉଁମାନେ ଜାତି ବୈଷମ୍ୟକୁ ନେଇ ଝଡ଼ ସୃଷ୍ଟିକରିବା ଯୋଜନାରୁ ପରାହତ ହେଇଥିଲେ ଏବେ ପୁଣି ନା ଶାସ୍ତ୍ର ନା ପରଂପରାର ଏକ ଅଥର୍ବ ଲୋକୋକ୍ତିକୁ ପାଥେୟ କରି ଗୌରୀର ଚରିତ୍ର ଉପରେ କଟାକ୍ଷ ଢ଼ାଳନ୍ତି । 'କ୍ୱଚିତ୍ ଗାନବତୀ ସତୀ' । କହନ୍ତି ଗୌରୀ କୁଳ ମର୍ଯ୍ୟାଦା ଲଘିଦେଲା । ନିତ୍ୟାନନ୍ଦ ତ ହୁଣ୍ଡାଟେ । ସେ ଏହାର ଭୟାବହତା ସଂପର୍କରେ ସଚେତନ ନହେଲେ ସବୁ ଧ୍ୱଂସ ପାଇଯିବ । ଐତିହ୍ୟ, ପରଂପରା, ପରାଶର ବଂଶର ସମ୍ମାନ ଓ ଗୌରବ ଭୂଲୁଣ୍ଠିତ ହେଇଯିବ ।

ଗୌରୀ କାନକୁ କଥାଯାଏ । ଗୌରୀ ଜୀବନରେ ବାରମ୍ବାର ବିଡ଼ମ୍ବିତା ହେଇଛି, କିନ୍ତୁ ପଥଭ୍ରଷ୍ଟ ହେଇନି । ସେ ସଙ୍ଗୀତ କୁଞ୍ଜକୁ ସବୁଦିନ ପାଇଁ ବନ୍ଦ କରିଦିଏ । ଚାରି ପାଞ୍ଚବର୍ଷ ଗୋପାଳକୃଷ୍ଣଙ୍କ ଜନ୍ମଭୂମିରେ ସମ୍ଭାବନାର ନବଉନ୍ମେଷ ସୃଷ୍ଟିକରିଦେଇ ସଙ୍ଗୀତ ପୁଣି କୁଆଡ଼େ ମିଳେଇଯାଏ । ନିତ୍ୟାନନ୍ଦ ପ୍ରଶ୍ନକରନ୍ତି । ଗୌରୀ କେବଳ କହେ ମୁଁ ଗୁଡ଼ିଶାଣୀ ନୁହେଁ, ମୁଁ କୃଷ୍ଣପ୍ରିୟା । ଅଚ୍ଛା ସବୁକଥା ହୃଦୟଙ୍ଗମ କରନ୍ତି । ବାଲାଜି ମନ୍ଦିରର ପରିଚାଳକମାନେ ପରିସ୍ଥିତିକୁ ନିଘାରଖି ମନ୍ଦିରରେ ବଡ଼ ସିଂହାର ବେଳେ ଗୀତଗୋବିନ୍ଦ ଗାନ କରିବା ପାଇଁ ଗୌରୀକୁ ଦୈନିକ ସଂଚା ଖଞ୍ଜି ଦିଅନ୍ତି । ସେତିକିରେ ଗୌରୀର ପରିବାର ଚଳିଯାଏ ।

ଗୌରୀ ଆଶ୍ୱସ୍ତ ହୁଏ । ହାତ ଯୋଡ଼ି ପ୍ରଭୁଙ୍କୁ ଜଣାକରେ । ରାଧାବିନୋଦ ! ତମେ ନା ସୁଦାମା ବ୍ରାହ୍ମଣର ଅଣ୍ଟିରୁ ଚାଉଳ ଭଜା ମୁଠେ ଖାଇଦେଇ ତା ଘର ସଂସାରକୁ ଧନରତ୍ନରେ ପୂର୍ଣ୍ଣ କରିଦେଇଥିଲ । ଲକ୍ଷ୍ମୀଭଣ୍ଡାରରେ ଭରିଦେଇଥିଲ । ତମେ ଏଇ ବିଶ୍ୱ ବ୍ରହ୍ମାଣ୍ଡର କୋଟି କୋଟି ଜୀବ, ଅଣୁ ପରମାଣୁ କୀଟ ପତଙ୍ଗଙ୍କ ମୁହଁରେ ଅନ୍ନ ଦେଇ ବଂଚେଇ ରଖିଛ । ଗୌରୀତ ତମର ଆଶ୍ରିତା, ନିଘା ରଖିଥାଅ ପ୍ରଭୁ ।

ଗୌରୀ ସଂଧ୍ୟା ଆଠ, ସାଢ଼େ ଆଠ ହେଲେ ବାଲାଜି ମନ୍ଦିରରେ ତୁଳସୀ

ଓ ଦୟଣା ମାଳ ନେଇ ପହଞ୍ଚିଯାଏ । ଦେହରେ ଆମ୍ଭାର ଗୀତଗୋବିନ୍ଦ ଓପରାଣ, ଖୁଡ଼ୀ ବି ସାଙ୍ଗରେ ଥାଆନ୍ତି । ଖୁଡ଼ୀ କାଣ୍ଡିଆ ପିନ୍ଧିଥାନ୍ତି ଓ ନାମାବଳୀ ଘେନିଥାନ୍ତି । ସଂଧ୍ୟା ଧୂପ ବଢ଼େ । ବଡ଼ ସିଂହାର ଆଗରୁ ଚତୁଃସମ ସେବା ବଢ଼େ । ମନ୍ଦିରର ପ୍ରଥମ ବେଢ଼ା ଅର୍ଗଳି କବାଟ ବନ୍ଦହୁଏ । ଗରୁଡ଼ ଖମ୍ଭପାଖରେ ଖୁଡ଼ୀ ରହିଯାଆନ୍ତି । ଦୀପଟିଏ ଚଢ଼େଇଦେଇ ଆଖିବୁଜି ବସିପଡ଼ନ୍ତି । ଗୌରୀ ଭିତର ବେଢ଼ାରେ ଗୀତଗୋବିନ୍ଦ ଗାନକରେ । ତାର ସୁଲଳିତ କଣ୍ଠଧ୍ୱନିରେ ଗର୍ଭଗୃହ ଝଂକୃତ ହୋଇ ଉଠେ । ଖୁଡ଼ୀ ମଧ୍ୟ ଜୀବନରେ ପ୍ରଥମକରି ଏଭଳି ରସମୟ, ଆବେଗଭରା ଗାନରେ ଚକିତ, ଶଙ୍କିତ ଓ ମୁଗ୍ଧ ହୋଇପଡ଼ନ୍ତି । ଭାବିବସନ୍ତି ଗୌରୀ ନାରୀ ନା ଗାନ୍ଧର୍ବୀ ।

କୁରୁ ଯଦୁନନ୍ଦନ ଚନ୍ଦନ ଶିଶିରତରେଣ କରେଣ ପୟୋଧରେ
ମୃଗମଦପତ୍ରକମତ୍ର ମନୋଭବମଙ୍ଗଳକଳଶସହୋଦରେ
ନିଜଗାଦ ସା ଯଦୁନନ୍ଦନେ କ୍ରୀଡ଼ତି ହୃଦୟାନନ୍ଦନେ ।

ଅଳିକୁଳଗଂଜନମଂଜନକଂ ରତିନାୟକଶାୟକମୋଚନେ
ତ୍ୱଦଧରଚୁମ୍ବନଲମ୍ବିତକଜ୍ଜଳମୁଜ୍ଜ୍ୱଳୟ ପ୍ରୀୟଲୋଚନେ ।

ନୟନକୁରଙ୍ଗତରଙ୍ଗବିକାଶନିରାଶକରେଶ୍ରୁତିମଣ୍ଡଳେ
ମନସିଜପାଶବିଳାସଧରେ ଶୁଭବେଶ ନିବେଶୟ କୁଣ୍ଡଳେ ।

ଭ୍ରମରଚୟଂ ରଚୟନ୍ତମୁପରି ରୁଚିରଂ ସୁଚିରଂ ମମ ସନ୍ମୁଖେ
ଜିତକମଳେ ବିମଳେ ପରିକର୍ମୟ ନର୍ମଜନକମଳକଂ ମୁଖେ ।

ମୃଗମଦରସବଳିତଂ ଲଳିତଂ କୁରୁ ତିଳକମଳକରଜନୀକରେ
ବିହିତକଳଙ୍କକଳଂ କମଳାନନ ବିଶ୍ରମିତଶ୍ରମଶୀକରେ ।

ମମ ରୁଚିରେ ଚିକୁରେ କୁରୁ ମାନଦ ମନସିଜଧ୍ୱଜଚାମରେ
ରତିଗଳିତେ ମିଳିତେ କୁସୁମାନି ଶିଖଣ୍ଡିଶିଖଣ୍ଡକଡ଼ାମରେ ।

ସରସଘନେ ଜଘନେ ମମ ଶମ୍ଭରଦାରଣବାରଣକନ୍ଦରେ
ମଣିରସନାବସନାଭରଣାନି ଶୁଭାଶୟ ବାସୟ ସୁନ୍ଦରେ ।

ଶ୍ରୀ ଜୟଦେବବଚସି ଜୟଦେ ହୃଦୟଂ ସଦୟଂ କୁରୁ ମଣ୍ଡନେ
ହରିଚରଣସ୍ମରଣାମୃତକୃତକଳିକଳୁଷଜ୍ୱରଖଣ୍ଡନେ ।

ଠାକୁର ଗୌରୀ କଣ୍ଠରୁ ଗୀତଗୋବିନ୍ଦ ଶୁଣୁ ଶୁଣୁ ପହୁଡ଼ଯାଆନ୍ତି । ଗର୍ଭଗୃହରେ ଶୂନ୍ୟତା ବିରାଜେ । ମଠ କାନନରୁ ଭାସିଆସୁଥିବା ବଂଶୀ ସ୍ୱନ ସ୍ତିମିତ ହେଇଯାଏ । ନିଶା ଗର୍ଜିବା ଆରମ୍ଭକରେ । ଗୌରୀ ଗୋଡ଼ କାଢ଼ି ଠାକୁରଙ୍କ ପାଖରୁ ଫେରିଯାଏ । ଟହଲିଆ କବାଟ ବନ୍ଦ କରେ । ମନ୍ଦିର କିଳା ହୁଏ । ଶୋଧାହୁଏ । ଖୁଣ୍ଟିଆ ସେମାନଙ୍କୁ ଘର ଯାଏଁ ବାଟେଇଦେଇ ଆସେ ।

ପ୍ରତିଦିନ ଏଇମିତି ଗୀତଗୋବିନ୍ଦ ସେବା ମନ୍ଦିରରେ ବଢ଼େ ।

ଖୁଡ଼ୀ ଭାବନ୍ତି ଗୌରୀ ଘର କରିବା ପାଞ୍ଚ ବର୍ଷ ପୂରି ଗଲାଣି । ଗୌରୀର ଗର୍ଭବାସ ତ ହେଉନି । ଗୌରୀ ମନ ଧ୍ୟାନ ଦେଇ ବାଲାଜିଙ୍କୁ ଜଣାକଲେତ ସେ ତା କୋଳରେ ପୁଅଟିଏ ଦିଅନ୍ତେ । ଦିନେ ରାତିରେ ମନ୍ଦିରରୁ ଫେରିଲା ପରେ ଗୌରୀକୁ ପାଖରେ ବସେଇ ଖୁଡ଼ୀ କହିଲେ ବୋହୂ , ତୁ ତ ରାଧାବିନୋଦଙ୍କ ଭକ୍ତ । ତୁ ଅଡ଼ି ବସିଲେ ରାଧାବିନୋଦ ତୋ କୋଳରେ ପୁଅଟିଏ ଦିଅନ୍ତେନି ! ନିତ୍ୟାଟା ଅବୁଝା ପିଲା । ତାକୁ ଏକଥା କହି ବା ଲାଭ କଣ । ଦେଖୁଛୁ ମୋ ଦଶା , ମୁଁ ତ ବାଲ୍ୟରୁ ବିଧବା ହେଲି । ଯୌବନ ମଉଳିନଥିଲା । ମନ କଥା କାହାକୁ ବା କହିଥାନ୍ତି । ରାଧାମାଧବ ଚାହିଁଲେ ବି କିଛି ଫଳ ଫଳିନଥାନ୍ତା । କୁଳକୁ ବଂଶକୁ ଲାଜ କଥା ହେଇଥାନ୍ତା । ଶେଷରେ ପ୍ରାଣର ଦୁଃଖ ପ୍ରାଣରେ ଚାପିଦେଇ ମନମାରି ରହିଲି । ଏ ଘର, ଏ ବଂଶ କଣ ଏମିତି ଉଜୁଡ଼ି ଯିବ । ନିତ୍ୟାତ ଏକଇର ବଳା ବିଶିକେଶନ । ବୋହୂ, ତୁ ତୋ ଗୀତ ଭିତରେ ତୋ ଜଣାଣ ଭିତରେ ପଦେ ମନ ଖୋଲି ଠାକୁରଙ୍କୁ କହିଦେ । ଏକଥାକୁ ଲାଜ କିସ । ଦେବକୀ ତ ପୁଣି କହିଥିଲା, ଯଶୋଦା ବି କହିଥିଲା । କିଏ ନ କହୁଛି କହିଲୁ ? ପ୍ରଭୁତ ସେମାନଙ୍କ କଥା ରଖିଲେ, ସେମାନଙ୍କ ମହତ ରଖିଲେ ଆଉ ତୋ କଥା କ'ଣ ଅନ୍ୟଥା ହେଇଯିବ । ମୋ ମନ କହୁଛି ଠାକୁର ନିଶ୍ଚୟ ଶୁଣିବେ । ତୋ ଗର୍ଭ ଫଳିବ । ଗୌରୀ

ଖୁଡ଼ୀଙ୍କ ସବୁ କଥା ଶୁଣେ । କି ଉତ୍ତର ବା ଫେରେଇବ । ମୁଣ୍ଡ ତଳକୁ ପୋତି ରହେ । ସେ ଜଣା କରୁନି ବୋଲି ଖୁଡ଼ୀ ବା କେମିତି ହେଜିପାରନ୍ତେ ।

କୁଚକ୍ରୀ ଗୋଷ୍ଠୀ ସବୁବେଳେ ଗୌରୀ ପିଛାଧରୁଥିଲେ ଓ ତାର କାର୍ଯ୍ୟକଳାପ ସଂପର୍କରେ ସଚେତନ ଥିଲେ । ଜାତିଗତ ବୈଷମ୍ୟକୁ ନେଇ ଓ ସଙ୍ଗୀତ ଅନୁଷ୍ଠାନରେ ନବଘନର ଉପସ୍ଥିତିକୁ ନେଇ ସମାଲୋଚନାର ବିଫଳତା ପରେ ସେମାନେ ଆଉ ଗୋଟାଏ ଉଦ୍ଭଟ ଜନରବ ସୃଷ୍ଟି କରିବା ପାଇଁ ଚେଷ୍ଟିତ ହେଇପଡ଼ିଲେ । ଚତୁର୍ମାସ୍ୟା ଶେଷ ହେଇଯିବା ପରେ ଶ୍ରୀକାକୁଳମ୍‌ରେ ଅଜା କଳାକୁଞ୍ଜ ପକେଇବା ଆୟୋଜନ କଲେ । ସାଙ୍ଗରେ ନିତ୍ୟାକୁ ମଧ୍ୟ ନେଇଗଲେ । ଘରେ ଗୌରୀ ଓ ଖୁଡ଼ୀ । ଯେଉଁ ଦିନ ଗୌରୀ ଗୀତଗୋବିନ୍ଦ ସେବାପାଇଁ ବାଲାଜି ମନ୍ଦିରକୁ ଏକୁଟିଆ ଯାଇଥାଏ, ଘର ବାହୁଡ଼ିଲା ବେଳକୁ ଖୁଣ୍ଟିଆ କିମ୍ବା ଟହଲିଆ ଘରେ ଛାଡ଼ିଦେଇଯାଏ । ଏହି ମୌକାର ସୁଯୋଗ ନେଇ ଏକ ଅଜବ ଓ ବିକୃତ ଚିନ୍ତାର ଗପଟିଏ ଭଣିଲେ ।

ଗପଟି ହେଲା :

ଗୌରୀ ନିତ୍ୟାନନ୍ଦର ଅପାରଗତା ନେଇ ଭୀଷଣ କ୍ଷୁବ୍ଧ । କାହାକୁ ବା ଏକଥା କହନ୍ତା । ଅଜା ଓ ନିତ୍ୟାନନ୍ଦ ଗାଁରେ ନଥିଲାବେଳେ ଖରାବେଳଟାରେ ବାହାନା କରି ସେ ଆମ୍ବତୋଟାକୁ ଚାଲିଯାଏ । ରାଧା ଯିମିତି ପାଣି କଳସୀକୁ ସାକ୍ଷୀ ରଖି ଯମୁନା କୂଳେ କୃଷ୍ଣଙ୍କୁ ଭେଟୁଥିଲେ ଠିକ୍ ସେମିତିକା କଥା । ବାଲାଜି ମଠ ଟ୍ରଷ୍ଟବୋର୍ଡ଼ ସଭାପତି ଗଣପତି ରାଜୁଙ୍କ ବଡ଼ ପୁଅ ସୂର୍ଯ୍ୟସାଙ୍ଗରେ ଗୌରୀ ରଜଘଷ ହେଲାଣି । ସୂର୍ଯ୍ୟଟା ବ୍ରହ୍ମପୁରରେ ଏଲୋପ୍ୟାଥିକ ଔଷଧର ହୋଲସେଲ ବ୍ୟବସାୟ କରୁଛି । ଗଂଜାମ ଜିଲ୍ଲାଟା ଯାକକୁ ସେ ଔଷଧ ଯୋଗଉଛି । ବେଳେ ଅଧେ ପାରଳାଖେମଣ୍ଡିକୁ ଆସିଲେ ସେ ଗୌରୀକୁ ଏକାନ୍ତ ଭେଟ କରିବ ହିଁ କରିବ । ଆମ ତଳ ସାହିର ଦୁର୍ଯ୍ୟୋଧନ ପରା ଦେଖିଆସି ବ୍ରାହ୍ମଣଙ୍କୁ ଗୁମର କଥାଟା କହିଲା । ସବୁ ବ୍ରାହ୍ମଣ ଟାକି ରହିଛନ୍ତି ନୀଳାମ୍ବର ମିଶ୍ରେ ଓ ନିତ୍ୟାନନ୍ଦ ଫେରିଲେ ରଂଜହଂସଟେ ହେବ । ସବୁ କଥା ଗୋଟିଏ ପଟେ, ବଂଶ କୁଳ ମାନ ଗୋଟାଏ ପଟେ । ଖାଡ଼ଙ୍ଗାପୁଅ ନିତ୍ୟାନନ୍ଦ କଣ, ଆଉ ଆମ ପୁଅ ବୋହୂ କଣ ? ତାର ଗୋଟିଏ ମର୍ଯ୍ୟାଦାବନ୍ତ ମୀମାଂସା ଦରକାର ।

ପ୍ରସଙ୍ଗଟା ତୁଣ୍ଡକୁ ତୁଣ୍ଡହେଇ ପ୍ରୁତ୍ୟୁଷ ହେଉଥାଏ । ଗୌରୀ ବି ବ୍ରାହ୍ମଣଙ୍କ ଫିସାଦିର ଟେର ପାଇଲା । ମୀମାଂସା କରିବେ ତ ଅଜା ଆସନ୍ତୁ । ସେ ଦୁର୍ଯ୍ୟୋଧନ ଟୋକାଟା କିଏ ? ସେ ବି ଆସିବ । ସେତ ଅସଲ ନାଟର ଗୋବର୍ଦ୍ଧନ । ବାଲାଜିଙ୍କ ତୁଳସୀ ଧଣ୍ଡାନେଇ ସେ ବଚନ ଦେବ । ଗୌରୀ ଏ ବିତଣ୍ଡା ବିତର୍କ ଠାରୁ ଦୂରରେ ରହି ସବୁକଥାକୁ ନିଘାକରିଥାଏ । ବ୍ରାହ୍ମଣେ ବୁଢ଼ାଟିମାନ ହେଲେଣି । ମା ମାଇପ, ପୁଅ ବୋହୂ ନେଇ ଘର କରିଛନ୍ତି । ହେଲେ ପର ଝିଅ ବୋହୂ ଉପରେ ଏଭଳି ଆଖି । ଆମେ ଲେଖାରେ ଏମାନଙ୍କର ମଧ କୁଟୁମ୍ବ ହେବୁ । ତଥାପି ଏମାନଙ୍କ ସଂକୋଚ ନାହିଁ । ଠିକ ବି ନାହିଁ, ତାଳ କରିଦେଉଛନ୍ତି ।

ଦିମାସ ଅନ୍ତରରେ ଅଜା ନିତ୍ୟାନନ୍ଦଙ୍କୁ ନେଇ ଫେରିଲେ । କିଏ ଶୁଣେଇବେ କଣ, ନିଜେ ନିଜେ ହିଁ ଶୁଣିଲେ । ନିତ୍ୟା ତମ୍ପ ସାପ ପରି ଫଁ ଫଁ ହେଲା । ତାପର ଦିନ ରାଧାକାନ୍ତ ମଠରେ ପୁରାଣ ପଢ଼ିଲା ବେଳେ ଜଗନ୍ନାଥ ଦାସଙ୍କ ଭାଗବତରୁ ଧାଡ଼ିଟା ମାନ ବୋଲି ଦେଇ ସମସ୍ତେ ଶୁଣିଲା ଭଳିଆ କହିଲା । ଭଗତେ ଶୁଣ । ସଂସାରରେ ଅନୀତି ବ୍ୟାପିଗଲାଣି । ସେମାନେ ଶେଷରେ ନିଜବଂଶର ଝିଅ ବୋହୂଙ୍କୁ ଚାହି ଚାପରା କରୁଛନ୍ତି , ଆକ୍ଷେପକରି କଥା କହୁଛନ୍ତି । ତମେମାନେ ବାଲାଜି ମନ୍ଦିର ବେଢ଼ାରେ ପୂର୍ଣ୍ଣମୀ ଦିନ ସଂଧ୍ୟାରେ ଜମାହେବ । ବଡ଼ ସିଂହାର ବେଶ ଆଗରୁ ଠାକୁରଙ୍କ ପାଖରୁ ଧଣ୍ଡା ଆସିବ । ଯିଏ ଏ ସବୁ ଭିଆଇଛି ସେ ଧଣ୍ଡାଛୁଇଁ ନିଯମକରି କହିବ । ଯଦି ଆରୋପ ସତ୍ୟହୁଏ, ମୁଁ ଓ ମୋ ସ୍ତ୍ରୀ ଲଣ୍ଡା ହେଇ ଡିରଣ ଧରି ଏ ଗାଁ ଛାଡ଼ି ଚାଲିଯିବୁ । ନା ଯଦି ଅପବାଦ ମିଥ୍ୟା ହୁଏ, ଦୋଷୀକୁ ତମେମାନେ ଯାହା ଦଣ୍ଡ ସାବ୍ୟସ୍ତ କରିବ ତାହା ସେ ଠିକେ ଠିକେ ମାନି ନେବାକୁ ବାଧ୍ୟ । ଅସଲ କଥା ବାହାରି ପଡ଼ିବ । ସେ ଦୁର୍ଯ୍ୟୋଧନ ଟୋକାଟା କିଏ ?

ସମସ୍ତେ ପରସ୍ପର ମୁହଁ ଚାହାଁ ଚାହିଁ ହେଲେ । ବାସ୍ତବିକ ଦୁର୍ଯ୍ୟୋଧନଟା ଏକ କାଳ୍ପନିକ ଚରିତ୍ର ଥିଲା । ପୂର୍ଣ୍ଣମୀ ସଂଧ୍ୟାରେ ମନ୍ଦିର ବେଢ଼ାରେ ପିଠଉ ଭଳି ଜହ୍ନ ପଡ଼ିଛି । ଟ୍ରଷ୍ଟବୋର୍ଡ଼ର ସଭାପତି ଗଣପତି ରାଜୁ , ତାଙ୍କ ପୁଅ ସୂର୍ଯ୍ୟନାରାୟଣ, ଅଜା ନୀଳାମ୍ବର ମିଶ୍ର, ଗୌରୀ, ଖୁଡ଼ୀ, ଚିତ୍ରକାର ସାହିର କାରିଗର ଦଳକ ଓ ଦେଖଣାହାରି ହେଇ ତିରିଶି ଚାଳିଶି ଜମା ହେଇଗଲେ ।

କୁଚକ୍ରୀ ଗୋଷ୍ଠୀର ମୁଖ୍ୟ ପୁରୋଧା ଧନଞ୍ଜୟ ରଥେଙ୍କୁ ସକାଳୁ ତରଳ ଝାଡ଼ା ହେଉଛି ସେ ଉଠାବସା କରିପାରୁନାହାନ୍ତି ବୋଲି ଖବରଆସିଲା । ଲଡୁ କିଶୋର ଶତପଥି ଝିଅଘରୁ ଜରୁରୀ ଖବର ଆସିଲା କହି ମେଳିଆପୁଟୁ ଚାଲିଗଲେ । ଧବଳେଶ୍ୱର ମିଶ୍ରଙ୍କ ସତରେ ନା ମିଛରେ କେଜାଣି ତାଙ୍କ ବଡ଼ ପିଉସୀଙ୍କ ମଇତ୍ରଙ୍କ କାଳ ହେଇଗଲା ବୋଲି ସେ ରହିପାରିଲେନି । ଆଉ ଜଣେ ଦିଜଣ ଘରେ ଥାଇ ମଧ ପଦାକୁ ବାହାରିଲେ ନାହିଁ । ଆସିବା ଭିତରେ ଆସିଲେ ବାନାମ୍ବର ରଥେ । ବାନାମ୍ବର ରଥ ସେମାନଙ୍କ ଦଳରେ ଥିଲେ ବି ଖାଣ୍ଟିକଥା କହନ୍ତି । ସରଳିଆ ଲୋକତ ସେମାନଙ୍କ ଭେଳିକିରେ ବେଳେ ବେଳେ ବହଲି ଯାଆନ୍ତି । ରଥେ ପ୍ରସଙ୍ଗଟି ସଭାରେ ଉତ୍‌ଥାପନ କରି ପରିଷ୍କାର ଭାବେ କହିଲେ ଦୁର୍ଯ୍ୟୋଧନ ଦେଇଥିବା ସଂବାଦ ସଂପୂର୍ଣ୍ଣ ମିଥ୍ୟା । ପଧାନ ଘର ବୋହୂ ଓ ତା ଦିଅର ଘାସ କାଟିବାକୁ ଯାଇ ଆମ୍ବଗଛ ତଳେ ଥକା ମାରୁଥିବା ଘଟଣାକୁ ଅତିରଂଜିତ କରି, ଚରିତ୍ର ଓ ବିଷୟକୁ ପରିବର୍ତ୍ତନ କରି କିଏ ଜଣେ ପାପିଷ୍ଠ ଏକଥା ଭିଆଇଛି । ଏଭଳି ଅପପ୍ରଚାର କରିବା ଘୋର ଅନ୍ୟାୟ । ଆହୁରି ଶୁଣାଯାଉଛି ଦୁର୍ଯ୍ୟୋଧନ ବୋଲି କେହି ନାହିଁ । ଏହା ଏକ ସଂପୂର୍ଣ୍ଣ କାଳ୍ପନିକ ଚରିତ୍ର । ଏଣୁ ଏଭଳି ଉଭଟ ପ୍ରସଙ୍ଗ ଉପରେ ଆଉ ବିତର୍କ ନକରି ବାଲାଜିଙ୍କ ଦର୍ଶନ ସାରି ଯେଝାଘରକୁ ଫେରିଯିବା ଶ୍ରେୟସ୍କର ହେବ ।

ଏତିକିରେ ସଭା ମଉଳି ଗଲା । ବାନାମ୍ବର ରଥେ ନୀଳାମ୍ବର ମିଶ୍ରେଙ୍କ ଠାରୁ ବୟସରେ ଦଶ ବର୍ଷ ବଡ଼ । ଏଣୁ ମିଶ୍ରେ ବି ସଂଭ୍ରମରେ ପାଟି ଫିଟେଇଲେ ନାହିଁ । ରଥେ ଆଦେଶିବା ଢ଼ଙ୍ଗରେ କହିଲେ ନୀଳାମ୍ବର ତୁ ବି ପାଗଳା ହେଲୁ । ଶଳେ ଅଳ୍ପାୟୁଷ ହେବେ । ଅଯଥା ମିଥ୍ୟା କହିଲେ, ପରନାରୀକୁ ଆକ୍ଷେପ କଲେ ସମୂଳେ ବିନାଶ ହେବେ । ମୁଁ ଚାଲିଲି' କହି ବାଡ଼ି ଠକ୍ ଠକ୍ କରି ମନ୍ଦିରରୁ ନିଷ୍କ୍ରାନ୍ତ ହେଲେ, ସିଧା ଘର ଲେଉଟିଲେ । ଗୌରୀର ଗୀତଗୋବିନ୍ଦ ସେବା ଥିଲା , ସେ ମନ୍ଦିର ଭିତରକୁ ଗଲା । ଗଣପତି ରାଜୁ ଓ ସୂର୍ଯ୍ୟନାରାୟଣ ଗୌରୀର ଗୀତଗୋବିନ୍ଦ ଗାନ ଶୁଣିବା ପାଇଁ ଗରୁଡ଼ ବଖରାରେ ହାତଯୋଡ଼ି ଠିଆହେଲେ । ଅଜା ଓ କାରିଗର ଦଳକ ଖୋଲା ତୁଳସୀ ଚାନ୍ଦନୀ ଟା ଉପରେ ବସି ପେଟପୂରା ବହେ ହସିଲେ । କହିଲେ ଶଳେଙ୍କୁ ପୋଖରୀ ପାଣି ହେଇଗଲା । ଏ ଯାକ କି ମୁରବି ବୋଲଉଛନ୍ତି !

ନିତ୍ୟା ଭାଗବତରୁ ଦି' ଚାରି ପଦ ମନକୁ ମନ ବୋଲି ଚାଲିଲା

ସର୍ପରେ ଜାତ କଲୁମୋତେ । ସ୍ୱଭାବ ଛାଡ଼ିବି କେମନ୍ତେ ?
ତାମସ ଗୁଣେ ଜାତକରି । ଗରଳେ କଲୁ ଅଧିକାରୀ
ତେଣୁ ମୁଁ କ୍ରୋଧ ଭର ହୋଇ । ସ୍ୱଭାବ ଛାଡ଼ି ନପାରଇ ॥

ଏଭଳି ବାରମ୍ବାର ଘଟିବାର କାରଣ କଣ ହୋଇପାରେ ? ଅଜା ବହୁ ଚିନ୍ତା କରି କରି ମଧ୍ୟ କୂଳ କିନାରା ପାଇଲେ ନାହିଁ । ନିତ୍ୟାତ ସମାଧାନରେ ପହଞ୍ଚିଯାଇଛି । ଏହାକେବଳ ଦୁଷ୍ଟ ଲୋକଙ୍କ ସହଜାତ ପ୍ରବୃତ୍ତି । ଏଥିରେ ବିଚଳିତ ନହୋଇ ଗୌରୀ ତାର ନିତ୍ୟନୈମିତ୍ତିକ ମନ୍ଦିର ସେବାକୁ ନିଷ୍ଠାର ସହିତ ସଂପାଦନ କରି ଚାଲିଲା ।

ତଥାପି ଗୌରୀ ଭିତରୁ କିଏ ଯିମିତି ତାକୁ କହିଲା, ଗୌରୀ ଏ ସ୍ଥାନ ତୋତେ ନିରାପଦ ନୁହେଁ । ତୋର ସାଧନାର ପୀଠ ଅନ୍ୟତ୍ର ସୁରକ୍ଷିତ । ସେଠାକୁ ତୋତେ ଯିବାକୁ ହେବ । ସେଠି ତୁ ସିଦ୍ଧିପ୍ରାପ୍ତ ହେବୁ । ନିତ୍ୟା ଏକଥାର ଗୁରୁତ୍ୱ ଉପଲବ୍ଧିକରିବାକୁ ଚେଷ୍ଟାକଲା ଓ ଅଜାଙ୍କ ସହିତ ପରାମର୍ଶକଲା । ଅଜା ଆସକ୍ତି ହେତୁରୁ ସେମାନଙ୍କୁ ଛାଡ଼ ବାଡ଼ କରିବା ପାଇଁ ଚାହୁଁ ନଥିଲେ । ଗୌରୀ ମଧ୍ୟ ଅଜାଙ୍କୁ ଏକୁଟିଆ ଛାଡ଼ି ସ୍ଥାନ ପରିବର୍ତ୍ତନ କରି ପଳେଇଯିବା ଉଚିତ ମନେ କରୁନଥିଲା । କିନ୍ତୁ ବାରମ୍ବାର ଏଭଳି ବୃଥା କଟାକ୍ଷ ଓ ସନ୍ଦେହର ଶରବ୍ୟ ହୋଇ ଜୀବନ ନିର୍ବାହ ଅପେକ୍ଷା ଏକ ଶାନ୍ତିପୂର୍ଣ୍ଣ ସ୍ଥାନରେ ରହି ସାଧନାରେ ବ୍ରତୀ ହେବା ଶ୍ରେୟସ୍କର । ଖୁଡ଼ୀଙ୍କ ଏକାକିନୀ ଜୀବନଯାତ୍ରା ହିଁ ସେମାନଙ୍କ ପାଇଁ ପ୍ରତିବନ୍ଧକ ହେବା ଭଳି ଦିଶିଲା । ପାରଳାଖେମଣ୍ଡିରେ ରହଣି ଆସନ୍ତା ଫଗୁଣକୁ ଦଶବର୍ଷ ହେବ । ମାୟା ମମତା ଜନ୍ମେଇବା ପାଇଁ ଏହା କମ୍ ସମୟ ନୁହେଁ । ରାଧାଗୋବିନ୍ଦ ମଠ, ବାଲାଜି ମନ୍ଦିର, ମହେନ୍ଦ୍ରତନୟା ନଦୀ ସବୁ ଯିମିତି ଗୌରୀ ଓ ନିତ୍ୟାନନ୍ଦକୁ ସେମାନଙ୍କ କୋଳରେ ବାନ୍ଧି ରଖିବା ପାଇଁ ଚେଷ୍ଟାକରୁଥିଲେ ।

ଅଜା ଗୌରୀର ସନ୍ତାନ ସନ୍ତତି କଥା ନେଇ ଯେତିକି ଚିନ୍ତିତ ଥିଲେ ଗୌରୀକୁ ନେଇ ଉଦ୍ଭବ ବିଭିନ୍ନ ସମସ୍ୟା ପ୍ରତି ସେତେଟା ବ୍ୟସ୍ତ ହେଉନଥିଲେ । ଚେର ମୂଳି, ଟୁଣ୍ଡକାଟୁଣ୍ଡକି ଗୌରୀ ଠାରେ ପ୍ରୟୋଗ କରି ମଧ୍ୟ ଅଜା କୃତକାର୍ଯ୍ୟ ହୋଇ ନ ପାରିବାରୁ ସେ ବାସ୍ତବରେ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ଲକ୍ଷ୍ମଣାଲତାର ମୂଳକୁ କ୍ଷୀର ସାଙ୍ଗରେ ବାଟି ଖୁଆଇଲା ପରେ ମଧ୍ୟ ଗର୍ଭ ମୋଟରୁ ଚମକିଲାନି । ଅଶ୍ୱଗନ୍ଧା, ଶତାବରୀ

ରସ, ଯାଠିମହୁ, ଦାରୁହରିଦ୍ରା, ବଜ୍ରମୂଳୀ, ରକ୍ତକଇଁ, ଦ୍ରାକ୍ଷା, କ୍ଷୀରକାକୋଳା, ଶ୍ୱେତ ଚନ୍ଦନ, ରକ୍ତୋତ୍ପଳ, ପ୍ରତ୍ୟେକରୁ ଦୁଇତୋଳା ଘିଅରେ ପାକକରି ଫଳକଲ୍ୟାଣ ଘୃତ ପ୍ରସ୍ତୁତ କରି ପ୍ରୟୋଗ ପରେ ମଧ ଗର୍ଭ ସଂଚରିଲାନି । ପୁଣି ପାରଦ, ଗନ୍ଧକ, ସ୍ୱର୍ଣ୍ଣ, ଲୌହ, ରୌପ୍ୟ ଓ ସ୍ୱର୍ଣ୍ଣମାକ୍ଷିକଭସ୍ମ, ବାସଙ୍ଗ ଓ ଭୃଙ୍ଗରାଜ ରସରେ ମର୍ଦ୍ଦନ କରି ପ୍ରତ୍ୟହ ଖୋଇଲା ପରେ ବି କିଛି ଫଳ ହେଲାନି । ଲାଗିଲା ଆୟୁର୍ବେଦର ସମସ୍ତ ବାଣ ନିସ୍ତ୍ରଭ ହେଇଗଲା । ଶେଷରେ ଅଜା ପରିହାସ କରି ନିତ୍ୟାକୁ ଶୁଣେଇ ଶୁଣେଇ କାନ୍ଥ ବାଡ଼କୁ କହିଲା ପରି କହିଲେ, ଖାଲି ମଠ, ମନ୍ଦିରରେ ପୁରାଣ ପଢ଼ିଲେ, ହେଟ ମଣ୍ଡପରେ ଶୟନ କଲେ, ମଳୟ ପବନ ଖାଇଲେ ପିଲା ଛୁଆ ସ୍ୱର୍ଗରୁ ଖସିବେନି । ସେଥିପାଇଁ ଗୃହସ୍ଥମାନଙ୍କୁ କାମଶାସ୍ତ୍ରରେ ନାନା ଉପଦେଶ ଦିଆଯାଇଛି । ସେ ସବୁ ପାଳନ କର । ପତ୍ନୀ ପ୍ରତି ଅନୁରକ୍ତ ହୁଅ । ଉଚ୍ଚାଟନ, ଲିଙ୍ଗ ନ୍ୟାସ, ସ୍ତମ୍ଭନ ସାଧନା କରି କୁଣ୍ଡଳିନୀକୁ ନାଭିରନ୍ଧ୍ରରୁ ସଂଚାଳନ କରି ମାସେ ଦି ମାସ କାହିଁକି ଛମାସ ବର୍ଷେ ପୁରାଣ ଫୁରାଣ ବନ୍ଦକରି ଶରୀରର ନବଦ୍ୱାର ରୁଦ୍ଧ କରି ନିଷ୍ଠାର ସହିତ ରଜୋ ଦର୍ଶନର ପଞ୍ଚମ ଦିନଠାରୁ ନବରାସ ରଚନା କର । ଶାନ୍ତନୁ ଋଷିଙ୍କ ପିତୁଳୀ ରମଣ ପ୍ରସଙ୍ଗ ସ୍ମରଣା କର । ପତ୍ନୀଙ୍କୁ ଦେଖିବା ମାତ୍ରେ ଅସମ୍ଭାଳ ହୁଅ । ଦିବାରାତ୍ର ଚେତନ ପିତୁଳୀମାନଙ୍କ କଥା ମନକୁ ନିଅ । ସ୍ୱର୍ଣ୍ଣ ତ୍ରିଭୁଜର ଅତଳ ଗର୍ଭରେ ରେତ ସ୍ଖଳନ କର । ବ୍ରହ୍ମ ରନ୍ଧ୍ର କଥା ହେଜ । ନିତ୍ୟା ଅଜାଙ୍କ ଉପଲକ୍ଷ ବୁଝେ କିନ୍ତୁ ମୁରୁକି ହସିଦେଇ କଥା ଆଡ଼େଇ ଦିଏ । ଭାବେ ଅଜା ବଡ଼ ବଗୁଲିଆଟେ ।

ଗୌରୀ ଅଜାଙ୍କ ବ୍ୟସ୍ତତା ହୃଦୟଙ୍ଗମ କରିପାରେ । ସେ କିନ୍ତୁ ଏ ବ୍ୟପାରରେ ନାଚାର । ତା ପାଇଁ ଏହା ଆଦୌ ସମସ୍ୟା ନୁହେଁ । ଦେବାର୍ପିତା କନ୍ୟା ସବୁବେଳ ପାଇଁ ଦେବଭୋଗ୍ୟା କନ୍ୟା । ଜନନୀ ହେବାର ମାନସିକତା ତା ଭିତରେ ଆସିବ ବା କୁଆଡୁ ? ହୁଏତ ରାଧାବିନୋଦ ଚାହାନ୍ତି ଗୌରୀ ଚିରକାଳ ମାନିନୀ ଭଳି, ପୁନର୍ନବା ପିତୁଳୀ ଭଳି ରହିଯାଉ । ତାର ଅଙ୍ଗଲତାରେ ନବ ପଲ୍ଲବର ସ୍ପର୍ଶ ସଦା ସର୍ବଦା ଅତୁଟ ରହୁ । ସେ ପୁଷ୍ପିତା ହେଉ । ନିତ୍ୟଗନ୍ଧା ତୁଳସୀ ପରି, ମଧୁମାଳତୀ ପରି, ଚଂପାପରି କାମିନୀ ପରି ମହକୁ ଥାଉ । ବରଣମାଳ ହେଇ ଗଳାରେ ଲମ୍ବୁଥାଉ । ଗୌରୀ ପାଇଁ ଠାକୁରଙ୍କ ଦେହର ସାନ୍ନିଧ ସ୍ପର୍ଶ ଓ ସଙ୍ଗ ରମଣ ଅପେକ୍ଷା ଅଧିକ ମଧୁମୟ । ଠାକୁର କେବେ ମଣିଷ ହେଇନପାରନ୍ତି । ସେ ସର୍ବଦା ପିତୁଳା । ପ୍ରତିମା । କିନ୍ତୁ ଗୌରୀ ପାଇଁ ତାହା କେବେ ପ୍ରତିବନ୍ଧକ ହେଇନି । ତା ପାଇଁ ପ୍ରତିମା ଚେତନ ଓ ପ୍ରାଣବନ୍ତ । ଗୌରୀ

ଏହା ହିଁ ଉପଲବ୍ଧି କରିଛି । ଠାକୁରତ କଟାକ୍ଷରେ, ଆଲିଙ୍ଗନରେ, ବନ୍ଧନରେ ରମଣ ହିଁ କରିଥାନ୍ତି , ରମଣ ସୁଖ ବିତରିଥାନ୍ତି । ନିଜେ ରାଧାବିନୋଦ ତ ପ୍ରେମର ପ୍ରତିମା । ଲୀଳାନିଧି । ରାଧା କଣ କେବେ ଗର୍ଭବତୀ ହେଇଛନ୍ତି ନା ଜନନୀ ହେଇ ଶିଶୁକୁ କୋଳରେ ଧରି ସ୍ତନ୍ୟ ପାନ କରେଇଛନ୍ତି । କୃଷ୍ଣ ତ ଶିଶୁ ହେଇ ତାଙ୍କ କୋଳ ମଣ୍ଡନ କରିଛନ୍ତି, ଦୁଗ୍ଧ ପାନ କରିଛନ୍ତି, ରତି ଆନନ୍ଦ ରାଧାଙ୍କୁ ଦେଇଛନ୍ତି । କୃଷ୍ଣଙ୍କ ଅଷ୍ଟସଖୀ ଲଳିତା ବିଶାଖା.. ସମସ୍ତେ ତ ଚିତ୍ରିତ ପିତୁଳୀ, କୃଷ୍ଣରମଣୀ । ସେମାନେ ଜନନୀଯୋଗ୍ୟା ବା ହେଇଥାନ୍ତେ କିମିତି ।

ଗୌରୀ ନିତ୍ୟାନନ୍ଦଙ୍କ ପତ୍ନୀ । ତା ଦେହରେ ଶତ ଯମୁନାର ଶିହରଣ, ଶତ କଦମ୍ବର ବାସ୍ନା, ତପ୍ତ କାଞ୍ଚନର କାନ୍ତି । ସେ ନିତ୍ୟାନନ୍ଦଙ୍କ ନିତ୍ୟାନନ୍ଦମୟୀ । ଗୌରୀ ଓ ନିତ୍ୟାନନ୍ଦ କଳ୍ପଲୋକର ଅଲଘ୍ୟ ସୀମାହୀନତା ଭିତରୁ ଅବତରନ୍ତି ବାସ୍ତବତାର ଅନ୍ତରଙ୍ଗ ବେଷ୍ଟନୀ ଭିତରକୁ । ଦେହରେ ବିହରଣ କରନ୍ତି । ବିଚରଣ କରନ୍ତି । ପରସ୍ପରକୁ ଖୋଜନ୍ତି । ଚିହ୍ନନ୍ତି । ଆଲିଙ୍ଗନର ବଲ୍ଲରୀରେ ଛନ୍ଦି ଯାଆନ୍ତି । ଜଣେ ଜଣକ ଭିତରେ ହଜି ଯାଆନ୍ତି । ଦୁଇ ଦେହ ଏକ ହେଇଯାଏ । ଅନୁଭବ ବି । କିନ୍ତୁ ରମଣ ଶୀର୍ଷରେ ପହଞ୍ଚି ଗୌରୀ ରାଧାବିନୋଦଙ୍କୁ ହିଁ ସ୍ମରଣାକରେ । ନିତ୍ୟାନନ୍ଦ ରାଧାବିନୋଦ ପ୍ରତିମାରେ ରୂପାନ୍ତରିତ ହେଇପଡ଼ନ୍ତି । ଏଭଳି ଯୁଗଳରାସ ଭିତରେ ଯୁଗ ଯୁଗ ରହିଯିବାପାଇଁ ଗୌରୀ ମନାସେ । ସେ ସଂସାର, ସନ୍ତାନ ଶେଷରେ ନିଜ ଦେହ, ନିଜର ଅସ୍ତିତ୍ୱ ମଧ୍ୟ ଭୁଲିଯାଏ । ଗୌରୀ ବୋଲି ଯେ ସତ୍ତାଟିଏ ଅଛି ତାହାର ବି ବିସ୍ମରଣ ହୁଏ । ନିତ୍ୟାନନ୍ଦ କିଏ ମନେ ପଡ଼େନା, ଖାଲି ମନେ ପଡ଼ିଯାଉଥାଏ ବଂଶୀର ଅନାହତ ନିତ୍ୟସ୍ୱନ ।

ଇଏତ ଗୌରୀ । ଏଭଳି ଆପାର୍ଥିବ ଅନୁଭବ ଭିତରେ ଗର୍ଭ ସଂଚରିବ କିମିତି ? ନା ଅଜା, ନା ନିତ୍ୟାନନ୍ଦ ଏହି ଗଭୀର ପ୍ରେମର ପ୍ରକ୍ରିୟା ଭିତରକୁ ଯାଇଛନ୍ତି । ନା ବୁଝିଛନ୍ତି ଦେବ ସମର୍ପିତା କନ୍ୟାର କୁଣ୍ଠା । ଦ୍ୱୈତ ଭାବରେ ପ୍ରେମ ଆରମ୍ଭିବା, ଦ୍ୱୈତରୁ ଅଦ୍ୱୈତ ହେବାକୁ ଚେଷ୍ଟିତ ହେବା ଏବଂ ଅନୁଭୂତିର ଚରମ ପର୍ଯ୍ୟାୟରେ ନିଜର ସମଗ୍ର ସତ୍ତାକୁ ହଜେଇ ଦେଇ ଏକତ୍ୱରେ ଲୀନ ହୋଇଯିବା ହିଁ ପ୍ରେମର ଚରମ ଉତ୍କର୍ଷ । ଗୌରୀ ଶ୍ରୀକୃଷ୍ଣଙ୍କ ମାନସ ପିତୁଳୀ । ନନ୍ଦନବନର ପାରିଜାତକୁ ଆଘ୍ରାଣ କରିବା କେବଳ ଦୈହିକ ଅନୁଭୂତି ନୁହେଁ । ଏଥିରେ ଥାଏ ନାନ୍ଦନିକତାର ସ୍ୱର୍ଗୀୟ

ଉଉରଣ । କାମନା ରହିତ ନହେଲେ ରମଣ ସମ୍ଭବ ନୁହେଁ । ପରମାତ୍ମା ସହିତ ଆତ୍ମାର, ଈଶ୍ୱର ସହିତ ଜୀବର ସଂଯୋଗ ହିଁ ରମଣ । ସେହି ଅନିର୍ବଚନୀୟ ରସାନନ୍ଦର ଆସ୍ୱାଦନ ହିଁ ସଂଭୋଗ । ରସ ସଂଭୋଗର ଚରମ ଉତ୍କର୍ଷ ହିଁ ରମଣ ।

ଗୌରୀ ତ ସଦା ସର୍ବଦା ବ୍ରହ୍ମାର୍ପିତ ଆତ୍ମାଭଳି ରହୁଥିଲା । ଏଣୁ ତାର ସନ୍ତାନ ସନ୍ତତି ପାଇଁ ସ୍ୱତନ୍ତ୍ର ପୂଜା ଅନୁଷ୍ଠାନର ଆବଶ୍ୟକତା ଅଜା ଉପଲବ୍ଧ କଲେ ନାହିଁ । ନିତ୍ୟାନନ୍ଦର ସାଂସାରିକ ଅଭାବ ବୋଧ ନାହିଁ , ଅନୁଶୋଚନା ବି ନାହିଁ । ସେ ' ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' ଭଳି ଏକ ରୁଚିହୀନ ଓ ଅର୍ଥହୀନ ଅଭିବ୍ୟକ୍ତିକୁ ସାକାର କରିବା ପାଇଁ କଣ ଗୌରୀକୁ ଗ୍ରହଣ କରିଛି ଯେ ସେ ତାର ଦୈନନ୍ଦିନ ହିସାବନିକାସ କରିବ । ଗୌରୀକୁ ନିତ୍ୟାନନ୍ଦ ନିଜର ପ୍ରାଣଭଳି ଭଲପାଏ । ନିଜର ପ୍ରାଣଶକ୍ତି, ଚେତନଶକ୍ତି ବୋଲି ଜ୍ଞାନ କରେ । ସେ ଭାବେନା ସେ ଗୌରୀଠାରୁ ଭିନ୍ନ । ସେ ଗୌରୀ ଭିତରେ ସଦା ସର୍ବଦା ତଲ୍ଲୀନ ହେଇ ଯାଇଥାଏ । ଶୟନେ, ସ୍ୱପନେ ଜାଗରଣେ ସେ ଗୌରୀର ରୂପକୁ ହିଁ ସଂଦର୍ଶନ କରେ । ସତ୍ତାକୁ ଉପଲବ୍ଧକରେ । ସେ ଦେଖେ ଗୌରୀର ସ୍ତନ ଯୁଗଳ ବିନ୍ଧ୍ୟାଚଳ ଭଳି ଶିଖରି ଯାଇଛି । ତାର ଦେହ ଯୋଜନ ଯୋଜନ ବିସ୍ତାରି ଯାଇଛି । ତା ଯୋନିରୁ ପାବନ ଗଙ୍ଗା ପ୍ରବାହିତ ହେଉଛି । ତାର ଚକ୍ଷୁ, ଚନ୍ଦ୍ର ସୂର୍ଯ୍ୟଭଳି ଦ୍ୟୁତି ବିକିରଣ କରୁଛନ୍ତି । ନିତ୍ୟା ତ୍ରସ୍ତ ହେଇଯାଏ । ସେ ଗୌରୀକୁ ଆଉ ଚାହିଁ ପାରେନି । ସେ କାକୁତିରେ ସ୍ତୁତି କରେ । ସେ ଗୌରୀକୁ ଦେବୀ ରୂପେ କଳ୍ପନା କରେ । କହେ, ତମେ କମନୀୟ ହୁଅ, ନମନୀୟ ହୁଅ, ସ୍ନିଗ୍ଧ ହୁଅ ଓ ଭୋଗ୍ୟା ହୁଅ ।

ଏଭଳି ଅଲୌକିକ ଭାବନା ଭିତରେ କଣ ସନ୍ତାନ କାମନା ସମ୍ଭବ? ନା ସନ୍ତାନ ପ୍ରଜନନ ସମ୍ଭବ ? ଲାଗେ ସେ ତ ନିଜେ ଗୌରୀର ସନ୍ତାନ, ଅଜା ବି । ବନମାଳୀ ଖାଡ଼ଙ୍ଗାର ବଂଶଲତା ଆଉ ପଲ୍ଲବିତ ହେଲେ କେତେ ନହେଲେ ବା କେତେ । ଶେଷରେ ନିତ୍ୟାନନ୍ଦ କୁଳର ଶେଷ ଅବତାର ଭଳି ମୂର୍ତ୍ତିଟିଏ ହେଇ ଜଡ଼ହେଇ ଗଲେ କେତେ !

ବିସଦୃଶତା ଓ ଅସଂଲଗ୍ନତା ବେଳେବେଳେ ସ୍ଥାନର କୁପ୍ରଭାବରୁ ହୋଇପାରେ ବୋଲି ଅଜା ଶେଷରେ ସ୍ଥିର କରିନେଲେ । ସ୍ଥାନ କାଳ ପାତ୍ରର ମଧୁର ସମନ୍ୱୟ ହେଲେହିଁ ଘଟଣା ଘଟେ । ଭୂମି ପାଇଁ, ପାତ୍ର ପାଇଁ, କାଳ ପାଇଁ ଯୋଗ୍ୟ

ହେଲେ ତାର ଦିବ୍ୟ ପ୍ରଭାବ, ଭୂମି ଆବୋରି ରହିଥିବା ମଣିଷ ପଶୁପକ୍ଷୀ ଜୀବଜନ୍ତୁମାନଙ୍କ ଉପରେ ପଡ଼େ । ସମସ୍ତେ ସ୍ନେହସିକ୍ତ ହୋଇଯାଆନ୍ତି । ଜଳ ପବନ ସବୁ ଯକ୍ଷଚରୁରେ ବଦଳିଯାଆନ୍ତି ଓ ଗର୍ଭରେ ଫଳ ସଞ୍ଚରି ଦିଅନ୍ତି । ଏଣୁ ନିତ୍ୟାନନ୍ଦ ଓ ଗୌରୀର ସ୍ଥାନ ପରିବର୍ତ୍ତନ ଅନିବାର୍ଯ୍ୟ । ଖାଲି ତ ସ୍ଥାନ ପରିବର୍ତ୍ତନ କଥା ଚିନ୍ତା କରି ଦେଲେ ହେବନି । ପରିବର୍ତ୍ତିତ ଭିତରେ ବଂଚିବାର ପାଥେୟ ଯୋଗାଡ଼ କରିବାକୁ ହେବ । ଗୌରୀ ଓ ନିତ୍ୟା ପାରଳାଖେମଣ୍ଡିରେ ବେଶ୍ ଭଲରେ ଚଳିଯାଉଛନ୍ତି । ନିତ୍ୟାର ପୁରାଣ ପଢ଼ା ଓ ଗୌରୀର ଗୀତଗୋବିନ୍ଦ ଗାନ ଉଭୟ ଦେବସେବା । ଏଥିରୁ କମ୍ ହେଲେ ସ୍ଥାନାନ୍ତର ପାଇଁ ପ୍ରସ୍ତାବ ଦେବା ହିଁ ଅବାଞ୍ଛନୀୟ । ଅନ୍ୟାୟ ।



ମଠମ୍ମାଞ୍ଝେଲି ପାରଳାଖେମଣ୍ଡିଠାରୁ ଅଳ୍ପଦୂରରେ ଅବସ୍ଥିତ ଏକ ଜନପଦ । ଏଠାରେ ଥିବା ମଠର ପ୍ରତିଷ୍ଠା ଅପାର । ମଠର ଭୂସଂପତ୍ତି, ଗୋ ସଂପତ୍ତି ଅମାପ । ଧନ ଜନ ଗୋପ ଲକ୍ଷ୍ମୀରେ ଭରା । ମହନ୍ତ ବୃଦ୍ଧ । ସେ ଉତ୍ତରାଧିକାରୀ ଖୋଜୁଛନ୍ତି । ଆଗରୁ ଯାହାକୁ ନିଜର ଉତ୍ତରାଧିକାରୀ ବୋଲି ଜ୍ଞାନ କରି ଦୁଧ ଛେନା ଲହୁଣୀ ଅଧାମ ଭୁଞ୍ଜାଉଥିଲେ ସେ ଶେଷରେ ତାଙ୍କୁ ହିଁ ପର କରିଦେଇ ଚାଲିଗଲା । ଅଲକ୍ଷଣୀଟାର ପାଲରେ ପଡ଼ିଗଲା । ନିଶାପାଣି କଲା । ଜାତି ଭ୍ରଷ୍ଟ ହେଲା । କୁଳ ସମ୍ମାନ ହରେଇଲା । କି ମୋହିନୀ କଲା କେଜାଣି ସେ ମାଈ, ସବୁ ତ ତ୍ୟଜିଦେଲା, ତୁଚ୍ଛ କରିଦେଲା । ଧନ ସମ୍ପତ୍ତି ଆଡ଼ମ୍ବର ଓ ପରଂପରା । ସ୍ନେହର ଓ ସମ୍ପର୍କର ଡ଼ୋରି ଛିଣ୍ଡେଇ ଦେଇ ଚାଲିଗଲା । ସେ ଥିଲା ପୁତୁରା, ନିଜ ସାନ ଭାଇର ବଡ଼ ପୁଅ । ମହନ୍ତେ ପ୍ରଥମେ ବିଚାରିଥିଲେ ନିଜ ବଂଶର ପିଲା ତ, ଭଲ ହେବ, ପରଂପରା ରଖିବ ମଠକୁ ସମ୍ଭାଳିବ, ନାଁ ଆଣିବ , ସୁଖ ପାଇବ, ଶାନ୍ତି ପାଇବ । ଅଯୋଗ୍ୟ ସବୁ ସାରିଦେଲା । ଛି ! ଆଉ ନୁହେଁ । ମହନ୍ତଙ୍କ ମନ ପୂରା ପୂରି ଭାଙ୍ଗିଯାଇଛି । ମଠ ସମ୍ପତ୍ତି ତ ଠାକୁରର । ସମସ୍ତେ ତ ଠାକୁରଙ୍କ ସନ୍ତାନ । ଠାକୁରଙ୍କ ପରିବାରର ଲୋକ । ପୁତୁରା କିଏ, ଅନ୍ୟ ପିଲା ବା କିଏ ? ତେଣୁ ସେ ଖୋଜୁଛନ୍ତି ଭଲ ପିଲାଟିଏ । ପିଲାଟିର ନିଷ୍ଠା ଥିବ । ଗୁଣର ହେଇଥିବ । ସଂସ୍କୃତ ପଢ଼ିଥିବ । ଶାସ୍ତ୍ରରେ ପ୍ରବେଶ ଥିବ । ଅଷ୍ଟାଦଶ ପୁରାଣ ଜାଣିଥିବ । କର୍ମକାଣ୍ଡରେ ଧୁରୀଣ ଥିବ । ନିର୍ଲୋଭ, ନିର୍ମଳ ଚରିତ୍ରର ପିଲା ହେଇଥିବ । ଗୃହସ୍ଥ ହେଲେ ବି ସଂଯମ ଆଚରିବ । ବ୍ରହ୍ମଚର୍ଯ୍ୟ ପାଳନ କରିବ ।

ମାଞ୍ଝେଲି ମଠ ମହନ୍ତ ଉତ୍ତରାଧିକାରୀ ଖୋଜୁଥିବା ଖବର ନୀଳାମ୍ବର ମିଶ୍ରଙ୍କ କାନରେ ପଡ଼ିଲା । ଆଲୋଚନା କଲେ , ଏତେ ବଡ଼ ବ୍ୟବସ୍ଥା ସମ୍ଭାଳିବା ପାଇଁ କେବଳ ଦାର୍ଶନିକତା ନୁହେଁ ବୁଦ୍ଧି, ନିଷ୍ଠା ଓ କୌଶଳର ମଧ୍ୟ ପ୍ରୟୋଜନ । ଜନକ ଋଷି ଭଳି ନିର୍ଲିପ୍ତ ହେବ । ମଠକୁ ଭାବିବ ନିଜର ସାମ୍ରାଜ୍ୟ । ଶୁକମୁନି ଭଳି ବିଚକ୍ଷଣ ହେବ, ଶାସ୍ତ୍ର ଚର୍ଚ୍ଚା କରିବ , ଜ୍ଞାନ ବିତରିବ । ଭୀଷ୍ମଙ୍କ ଭଳି ଗମ୍ଭୀର ହେବ । ଧୈର୍ଯ୍ୟବାନ ହେବ , ଉପଦେଶ ଦେବ । କୁବେର ଭଳି ଯତ୍ନବାନ ହେବ । ସବୁ କଥା ସମ୍ଭାଳିବ । ଧନର ରକ୍ଷକ ହେବ । ଯୁଧିଷ୍ଠିରଙ୍କ ଭଳି ନୀତିବାନ ହେବ, ଧର୍ମ

ଆଚରିବ । କର୍ଣ୍ଣ ଭଳି ବଚନ ସିଦ୍ଧ ହେବ, ଦାନୀ ହେବ । ଅଜା ଭାବିନେଲେ ସେ ହିଁ ଏକମାତ୍ର ଏ ସବୁ ମହତ ଗୁଣର ଅଧିକାରୀ । ତା ସାଙ୍ଗରେ ପୁଣି ନିଜର ବିପତ୍ନୀକ ଜୀବନକୁ ଯୋଡ଼ି ଦେଇ ସ୍ଥିର କରିନେଲେ ସେ ହିଁ ଏସବୁ କଥାକୁ ପାରିବେ । ସେ ଏ କଳାକୁଞ୍ଜ ପୁଞ୍ଜ ଛାଡ଼ିଦେଇ ମଠର ମହନ୍ତ ହେଇ ଜୀବନର ବଳକା ସମୟତକ କଟେଇ ଦେବେ । ପିଲା ଦିଜଣ ତ ବଡ଼ ହେଇଗଲେଣି, ବାହାଚୂଡ଼ା ତ ସରିଗଲାଣି । ପାରିବାର ତ ହେଲେଣି । ତାଙ୍କକଥା ଏଥର ସେ ବୁଝିନେବେ । ସେ ନିଶ୍ଚିନ୍ତ ରହିପାରିବେ ଏଣୁ ସେ ନିଶ୍ଚିନ୍ତ । ହରି ନାମ ସ୍ମରଣା କରି ମଠାନ୍ନ ଗଣ୍ଡେ ଖାଇ ଶେଷରେ ସେଇଠି ହିଁ ଆଖି ବୁଜିବେ ।

କଥାରେ କହିଦେଲା ପରି ସଂସାର କଣ ଏଡ଼େ ସହଜ ବ୍ୟାପାର ? ବଡ଼ପୁଅ ଗୋବିନ୍ଦର ପୁଅଟା ବେଶ୍ ଗୁଲୁଗୁଲିଆ ହେଇଛି । ପୁଅତ ସମ୍ବଲପୁର ଆଡ଼େ ବିଡ଼ିଓ ଅଛି । ଛୁଟିରେ ବେଳେ ଅଧେ ଘରକୁ ଆସିଲେ ନାତିଟା ଦେହରେ ଘସି ହେବ , ଜେଜେ ଜେଜେ ହେବ । କାନ୍ଧରେ ଲାଉହେବ । ଦଉଡ଼ି ଆସି ପେଟ ଉପରେ ତେଣ୍ଡା ତାଇଁ କରିବ । ଏବେ ପୁଣି ସାନ ବୋହୂର ପ୍ରଥମ ଗର୍ଭ ହେଇଛି । କହିଛି ପ୍ରସବ ବେଳକୁ ଏଇଠିକି ଆସିଯିବ । ଖରାଦିନେ କଟକ ଭୁବନେଶ୍ୱର ଆଡ଼େ ଗରମ । ଏସବୁ ଜଂଜାଳରୁ ମୁକ୍ତ ହେବା ପାଇଁ ଅଜା ଯେତେ ଚେଷ୍ଟାକଲେ ବି କଣ ସମ୍ଭବ ହେଇପାରୁଛି । ବଡ଼ ପୁଅକୁ ଏଥର ମହନ୍ତ ହେଇ ମଠ ଆଡ଼େ ପଳେଇଯାଇ ରହିବା କଥା କହିଲେଯେ ଏଡ଼େ ପାଟିଟେ କଲା । କହିଲା, ଦିନାକେତେ ତ କଳାକୁଞ୍ଜ କଳାକୁଞ୍ଜ ହେଲ, ଏବେ ପୁଣି ମହନ୍ତ ପାଇଚି କିସ । ଏସବୁ ଛାଡ଼, ଚୁପ୍‌ଚାପ୍ ଘରେ ବସ ।

ମିଶ୍ରେ ନିତ୍ୟାନନ୍ଦ କଥା ଗଭୀର ଭାବେ ଚିନ୍ତାକରୁଛନ୍ତି । ଭାବୁଛନ୍ତି ପିଲାଟା ପାରିବ । ସତ୍ୟନିଷ୍ଠ, ସଚ୍ଚୋଟ ପିଲାଟେ ତ । ଗୌରୀ ସାଙ୍ଗରେ ରହିଲା ଦିନରୁ ତା ବ୍ୟକ୍ତିତ୍ୱର ଯଥେଷ୍ଟ ବିକାଶ ହେଲାଣି । ଥରେ ଜାଣିଗଲେ ଚଳେଇନେବ । ମହନ୍ତଙ୍କ ମିଶ୍ରଙ୍କ ଉପରେ ଅଖଣ୍ଡ ବିଶ୍ୱାସ । ସେ ମିଶ୍ରଙ୍କ ଶ୍ୱଶୁର ଘର ପଟ ପରିବାରର ଲୋକ । ଅଜାଙ୍କ ପ୍ରତି ତାଙ୍କର ତେଣୁ ଦରଦ ଅଛି । ଅଜା ତ ବହୁ ଦିନରୁ ବିପତ୍ନୀକ । ସେ ଅଜାଙ୍କୁ ବାଧ୍ୟ କରି ଗାଦିରେ ବସେଇଦେବା ଲୋକ ଯେ ମାତ୍ର, ମିଶ୍ରେ ସଂସାର ଭିତରେ ବନ୍ଧା, ପିତୁଳୀ ସାଙ୍ଗରେ ବନ୍ଧା । ସଂସାର ତାଙ୍କୁ ସହଜେ କଣ ଛାଡ଼ିବ ଯେ ସେ ଆସିପାରିବେ ? ଗାଁଗଣ୍ଡା ସହରବଜାର ବ୍ରହ୍ମାଣ୍ଡ ଯାକ ତ ବୁଲୁଛନ୍ତି । ସେ ଯାହା

ବାଛିଦେବେ ମହନ୍ତେ ବାରଣା ପର୍ଯ୍ୟନ୍ତେ ମାନି ଯିବେ। ବାକିଟା ମନେଇ ଦେଲେ ମଧ୍ଯ ଚଳିଯିବ।

ଅଢା ଗୌରୀ ପାଖରେ ପ୍ରସ୍ତାବଟି ବାଢ଼ିଲେ। ଗୌରୀ ଭାବିଲା ଠାକୁରହିଁ ଅଢାଙ୍କ ମାଧ୍ୟମରେ କଥାଟି କୁହାଉଛନ୍ତି , ପ୍ରସଙ୍ଗ ବାଢ଼ିଛନ୍ତି। ଏଣୁ ଗୌରୀକୁ ଅଢାଙ୍କ କଥାଟି ଖୁବ୍ ପସନ୍ଦ ଆସିଲା। ପ୍ରାଣକୁ ଛୁଇଁଲା। ଗୌରୀ ଅଢାଙ୍କୁ ଏତିକି ପ୍ରଶ୍ନକଲା ଗୃହସ୍ଥ ଜଣେ କଣ ମହନ୍ତ ଗାଦିରେ ବସିପାରିବ ? ଅଢା କହିଲେ ନିତ୍ୟାଦ ସନ୍ୟାସୀ ଠୁଁ ବଳି। ସେ ଜଳଭିତରେ ଥିଲେ ମଧ୍ୟ ଜଳ ତାକୁ ସ୍ପର୍ଶ କରେନି। ନିତ୍ୟାଦ ଦଶ ପନ୍ଦର ବର୍ଷ ହେଲା ଘରସଂସାର କଲାଣି। ସେ କଣ କେବେ ଗୃହସ୍ଥ ଭଳି ରହିଛି ? ଯେତେ ବେଳେ ଆବଶ୍ୟକ ହେଉଛି ତାକୁ ସେଥିରୁ ନିବୃତ୍ତ ହେବାକୁ ବେଶି ସମୟ ଲାଗିବନି। ଅଢା ଗୌରୀକୁ କହିଲେ ତୁ ତ ସବୁ ଜାଣିଛୁ। ତୁ ତ ହେଲୁ ମୂଳ, ତୁ ଯିମିତି ମୋଡ଼ିବୁ ସେ ମୋଡ଼ି ହେବ। ନିତ୍ୟାନନ୍ଦ ନିତେଇ ଭଳିଆ ରହିବ ଆଉ ତୁ ରାଧାଙ୍କ ଭଳି ତାର ସେବାକରିବୁ। ଏଣୁ ମନ କାନ ଦେଇ ହେଜ। ଏଥିରେ ମଧ୍ୟ ଏକ ପ୍ରକାର ସାତ୍ତ୍ୱିକ ଆସକ୍ତି ଅଛି, ଅପାର୍ଥିବ ବୈରାଗ୍ୟ ବି ଅଛି। ସୁଖ ଅଛି, ଶାନ୍ତି ଅଛି। ଆନନ୍ଦ ଅଛି। ଭଗବତ୍ ପ୍ରେମ ଅଛି। ନିଜେ ଗ୍ରହଣ କରିବାର ଓ ଅନ୍ୟକୁ ଗ୍ରାହ୍ୟ କରେଇବାର ଔଦ୍ଧତ୍ୟ ମଧ୍ୟ ଅଛି। ତୁମ ଦୁହିଁଙ୍କ ପାଇଁ ଏହା ଜୀବନର ଆହୁରି ମହତ୍ତର ସମ୍ଭାବନା ଆଣିଦେବ।



ମାଞ୍ଚେଲି ମଠରେ ପହଞ୍ଚିଲା ପରେ ସେମାନଙ୍କ ଜୀବନ ଧାରା ବଦଳିଗଲା । ନିତ୍ୟାନନ୍ଦ ମହନ୍ତ ଗାଦିରେ ଆସୀନ ହେବା ପୂର୍ବରୁ ମୁଖ୍ୟ ଚେଲା ଭୂମିକାରେ ରହି ମଠର ଆଭ୍ୟନ୍ତରୀଣ ବ୍ୟବସ୍ଥା ସହିତ ପରିଚିତ ହେବାକୁ ଲାଗିଲା । ମଠର ପରଂପରା ସହିତ ମେଳଖୁଆଇ ସେ ତାର ଘନକୃଷ୍ଣ ଦାଢ଼ିକୁ କାଟି ପକେଇଲା । କପାଳରେ , ଭ୍ରୂମଧ୍ୟରେ, ନାସାଗ୍ରରେ, ବାହୁରେ ଓ ବକ୍ଷରେ ହରିତିଳକ ନିୟମିତ ଧାରଣ କଲା । ସେତ ବୈଷ୍ଣବ ଭଳିଆ ଆଗରୁ ଆଚରଣ କରୁଥିଲା । ଏଣୁ ଏହାକୁ ଏବେ ଆଉ ଚାରିତ୍ରିକ ପରିବର୍ତ୍ତନ କଣ କହିବା । ସେ ଯାହା ଆଉ ଟିକିଏ ଅଧିକା ସଂଯତ ଓ ଭଦ୍ର ଦେଖାଗଲା । ଗୌରୀ ମହନ୍ତ ମହାରାଜଙ୍କ ସେବାକାରିଣୀ ଭାବେ, ମଠ ଭିତରେ ଜଗନ୍ନାଥ ମନ୍ଦିରର ଗୀତଗୋବିନ୍ଦ ସେବିକା ଭାବେ, ରାଧାକୃଷ୍ଣ ମନ୍ଦିରରେ କୃଷ୍ଣଙ୍କ ଅଙ୍ଗସେବିକା ଭାବେ ନିଜର ଉପସ୍ଥିତିକୁ ଜାହିର କରିବାକୁ ଲାଗିଲା । ମହନ୍ତ ଅଶିପର ବୟସର ପାକଲା ମଣିଷ । ସାଧାରଣ ମଠ ମହନ୍ତଙ୍କ ଭଳି ଗଢ଼ଣ ନୁହେଁ , ଚରିତ୍ର ବି ନୁହେଁ । ପତଳା, ସାବଲୀଳ ଅଙ୍ଗ, ମଜା ପିତଳଡ଼ାଳ ଭଳି ଦେହର ରଙ୍ଗ, ସ୍ନେହଶୀଳ ବ୍ୟକ୍ତିତ୍ୱ ଓ ଦୀପ୍ତି ଉକୁଟୁଥିବା ମୁହଁ । ପରିଷ୍କାର ଉଜ୍ଜ୍ୱଳ ଆଖି । ତେଜୋମୟ ପୁରୁଷ ଭଳି ହାବଭାବ । ଦୈନନ୍ଦିନୀରେ ସବୁ କର୍ମରେ ସଅଳ ଓ ସତ୍ୟନିଷ୍ଠ । ମଠର ସବୁକଥା ଧୈର୍ଯ୍ୟର ସହ ବୁଝନ୍ତି । ଗାଦିରେ ଉପବିଷ୍ଟ ହେଇ ଭକ୍ତଙ୍କୁ ପ୍ରବଚନ ଦିଅନ୍ତି ।

ମଠଟି ଛ'ପୁରୁଷ ତଳର । ଏବର ବିଜେ ମହନ୍ତ ଶ୍ରୀ ହରେକୃଷ୍ଣଦାସ, ତାଙ୍କ ଗୁରୁ ଶ୍ରୀ ରାମାନୁଜ ଦାସ, ତାଙ୍କ ଗୁରୁ ଶ୍ରୀ ରାମକୃଷ୍ଣ, ତା ଉପରକୁ ଶ୍ରୀ ନିତ୍ୟାନନ୍ଦ ଓ ଶ୍ରୀ ଦିବାକର ହେଇ ଗୁରୁ ପରଂପରାର ଶୀର୍ଷରେ ଅଛନ୍ତି ଏ ମଠର ପ୍ରତିଷ୍ଠାତା ଶ୍ରୀ ଭାବାନନ୍ଦ ଦାସ । ମଠ ଯେ ଏକା ପୁରୁଷକେ ଏତେ ବଡ଼ ହେଇ ଗଢ଼ିହେଇ ଯାଇଛି ତାହା ନୁହେଁ , ପୁରୁଷ ପୁରୁଷ ଧରି ଗୁରୁମାନଙ୍କ ଚେଷ୍ଟା, ନିଷ୍ଠା ଓ ସେମାନଙ୍କ ନିସ୍ୱାର୍ଥ କର୍ମ ସାଧନା ବଳରେ ମଠ ବିକଶି ଯାଇଛି । ବ୍ୟାପିଯାଇଛି । ମଠର ସ୍ଥିତିବାନ୍ ସଂପତ୍ତି ଭିତରେ ଜଗନ୍ନାଥ ମନ୍ଦିର, ରାଧାକୃଷ୍ଣ ମନ୍ଦିର, ଭଦ୍ରବଖରା, ଗାଦି ବଖରା, ଭଜନ କୋଠି, ବେହରଣ ମେଲା ମଣ୍ଡପ, ସ୍ନାହାନ ମଣ୍ଡପ ଓ ମେଲା ଚାନ୍ଦନୀ । ଦୁଇ ଠାକୁରଙ୍କ ପାଇଁ ଦୁଇ ଖନ୍ଦାଘର, ସରଘର, ମହନ୍ତଙ୍କ ନିଜ ଖଞ୍ଜା, ମାତା ଓ ସେବିକା

ମାନଙ୍କର ଦଶ ବଖରିଆ ଏକ ସାଉଡ଼ି ଘର । ଟହଲିଆ, ଖୁଣ୍ଟିଆ, ଚୋପଦାର ଚାକରବାକର, ହଳିଆ, ଆପଟ ଗଉଡ଼ଙ୍କ ଘର ଛାଡ଼ି ବାହାର ଅଗଣା କଣେ କଚେରିଘର, ଧାନଘର, ଭିତର ଅଗଣାରେ ଧ୍ୟାନ ମନ୍ଦିର ଓ ଚେଲାମାନଙ୍କ ଆସ୍ଥାନ ଘର । ମଠ ବାଡ଼ି ପଟେ ଉପବନ ଭିତରେ ମହୋତ୍ସବ ମେଢ଼ା, ତୁଳସୀବଣ, ଚମ୍ପାଧାଡ଼ି, ମାଳତୀଲଟା, କଦମ୍ବବେଢ଼ା, ମଲ୍ଲି, ଯୂଇଜାଇର ଖେଟା । ଉପବନ ଭିତରଟା ସକାଳୁ ସଂଧ୍ୟା ରାତି ଦିନ ସୁବାସରେ ମହକୁଥାଏ । ଚଢ଼େଇ ଚିରୁଗୁଣି ସବୁବେଳେ କୋଳାହଳ ମୟ କରିରଖିଥାନ୍ତି ।

ମଠକୁ ଘେରେଇ ହେଇ ରହିଛି ମେଘନାଦ ପାଚେରି, ଭିତରେ ଖେଟା ଖେଟା ହେଇ ଦିଓଟି ବାଡ଼ । ବାହାର ମେଲା, ଭିତର ମେଲା । ବାହାର ମେଲା ପର୍ଯ୍ୟନ୍ତ ସର୍ବସାଧାରଣଙ୍କ ପ୍ରବେଶ କିନ୍ତୁ ତା ପରେ କଟକଣା । ଦି ମନ୍ଦିର, ଭଜନ କୋଠୀ, ମହନ୍ତ ଗାଦି ବାହାର ମେଲାରେ । ମନ୍ଦିର ଦୁଇଟି ବାହାର ମେଲାପଟେ । ମେଲା ଅଗଣା ଏତେ ପ୍ରଶସ୍ତଯେ ପାଞ୍ଚଶ ହଜାରେ ଲୋକ ଏଇଠି ଏକାଠି ଜମା ହେଇ ପାରିବେ, ଉଦଣ୍ଡ କୀର୍ତ୍ତନ କରିପାରିବେ । ଭିତର ମେଲା ଆଉ ଏକ ପୃଥିବୀ । ଭଣ୍ଡାରଘର, ଗନ୍ତାଘର ସେଇଠି । ଏଇଠି ଠିଆହେଲେ ଲାଗିବ ଏଭିତରେ ପୃଥିବୀଟା ସଂପୂର୍ଣ୍ଣ ନିଆରା । ଆସକ୍ତି ମାଡ଼ିବସିବ । ଏହାର ଗୋଟିଏ କଡ଼େ ଗୋଶାଳା, ଧେନୁପଲ ଉପବନ କଡ଼ ବାଟ ଦେଇ ବାହାରକୁ ଯିବେ ଓ ଆସିବେ । ଉପବନର ମହୋତ୍ସବ ମେଢ଼ାରେ ଠାକୁରଙ୍କ ନିଭୃତ ସେବା ବଢ଼େ । ଉପବନକୁଲାଗି ପାଚେରି ବାହାରକୁ ପ୍ରକାଣ୍ଡ ପୁଷ୍କରିଣୀ, ଛୋଟ କାଟର ହ୍ରଦଭଳି । ମଝିରେ ଦୀପଦଣ୍ଡି । ଚାପଉତ୍ସବ ହେଲେ ରାଧାକୃଷ୍ଣ ଠାକୁର ଏଠାରେ ବିଜେ ହୁଅନ୍ତି । ଏଠି ଗୋଟିଏ ପଟେ କାଳିନ୍ଦୀ ହ୍ରଦ ରଚନା ହୁଏ । ଅନ୍ୟ ପଟେ ଗୋପୀଙ୍କ ବସ୍ତ୍ରହରଣ ଲୀଳା । ପୁଷ୍କରିଣୀର ଜଳ ଖୁବ୍ ସ୍ୱଚ୍ଛ । ବର୍ଷସାରା ନୀଳ କଇଁରେ ପୁଷ୍କରିଣୀ ସଜେଇ ହେଇ ପଡ଼ିଥାଏ । କାଉ ଆଖିଆ ହେମାଳ ପାଣି । ବାହାର ମୁଣ୍ଡରେ ପୋଖରୀ ହୁଡ଼ା ଉପରେ ଧାଡ଼ି ଧାଡ଼ି ତାଳ ଗଛ । ଗଛ ମାନେ ଜହ୍ନରାତିରେ ପୋଖରୀରେ ପ୍ରତିବିମ୍ବିତ ହେଲେ କଂସର କାରାଗାର ଭଳି ଲାଗେ । ଖରାଦିନେ ପୋଖରୀର ପାଣି ଶୁଖି ଆସିଲେ ଫଗୁ ବେଳକୁ ପାଣିକୁ ଦିଫାଳ କରି ବସୁଦେବ କୃଷ୍ଣଙ୍କୁ ନେଇ ତାଳବନ ପଟକୁ ଯାଏ ।

ମାଞ୍ଚେଲିମଠର ଭୂସଂପତ୍ତି ଅମାପ । ଜଙ୍ଗଲର ରାଜା ରାମକୃଷ୍ଣ

ଛୋଟରାୟଙ୍କ ପ୍ରଦତ୍ତ ବନମାଳୀପୁର ଶାସନ ଗାଁ ସାଙ୍ଗକୁ ତରଳା ଓ ମଞ୍ଜୁଷା ରଜାମାନଙ୍କ ଦାନଗାଁକୁ ମିଶେଇ ଅଠରଖଣ୍ଡ ଗାଁ ଏହି ମଠ ଅଧୀନରେ । ଏଣୁ ମଠର ଅଭାବ ବୋଲି କିଛି ନାହିଁ । ଦିବଂଗତ ମହନ୍ତ ଶ୍ରୀ ରାମାନୁଜ ଦାସଙ୍କ ଅପାର ମହିମାରୁ ମଠର ଆଜି ଏତିକି ସଂପତ୍ତି, ଏତିକି ଦମ୍ଭ ଆଉ ଏତିକି ଖ୍ୟାତି ।

ନିତ୍ୟାନନ୍ଦ ଭଳି ଜଣେ ନିଃସ୍ୱ ଅଭାଗା ଏଭଳି ଅମାପ ସଂପତ୍ତି ଭୋଗ କରିବ ଏକଥା ଅଜା ମଧ ସ୍ୱୟଂ କଳ୍ପନା କରିପାରିଲେନି । କୃଷ୍ଣ କୃପା ନ ହେଲେ ଏଭଳି ସମ୍ଭବ ନୁହେଁ । ଅଜା ସେମାନଙ୍କୁ ଏଠାରେ ଛାଡ଼ି ଦେଇ ଗଲାପରେ ଦିମାସକୁ, ତିନି ମାସକୁ ଥରେ ଅଧେ ଆସନ୍ତି । ଦିନେ ଦିଦିନ ରହି ଫେରିଯାଆନ୍ତି । ନିତ୍ୟାନନ୍ଦ ମହନ୍ତ ମହାରାଜାଙ୍କ ଠାରୁ ଦୀକ୍ଷା ଗ୍ରହଣ କରିସାରିଲା ପରେ ସଂପୂର୍ଣ୍ଣ ଲଣ୍ଡିତମୁଣ୍ଡ ହେଇ, କଣ୍ଠି କୌପୀନ ଭେକ ହେଇ ଦାସ ବୋଲାଇଲାଣି । ଆଉ ଗୌରୀ, ଦାସ୍ୟାମ୍ମା । ଗୌରୀ ମଧ ବୈଷ୍ଣବ ପରଂପରାରେ ମୁଣ୍ଡ ଲଣ୍ଡାହେଇ ହେଇ ଚିତାତିଳକ କରି ଶୁଭ୍ରବସ୍ତ୍ର ପିନ୍ଧି ନାମାକ୍ଷରି ନାଇ ହେଇ ସାକ୍ଷାତ ଯୋଗସିଦ୍ଧା ଭଳି ଦେଖାଗଲାଣି ।

ନିତ୍ୟାନନ୍ଦ ବ୍ରାହ୍ମ ମୁହୂର୍ତ୍ତରୁ ଉଠେ । ଧାନ ଧାରଣାକରେ, ତାପାଇଁ ଭିତର ମେଲାରେ ମହନ୍ତଙ୍କ ଖଂଜା କଡ଼େ କଡ଼େ ଦି ବଖରାଘର ନିର୍ଦ୍ଦିଷ୍ଟ ହେଇ ଯାଇଛି । ମାତାମାନଙ୍କ ସାଉଡ଼ି ପଟେ କିନ୍ତୁ ନିଆରା ହେଇ ଗୌରୀ ଦାସ୍ୟାମ୍ମାଙ୍କ ଆସ୍ଥାନ । ଧାନ ଧାରଣା ସରିଲା ପରେ ଦେହରୁ ଝାଳ ଗମ୍ ଗମ୍ ବାହାରିବା ଯାଏଁ ଦଣ୍ଡବୈଠକ । ତୈଳ ମର୍ଦ୍ଦନ ପାଇଁ ତା ପରେ ଭଣ୍ଡାରି ରାଶିତେଲ ଗିନା ନେଇ ହାଜର ହେଇଯାଏ । ଆଚ୍ଛାକରି ତେଲମର୍ଦ୍ଦନଟେ ହେଲାପରେ ନିତ୍ୟାନନ୍ଦ ଦାସ ଶୃଙ୍ଖେଇ ପାଣିକୁ ବିଜେକରନ୍ତି, ଦନ୍ତ ମାର୍ଜନ କରନ୍ତି, ପୁଷ୍କରିଣୀରେ ସ୍ନାହାନ ସାରି ନିଜ ଖଂଜାକୁ ଫେରନ୍ତି । ପିନ୍ଧାଲୁଗା ଓ ଗାମୁଛା ତୁଠରେ ଛାଡ଼ି ଦେଇ କୌପୀନ ଖଣ୍ଡେ ପିନ୍ଧି ପୋଖରୀରୁ ଫେରୁଥାନ୍ତି । ଲାଗୁଥାନ୍ତି ସାକ୍ଷାତ ଗୌରାଙ୍ଗ ଭଳି ଉଦାସୀନ । ଦାସୀଟିଏ ବଦଳାଲୁଗା ଧୋଇ କାଚି ଶୁଖେଇ ଦିଏ ଭିତରେ ମେଲାଅଗଣାରେ । ନିତ୍ୟାନନ୍ଦ ତ ସୁନ୍ଦର ମଣିଷ, ଏବେ ସେବା ଯତ୍ନ ପାଇଲାଠୁ ଆହୁରି ଚିକ୍କଣ ଓ ସରାଗ ଲାଗନ୍ତି ।

ଲୁଗା ବଦଳେଇ, ଦେହରେ କାବା ଓ କାବାଉପରେ କାନ୍ଧରେ ଦୋସଡ଼ା ପକେଇ, ତିଳକ ଧାରଣ କରି ନିତ୍ୟାନନ୍ଦ ମହନ୍ତ ମହାରାଜାଙ୍କ ଖଂଜା ଭିତରେ

ପଶନ୍ତି । କେବେ କେବେ ସେ ସେଠି ପହଞ୍ଚିଲା ବେଳକୁ ମହନ୍ତ ଗୋସେଇଁ ତିଳକ ହେଉଥାନ୍ତି ବା ବେଳେବେଳେ ଉଛୁର ହେଇଯାଇଥିଲେ ନିତ୍ୟକର୍ମ ସାରିବା ପାଇଁ ଭିତର ବଖରାରେ ଥାଆନ୍ତି । ନିତ୍ୟାନନ୍ଦ ଦାସ ହାତ ଯୋଡ଼ି ଅପେକ୍ଷା କରନ୍ତି । ମହନ୍ତ ଗୋସେଇଁଙ୍କ ଦର୍ଶନ ସାରି ସିଧା ଜଗନ୍ନାଥ ମନ୍ଦିର ଆସନ୍ତି । ଡ଼ାହାଣ ହାତରେ ଝୁଲି ଥାଏ ଜପାମାଳର କୋଥଳୀ । ପାଦ ସିନା ଚାଲୁଥାଏ ହେଲେ ହାତ ତୁଣ୍ଡ ଓ ମନ ନାମ ଜପୁଥାଏ, ଧ୍ୟାନ ଥାଏ ଇଷ୍ଟରେ । ଜଗନ୍ନାଥ ମନ୍ଦିର ଗରୁଡ଼ବଖରା କାନ୍ଥଚିତ୍ରର ପ୍ରସଙ୍ଗ ନିତ୍ୟାନନ୍ଦଙ୍କ ମନରେ ଗଭୀର ପ୍ରଭାବ ପକାଏ । କାନ୍ଥରେ ମର୍ଯ୍ୟାଦା ପୁରୁଷ ରାମଚନ୍ଦ୍ରଙ୍କ ଜୀବନ ଗାଥା ଅଙ୍କିତ ହେଇଛି । ମା କୌଶଲ୍ୟା ରାମଚନ୍ଦ୍ରଙ୍କୁ ଦୋଳିରେ ପହୁଡ଼ାଇଦା ଦୃଶ୍ୟଠାରୁ ରାମପଟ୍ଟାଭିଷେକ ପର୍ଯ୍ୟନ୍ତ ବିଭିନ୍ନ ଆଖ୍ୟାୟିକା ଚିତ୍ରକରଙ୍କ ତୂଳୀରେ ଜୀବନ୍ତ ହେଇଯାଇଛି । ଜନକ ରାଜାଙ୍କ ସଭାରେ ଶିବଧନୁଭଙ୍ଗ, ସୀତାଙ୍କ ସହିତ ବିବାହ ଭଳି ମଧୁମୟ ବୃତ୍ତାନ୍ତ ସହିତ ବନବାସ, ମାୟାମୃଗ, ସୀତାଚୋରି, ଲଙ୍କାଗଡ଼ରେ ରାବଣ, ହନୁମାନଙ୍କ ଲଙ୍କାଗଡ଼ ଦହନ ଓ ରାମରାବଣ ଯୁଦ୍ଧ ପ୍ରଭୃତି ଚିତ୍ରପ୍ରସଙ୍ଗରେ ଭରି ରହିଥିବା ଦୁଃଖ, ନିର୍ଯାତନା ଓ ବୀରତ୍ୱ ଭଗବାନ ରାମଚନ୍ଦ୍ରଙ୍କ ଲୀଳାମୟତାର ସମ୍ପୂର୍ଣ୍ଣ ଧାରଣା ଦେଉଛି । ନିତ୍ୟାନନ୍ଦ ଭାବନ୍ତି ରାମଚନ୍ଦ୍ରଙ୍କ ସମସ୍ତ ଜୀବନ ହିଁ ଚରମ ତ୍ୟାଗର ନିଦର୍ଶନ । ବନବାସ, ପତ୍ନୀବିରହ ଓ ଯୁଦ୍ଧ ହିଁ ତାଙ୍କରି ବିଭବ । ସେ ତ୍ୟାଗ ଓ ଦୁଃଖ ଭିତରେ ବି ପ୍ରେମ ଅଛି କିନ୍ତୁ ସବୁରି ଉର୍ଦ୍ଧ୍ୱରେ ରହି ବିକଶିତ ହେଇଯାଉନ୍ତି ତାଙ୍କର ବଚନସିଦ୍ଧତା ଓ ସତ୍ୟନିଷ୍ଠତା ।

ଗୌରୀ ଦାସ୍ୟାମ୍ମା ଶୁଭ୍ର ଧବଳ ଧଡ଼ି ବିହୀନ ଶାଢ଼ି ସାଙ୍ଗକୁ ଓ୍ୱାଣୀ, ଅର୍ନ୍ତବାସ ପିନ୍ଧି ଚିତାତିଳକ ହେଇ ନିତ୍ୟାନନ୍ଦଙ୍କ ପଛେ ପଛେ ମହନ୍ତଙ୍କ ଦର୍ଶନ ପାଇଁ ପହଞ୍ଚିଯାଇଥାନ୍ତି । ମହନ୍ତଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରନ୍ତି । ନିତ୍ୟାନନ୍ଦଙ୍କୁ ମୁଣ୍ଡିଆମାରନ୍ତି । ବୟସତ ପଞ୍ଚତିରିଶି ପାଖାପାଖି । ଦେହରୁ ମୁହଁରୁ ଲାବଣ୍ୟ ଛଟା ଉକୁଟି ପଡୁଥାଏ । ଆଖିରେ ସ୍ୱପ୍ନର ମାଦକତା ଭରି ରହିଥାଏ । ନିତମ୍ବ ଆହୁରି ରସାଳ ଲାଗୁଥାଏ , ଗଳା ପୁରୁଷ୍ଟ ହେଇ ଆସୁଥାଏ । ଗୌରୀମ୍ମା ସାକ୍ଷାତ ପ୍ରତିମାଟେ ଭଳି ଦେଖାଯାଉଛନ୍ତି । ସେ ମହନ୍ତ ଗୋସେଇଁଙ୍କ ଦର୍ଶନ ବଢ଼େଇ ଫେରନ୍ତି ରାଧାକୃଷ୍ଣ ମନ୍ଦିରକୁ । ପୂଜାରୀ ସାଙ୍ଗରେ ମିଶି ବାସିଫୁଲ ଠାକୁରଙ୍କ ଅଙ୍ଗରୁ ବାହାର କରନ୍ତି । ଅଳଂକାର, ଆଭୂଷଣ ବାହାର କରି ରାଧା ଓ କୃଷ୍ଣଙ୍କୁ ଉଲଗ୍ନ କରନ୍ତି । ତାପରେ ମାଜଣା ବଢ଼େ । କୃଷ୍ଣ ପ୍ରତିମା କଳା ମୁଗୁନି ପଥରର । ହାତ ଦେଲେ ଖସି ପଡ଼ିବ ଏମିତି ଚିକ୍କଣ,

ତ୍ରିଭଙ୍ଗୀ ଠାଣିରେ ନଟନାଗର ଠିଆହେଇଛନ୍ତି । ଖାଲୁଆ ତମ୍ବା ଚଢୁଆ ଉପରେ କୃଷ୍ଣ ପ୍ରତିମାକୁ ପୂଜାରୀ ଓ ଦାସ୍ୟାମ୍ମା ଦୁହେଁ ମିଶି ଠିଆ କରାନ୍ତି । ମୂର୍ତ୍ତି ବଇଠାକୁ ମିଶାଇ ଦିଫୁଟର । ଅଁଳା, ସିକାୟା ମେଥିଦେଇ ମାଜଣା କରାହୁଏ । ଦାସ୍ୟାମ୍ମା ପ୍ରତିମା ଦେହରେ ହାତ ବୁଲେଇ ଆଣିଲେ ତାଙ୍କ ନିଜ ଶରୀରରେ ଶିହରଣ ଖେଳିଯାଏ । ସେ ଭାବାବେଶରେ ତଲ୍ଲୀନ ହେଇଯାଆନ୍ତି । ନିଜ ଶରୀରରେ ଅଦ୍ଭୁତ କଂପନ ଜାତ ହୁଏ ! ଝିମା ମାରିଯାଏ । ସେ କୃଷ୍ଣପ୍ରତିମାକୁ ଅପଲକ ନୟନରେ ଅନେଇ ରହନ୍ତି । ତା ପରେ କୁଣ୍ଢେଇ ଧରନ୍ତି । ପୂଜାରୀ ଦାସ୍ୟାମ୍ମାର ଏ ଅଲୌକିକ ଆଚରଣରେ ଅବାକ୍ ହେଇଯାଏ । ଭକ୍ତ ଓ ଭଗବାନଙ୍କ ଭିତରେ ଏମିତି କିଛି ସମୟ ଚାଲେ । ତାପରେ ପ୍ରତିମାଙ୍କ ସ୍ନାହାନ ବଢ଼ିଗଲା ପରେ ପିତାମ୍ବର ପାଟ କାଛଣି କରି ପିନ୍ଧାଯାଏ, ତିଳକ ସେବା ହୁଏ । କନକ ଦାସୀ ରୁପା ପିଙ୍ଗଣାରେ ଚନ୍ଦନ ନେଇ ଆସେ । ଠାକୁର ଚନ୍ଦନ ସେବା ଓ ଫୁଲସଜ ହୁଅନ୍ତି । ଦାସ୍ୟାମ୍ମା ଠାକୁରଙ୍କ ମଣୋହି ବଢ଼ି ପହୁଡ଼ ହେଲା ଯାଏଁ ସେଇ ମନ୍ଦିର ଭିତରେ ହିଁ ରହିଥାଆନ୍ତି ।

ଠାକୁର ପହୁଡ଼ରେ ବିଜେ ହେଲେ ଭଦ୍ରବଖରାରେ ପ୍ରସାଦ ସାରି ଦାସ୍ୟାମ୍ମା ନିଜ ଆସ୍ଥାନକୁ ଫେରନ୍ତି । ସ୍ୱାଧ୍ୟାୟରେ ମନ ଦିଅନ୍ତି । ନିରଳସ ଜୀବନ ବିତଉଛନ୍ତି ସେ । ସଂଧ୍ୟାଆରତି ବେଳେ ଦୀପ ସେବା କରନ୍ତି । ତାପରେ ଭଜନ କୋଠୀକୁ ଆସନ୍ତି । ମହନ୍ତ ଗୋସେଇଁଙ୍କୁ ପ୍ରଣମି ନିଜପାଇଁ ଉଦ୍ଦିଷ୍ଟ ଆସନ ଗ୍ରହଣ କରନ୍ତି । ସେଠୁ ଆରମ୍ଭ ହୁଏ ଭଜନର ଆସର । ମହନ୍ତ ଗୋସେଇଁ ଅଧିକାଂଶ ସମୟରେ ଭଜନ ବୋଲିବାପାଇଁ ଦାସ୍ୟାମ୍ମାକୁ ଇଙ୍ଗିତ ଦିଅନ୍ତି । ଗୌରୀମ୍ମା ଗୋପାଳକୃଷ୍ଣଙ୍କ ପଦ୍ୟାବଳୀରୁ କୃଷ୍ଣରସର ଗୀତଟିଏ ଲଳିତକାମୋଦୀ ରାଗରେ ଆରମ୍ଭ କରିଦିଅନ୍ତି । ତାପରେ କୃଷ୍ଣପ୍ରିୟା ଦାସୀ ଗିନି ଠୁକନ୍ତି ।

ମୁହାଁ ମୁହିଁ କିଶୋରଚନ୍ଦ୍ରମାଙ୍କର ମୋର
ଆଜ ଯମୁନାତୀରେ ହୋଇଗଲା ମା ।
ବେଳା ଶିଳାରେ ବସି     ହେଳାରେ ତନୁ ଘଷି
ହେଇଥିଲଇ ବୟସୀ ଠାରିଦେଲା ମା ।
ଉଠୁମୁଁ ଝଟକରି          ଆଳୀ ଆପଟ କରି
ପ୍ରତି ପ୍ରତୀକଯାକ ଥରିଗଲା ମା ।

ଫିଟି ଚରମେ କେଶ ଲୋଟୁଥିଲା ଗୋ ବାସ
ଥିବାଠାରେ ଯତନରେ ନଥିଲା ମା ।
ପଥରକୁ ଆସୁ ସେ ପଥ ମୋତେ ନ ଦିଶେ
ପାଥରେ ବୁଡ଼ ଆଳୀ କହିଦେଲା ମା ।
ବୁଡ଼ିଗଲି ଲାଜରେ କାଳିନ୍ଦୀ ନୀର ନୀରେ
ଗୋପାଳକୃଷ୍ଣ ବାଟ କଢ଼ାଇଲା ମା ।

ତାପରେ ନାମ କୀର୍ତ୍ତନ ହୁଏ । ଗାଁର ଭକ୍ତମାନେ, ବିଦେଶାଗତ ବୈଷ୍ଣବ ଅଧିକାରୀମାନେ, ଅତିଥି ଅଭ୍ୟାଗତ, ମଠର ଅନ୍ତେବାସୀ ସମସ୍ତେ କୀର୍ତ୍ତନରେ ଭାଗ ନିଅନ୍ତି । ମୃଦଙ୍ଗ ଝାଞ୍ଜର ନିନାଦ ମଠକୁ ସାତ୍ତ୍ୱିକ ଉନ୍ମାଦରେ ଭରିଦିଏ । ତା ପରକୁ ରାତି ପଙ୍ଗତ ବଢ଼େ । ଭଜନ କୋଠିରେ ହିଁ ପତ୍ର ପଡ଼େ । ଅଭ୍ୟାଗତମାନେ ମୁହଁକୁ ମୁହଁ କରି ଦି ଧାଡ଼ିରେ ବସିଯାଆନ୍ତି । ଗୋସେଇଁ ବି ଧାଡ଼ିର ଶୀର୍ଷରେ ସ୍ୱତନ୍ତ୍ର ଆସନରେ ମଣୋହି ପାଇଁ ବସନ୍ତି । ମଠର ପ୍ରସାଦ ବଡ଼ ସାଦା ସିଧା । କିନ୍ତୁ ସୁସ୍ୱାଦୁ । ଏ ମଲ୍ଲିଫୁଲିଆ ଅରୁଆ ଅନ୍ନ ସାଙ୍ଗକୁ କାନ୍ଦୁଲଡ଼ାଲି କିମ୍ବା ମୁଗପଇତି, ବଇତାଳୁ ଖମ୍ବଆଳୁ, ଚଣା ବାଇଗଣ ବଡ଼ି ମୁନିଗା ପକେଇ ଆଚ୍ଛା ଘାଣ୍ଟଟେ । ତା ସାଙ୍ଗକୁ ଆମ୍ବିଳ । ଅନ୍ନ ବଢ଼ା ହେଇ ଡ଼ାଲି ପରଶାଯିବା ପରେ ପୋଷେ ଲେଖା ଘିଅ । ଆମ୍ବ ଦିନେ ଆମ୍ବ ଫାଳେ ଲେଖା । ମହନ୍ତଙ୍କ ପତ୍ର ଅଲଗା, ଛ'ତିଅଣ ନଅ ଭଜା । କଦଳୀ କାଙ୍କଡ଼ ଭଜା ନଡ଼ିଆପାଚେଡ଼ି, ଆମ୍ବୁଲ ଖଟେଇ ସାଙ୍ଗକୁ ବେଶର, ଇତ୍ୟାଦି ଇତ୍ୟାଦି, ଏଥକୁ କିଏ ହେଲେ ଧରାକ କରନ୍ତିନି । ନିତ୍ୟାନନ୍ଦଙ୍କ ପତ୍ରମଧ ଗୋସେଇଁଙ୍କ ବରାବର । ନିତ୍ୟାନନ୍ଦ ଦାସ ସକାଳ ପହରୁ ଜଗନ୍ନାଥ ମହାପ୍ରଭୁଙ୍କ ସେବାରେ ନିମଜ୍ଜି ରହିଥାନ୍ତି । ବାଲଧୂପ ଠାରୁ ଓପରିଓଳି ଧୂପ ଯାଏଁ ସେବା କାମ ତଦାରଖ କରନ୍ତି । ତା ପରେ ପ୍ରସାଦ ସାରି ସଂଧ୍ୟାକୀର୍ତ୍ତନକୁ ଆସିବା ଆଗ ପର୍ଯ୍ୟନ୍ତ ସେ ମଠର ଆୟବ୍ୟୟ ହିସାବ, ଜମିବାଡ଼ିର ହିସାବ, ମାଲି ମକଦ୍ଦମାର ଖବର କଚେରୀ ଘରେ ବସି ମଠ କରଣଙ୍କ ଠାରୁ ବୁଝାସୁଝା କରନ୍ତି । କିଛି ଗୁରୁତର ପ୍ରସଙ୍ଗ ଥିଲେ ମହନ୍ତ ଗୋସାଇଁ କଚେରୀ ଘରେ ପାଦ ପକାନ୍ତି, ନ ହେଲେ ଗୋସେଇଁ ମହାରଜାଙ୍କ ସନ୍ତକ ପାଇଁ ମଠ ଟହଲିଆ କାଗଜ ପତ୍ର ନେଇଯାଏ । ସାଙ୍ଗରେ କରଣ ଥାଆନ୍ତି । କରଣ ଲିପିବଦ୍ଧ ନଥିକୁ ପ୍ରାଞ୍ଜଳ ଭାବେ ବୁଝେଇ ଦିଅନ୍ତି । ମହନ୍ତଙ୍କ ତ ସବୁକଥା ପ୍ରତି ନିଘାଥାଏ ଏଣୁ ନଥି ଦେଖିଲା ମାତ୍ରେ ପ୍ରସଙ୍ଗ ଧରି ନିଅନ୍ତି ।

ମହନ୍ତ ଗୋସେଇଁ ଯେତେ ନିଷ୍ଠାରେ ଚଳୁଛନ୍ତି ବୋଲି କୁହାଯାଉଥିଲେ ମଧ ଦାସଦାସୀ ସେବାମୁକ୍ତ ନୁହନ୍ତି । ଧାର୍ମିକ ପରଂପରାରେ ଭକ୍ତଙ୍କ ଠାରୁ ସମସ୍ତ ପ୍ରକାର ସେବା ଗ୍ରହଣରେ ବାଧାନାହିଁ । ଅପରାହ୍ନରେ ଅବଶକୁ ଲାଘବ କରିବା ପାଇଁ ସେ ଗଜଦନ୍ତ ପଲଙ୍କ ଉପରେ ମଠାର ଜରିଦିଆ ମାଣ୍ଡି ତକିଆ ଓ ଅପସର ଉପରେ ଆଉଜିଥାଆନ୍ତି । ଦୁଇଜଣ ମଧମ ବୟସୀ ଦାସୀ ଆଲଟ ଚାମର କରୁଥାନ୍ତି, ମହନ୍ତ କଳରେ ପାନଖିଲ ଖଣ୍ଡେ ଜାକି ଦେଇ ପଲଙ୍କରେ ବିଜେ ହୁଅନ୍ତି । ତାମ୍ବୁଳ ସେବନ ଏକ ପ୍ରଧାନ ଶୃଙ୍ଗାରୀ ସେବା । ମହନ୍ତ ପାନ ଛେପ ପାଟିରେ କଳ କଳ କଲେ ଦାସୀଟିଏ ପଲଙ୍କ ତଳେ ଥୁଆ ହେଇଥିବା ପାନ ପିକ ମୁହଁ ପାଖକୁ ଟେକି ଧରେ । ଆଉ ମହନ୍ତ ଗଳ ଗଳ କରି ଗରଳ ଭଳି ଅଧଲିଟରେ ହେବ ଛେପ ଉଗାଳି ଦିଅନ୍ତି । ଆଉ ଦିଜଣ ଅଳପ ବୟସୀ ମହନ୍ତଙ୍କ ପାଦ ମଞ୍ଚାକୁ ଥାନ୍ତି । ମହନ୍ତଙ୍କ ମୁଣ୍ଡପାଖରେ ଓଲଟାଣି ବୟସର ଦାସୀଟିଏ ଜଗନ୍ନାଥ ଦାସଙ୍କ ଭାଗବତରୁ ପଢ଼ି ଶୁଣାଉ ଥାଏ । ବେଳେବେଳେ ଝୁଲଣ ଗାଆଣି ପଦେ ଦିପଦ ଗାଇଶୁଣେଇ ଦେବାପାଇଁ ମଧ ହାଜର ହେଇଯାଏ । ମହନ୍ତେ ଭିତର ଖଞ୍ଜାରେ ପହୁଡ଼ ବିଜେ କରିଥିଲା ବେଳେ ନିତ୍ୟାନନ୍ଦ ଦାସ, ଦାସ୍ୟାମ୍ଭା ଓ କେତେକ ନିର୍ଦ୍ଦିଷ୍ଟ ଦାସୀଙ୍କ ଛଡ଼ା ଆଉ କାହାରିକୁ ଆଜ୍ଞା ନାହିଁ । ସନ୍ତକ ପାଇଁ କାଗଜ ଅପେକ୍ଷାକରେ । ଗୁରୁତର କଥା ହେଇଥିଲେ ପହୁଡ଼ ଭାଙ୍ଗିଲା ପରେ ତୁରନ୍ତ କାର୍ଯ୍ୟ ସଂପାଦନ ହୁଏ ।

ମଠ ପରଂପରାରେ ଦାସଦାସୀଙ୍କ ଉପସ୍ଥିତି ବାଧକ ନୁହେଁ । ବରଂ ଦାସଦାସୀ ନଥିଲେ ମଠ ହୁଏ ନାହିଁ । ମହନ୍ତ ଗୋସେଇଁ ମଠ ପରିସରର ଓ ମଠ ସଂପତ୍ତିର ହର୍ତ୍ତାକର୍ତ୍ତା । ରେକର୍ଡ଼ରେ କାଗଜ ପତ୍ରରେ ଠାକୁର କିନ୍ତୁ ମାଲିକ, ସେ ଠାକୁରଙ୍କ ପ୍ରଥମ ସେବକ ଭାବେ ଏକ ଧାମିକ ସାମ୍ରାଜ୍ୟର ଅଧୀଶ୍ୱର । ତାଙ୍କର ସମସ୍ତ ପ୍ରକାର ସଂପୃକ୍ତିକୁ ମଧ ନିର୍ଲିପ୍ତ ସଂପୃକ୍ତି କୁହାଯାଏ । ସେ ସଦା ସର୍ବଦା କୃଷ୍ଣଙ୍କର ଭକ୍ତ ଓ ସେବକ । ଦାସ୍ୟ, ସଖ୍ୟ ଓ ସ୍ୱାମୀ ଭାବର ମଧୁର ସମନ୍ୱୟ ତାଙ୍କଠି ଘଟିଛି । ଏହାକୁ ଅବଲମ୍ବନ କରି ତର୍ଜମାରେ ଆଗେଇଗଲେ ଦାସୀମାନେ ସଖା ହେବେ ଓ ସେ ମହନ୍ତ ଗୋସାଇଁ ଏମାନଙ୍କ ସ୍ୱାମୀ ମଧ ହେବେ ।

ମଠରେ ଯେଉଁମାନେ ଦାସୀହେଇ ଆଜୀବନ ରହିଯାଆନ୍ତି, ସେମାନେ ବ୍ରାହ୍ମଣୀ, ବାଲ୍ୟବିଧବା । କିଏ ସଂସାରର ମଧୁ ପାନକରି ସାରିଥାଏ ତ ଆଉ କିଏ ପାନ

କରିବାକୁ ଯାଉଥିବା ଅବସ୍ଥାରୁ ଦଇବ ପାନ ପାତ୍ରଟିକୁ ଇଡ଼ି ଦେଇଥାଏ । ଜୀବନର ସବୁ ଦୁଃଖଭରା କାହାଣୀ ସେମାନଙ୍କ ହୃଦୟତଳେ ଅଲିଭା ନିଆଁଭଳି ଚାପି ରହି କୁହୁଳୁଥାଏ । କେବେ କେବେ ଉପଯୁକ୍ତ ସୁଯୋଗ ପାଇଲେ ପ୍ରଜ୍ଜ୍ୱଳିତ ହେଇଯାଏ । ଦାସଟିଏ ମିଳୁ, ହଳିଆ କିମ୍ବା ମୂଲିଆଟିଏ ମଙ୍ଗିଯାଉ, ସାଂସାରିକ କର୍ମଟି ଅନାୟାସରେ ସଂପାଦିତ ହେଇଯାଏ । ଅସମ୍ଭାଳକୁ ଆଉ କେତେ ଦିନ ଏମିତି ଉଦାସିଆରେ କୋଥଳି ଭିତରେ ସମ୍ଭଳାଯିବ । ଘିଅ ପଚପଚ ମଠାନ୍ନ ଓ କ୍ଷୀର ଦୁଧ ସର ଲହୁଣୀ ଖାଇ ଏହି ଦାସୀମାନେ ସତେ ଯିମିତି ଓଧାଣି ହାଣ୍ଡିରେ ବିଉଷୁଥାନ୍ତି । ଅଶିପ୍ରତିଶତ ମହନ୍ତମାନଙ୍କର ଉପଭୋଗ୍ୟା ହୁଅନ୍ତି ସେମାନେ । ବଳକା କିଛି ମଧ ଅତିଥି ଅଭ୍ୟାଗତଙ୍କ ପାଖରେ ଲୋଚା ଚୋରାରେ ସମର୍ପି ହେଇଯାଆନ୍ତି । ମଠର କୌଣସି ଦାସୀ ପ୍ରାୟତଃ ନିଷ୍ପ୍ରଭା ନୁହନ୍ତି । ସେମାନେ ସମସ୍ତେ ସୁଠାମ ଜଘନା । ସେମାନଙ୍କ ବାହୁ ରସାଳ , ଜଙ୍ଘ ପୁରୁଷ୍ଟ, ବକ୍ଷୋଜ ଅଳୁଳାୟିତ, ଦେହ ଝଳିଉକୁଟା ଓ ଲୋଭନୀୟ । ମୋଟା ମୋଟି ଭାବେ ସେମାନେ ନୀଳାମ୍ବର ମଂଶ୍ରେଙ୍କ ରାଧା ପିତୁଳୀ ଭଳି ପ୍ରତୀୟମାନ ହେଉଥାନ୍ତି । ମଠ ଭିତର ମେଲା ବେହରଣ ମେଲା, ଗାଦିବଖରା ଓ ଗୋସେଇଁ ଖଞ୍ଜାରେ ସେମାନଙ୍କ ଅବାଧ ଚଳପ୍ରଚଳ । ସେମାନେ ସେଇଠି ହିଁ, ତାହାରି ଭିତରେ ଆତଜାତ ହେଉଥାନ୍ତି । ସେଇଠି ହିଁ ପଲ୍ଲବିତ ହୁଅନ୍ତି ପୁଣି ସେଇଠି ହିଁ ମଉଳିଯାଇ ଝଡ଼ିପଡ଼ନ୍ତି । ସେମାନେ ସମସ୍ତେ ଭୋଗ୍ୟା, ଜନନୀ ହେବାର ସାମର୍ଥ୍ୟ ଥାଇ ମଧ ଜନନୀ ହେଇପାରନ୍ତି ନାହିଁ ନ୍ରହେଁ, ହୁଅନ୍ତି ନାହିଁ, ହେବାକୁ ଅନୁମତି ନାହିଁ । ମଠର ପରଂପରା ହିଁ ଏଭଳିଆ ।

ନିତ୍ୟାନନ୍ଦ ଦାସ ଓ ଗୌରୀଦାସ୍ୟାମ୍ଭା ଉଭୟଙ୍କର ଭେଟହୁଏ ଜଗନ୍ନାଥ ମନ୍ଦିରରେ, ଠାକୁରଙ୍କ ରତ୍ନବେଦୀ ସମକ୍ଷରେ । ଦୁହେଁ କୃତାଞ୍ଜଳି ପୁଟରେ ଠିଆହୋଇ ଭକ୍ତି ନିବେଦନ କରନ୍ତି । ପୂଜାରୀ ଠାକୁରଙ୍କ ବଡ଼ସିଂହାର ବେଶ କରୁଥାନ୍ତି । ନିତ୍ୟାନନ୍ଦ ଗୌରୀଙ୍କୁ ସେଇଠି ଛାଡ଼ିଦେଇ ଚରଣାମୃତ ସେବା କରି ଗର୍ଭଗୃହରୁ ଲେଉଟି ଯାଆନ୍ତି ରାଧାକୃଷ୍ଣ ମନ୍ଦିର ଭିତରକୁ । ସେଠାରେ ସେ ତୁଳସୀ ସେବାଟିଏ କରନ୍ତି । ଠାକୁରଙ୍କ ପିନ୍ଧାବସନ ବଦଳେଇ ଦିଅନ୍ତି । ରାଧାକୃଷ୍ଣ ପହୁଡ଼ ବିଜେ କରିବା ଆଗରୁ ଗୌରୀର ଅନୁପ୍ରେରଣାରେ ଆୟତ କରିଥିବା ଗୀତଗୋବିନ୍ଦ ସର୍ଗଟିଏ ପାଠ କରନ୍ତି, ନିତ୍ୟାନନ୍ଦଙ୍କ ଶୁଦ୍ଧ ଉଚ୍ଚାରଣରେ ଗୀତଗୋବିନ୍ଦ ଗାନ ମଧୁମୟ ହୁଏ । ଠାକୁର ଠାକୁରାଣୀ ପହୁଡ଼ ଯାଆନ୍ତି । ନିତ୍ୟାନନ୍ଦ ଭଜନ ଖୁଣ୍ଟିଆକୁ ମଠ କବାଟ ବନ୍ଦ କରିବାକୁ କହି ଭିତର ମେଲା

ଅଗଣାରେ ନିଜ ଆସ୍ଥାନପାଖରେ ଦଣ୍ଡେ ଠିଆ ହୁଅନ୍ତି । ଆକାଶକୁ ଚାହାନ୍ତି । ଉପବନ ପ୍ରବେଶଦ୍ୱାରରେ ପଦ୍ମହୁତୁଡ଼ି ଧିକ୍‌ଧିକ୍ ହେଇ ଜଳୁଥାଏ । ଉପବନ ଭିତରୁ ଶେଫାଳୀ ହେନା ଓ ମଧୁମାଳତୀର ମତୁଆଲା ବାସ୍ନା ଭୁରୁଭୁରୁ ହେଇ ପବନରେ ବହି ଆସୁଥାଏ । ଗୌରୀ ଗୀତଗୋବିନ୍ଦ ସେବା ସାରି ଜଗନ୍ନାଥମନ୍ଦିରରୁ ଫେରିଆସେ ।

ଏବେ ନିଭୃତ ସେବାର ବେଳ । ଦିହେଁ ଉପବନରେ ପ୍ରବେଶନ୍ତି । ବିଚରଣ କରନ୍ତି । ଗୌରୀର ତୁଣ୍ଡରେ ଗୀତଗୋବିନ୍ଦର ସ୍ୱର ତଥାପି ଲହରାୟିତ ହେଉଥାଏ । ସେମାନେ କଦମ୍ବ ମୂଳକୁ ଯାଆନ୍ତି । ଗୌରୀ ଅନୁଭବ କରେ ନିତ୍ୟାନନ୍ଦ କୃଷ୍ଣ ହେଇ ଯାଇଛନ୍ତି । ସେ କଦମ୍ବ ମୂଳରେ ତ୍ରିଭଙ୍ଗୀ ଛନ୍ଦରେ ଠିଆହେଇ ବଂଶୀବଜଉଛନ୍ତି । ବଂଶୀ ତାକୁ କୁହାଟୁଛି । ଆସ କୃଷ୍ଣପ୍ରିୟା ଆସ, ଆସ ରାଧାରାଣୀ ଆସ, ଦାସ୍ୟାମ୍ମା ଆସ, ମୁଁ ତମର ନିତ୍ୟାନନ୍ଦ, ମୁଁ ମଠର ଗୋସେଇଁ ହରେକୃଷ୍ଣ ବି ହେଇପାରେ । ଦେହତ ବାହ୍ୟରୂପ, ନାମରୂପ ତ ଅମୂଳକ । ତାକୁ ଅତିକ୍ରମିଲେ, ତାକୁ ଗୋପୀଙ୍କ ଭଳି ମୋ ପାଦ ପଦ୍ମରେ ସମର୍ପି ଦେଲେ ମୁଁ ଆପଣାର ହେଇଯାଏ । ଭକ୍ତ ଓ ଭଗବାନ ଭିତରେ ଆଉ ଅନ୍ତର ରହେନି, ସେମାନେ ଅଭିନ୍ନ ହେଇଯାଆନ୍ତି । ସମ୍ପୂର୍ଣ୍ଣ ହେଇଯାଆନ୍ତି । ସବୁ ବ୍ରହ୍ମମୟ ହେଇଯାଏ ।

ଦାସୀମାନେ ନିତ୍ୟାନନ୍ଦଦାସ ଓ ଗୌରୀ ଦାସ୍ୟାମ୍ମାର ଏକାନ୍ତ ବିଚରଣକୁ କୌତୁହଳୀ ହେଇ ନିଜ ଭିତରେ ଆଲୋଚନା କରନ୍ତି । ଦୁହେଁତ ସହଜେ ସ୍ୱାମୀସ୍ତ୍ରୀ ହୁଏତ ନିଶା ରାତିରେ ସମସ୍ତଙ୍କୁ ଲୁଚେଇ ଛପେଇ ରାହାସମେଢ଼ାରେ ରତିକ୍ରୀଡ଼ାରେ ମାତି ଯାଉଥିବେ । ସନ୍ଦେହ ଓ ସମ୍ଭାବନାକୁ ନେଇ ସେମାନେ ଚିନ୍ତିତ ନୁହଁନ୍ତି । ବ୍ୟଗ୍ର ନୁହନ୍ତି । ଉତ୍‌କଣ୍ଠାଥାଏ ସେମାନଙ୍କ ରତିକ୍ରୀଡ଼ା ସଂଦର୍ଶନ କରବାପାଇଁ । ନିଜର କାମ ଔତ୍ସୁକତାକୁ ଚରିତାର୍ଥ କରିବାପାଇଁ ଓ ପ୍ରାଣକୁ ଶୀତଳ କରିବା ପାଇଁ । ନୀଳିମା ଦାସୀ ଓ ରେଣୁକାଦାସୀ ଦିନେ ରାତିରେ ନିତ୍ୟାନନ୍ଦ ଓ ଗୌରୀମ୍ମାକୁ ଟାକି ବସିଲେ । ଗୀତଗୋବିନ୍ଦ ସେବା ସରିଲା, ଠାକୁରମାନେ ପହୁଡ଼ ବିଜେ ହେଲେ । ମନ୍ଦିର କବାଟ କିଲା ହେଲା, ମଠର ଦୁଆର ବନ୍ଦହେଲା । ବାହାର ମେଲା ଅଗଣାର ଅର୍ଗଳି ତାଲା ପଡ଼ିଲା । ଭିତରେ ମେଲା ଅଗଣାରେ ନିତ୍ୟାନନ୍ଦ ଓ ଗୌରୀର ଖଞ୍ଜାଘରେ ଆଲୁଅ ଜଳୁଥାଏ । ମହନ୍ତ ଗୋସାଇଁ ନିଜ ଖଞ୍ଜାଭିତରକୁ ବାହୁଡ଼ି ଗଲେଣି । ପିଠଉ ଭଳି ଜହ୍ନ ପଡ଼ିଛି । ମନ୍ଦିରମାନଙ୍କରୁ ଧୂପ ଗନ୍ଧ ପବନରେ ମିଶି ଯାଇ ପରିବେଶକୁ

ମହକେଇଦେଉଛି । ତୁଳସୀବଣରୁ ଗନ୍ଧବାରି ହେଇଗଲାଣି । ଗୌରୀ ଓ ନିତ୍ୟାନନ୍ଦ ଧୀରେ ଧୀରେ ବିହରିବା ପାଇଁ ଉପବନ ଭିତରେ ପ୍ରବେଶିଲେ । ତାଙ୍କ ପଛେ ପଛେ ନୀଳିମା ଓ ରେଣୁକା ଛପି ଛପି ଆସି ମାଳତୀ ଲଟାର ପଛରେ ବସିରହିଲେ । କଣ ଘଟୁଛି ଦେଖିବା ପାଇଁ ।

ନିତ୍ୟାନନ୍ଦ ଏ ଗଛରୁ ସେଗଛ ହେଇ ଶେଷରେ କଦମ୍ବ ଗଛମୂଳେ ଠିଆହେଲେ । ଏଦିହେଁଙ୍କ ଆଖି ପହଁରି ପହଁରି ଯାଉଥାଏ ବହୁଦୂରକୁ ଯେଉଁଠି ନିତ୍ୟାନନ୍ଦ ମୂର୍ତ୍ତିଟି ଭଳି ଠିଆ ହେଇଥାନ୍ତି । ତାଙ୍କ ଗୋଡ଼ଦୁଇଟି ଛନ୍ଦି ହେଇପଡ଼ିଥାଏ ତ୍ରିଭଙ୍ଗୀରେ । ଦିହେଁ ଲକ୍ଷ୍ୟ କରଛନ୍ତି, ନିତ୍ୟାନନ୍ଦ ସତେରେ ଘନଶ୍ୟାମ ପାଲଟି ଗଲେ । ସେ ହାତରେ ବଂଶୀ ଧରିଛନ୍ତି । ପୀତାମ୍ବରୀ ପାଟ ପିନ୍ଧିଛନ୍ତି, ବନମାଳ ଗଳାରେ ଲମ୍ବେଇଛନ୍ତି । ଏଥର କଦମ୍ବ ମୂଳରୁ ସେମାନଙ୍କ ଆଡ଼କୁ ବଂଶୀ ସ୍ୱନ ଭାସିଆସିଲା । କି ମଧୁମୟ ସେ ବେଣୁଧ୍ୱନି । ସ୍ୱର କୁହାଟିଲା ରାଧେ ରାଧେ ବୋଲି, ଗୌରୀ ଧୀର ମନ୍ଥର ଗତିରେ ଚାଲିଲା କଦମ୍ବ ମୂଳକୁ । କୃଷ୍ଣଚନ୍ଦ୍ର ଗୌରୀକୁ ଆଲିଙ୍ଗନକଲେ । ନୀଳିମା ଓ ରେଣୁକା ଅପଲକ ନେତ୍ରରେ ଚାହିଁ ରହିଛନ୍ତି । କି ଚମତ୍କାର ଦୃଶ୍ୟ ସିଏ । ତାପରେ ଦୃଶ୍ୟ ବଦଳି ଗଲା । ସେଠି କଦମ୍ବ ମୂଳରେ ଆଉ ଗୌରୀ ନାହିଁ, ନିତ୍ୟାନନ୍ଦ ବି ନାହିଁ । ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଠିଆ ହେଇଛନ୍ତି । ଘନ ଘନ ବେଣୁ ବାଜୁଛି । ମୂର୍ତ୍ତି ଦୁଇଟି ନାଚିବା ଆରମ୍ଭିଲେ । ନୁପୁରର ନିକ୍ୱଣରେ ଏ ଦୁହିଁଙ୍କ ଦେହ ପ୍ରକଂପିତ ହେଲା ଏ ଅଲୌକିକ ରୂପ ସଂଦର୍ଶନରେ ସେମାନେ ବରଡ଼ା ପତ୍ରଭଳି ଥରିବାକୁ ଲାଗିଲେ । ଲାଗିଲା ସେମାନଙ୍କ ଧମନୀରୁ ରକ୍ତ ଶୁଖିଯିବ ଓ ସେମାନେ ସ୍ଥାଣୁ ହେଇଯିବେ । ପର ମୁହୂର୍ତ୍ତରେ ସେମାନେ ଭାବିଲେ ଆହା କି ଭାଗ୍ୟ ସେମାନଙ୍କର, ସେମାନଙ୍କ ଚକ୍ଷୁ ପବିତ୍ର ହେଇଗଲା, ପ୍ରାଣ ଉନ୍ମାଦରେ ପୁଲକିତ ହୋଇଗଲା । ଏଭଳି ପୂର୍ବ ସୁକୃତି ଥିଲେ ମଠମାନଙ୍କରେ ଦିବ୍ୟ ଦର୍ଶନ ମିଳିଯାଏ । ନ ହେଲେ ମଠରେ ଅଲୌକିକତା ଘଟିବା ବିରଳ । ରାଧା ଓ କୃଷ୍ଣ ଉପବନରୁ ମଠ ବାହୁଡ଼ିବା ଯାଏଁ ସେମାନେ ଆଉ ଅପେକ୍ଷାକଲେନି । ଅତି ସନ୍ତର୍ପଣରେ ଗୋଡ଼କାଢ଼ି ଘର ବାହୁଡ଼ିଲେ । ଖଞ୍ଜା ପହୁଞ୍ଚିଲା ବେଳକୁ ବନ ମାଉସୀ ଓ ଚଂପା ନାନୀ ସେମାନଙ୍କ ଆସିବାକୁ ଚାହିଁରହିଛନ୍ତି, ନିଭୃତସେବାର ଧାରା ବିବରଣୀ ଶୁଣିବା ପାଇଁ । ଉପବନର ସଦ୍ୟ ଅନୁଭୂତି ସେମାନଙ୍କୁ ଏତେ ଅଧୀର କରିଦେଇଥିଲାଯେ ସେମାନେ ତ୍ରସ୍ତ ହରିଣୀ ଭଳି ଉତ୍‌କଣ୍ଠିତ ଓ ବିସ୍ମିତ ହେଇପଡ଼ିଥିଲେ । ସେମାନେ ନିଜକୁ ସମ୍ଭାଳି ଦେଇ ତାପରେ ଗପି ଚାଲିଲେ ସବୁ କଥା, ଗୀତଗୋବିନ୍ଦ ସେବା ପର ଠାରୁ ଉପବନର

ନିଭୃତ ସେବା ଶେଷ ଯାଏଁ । ବନ ମାଉସୀ ଓ ଚଂପା ନାନୀ ଏତେ ସହଜରେ ଘଟଣାଟିକୁ ପରତେ ଗଲେନି । ନିଜେ ଚାକ୍ଷୁଷ କରିସାରି ସିଦ୍ଧାନ୍ତରେ ଉପନୀତ ହେବାପାଇଁ ମନରେ ସ୍ଥିର କଲେ ।

ତା' ପର ଦିନର ସଂଧ୍ୟାରେ ଘଟଣାପ୍ରବାହର ବିଶେଷ ପରିବର୍ତ୍ତନ ହେଇନି । ମନ୍ଦିରମାନଙ୍କରେ ପୂଜାସେବା ଶେଷ ହେଇ ଆସିଲା ବେଳକୁ ରାତି ଗହୀରିଆ ହେଇ ସାରିଥିଲା । ଜହ୍ନ ଉଇଁସାରିଥିଲା । ନିତ୍ୟାନନ୍ଦ ଓ ଗୌରୀ ଉପବନ ଭିତରେ ପଶିଲେ । ତାଙ୍କ ପଛେ ପଛେ ନୀଳିମା ରେଣୁକା, ବନ ମାଉସୀ ଓ ଚଂପାନାନୀ । ସେମାନେ ଛପି ରହିଲେ ମାଳତୀ ଲଟାର ଅନ୍ଧାର ଭିତରେ । ଗତ ରାତିର ଦୃଶ୍ୟ ଭଳି ଆଉଏକ ଦୃଶ୍ୟ ତାଙ୍କ ଆଖି ଆଗରେ ଅଭିନୀତ ହେଲା । ଫରକ ଭିତରେ ଏତିକି ଆଜି ରାଧା ମାନିନୀ ହେଲେ, ମାନକଲେ । କୃଷ୍ଣ ବଂଶୀରେ ଯେତେ କୁହାଟିଲେ ବି ରାଧା ଚମକିଲେନି । ଶେଷରେ କୃଷ୍ଣ କଦମ୍ବମୂଳରୁ ଗୋଡ଼କାଢ଼ି ରାଧାଙ୍କ ପାଖକୁ ଆସିଲେ । ଅନୁନୟ ବିନୟ ହେଲେ କହିଲେ 'ଦେହି ପଦ ପଲ୍ଲବ ମୁଦାରମ୍ '। ରାଧାଙ୍କୁ କୋଳକଲେ, ଅଧର ଚୁମ୍ବିଲେ । ମାନିନୀ ରାଧା ଶେଷରେ ବାହୁଲତାରେ କୃଷ୍ଣଙ୍କୁ ଛନ୍ଦିଦେଲେ । ତାପରେ ଏକ ଅଲୌକିକ ଜ୍ୟୋତି ଉକୁଟି ଉଠିଲା କଦମ୍ବ ମୂଳରୁ । ଆଉ କିଛି ଦୃଶ୍ୟହେଲାନି ।

ଏ ଚାରିହେଁ ଭାବିଲେ ଆଗକୁଯିବେ, ନିରେଖିବେ । ଗଲେ ମଧ୍ୟ । ଦେଖିଲେ କଦମ୍ବ ମୂଳ ପରିତ୍ୟକ୍ତ । କୌତୂହଳର ସୀମା ରହିଲାନି । ଦେହ ପୁଲକି ଉଠିଲା । କାମୋତ୍ତେଜନାରେ ଦେହରୁ ଗମ୍‌ଗମ୍ ଝାଳ ନିଗିଡ଼ିବାକୁ ଲାଗିଲା । ସେମାନେ ପରସ୍ପରକୁ ଚହାଁ ଚହିଁ ହେଲେ । କାହାରି ଅଙ୍ଗରେ ଆଉ ବସ୍ତ୍ର ନାହିଁ । ପବନ ବସ୍ତ୍ର ଉଡ଼େଇ ନେଇଛି । ସେମାନେ ସମ୍ପୂର୍ଣ୍ଣ ଉଲଗ୍ନା ହେଇସାରିଛନ୍ତି । ସେମାନଙ୍କ ଦେହରେ ଯୌବନ ଲହଡ଼ି ଭାଙ୍ଗୁଛି । ଲାଗୁଛି ସେମାନେ ସମସ୍ତେ ଦେବ ଭୋଗ ପାଇଁ ପୁନର୍ନବା । ସେମାନେ ସମସ୍ତେ ପୂର୍ଣ୍ଣଜଘନା, ପୂର୍ଣ୍ଣସ୍ତନା, ବରବର୍ଣ୍ଣିନୀ ଓ ଦୁର୍ଲଭା । ସେମାନେ ଅନୁଭବ କଲେ କିଏ ଯିମିତି ଆଲିଙ୍ଗନରେ ସେମାନଙ୍କୁ ମୋହଗ୍ରସ୍ତ କରିଦେଉଛି , ସ୍ତନ ପରିସର ମର୍ଦ୍ଦନ କରୁଛି , ଅଧର ଚୁମ୍ବୁଛି । ମଦନର ଶର ଭେଦି ଯାଉଛି ସେମାନଙ୍କ ଦେହରେ, ମନରେ ଓ ପ୍ରାଣରେ । ସେମାନେ ଅନୁଭବ କରୁଛନ୍ତି ଦିବ୍ୟ ଗନ୍ଧଯୁକ୍ତ, ଦିବ୍ୟଚନ୍ଦନ ରେ ଚର୍ଚ୍ଚିତ , ଦିବ୍ୟ ହାସରେ ପରିପୂର୍ଣ୍ଣ କିଏ ଜଣେ, ଅପରୂପ ବିଭା ଲାବଣ୍ୟ ଓ ଦ୍ୟୁତିରେ

ଭୂଷିତ ମୂର୍ତ୍ତିଟିଏ ସେମାନଙ୍କୁ ପ୍ରେମ ବିତରୁଛି । ସେମାନେ ମାଳତୀ ଶେଯରେ, ମଲ୍ଲିକା ଶେଯରେ, ନବପଲ୍ଲବର ବିସ୍ତାର ଭିତରେ ଲୋଟି ଯାଉଛନ୍ତି । ସେ ସୁପୁରୁଷ ସେମାନଙ୍କୁ ରତିରସରେ ମଜେଇ ଦେଇ ସତେ ଯିମିତି ଅଚେତ କରିଦେଉଛି । ସେମାନଙ୍କ ତୁଣ୍ଡରୁ ଝୁରି ଯାଉଛି ହାକୃଷ୍ଣ ! ହା ଦାମୋଦର! ହା ନଟନାଗର ! କିଏ ତମେ ଏ ରତିଲୀଳା ରଚିଲ । ଆମେ ଅନୂଢ଼ା ଯୁବତୀ । ନୀଳିମା ଓ ରେଣୁକା ଉଚ୍ଚାରୁଛନ୍ତି । ଆମେ ବିଧବା ବ୍ରାହ୍ମଣୀ । ବନାନୀ ଓ ଚଂପାବତୀ ଅନୁନୟ କରି କହୁଛନ୍ତି । ଗର୍ଭ ସଞ୍ଚରିଲେ ଅପବାଦ ରଟିଯିବ, ଏବେ ସମ୍ଭାଳ ଆମକୁ, ଆମେ ଗୋପବାଳୀ ନୋହୁ, ବ୍ରଜଜେମାଙ୍କ ସଖୀ ନୋହୁ, ଆମେ ମଠର ଦାସୀ ମାତ୍ର । ତାପରେ ସତେ ଯିମିତି ସେମାନଙ୍କ ସ୍ୱପ୍ନଦେଖା ଶେଷ ହେଇଯାଇଛି ସେମାନେ ପରସ୍ପରକୁ ଅନଉଛନ୍ତି । ପରସ୍ପରକୁ ଆଉଥରେ ନୂଆକରି ଚିହ୍ନିବା ପାଇଁ ଚେଷ୍ଟା କରୁଛନ୍ତି, କାହିଁ କାହୁଁ ଉଭେଇଗଲା ସେ ଅନୁଭବ ! ସେମାନେ ଯିମିତି ଥିଲେତ ସେମିତି । ରେଣୁକା ଲୋ, ଆମେ କଣ ଉପବନ ଭିତରେ ସ୍ୱପ୍ନ ଦେଖୁଥିଲେ ? ବନାନୀ ପଚାରୁଛି । ହେଇତ! ନିତ୍ୟାନନ୍ଦ ଓ ଗୌରୀ । ସେଦୁହେଁ ସେମାନଙ୍କ ଆଡ଼କୁ ଆଗେଇ ଆସୁଛନ୍ତି । କାହିଁ ସେମାନଙ୍କ ସେହି ଦିବ୍ୟରୂପ ? ସେମାନେ ସମସ୍ତେ ସତର୍କହେଇ ଆହୁରି ଅନ୍ଧାର ଭିତରକୁ ଛପି ଗଲେ ।

ତାହହେଲେ ନିତ୍ୟାନନ୍ଦ ଓ ଗୌରୀ କଣ ବୈଷ୍ଣବ ତନ୍ତ୍ରର ସାଧକ ଓ ସାଧିକା ? ସେମାନେ କଣ ଦିବ୍ୟପୁରୁଷ ଓ ଦିବ୍ୟନାରୀ ? ସେମାନେ ତା ହେଲେ କଣ ଆମଭଳି ସାଧାରଣ ରକ୍ତମାଂସ ଦେହର ମଣିଷ ନୁହନ୍ତି ? ନା ଏସବୁ ଥିଲାକୃଷ୍ଣମାୟା, ରାସକ୍ରୀଡ଼ାରେ ସହସ୍ର ଗୋପୀଙ୍କୁ ରମଣ କରିବାପାଇଁ କୃଷ୍ଣ ମାୟା ରଚିଥିଲେ ସିମିତି ନିଜକୁ ବହୁଧାରେ ବିଭକ୍ତ କରିଦେଇ, ଏକରୁ ଅନେକ ହେଇଯାଇଥିଲେ । କଥା କାନରୁ ଦିକାନ ହେଇ ଶେଷରେ ମହନ୍ତ ଗୋସେଇଙ୍କ କାନକୁଗଲା । ଯିଏ ଦେଖିଛି ତା ପାଇଁ ତ ଏହା ଅଲୌକିକ ଅନୁଭବ । କିନ୍ତୁ ଯିଏ ଶୁଣିଛି ପରତ ଯାଉନି , ଏ ଘୋର କଳି ଯୁଗରେ ଏଭଳି ଅଲୌକିକତା କଣ ସମ୍ଭବ ?

ମହନ୍ତ ଏତେ ବଡ଼ ସାଧକ ହେଇ ଏତେ ଦିନର କୃଷ୍ଣଭକ୍ତ ହେଇ, ଏତେ ଦିନ ରାଧାରାଣୀଙ୍କୁ ପୂଜା ଉପାସନା କରି ମଧ ଦାସୀଙ୍କ ସମ୍ବାଦକୁ ଅବିଶ୍ୱାସକଲେ । ନିଭୃତସେବା ତ ପିତୁଳା ପିତୁଳୀଙ୍କୁ ନେଇ ରଚନା କରାଯାଏ । ସେଥିରେ ପ୍ରାଣ କିମିତି ସଂଚରିଗଲା, ନିତ୍ୟାନନ୍ଦ ଓ ଗୌରୀ ନିଜ ଦେହ ଛାଡ଼ି ପିତୁଳି କିମିତି

ହେଲେ । ନିତ୍ୟାନନ୍ଦ ଦାସ ଓ ଗୌରୀ ଦାସ୍ୟାମ୍ମାଙ୍କୁ କେନ୍ଦ୍ରକରି ସୃଷ୍ଟିହେଇଥିବା ଆଲୌକିକତାର ସତ୍ୟାସତ୍ୟ ଉପରେ ବାଦ ବିସମ୍ବାଦ ମଠ ଅନ୍ତେବାସୀଙ୍କୁ ଆଲୋଡ଼ିତ କଲା । ମହନ୍ତ ମହାରାଜ ନିଜେ ଗୌରୀମ୍ମାକୁ ପଚାରି କଥା ନିଦାନ କରିବାକୁ ଚିନ୍ତାକଲେ । ତା ପୁର୍ବରୁ ସ୍ୱୟଂ ଏହି ନିଭୃତ ସେବା ରହସ୍ୟ ନିଜେ ଉଦ୍‌ଘାଟନ କରିବେ ବୋଲି ମନସ୍ଥ କଲେ । ଅବଶ୍ୟ ବହୁ ଦିନ ଆଗରୁ ରାତିରେ ଉପବନଦ୍ୱାର ବନ୍ଦ ରଖିବାକୁ ସେ ଟହଲିଆକୁ ନିର୍ଦ୍ଦେଶ ଦେଇଥିଲେ । ଏଣୁ ମହନ୍ତ ମହାରାଜାଙ୍କ ଆଦେଶକୁ ଅବମାନନା କରି ଉପବନ ଭିତରେ ପ୍ରବେଶିବାର ସାହସ କୌଣସି ଦାସୀର କିମ୍ବା ପରିଚାରକର ନଥିଲା । ନିତ୍ୟାନନ୍ଦ ଓ ଗୌରୀ ମଧ ଉପବନରେ ବିହରଣ କରିବାକୁ ଯିବା ନ ଯିବା ଭିତରେ କିଛି ବିଶେଷ ଅନ୍ତର ହେଉନଥିଲା । ସେମିତି କଦମ୍ବ ମୂଳରେ ରାଧାରାଣୀ ଓ କୃଷ୍ଣ କେଳୀ କରୁଥିଲେ । ବଂଶୀସ୍ୱନ ସେଆଡ଼୍ ଅହରହ ସେମିତି ଭାସି ଆସୁଥିଲା । ଗୌରୀ ଓ ନିତ୍ୟାନନ୍ଦ ମଠକୁ ଆସିବା ପରଠାରୁ ଏ ଥିଲା ଏକ ନିତ୍ୟ ନୈମିତିକ ଘଟଣା । ସେରାତିରେ ଦୈବାତ୍ ଦାସୀମାନେ ନିଜେ ନିଭୃତ ସେବା ଚାକ୍ଷୁଷ କରି ଅପୂର୍ବ ଆନନ୍ଦ ଲଭିଲେ ବୋଲି ଘଟଣାଟି ଅନ୍ୟ ମୋଡ଼ ନେଲା । ନ ହେଲେ ରାଧାକୃଷ୍ଣଙ୍କ ରାସକ୍ରୀଡ଼ା ତ ଏକ ଚିରନ୍ତନ ଘଟଣା । କିଏ ହୁଏତ ଚାକ୍ଷୁଷ କରିବାର ସୌଭାଗ୍ୟ ଲଭୁଛି, ହୁଏତ ଆଉ କିଏ ଆଦୌ ପାଉନି । ଦାସୀମାନେ ଚକ୍ଷୁ ଥାଇ ମଧ ଆଜି ପର୍ଯ୍ୟନ୍ତ ଅନ୍ଧଥିଲେ ।

କିଛି ଦିନ ଅନ୍ତରରେ ଦିନେ ନିଶାର୍ଦ୍ଧରେ ମହନ୍ତ ଗୋସେଇଁ ନିଜେ ଉପବନ ଭିତରେ ପ୍ରବେଶକଲେ । ସଂପୂର୍ଣ୍ଣ ଏକାକୀ । ଉପବନ ଭିତରର ନୈସର୍ଗିକ ପରିପାଟୀ ତାଙ୍କୁ ଏକ ନୂଆ ଭାବରେ ପ୍ରଲୋଭିତ କରିଦେଲା । ମଲ୍ଲି ଜାଇ, ଯୂଇ, କଦମ୍ବ ମାଳତୀ ବାସ୍ନାରେ ପ୍ରଥମେ ସେ ମୁଗ୍ଧ ହେଇପଡ଼ିଲେ । ନିର୍ମଳ ଆକାଶରେ ଚତୁର୍ଦ୍ଦଶୀର ଜହ୍ନ ମାୟାଭିଆଉଛି । ଗହଳିଆ ଉପବନରେ ଖେଳୁଛି ତିଳ ତଣ୍ଡୁଳର ଛାଇ । ମୃଦୁ ମଳୟ ହିଲ୍ଲୋଳ ସାଙ୍ଗକୁ ଉପବନର ସ୍ତବ୍ଧତା ଭିତରେ ସେ ଏ କଣ ସଂଦର୍ଶନ କରୁଛନ୍ତି । କଦମ୍ବ ମୂଳେ ଗୌରୀ ଦଣ୍ଡାୟମାନା । ଅପରୂପ ଲାବଣ୍ୟରେ ଭରା ଚଂପା ବର୍ଣ୍ଣର ଦେହ ଉପରେ ଝିନ୍ନ ପଟବସ୍ତ୍ରର ଲାଙ୍ଗା ଓ ଓ୍ୱାଣୀ । ସମସ୍ତ ଅଙ୍ଗସୌଷ୍ଠବ ଠିକେ ଠିକେ ବାରିହେଇ ପଡୁଛି । ରକ୍ତମାଂସର ଦେହଭଳି ଲାଗୁନି । ସେ ଝଲି ଝଟକୁଛି । ଖଣ୍ଡମେଣ୍ଡଳ ଅପୂର୍ବ ଜ୍ୟୋତିରେ ଉଚ୍ଛୁଳି ପଡ଼ିଛି । ସେ କଣ ଦେବୀ ନା ଗାନ୍ଧର୍ବୀ ? ଗୋସେଇଁ ଅନୁମାନ କରି ସ୍ଥିର କରିପାରୁନାହାନ୍ତି ।

ରାଧାଭାବରେ ତଲ୍ଲୀନ ହୋଇ ସେ ଚାହିଁରହିଛନ୍ତି ସେହି ସୁବର୍ଣ୍ଣ ପ୍ରତିମାକୁ । କଦମ୍ବ ଉହାଡ଼ରୁ ଏବେ ବଂଶୀ ସ୍ୱନ ଭାସିଆସିଲା । ବଂଶୀରେ ଗୀତଗୋବିନ୍ଦର ସୁଲଳିତ ପଦାବଳୀ, ଏକାଗ୍ରତାର ସହିତ କାନେଇଲେ ଶୁଣିହେଉଛି ବିଂଶ ପ୍ରବନ୍ଧର ଗୀତ ।

ବିରଚିତ ଚାଟୁ ବଚନରଚନଂ ଚରଣେ ରଚିତପ୍ରଣିପାତମ୍ ।
ସଂପ୍ରତି ମଞ୍ଜୁଳବଞ୍ଜୁଳସୀମନି କେଳିଶୟନମନୁଯାତମ୍ ।
ମୁଗ୍‌ଧେ ମଧୁମଥନମନୁଗତମନୁସର ରାଧିକେ ।।
ଘନଜଘନସ୍ତନଭାରଭରେ ଦରମନ୍ଥରଚରଣବିହାରମ୍ ।
ମୁଖରିତମଣିମଞ୍ଜୀରମୁପୈହି ବିଧେହି ମରାଳ ବିକାରମ୍ ।

ମହନ୍ତଙ୍କ ସମଗ୍ର ସାଧନାମୟ ଜୀବନ ଭିତରେ ଏ ହେଉଛି ପ୍ରଥମଥର ପାଇଁ ଏକ ଅପୂର୍ବ ଅଲୌକିକ ଅନୁଭୂତି । ମହନ୍ତେ ସେମିତି ହତବାକ୍ ହୋଇ ଠିଆହୋଇ ରହିଥାନ୍ତି । ସ୍ୱଚକ୍ଷୁରେ ଦେଖିଲେ, କୃଷ୍ଣଚନ୍ଦ୍ର ରାଧାଙ୍କ ପାଖରେ ଉଭା ହେଲେ, ମଠର ପୂଜିତ ପ୍ରତିମାଭଳି । ଠିକ୍ ରୂପ, ଠିକ୍ ଠାଣି । ଦେଖିବାରେ ନିଜର ତ୍ରୁଟିତ ନାହିଁ । ତା ହେଲେ ତାଙ୍କର କୃଷ୍ଣଚନ୍ଦ୍ର ଏମିତି ପ୍ରତି ରାତିରେ ଏଇଠି ବିରହନ୍ତି । କାହିଁ ଦିନେ ତ ସେ ତାର ସାମାନ୍ୟ ତମ ଝଲକ ବି ପାଇପାରିନାହାନ୍ତି ? ସେ କଣ କେଳି ଦର୍ଶନ ପାଇଁ ଯୋଗ୍ୟ ନଥିଲେ, ଏତେ ଦିନ ଯାଏଁ । କୃଷ୍ଣ ରାଧାଙ୍କୁ ଆଲିଙ୍ଗନ କଲେ, ଅଧର ଚୁମ୍ବିଲେ, ତାପରେ ସବୁ ଶୁନ୍‌ସାନ୍ ହୋଇଗଲା । ପ୍ରତିମା ଦୁଇଟି କୁଆଡ଼େ ଉଭେଇଗଲେ । ପବନରେ ଭରିଗଲା ଧୂପ, ଗୋଗୁଳ, ଚନ୍ଦନର ମହକ । ପୂର୍ଣ୍ଣ ହେଲା ଦେହ, ପୂର୍ଣ୍ଣ ହେଲା ମନ ଓ ପ୍ରାଣ । ' ପୂର୍ଣ୍ଣ ହେଲା ମୋ ଜୀବନ' କହି ଗୋସେଇଁ ଭୂଇଁରେ ମୁଣ୍ଡ ଲଗାଇ ପ୍ରଣାମ କଲେ । ତମେ ଆଜି ଯାଏଁ କିମ୍ପା କପଟ କରିଥିଲ ପ୍ରଭୁ ! କିମ୍ପା ଏ ଅଧମ ଦାସକୁ ଦିବ୍ୟ ଦରଶନ ଦେଇ ଆତ୍ମାକୁ ଶାନ୍ତ କରିନଥିଲ ।

ମହନ୍ତ ଗୋସାଇଁ ସେହି ଅଲୌକିକ ରୂପ ସଂଦର୍ଶନ କଲାପରେ ଆଜିକାଲି ବେଶି ତଲ୍ଲୀନ ଓ ଧ୍ୟାନସ୍ଥ ମନେ ହେଉଛନ୍ତି । କିନ୍ତୁ ସେ ବିମର୍ଷ ନୁହନ୍ତି । ସଦାସର୍ବଦା ସେ ରାଧାଭାବରେ, ମାଧୁର୍ଯ୍ୟଭାବରେ ବୁଡ଼ିରହୁଛନ୍ତି । ଦାସୀମାନେ ମଧ୍ୟ ଏ ଭାବାନ୍ତରକୁ ଉପଲବ୍ଧ କରି ସାରିଲେଣି । ସଂଧ୍ୟାହୋଇ ଆସିଲେ ଉପବନର କବାଟ ବନ୍ଦ । ସେଠାରେ ଠାକୁର ଠାକୁରାଣୀ ଏକାକି ବିହରନ୍ତୁ । କେଳି ରଚନ୍ତୁ ।

'ବିହରତି ହରିରିହ ସରସ ବସନ୍ତେ । ନୃତ୍ୟତି ଯୁବତିଜନେନ ସମଂ ସଖୀ ବିରହିଜନସ୍ୟ ଦୂରନ୍ତେ' । ବିହରନ୍ତୁ ନୃତ୍ୟନ୍ତୁ, ଉପବନ ପୁଣ୍ୟ ହେଇଯାଉ, ଦିବ୍ୟ ହେଇଯାଉ । ମହନ୍ତ ଗୋସେଇଁଙ୍କ ଗୀତଗୋବିନ୍ଦର ପଂକ୍ତି ସବୁ ମଳୟ ପବନରେ ଦୋଳାୟିତ ହେଇ ବେଳେ ବେଳେ ତୁଣ୍ଡରେ ଉଚ୍ଛରି ଯାଉଛି । ଅସଂଲଗ୍ନ ପଦ ସବୁ କିଶଳୟ ଭଳି ଉଦ୍‌ଗମୀ ଯାଉଛନ୍ତି । 'ମୃଗମଦସୌରଭରଭସବଶମ୍ବଦ ନବଦଳମାଳତମାଳେ । ଯୁବଜନହୃଦୟବିଦାରଣମନସିଜନଖରୁଚି କିଂଶୁକଜାଳେ '। ମହନ୍ତ ଗୋସାଇଁ ଏକ ଅଭିନବ ଉନ୍ମାଦନାରେ ଉତ୍‌ଫୁଲ୍ଲିତ ହେଇଯାଉଛନ୍ତି ।

ମଠ ଉପବନରେ ନିଭୃତ ସେବା ଆଗରୁ ହେଉଥିଲା । ପିତୁଳୀମାନଙ୍କୁନେଇ ରାସ ରଚନା କରାଯାଉଥିଲା । ମହୋତ୍ସବ ଚାହାସମେଡ଼ାରେ ବୃତ୍ତାକାରରେ ଚିତ୍ରିତ ପିତୁଳିମାନ ସଜ୍ଜିତ ହେଇ ରହୁଥିଲେ, ଗୀତଗୋବିନ୍ଦ ବୋଲା ହେଉଥିଲା । ପିତୁଳିମାନଙ୍କୁ ନେଇ ରାଧାକୃଷ୍ଣ ରତିଯୁଗଳ ଓ ରାସକ୍ରୀଡ଼ାର ଦୃଶ୍ୟ ସର୍ଜନା ହେଉଥିଲା । ପୁଷ୍କରିଣୀରେ ବସ୍ତ୍ରହରଣ ଲୀଳା ମଧ୍ୟ ରୂପାୟିତ ହେଉଥିଲା, ପାଣି କମି ଆସିଲେ ବସୁଦେବ କୃଷ୍ଣଙ୍କୁ ନେଇ ଯମୁନା ପାରି ହେଉଥିଲେ । କାଳିୟ ଦଳନ ରୂପସଜ୍ଜା ହେଉଥିଲା । ମହନ୍ତ ଗୋସେଇଁ ଦାସୀଙ୍କ ମେଳରେ ବିଜେ ହେଉଥିଲେ । ମହନ୍ତଙ୍କୁ ପୁଷ୍ପବିମାନରେ ବସେଇ ଦାସୀଗଣ ଉପବନ ପରିକ୍ରମା କରୁଥିଲେ । କୀର୍ତ୍ତନର ମଧୁର ଧ୍ୱନିରେ ଉପବନ ପରିସୀମା ଝଙ୍କୃତ ହେଇ ଉଠୁଥିଲା । ସମସ୍ତେ ଭକ୍ତି ଓ ପ୍ରେମ ରସରେ ଅବଗାହନ କରୁଥିଲେ । ଏସବୁ ଲୀଳାତ ଅନେକ ବାର, ପ୍ରତିବର୍ଷ ରୂପାୟିତ ହେଉଥିଲା । କିନ୍ତୁ ଏବେ ଲୀଳାଭିତରେ ବିଚିତ୍ରତା, ଅଲୌକିକତା ଓ ରସ ଭରିହେଇଗଲା । ନିଜେ ଠାକୁର ଏବେ ପିତୁଳିଙ୍କ ଭିତରେ ପ୍ରାଣ ସଂଚରି ଦେଲେ । ପିତୁଳିମାନେ ସ୍ପନ୍ଦିତ ହେଲେ , ପ୍ରଗଳ୍ଭ ହେଲେ , ଚକିତ ଓ ମୁଗ୍ଧହେଲେ । ପିତୁଳୀମାନଙ୍କ ଅଧର କଂପିଉଠିଲା, ଗଣ୍ଡଥରି ଉଠିଲା, ସ୍ତନରେ ଜଘନରେ କାମବାସନା ସଂଚରିତ ହେଲା, କୃଷ୍ଣପ୍ରାପ୍ତିରେ ସେମାନେ ଅଧୀରା ହେଲେ । ନିଭୃତ ସେବାରେ ଜୀବନ ଭରିଗଲା ।

କେବଳ ରାଧାଷ୍ଟମୀ ନୁହେଁ ସବୁ ଗୁରୁବାରେ ମଠର ଦାସୀମାନେ ଗୌରୀମ୍ମାଙ୍କୁ ଅର୍ଚ୍ଚନା କଲେ । ବ୍ରାହ୍ମମୁହୂର୍ତ୍ତରୁ ଶଯ୍ୟାତ୍ୟାଗ କରେଇ, ଅଁଳା ପ୍ରଲେପ ଦେହରେ ଲଗାଇ କୋକିଳ ସ୍ନାନ କରେଇ, ହଳଦୀ କୁଙ୍କୁମ ଚନ୍ଦନରେ ଭୂଷିତ କରେଇ ଦିବ୍ୟଆଭୂଷଣରେ ମଣ୍ଡିତ କରେଇ, ନୀଳୋତ୍ପଳରେ ରାଧାରାଣୀଙ୍କ ପଦବନ୍ଦନା

କଲେ । ନିତ୍ୟାନନ୍ଦଙ୍କୁ ମଧ ଅନୁରୂପ ବିଧିବିଧାନରେ ସମାର୍ଚ୍ଚନ କରେଇ, ପୀତାମ୍ବର ପାଟ ପିନ୍ଧେଇ ଶରୀରରେ ତିଳକ ଅଙ୍କନ କରି, ଗଳାରେ ବରଣ ମାଳା ଦେଇ ତୁଳସୀରେ ପାଦ ବନ୍ଦି ରାଧାରାଣୀଙ୍କ ପାଖରେ ଆସୀନ କରାଇଲେ । ନିଶାର୍ଦ୍ଧରେ ଗୋପ୍ୟ ସେବାପାଇଁ ଉପବନରେ ଉଭୟଙ୍କୁ ବିଜେ କରାଇଲେ । ନିତ୍ୟାନନ୍ଦ ଓ ଗୌରୀ ମଠରେ ପୂଜିତ ପିତୁଳା ପିତୁଳୀମାନଙ୍କର ଚଳନ୍ତି ପ୍ରତିମା ଭଳି ସମସ୍ତ ଲୀଳାଉତ୍ସବରେ ମୁଖ୍ୟଭୂମିକା ଗ୍ରହଣକଲେ । ନିଭୃତସେବା ସଂଦର୍ଶନ କଲା ପରେ ମହନ୍ତ ଗୋସେଇଁଙ୍କ ଏହାହିଁ ଇଚ୍ଛାଥିଲା ଓ ଆଦେଶ ମଧ ଥିଲା । ମଠର ବିଭୂତି ବଢୁ, ଐଶ୍ୱର୍ଯ୍ୟ ବଢୁ, ମଠ ମହିମାନ୍ୱିତ ହେଉ । ବୃନ୍ଦାବନର ମଠମାନଙ୍କରେ ଯାହା ସମ୍ଭବ ନ ହେଇପାରୁଛି ଏଠି ତାହା ଘଟୁ ।

ମଠ ପରଂପରାରେ, ବିଭୂତିର ଓ ପ୍ରଭୁତ୍ୱର ସଂପ୍ରସାରଣ ଏଭଳି ହିଁ ହୁଏ । ଗୁରୁଙ୍କଠାରୁ ଶିଷ୍ୟଙ୍କ ଆକଳନ ଭିତରକୁ ସ୍ଥିତି ଓ ଦ୍ୟୁତି ଏମିତି ହିଁ ଅବତରିଯାଏ । ମହନ୍ତ ଗୋସେଇଁ ଉପଲବ୍‌ଧିକଲେ ଯେ ମଠ ନିତ୍ୟାନନ୍ଦ ଓ ଗୌରୀର ପରିଚାଳନାରେ ଉତ୍ତୋରତ୍ତର ନିଶ୍ଚୟ ଉନ୍ନତି କରିବ । ମଠର ସାତ୍ତ୍ୱିକ ଓ ଧାର୍ମିକ ବାତାବରଣ ଦୃଢ଼ୀଭୂତ ହେବ । ସେ ମର ଦେହ ତ୍ୟାଗକରିଦେବା ପାଇଁ ଏକ ରକମ ସଂକଳ୍ପବଦ୍ଧ ହେଲେ । ସେ ଦେହର ଆବଶ୍ୟକତାକୁ ହ୍ରାସ କରେଇଦେଲେ । ଦାସଦାସୀ ପରିଚାରିକାଙ୍କ ସଂଖ୍ୟା ଖଂଜା ଭିତରେ ନ୍ୟୁନ ହେଇଆସିଲା । ସେ ମନସ୍ଥକରୁଥିଲେ ଯେ ନାମ ସଂକୀର୍ତ୍ତନର ମଧୁମୟ ବ୍ୟାପ୍ତିଭିତରେ, ତୁଣ୍ଡରେ ହରିନାମନେବା ଅବସ୍ଥାରେ ଦେହ ତ୍ୟାଗୀପାରିଲେ ତାଙ୍କୁ ବୈକୁଣ୍ଠ ପାପ୍ତି ହେବ ।

ମହନ୍ତ ମହାରାଜାଙ୍କ ଇଚ୍ଛା ଜାଣିହେଇଗଲା । ନିତ୍ୟାନନ୍ଦ ଓ ଗୌରୀ ଦିନେ ସକାଳୁ ସ୍ନାନାଦି କର୍ମସାରି ପୂଜାଅର୍ଚ୍ଚନା ପରେ ଗୋସାଇଁଙ୍କ ଦର୍ଶନ ପାଇଁ ବିଜେହେଲେ । କୃତାଞ୍ଜଳି ପୁଟରେ ଠିଆହେଇ ଶ୍ରଦ୍ଧା ନିବେଦନ ପରେ ପାଦ ତଳେ ପ୍ରଣାମକଲେ । ଜଣାକରି କହିଲେ ପ୍ରଭୁ ! ଆମ ବାଞ୍ଛା ପୁରଣକରନ୍ତୁ । ଆସନ୍ତା ମାସ ଦ୍ୱିତୀୟ ଗୁରୁବାର ଦିନ ମାଘ ପୂର୍ଣ୍ଣିମା । ଉପବନରେ ନବନାରୀ କୁଞ୍ଜର ରଚନା ହେବ । କୃଷ୍ଣଚନ୍ଦ୍ର ରାଧାରାଣୀ ବିଜେ ହେବେ, ମଠର ଦାସୀମାନେ ଦେହରେଦେହ ଛନ୍ଦି, ହାତକୁ ହାତରେ ଘେନି, ବାହୁକୁବାହୁରେ ମିଶେଇ କୁଞ୍ଜର ରଚିବେ । କୁଞ୍ଜର ଉପରେ ଆପଣ ଆସୀନ ହେବେ । ଏତିକି ମାଗୁଣି ଆମର ଘେନାହେବେ । ଆପଣ ରାଧାରାଣୀଙ୍କୁ

ଉପବନଭିତରେ ଖୋଜିବେ । କୃଷ୍ଣଚନ୍ଦ୍ର ଓ ରାଧାରାଣୀ ଗୋପ୍ୟ ହେଇଯିବେ । ସବୁ ଦାସୀଙ୍କର ଏହାହିଁ ଅନ୍ତରର କାମନା ।

ନିତ୍ୟାନନ୍ଦ କହିଲେ ଗୌରୀମ୍ମା ରାସକ୍ରୀଡ଼ାର ଅନେକ ଗହନ ରଙ୍ଗ ଦାସୀଙ୍କ ଆଗରେ ବର୍ଣ୍ଣନା କଲାପରେ ସେମାନେ ଏକଥା ପ୍ରକାଶିଛନ୍ତି । ଆମେ ସେମାନଙ୍କ କାମନା ଆପଣଙ୍କ ସମକ୍ଷରେ ପ୍ରକାଶ ହିଁ କରୁଛୁ । ବନାନୀ, ଚଂପା, ହରିପ୍ରିୟା ଓ ଚନ୍ଦ୍ରକଳା ସମସ୍ତେ ପ୍ରୌଢ଼ା, ସେମାନେ ହାତୀର ଚାରିଗୋଡ଼ ଭଳି ଉଭାହେବେ । ରେଣୁକା ଓ କାମିନୀ ଦୁହେଁ ହାତକୁହାତ ଧରି ଧନୁ ଆକୃତିହେଇ ହାତୀର ପୃଷ୍ଠଭାଗ ରଚିବେ । ବନ୍ଦନା ପଛରେ ଉର୍ଦ୍ଧ୍ୱମୁଖହେଇ ହାତୀର ଶିରଭାଗ ମଣ୍ଡନକରିବ । ତାର ସ୍ତନ ଦୁଇଟି ହାତୀର ମଥାର କେଶର ଭଳି ପ୍ରତୀୟମାନ ହେବ । ରେଣୁକାର ବେଣୀକୁ ଧରି ଝୁଲିରହି ନୀଳିମା ନିଜ ଦୁଇହାତରେ ରେଣୁକାର ଦୁଇ ଗୋଡ଼କୁ ଧରିରଖିବ । ରେଣୁକା ନିଜ ଦୁଇହାତକୁ ପଛକୁ ଓଲଟେଇ ଧରି ହାତୀର ଦାନ୍ତ ତିଆରିବ । ବନାନୀ, ଚଂପା, ହରିପ୍ରିୟା ଓ ଚନ୍ଦ୍ରକଳାର ମୁଣ୍ଡ ଉପରେ ସମାନ୍ତରାଳ ଭାବେ ମାଳତୀ ଶୋଇ ରହି ବନ୍ଦନା ଓ କାମିନୀର ଭାରା ସମ୍ଭାଳିବ । ସମସ୍ତଙ୍କ ଉଲଗ୍ନ ରସାଳ ଦେହ ନାରୀକୁଞ୍ଜରର ମାଧୁର୍ଯ୍ୟ ଶତ ଗୁଣରେ ବଢ଼େଇଦେବ । ଆପଣଙ୍କ ଅନୁମତି ମିଳିଲେ ମାଘ ପୂର୍ଣ୍ଣିମାର ନିଶାର୍ଦ୍ଧରେ ଉପବନର କଦମ୍ବ ବନରେ ଏହି ନିଭୃତ ରାସ ରଚନା କରାଯିବ । ଆଉ ଯେଉଁ ଦାସୀମାନେ ରହିଲେ ସେମାନେ ମୃଦଙ୍ଗ, ଝାଂଜ ବଜେଇ ଚତୁର୍ଦିଗେ କୀର୍ତ୍ତନ କରିବେ । ହାତୀ ମାଳତୀଲତା ପାଖରେ ଆପଣଙ୍କୁ ଅପେକ୍ଷା କରିଥିବ । ଆପଣ କୃଷ୍ଣଚନ୍ଦ୍ର ଭଳି ଏହାଉପରେ ଆରୂଢ଼ ହେଇ ଉପବନ ପରିକ୍ରମା କରିବେ । ରାଧାରାଣୀଙ୍କୁ ଆତୁରରେ ଖୋଜିବେ । ରାଧାରାଣୀ ଲତାଭିତରେ, ଗଛମାନଙ୍କ ଆଢୁଆଳରେ ଲୁଚିପଡୁଥିବେ । ଆପଣ ଆର୍ତ୍ତହେଇ ରାଧାରାଣୀଙ୍କ ଦର୍ଶନ ଲୋଡ଼ିବେ । ରାଧାରାଣୀ ଦର୍ଶନ ଦେବେ ।

ନିତ୍ୟାନନ୍ଦ ଓ ଗୌରୀର ଅଲୌକିକ ସାଧନାରେ ମହନ୍ତ ଗୋସେଇଁ ସନ୍ତୁଷ୍ଟଥିଲେ । ସେ ନିଶ୍ଚିତ କରିନେଲେ ଏହି ସେବାର କିଛି ଧାର୍ମିକ ମହତ୍ତ୍ୱ ଅଛି । ଏଣୁ ହିଁ ଭରିବାର ତାଙ୍କର ଆପତ୍ତି ରହିଲାନି । ଗୌରୀମ୍ମା ଦାସୀମାନଙ୍କୁ ଏକଜୁଟ କରି, ନବନାରୀକୁଞ୍ଜର ରଚନା ଶୈଳୀ ବର୍ଣ୍ଣନାକଲେ । ସେମାନଙ୍କ ପାଇଁ ଏଭଳି ରାସକ୍ରୀଡ଼ାରେ ଭାଗନେବା ସଂପୂର୍ଣ୍ଣ ନୂଆଥିଲା । ସେମାନେ ପ୍ରଥମେ ଆଶ୍ଚର୍ଯ୍ୟହେଇ ପରସ୍ପରକୁ ଚହାଁଚହିଁ

ହେଲେ । ପରେ ଏକ ଅନାଗତ ମାଧୁରୀରେ ନିଜକୁ ତଲ୍ଲୀନ କରେଇ ଦେବାର ସମ୍ଭାବନା ଅଛି ବୋଲି ଜାଣି ସମସ୍ତେ ମୁଣ୍ଡ ଟୁଙ୍ଗାରିଲେ ।

ଦାସୀଙ୍କ ଖଞ୍ଜାରେ ଆନନ୍ଦ ଉତ୍ସବ ଖେଲିଯାଇଛି । କିଏ କହିଲା ଏ ମଠରେ ମୋର ଏତେ ଦିନ ଭୋଗ ହେଲାଣି ଅଥଚ ଏଭଳି ରାସକଥା କାନରେ ପଡ଼ିନଥିଲା । ଆଉ କିଏ କହିଲା ଛି ! ଛି! ଲାଜ କଥା । ଆମେ ସମସ୍ତେ ଉଲଗ୍ନ ହେବା । ଜାନୁ ଯୌବନ ଦେଖେଇବା । ରେଣୁକା କହିଲା ମୋର ଭାରି ମଜା, ମୁଁ ହାତୀର ଶିରୋଭାଗ ମଣ୍ଡନ କରିବି । ସେ କହିଲା ନୀଳିମା, ତୁ ମୋ ସ୍ତନରେ କୁଙ୍କୁମ ବିଛିଦେବୁ ତ , ଲାଗିବ ଗଜରାଜ କୃଷ୍ଣଙ୍କୁ ଅଙ୍ଗରେ ବହନକରି କାମୋତ୍ତେଜନାରେ ରଙ୍ଗିମା ବିତରୁଛି । ମାଳତୀ ଶେଯ ଉପରେ ଶୋଇ ରହି ପଦେ କଥା କହିଲା, ଦେଖ ମୋ କାମ ସମସ୍ତଙ୍କ ଠାରୁ ସରସା, ନାନୀ ଓ ମାଉସୀମାନଙ୍କ ମୁଣ୍ଡଉପରେ ଶୋଇ ଶୋଇ ମୋର ସମୟଯିବ । ଖାଲି ବନ୍ଦନା ଓ କାମିନୀ ମୋ ଉପରେ ଆକାଶ ରଚନାକରିବେ । ସେମାନଙ୍କ ସ୍ତନରୁ ମୋ ଉପରେ ଅମୃତ ସ୍ରବିଲା ଭଳି ଲାଗିବ । ମୁଁ ମନ୍ଦିରଚାରିଣୀ ହେଇ ସେମାନଙ୍କ ଭାରା ସମ୍ଭାଳିବି । ସେମାନେ ମୋତେ ଚାହିଁଥିବେ ଓ ମୁଁ ସେମାନଙ୍କୁ ଅନେଇ ରହିଥିବି । ପ୍ରୌଢ଼ା ଚାରିଜଣ ଶେଷରେ ହତାଶ ହେଲାଭଳି କହିଲେ ଆମେ ସିନା ଉପର ଭାଗରେ ଥାଆନ୍ତୁ, ଆମେ ପରା ବୟସ୍କା । ନୀଳିମା, ରେଣୁକା, ଗୋଡ଼ ହେଇଥିଲେ ଖୁବ୍ ଦମ୍ଭିଲା ହେଇଥାନ୍ତା । ସ୍ନେହର ଭାରିମଜା, ଖାଲି ମୃଦଙ୍ଗ ବଜେଇବ । ଆଉ ପୁଷ୍ପା ଝାଞ୍ଜ । ସେମାନଙ୍କ କି ପୁରୁଷ୍ଟ ଦେହ । ଗୋଡ଼ ହେଇଥିଲେ ହାତୀ ବଢ଼ିଆ ବାଗରେ ଝୁଲିଥାନ୍ତା । ଚଂପା ଗୋଡ଼ ହେଉଥିବା ଦାସୀଙ୍କ ଭିତରେ ଖୁବ୍ ଅଭିମାନିନୀ । କହିଲା ଗୌରୀମ୍ମା ଯିମିତି କହିଛନ୍ତି ସିମିତିହିଁ ହେବ, ରାଧାରାଣୀ ମାୟା ନ ଭିଆଇଲେ ତମେ କୋ କୁଞ୍ଜର ରଚନା କରିପକେଇବଯେ । ମଠର ଘିଅ ଭାତ ଖାଇ ଖାଇ ତ ସମସ୍ତେ ଗଣ୍ଡି ବଢ଼େଇ ସାରିଲଣି । ସମସ୍ତଙ୍କ ନିତମ୍ବ ଘୋରଣା ଚକିଭଳି ହେଇଗଲାଣି, ସ୍ତନଯାକତ ଶିଳପୁଆ ଭଳି ରସାଳିଗଲାଣି, ମୁହଁ ଗାଲ ତ ପୁଚୁକି ଗଲାଣି । ତମେମାନେ ନିଜେ ନିଜେ ନିଜ ବୁଦ୍ଧି ଖଟେଇ କିମିତି ଯେ କୁଞ୍ଜର ରଚିଦେବ? କମର ତ ବଙ୍କା ହେଉନି, ସମସ୍ତେ ବୃଶାଳ ତରୁବର ଭଳି ଦେଖାଗଲଣି । ତମେ ସମସ୍ତେ ପ୍ରତି ରାତିରେ କିଛିନା କିଛି ନିଭୃତ ସେବାରେ ସାମିଲ ହେବା ଦରକାର । ମହନ୍ତ ଗୋସେଇଁଙ୍କ ତ ଯୌବନ ଖସିଯାଇଛି । ଏଣୁ ତମେ ମାନେ ଏମିତି ଉନ୍ମତ୍ତା ହେଉଛ । ରହ ରହ

ଟୋକା ମହନ୍ତ ଆସିବେ । ପିଠିରେ ଛାଟ ବାଜିବ, ନାଟ ଲାଗିବ, ଗୁମର ପଦାରେ ପଡ଼ିଯିବଯେ ।

ଆଜି ମାଘ ପୂର୍ଣ୍ଣିମା । ମୁହଁ ଅନ୍ଧାରରୁ ଦାସୀମାନେ ଉପବନ ବେଢ଼ାଦେଇ ପୁଷ୍କରିଣୀକୁ ଗଲେ । ଚୁଆ, ହଳଦି, ଅଁଳା ମାଜଣା ହେଇ ସ୍ନାହାନ ବଢ଼େଇଲେ । ନୀଳିମା ପରିହାସକରି କହିଲେ, ଗୋ ଦାସୀମାନେ, ଗୋ ସଖିମାନେ ଏବେଠୁଁ ଉଲଗ୍ନ ହେଇ ସ୍ନାହାନକର । ଆଜି ସଂଧ୍ୟାରେ ନିଭୃତ ସେବାରେ ମିଶିବ ପରା । ପ୍ରୌଢ଼ା ନାନୀ ଓ ମାଉସୀମାନେ କହିଲେ ତମେ ସିନା ଅଳ୍ପବୟସୀ, ଯୌବନ ତମରି ଦେହରେ ଲହଡ଼ା ଭାଙ୍ଗୁଛି । ଆମକୁ ଦେଖୁନ, ଅପରାହ୍ନର ସ୍ୱପ୍ନ ନେଇ କିମିତି ପରକୁ ଅଙ୍ଗଦେଖେଇବୁ । କାମିନୀ ହସିହସି କହିଲା କିଏ ଆଉ କଣ ଦେଖିବାକୁ ବାକି ଅଛିଯେ । କିଏ ଆଉ କାହାର ଦେଖିବ ଯେ ଏତେ କଥା ପଡ଼ିଛି । ଆମର ନାଁ ଯାକ ଭିନ୍ନ ଭିନ୍ନ ସିନା, ଆମେ ତ ସମସ୍ତେ ଦାସୀ ଏକାଭଳି । ବୟସ ଆସିବ ଯିବ । ତାକୁ ଧରି ରଖିବ କିଏ ?

ଶୁଣିବ ତ ଶୁଣ ଭାଗବତରେ ବ୍ରାହ୍ମଣୀଙ୍କ ଚିନ୍ତା :

| | | | |
|---|---|---|---|
| ଅନଳ ଦେଖିଣ ପତଙ୍ଗ | । | ଯେହ୍ନେ ହୁଅନ୍ତି ଉଦବେଗ | । |
| ବୋଲନ୍ତି କରିବା ଗୋ କୋଳ | । | ଜୀବନ ହୋଇବ ସୁଫଳ | । |
| କେବୋଲେ ଏମନ୍ତ ନୁହଁଇ | । | ବ୍ରାହ୍ମଣେ ନ ଦେବେଟି ଯାଇ | । |
| ପରପୁରୁଷ କୋଳ କଲେ | । | ବିପ୍ରେ ଦଣ୍ଡିବେ ଘରେ ଗଲେ | । |
| ଏମନ୍ତ ବିଚାରନ୍ତି ରହି | । | କୃଷ୍ଣବଦନେ ଚକ୍ଷୁ ଦେଇ | । |
| କଣ୍ଠ-କୁଣ୍ଠିତ ରସଭର | । | ଅଧର କମ୍ପେ ଥରହର | । |
| ପୁଣ ପୁଲକଭରେ କୁଚ | । | ଜାନୁ କମ୍ପଇ ଘନଘଞ୍ଚ | । |
| ପଡ଼ିଲେ ପଞ୍ଚଶରେ ଘାରି | । | କୃଷ୍ଣଙ୍କୁ ଦେଖି ବିପ୍ରନାରୀ | । |
| ଆତ୍ମା ହୋଇଲା ମୋହଗତ | । | ପଞ୍ଚପରାଣ କଣ୍ଠାଗ୍ରତ | । |
| ଚକ୍ଷୁ ବୁଜିଲେ ଭାବଭରେ | । | କୃଷ୍ଣଙ୍କୁ ଦେଖିଲେ ଭିତରେ | । |
| ହୃଦୟେ ଦେଖି ନାରାୟଣ | । | ନିବିଡ଼େ କଲେ ଆଲିଙ୍ଗନ | । |

କୃଷ୍ଣଙ୍କ ଆଗରେ ଓ ରାଧାଙ୍କ ସାନ୍ନିଧ୍ୟରେ ଉଲଗ୍ନ ହେଇପଡ଼ିବାରେ

ବାଧକ ନାହିଁ । ସଖୀଜ୍ଞାନକର, ସ୍ୱାମୀଜ୍ଞାନ କର, ପୁତ୍ର କନ୍ୟା ଜ୍ଞାନକର, ଦେଖିବ ଏ ଆବରଣ ମିଥ୍ୟା । ଆବରଣ ଶୂନ୍ୟ କରିଦେଲେ, ଗୋପୀମାନଙ୍କ ଭଳି କୃଷ୍ଣପ୍ରାପ୍ତି ହେବ । କାମିନୀ ତୁ ଏତେ ଗହନକଥା କିମିତି ହେଜିଲୁ କହି ସମସ୍ତେ ଉଲଗ୍ନା ହେଲେ । ଜଳ କେଳି କଲେ, କୃଷ୍ଣଙ୍କୁ ଧାୟିଲେ । ତୁଠ ଉପରକୁ ଓଦା ଜର ଜର ଦେହରେ ଉଠି ବାଳ ଝାଡ଼ି ଶୁଖାଇଲେ । ସକାଳର ଶୀତଳ ପବନ ସେମାନଙ୍କ ଦେହ ଭିତରେ ଚରିଗଲା, ଉପବନର ଗଛ ଉହାଡ଼ରେ କୁମ୍ଭାଟୁଆ ରହି ରହି କୁହାଟିଲା । କେକାକେକୀ ପଲ ରାବିଲେ । ଭଅଁରମାନେ ମଧୁଚୁମ୍ବିବା ପାଇଁ ଗଛରୁ ବାହାର ହେଲେ । ନୂଆବସନ ପିନ୍ଧି ଦାସୀମାନେ କୃଷ୍ଣଚନ୍ଦ୍ରଙ୍କୁ ମଣ୍ଡିବେ ବୋଲି ଉପବନରୁ ଫୁଲ ତୋଳିଲେ । ଢୋଡ଼ାଶଙ୍ଖ ବାଜିବସିଲା, ମଙ୍ଗଳ ପାଠ ଶୁଭାଗଲା । ମନ୍ଦିରରେ ଘଣ୍ଟାଧ୍ୱନି ହେଲା ।

ଆଜି ମନ୍ଦିର ଧୂପ ଶୀଘ୍ର ବଢ଼ିଗଲା । ମହନ୍ତ ଗୋସେଇଁ ଆଜି ସଅଳ ପହୁଡ଼ ପାଇଁ ଗଲେ । ସ୍ନେହ ଓ ପୁଷ୍ପା ବେଶ ହେଇ ଅଙ୍ଗସେବା ପାଇଁ ଭିତର ଘରେ ପ୍ରବେଶିଲେ । ପଦମର୍ଦ୍ଦିଲେ । ମହନ୍ତ ପଲଙ୍କ ଉପରେ ନିଦେଇ ଗଲେ । ସ୍ନେହ ଓ ପୁଷ୍ପା ବି ପଲଙ୍କ ଗୋଡ଼ ପାଖରେ ଢୁଳେଇ ପଡ଼ିଲେ । ଚାଉଁ କରି ନିଦ ଭାଙ୍ଗିଗଲା । ଦେଖିଲା ବେଳକୁ ବେଳ ଗଡ଼ିଲାଣି । ସ୍ନେହ ଓ ପୁଷ୍ପା ମହନ୍ତ ଗୋସେଇଁଙ୍କ ପଦ ସ୍ପର୍ଶକଲେ । ଗୋସେଇଁ ଅଳସ ଭାଙ୍ଗି ପଲଙ୍କରୁ ଉଠିଲେ । ଜଣେ ମୁଖ ପ୍ରକ୍ଷାଳନ ପାଇଁ ତମ୍ବାଗଡୁରେ ପାଣି ବଢ଼େଇ ଦେଲା ଓ ଆଉ ଜଣେ ମୁହଁ ପାଖରେ ପାତ୍ର ଧରି ରଖିଲା । ସେବା ସାରି ଖଞ୍ଜା ବାହୁଡ଼ିଲେ ।

ସଂଧ୍ୟା ଉପଗତ ହେଲା । ମନ୍ଦିରମାନଙ୍କରେ ସାୟଂକାଳ ଆଳତି ଘଣ୍ଟା ବାଜିଲା । ଗୋଗ୍ଗୁଳ ଓ ଧୂପର ମହକରେ ମଠ ପରିବେଶ ଆଚ୍ଛାଦିତ ହେଇପଡ଼ିଲା । ଦିଅଁମାନଙ୍କ ନୀତିକାନ୍ତି ବଢ଼ିଲା । ଜଗନ୍ନାଥ ମନ୍ଦିରରେ ଚତୁଃସମ ଓ ବଡ଼ସିଂହାର ସେବା ସରିଲା । ମହନ୍ତ ଗୋସେଇଁ ନିଭୃତ ସେବା ପାଇଁ ବିଜେ ହେଲେ । ଆଗରୁ ଦାସୀମାନେ ଉପବନରେ ପହଞ୍ଚିଯାଇଥିଲେ । ଫର୍ଚ୍ଚା ଜହ୍ନ ଉପବନ ସାରା ଖେଳେଇହେଇ ପଡ଼ିଥିଲା । ଦାସୀମାନେ ଲାଜ ଲାଜ ହେଉଥିଲେ । ନୀଳିମା ପ୍ରଥମେ ହସି ହସି କହିଲା, ଆଗୋ ସଖିମାନେ ଆସ ଆସ, ଉଲଗ୍ନ ହୋଇପଡ଼ । ଆସ ବନାନୀ ନାନୀ, ଚଂପା ମାଉସୀ, ହରିପ୍ରିୟାମାଉସୀ ଓ ଚନ୍ଦ୍ରକଳା ମାଉସୀମାନେ, ତମେ ଦମ୍ଭିଲାହେଇ ଠିଆହୁଅ, ହାତୀର ଗୋଡ଼ହେବପରା । ତମମାନଙ୍କର ମୁଣ୍ଡ ଉପରେ ବନ୍ଦନା ଓ କାମିନୀ ଧନୁହେଇ

ଠିଆହୁଅନ୍ତୁ । ଯିଏ ଯାହା ଚରିବା କଥା ରଚି ପକାଅ । ଧୀରେ ଧୀରେ ହାତୀଟି ଖଞ୍ଜିହେଇଗଲା । ଦାସୀମାନେ ଖିଲଖିଲ ହେଇ ହସୁଥାନ୍ତି । ନିଜର ଅସହାୟତାକୁ ହସରେ ନ୍ୟୁନ କରିଦେଉଥାନ୍ତି । କାମକୁଞ୍ଜର ମାଳତୀ ଲଟା ପାଖରେ ଦଣ୍ଡେ ଠିଆହେଲା । ଗୌରୀମ୍ମା ହାତୀ ଉପରେ ଫଗୁ ବୃଷ୍ଟିକଲେ । ଦାସୀମାନଙ୍କର ସ୍ତନ ଜଘନ ନିତମ୍ବ ଏକାକାର ହେଇଗଲା । ସେମାନେ ନିଜନିଜର ନାମ ରୂପ ହରେଇ ବସିଲେ । ନିଜତ୍ୱ ବିସର୍ଜିଲେ । ମହନ୍ତ ଗୋସେଇଁଙ୍କୁ ନିତ୍ୟାନନ୍ଦ ଓ ଗୌରୀ ସସମ୍ମାନେ ଟୋକି ନେଇ ହାତୀଉପରେ ଉପବେଶନ କରାଇ ଦେଲେ । ଗୋସେଇଁଙ୍କୁ ଏସବୁ ରୀତିନୀତି ନୂଆ ନୂଆ ଲାଗୁଥାଏ । ସେ ପୁଲକିତ ହେଇ ଉଠୁଥାନ୍ତି । ମୃଦଙ୍ଗ ଝାଞ୍ଜ ବାଜିଉଠିଲା, ହାତୀ ଥିରି ଥିରି କରି ପାହୁଣ୍ଡ ପକେଇ ଆଗକୁ ମାଡ଼ି ଚାଲିଲା । ଗୋସେଇଁ ରାଧେ ରାଧେ କହି ଚାରି ଦିଗକୁ ଚାହୁଁଥାନ୍ତି । ରାଧାଙ୍କୁ ପାଉନଥାନ୍ତି, ବେଳେବେଳେ ପୁଣି ପାଉଥାନ୍ତି । ରାଧା କଳାମେଘରେ ବିଜୁଳି ଭଳି ଦେଖାଦେଇ ପୁଣି ହଜିଯାଉଥାନ୍ତି । ରାଧା ତାଙ୍କର ଝିନ୍ନ ବାସଭିତରେ ସଂପୂର୍ଣ୍ଣ ଉଲଗ୍ନା ଥିଲେ । ତାଙ୍କର ଅଙ୍ଗ ଦ୍ୟୁତିମୟ ହେଇଯାଇଥିଲା । ସୁନାର ପ୍ରତିମା ଭଳି ଦେଖାଯାଉଥିଲା । ମହନ୍ତ ଦେଖିଲେ, କଦମ୍ବ ମୂଳରେ ରାଧାକୃଷ୍ଣ କେଳିରେ ମଜ୍ଜିଛନ୍ତି, ଦୃଶ୍ୟ ହେଉଛନ୍ତି ପୁଣି ଅଦୃଶ୍ୟ ହେଇଯାଉଛନ୍ତି । ଗଛ ଉହାଡ଼ରେ ଲତାର ଅନ୍ଧାରରେ । ମହନ୍ତଙ୍କ ଉତ୍‌କଣ୍ଠା ବଢୁଛି ।

କୀର୍ତ୍ତନର ତାଳେ ତାଳେ ମଦମତ୍ତ ହେଇ କାମକୁଞ୍ଜର ଝୁଲିଝୁଲି ଚାଲିଛି । ଦାସୀ ସମସ୍ତେ ଚାହୁଁଛନ୍ତି ଅନ୍ତରରେ କୃଷ୍ଣଙ୍କୁ ଆଲିଙ୍ଗନ କରିବାକୁ, ସମସ୍ତେ ଇଚ୍ଛୁଛନ୍ତି ନଟନାଗରଙ୍କ ବାହୁବନ୍ଧନରେ ହଜି ଯିବାକୁ । ସମସ୍ତେ ଆତୁରା, ସମସ୍ତେ ଅଧୀରା, ପ୍ରଗଲ୍‌ଭା । ସମସ୍ତେ ଆଜି ଅଭିସାରିକା । ମହନ୍ତ ଗୋସେଇଁଙ୍କ ମନରେ ମଧ ଆଜି ନବ ଉନ୍ମାଦନା ସଂଚରିଯାଉଛି । ସେ ଶୃଙ୍ଗାରୀ ନାୟକର ସମସ୍ତ ବିଲକ୍ଷଣ ଅଙ୍ଗରେ ବହନ କରି ମଧ ନିଜ ଦେହ ଭାବକୁ ସଂପୂର୍ଣ୍ଣ ଭାବେ ଭୁଲିଯାଇ ରାଧାପ୍ରେମରେ ହଜିଯାଇଛନ୍ତି । ନିଜ ଭିତରେ ବେଳେ ବେଳେ କୃଷ୍ଣଭାବ ଆରୋପିତ କରି ଚତୁର୍ଦ୍ଦିଗକୁ ଦୃଷ୍ଟି ପ୍ରସାରିତ କଲାବେଳକୁ ଅନୁଭବ କରୁଛନ୍ତି, ଉପବନ କୃଷ୍ଣମୟ ହେଇସାରିଛି । ତେଜର ପ୍ରାବଲ୍ୟରେ ଚକ୍ଷୁ ବୁଜିହେଇଯାଉଛି । ଅନ୍ତଃକରଣ ଭିତରକୁ ଦୃଷ୍ଟି ଫେରାଇଲା ବେଳକୁ ଭିତରେ ବି କୃଷ୍ଣ ବିରାଜିଛନ୍ତି । ଏ ଭାବନା କେବଳ ଗୋସେଇଁଙ୍କର ନୁହଁ, ସବୁ ଦାସୀଙ୍କର, ନିତ୍ୟାନନ୍ଦଙ୍କର ଓ ଗୌରୀଙ୍କର ମଧ ।

ସାଧକ ଦେହ ଭାବନାରୁ ଉର୍ଦ୍ଧ୍ୱକୁ ଉଠି ସମଗ୍ର ସ୍ଥିତି ଓ ଚେତନା ଭିତରେ ଇଷ୍ଟଭାବନାର ସଂଚରଣ କରେଇବା ହିଁ ନିଭୃତ ସେବାର ତାତ୍ପର୍ଯ୍ୟ । କାମକୁଞ୍ଜରର ଏ ରୂପ ଲୀଳାମୟତାର ଏକ ବାହ୍ୟ ଅବଲମ୍ବନ ମାତ୍ର । ତାହା ନ ହେଇଥିଲେ ଦାସୀମାନେ ଦେହଭାବନାକୁ ତ୍ୟଜି ନଥାନ୍ତେ । ଅନାବରଣ କେବଳ ବସ୍ତ୍ରର ନୁହଁ, କାମ ଭାବନାର, ବାସନାର ଓ ବନ୍ଧନର ମଧ୍ୟ । କୃଷ୍ଣଙ୍କ ବିଭିନ୍ନ ଲୀଳାର ବାହ୍ୟ ରୂପ ସମାଜ ଦୃଷ୍ଟିକୁ ଅସଂଯତ, ଅସଂଲଗ୍ନ ମନେ ହେଉଥିଲେ ମଧ୍ୟ ତାହାର ଅନ୍ତର୍ନିହିତ ଭାବ ଅଲୌକିକ ଚିନ୍ତନରେ ପରିପୁଷ୍ଟ । କୃଷ୍ଣ ଭାଗବତରେ କହୁଛନ୍ତି ।

ମୋର ଚରଣେ ଯାର ଚିତ୍ତ । ପୁଣି ବିଷୟେ ହେଲେ ରତ ।
ଜନ୍ମମରଣ ତାର ନାହିଁ । ଭାଜିଲାଧାନ ପ୍ରାୟ ହୋଇ ।
ଏ ବୃନ୍ଦାବନେ ଗୁପ୍ତେ ଥାଇ । ତୁମ୍ଭଙ୍କୁ ରମିବଇଁ ମୁହିଁ ।

ଉପବନ ଯଦି ବୃନ୍ଦାବନରେ ରୂପାନ୍ତରିତ ହେଇପାରିଲା ତା ହେଲେ କୃଷ୍ଣ ତ ନିଶ୍ଚୟ ଦିବ୍ୟବିଭାରେ ଆବିର୍ଭୂତ ହେବେ ଓ ଯିଏ ଗୋପୀଭାବରେ ନିଜକୁ ସମର୍ପି ଦେବ ତାକୁ ସେ ରମିବେ । ଗୌରୀ ମହନ୍ତଗୋସେଇଁଙ୍କୁ ଏକଥା ହିଁ ଅନୁଭବ କରାଇବା ପାଇଁ ଏତେ ଆଡ଼ମ୍ବର, ଏତେ ଆୟୋଜନ ରଚିଥିଲା । ମହନ୍ତ ଖାଲି ତ କୃଷ୍ଣମୟତାକୁ ଉପଲବ୍ଧି କଲେନାହିଁ, ତା ସଙ୍ଗେ ସଙ୍ଗେ ହେଜିଲେ କୃଷ୍ଣମୟତା ଭିତରେ ପରକୀୟା ରାଧାପ୍ରେମର ତାରଲ୍ୟ । ସେ ତା ଭିତରେ ଅବଗାହନ କରି, ସେଥିରେ ସଂପୂର୍ଣ୍ଣଭାବରେ ବିଲୀନ ହେଇଯିବା ପାଇଁ ଇଚ୍ଛା ପ୍ରକାଶକଲେ ।

ମାଘ ପୂର୍ଣ୍ଣିମାର ନିଭୃତ ସେବା ପରେ ମହନ୍ତ ଗୋସେଇଁ ଦେହ ଓ ଦେହାତୀତର ଦ୍ୱୈତ ଅନୁଭବ ଭିତରେ ସତେ ଯିମିତି ଅହରହ ସଂଚାଳିତ ହେଲେ । ନିଜ ଦେହର ଦୌର୍ବଲ୍ୟ ଓ ଦେହାତୀତ ଭାବନାର ଅନାଘ୍ରତ ଅସହାୟତା ତାଙ୍କୁ ଆହୁରି ଜରାଜୀର୍ଣ୍ଣ କରିଦେଲା । ସେ ଶଯ୍ୟଶାୟୀ ହେଇପଡ଼ିଲେ । ହରିପ୍ରିୟା, ଚନ୍ଦ୍ରକଳା, ରେଣୁକା, ସମସ୍ତେ ଅଲୋଡ଼ା ଅଲୋଡ଼ା ଲାଗିଲେ । ସେ ଭାବିଲେ ଗୌରୀ ତାଙ୍କୁ ରୋଗଶଯ୍ୟାରେ ମଧ୍ୟ କୃଷ୍ଣଭଳି ବେଶକରିଦେଉ । ରାଧାଭଳି ନିଜ ଅଙ୍ଗଲତାରେ ତାଙ୍କର ଶିଥିଳ ଦେହଟାକୁ ବେଢ଼େଇ ଆଣୁ । ଗୌରୀ ସଦା ସର୍ବଦା ତାଙ୍କଠି ପାଖରେ ରହିଥାଉ । ମହନ୍ତଙ୍କ ପାଖରେ ଗୌରୀ ପହଞ୍ଚିଗଲେ ମହନ୍ତଙ୍କ ମୁହଁ ଉଜ୍ଜ୍ୱଳ ଦିଶେ ।

ଦେହ ଭାବନା ବଳବତ୍ତର ହେଇପଡ଼େ । ସଂଭୋଗର ନିଶା ମୁଣ୍ଡରେ ଚଢ଼ିଯାଏ । ପର ମୁହୂର୍ତ୍ତରେ ନିଜ ଦେହାବସ୍ଥା ଭାବି ସେ ନିରବ ହେଇଯାଆନ୍ତି । ତାଙ୍କ ଅଚଳ ଦେହଟା ଭିତରେ କୁନି କୁନି ଇହଡ଼ାମାନେ ଗୁମରି ଉଠନ୍ତି । ଉନ୍ମାଦନାରେ ପ୍ରାଣ ଭରିଯାଏ । ପାଣ୍ଡୁର ଓଠରେ ସୂର୍ଯ୍ୟାସ୍ତର ରକ୍ତିମ ଆଭା ଝଲସି ଉଠେ ।

ଗୌରୀର ସ୍ନେହସିକ୍ତ ହାତର ସ୍ପର୍ଶରେ ଗୋସେଇଁ ଅନୁଭବ କରନ୍ତି ସେ ମହୋଦଧି କୂଳ ଶିଆଳି ଲଟାରେ କୃଷ୍ଣଙ୍କ ଭଳି ଶୋଇଛନ୍ତି, ଅପେକ୍ଷା କରିଛନ୍ତି ଜାରାଶବରର ଆସିବ । ଲକ୍ଷ୍ୟଭେଦି ଶର ବିନ୍ଧିବ । ଜ୍ୱାଳା ଦେହ ଓ ମନ ଭିତରେ ସଂଚରିଯିବ । ସେ ହୁଏତ ବାରିପାରିବେନି ଏ କାହାର ଶର, ଜାରାଶବରର ନା ମଦନର । ସେ ସହାସ୍ୟ ବଦନରେ ଶରବିଦ୍ଧ ଯନ୍ତ୍ରଣାକୁ ଅଙ୍ଗରେ ବହିବେ । ବିଷ ରକ୍ତରେ ଖେଳିଯିବ । ସେ କୃଷ୍ଣଙ୍କ ଭଳି ଘନଶ୍ୟାମ ହେଇଯିବେ ।

ଗୌରୀ ପାଦ ମଣ୍ଡାଇଲା । ମୃତ୍ୟୁର ଅପୂର୍ବ ଶୀତଳ ସ୍ପର୍ଶ ସେ ଅନୁଭବ କଲେ । ସେ ଅସ୍ପଷ୍ଟ ସ୍ୱରରେ ପଚାରିଲେ, ଗୌରୀ, ତୁ ରାଧାରାଣୀ ନା ମୃତ୍ୟୁଦେବୀ । ଗୌରୀ ମନ ଖୋଲା ହସିଲା । ସେ ହସରେ ବସନ୍ତ ଥିଲା, କୋଇଲିର ରବ ଥିଲା, ବଂଶୀର ସ୍ୱନ ଥିଲା ଓ ସମୁଦ୍ରର ଗର୍ଜନ ବି ଥିଲା । ଗୋସେଇଁକୁ ଲାଗିଲା ମହୋଦଧିର ଉତ୍ତାଳ ତରଙ୍ଗ ତାଙ୍କ ଦେହ ଉପରେ ଯିମିତି ଅଜାଡ଼ି ହେଇ ପଡ଼ିଲା । ଗୌରୀ ମହନ୍ତଙ୍କ ଜୀର୍ଣ୍ଣ ଅବଶ ଦେହଟାକୁ ଆଲିଙ୍ଗନ କଲା, ଅନୁଭବ କଲା ନିଷ୍ପ୍ରାଣ କେତେ ଶୀତଳ ହେଇପାରେ । ସେତେବେଳକୁ ମହନ୍ତ ଦେହତ୍ୟାଗ କରିସାରିଥିଲେ । ବାହାରେ ନିଶା ଗର୍ଜୁଥିଲା ।

ମହନ୍ତଙ୍କ ଦେହଟିକୁ ପଲଙ୍କ ଉପରେ ଶୁଆଇ ଦେଇ ଗୌରୀ କ୍ଷୀପ୍ର ଗତିରେ ନିତ୍ୟାନନ୍ଦଙ୍କ ଖଞ୍ଜାଭିତରକୁ ପ୍ରବେଶକଲା । ନିତ୍ୟାନନ୍ଦ ଉପନିଷଦର ନିଗୂଢ଼ ତତ୍ତ୍ୱକୁ ନେଇ ଗଭୀର ଭାବେ ଚିନ୍ତିତ ଥିଲେ । ଆଗରେ ଆଉଜାଣ ମେଜ । ତା ଉପରେ ତାଳପତ୍ରର ଖେଦା ମେଲା ହେଇ ପଡ଼ିଛି । ମୁହଁ ସାରା ଆଲୁଅ ବିଛାଡ଼ି ହେଇଯାଇଛି । ସେ ଡ଼ାହାଣ ହାତକୁ ଗାଲରେ ଭରାଦେଇ ଅସରନ୍ତି ଭାବନା ଭିତରେ ଯିମିତି ବୁଡ଼ି ଯାଇଛନ୍ତି । ଲାଗୁଛନ୍ତି ପିତୁଳାଟିଏ ଭଳି ନିଷ୍ଚଳ । ସେ ନିର୍ବିକାର । ସ୍ପନ୍ଦନ ହୀନ ସ୍ଥିର ଚିତ୍ରଭଳି ବସିଛନ୍ତି । ଗୌରୀ ମହନ୍ତ ଗୋସାଇଁ ଦେହତ୍ୟାଗ କରିବା କଥା କହିଲା । ସେ ଶୁଣିଲେ । ଦଣ୍ଡେ ନିଶ୍ଚଳହେଇ ରହିଲେ । ତାପରେ ସେ ଧ୍ୟାନସ୍ଥ

ହେଲେ । ଧ୍ୟାନ ଭାଙ୍ଗିଲା ପରେ ଆଖି ଖୋଲି ଏକଲକ୍ଷ୍ୟରେ ଗୌରୀକୁ ଅନେଇଲେ । କହିଲେ , ରାଧାବିନୋଦଙ୍କ ଅପାର କରୁଣା, ତାଙ୍କରି ଇଚ୍ଛା ହିଁ ପୂରଣ ହେଉ । ହେ ରାଧାରମଣ! ତୁହେଁ ମହନ୍ତଙ୍କ ଶୟନ କକ୍ଷରେ ପହଞ୍ଚିଲେ । ନିତ୍ୟାନନ୍ଦ ଦେଖିଲେ ଏକ ଜୀର୍ଣ୍ଣ ଦେହ ପଲଙ୍କ ଉପରେ ତିଳକଗାର ଭଳି ଦିଶୁଛି ।

ମଠରେ ମହନ୍ତଙ୍କ ଦେହତ୍ୟାଗ ସମ୍ବାଦ ପ୍ରଚାରିତ ହେବାପୂର୍ବରୁ ମହନ୍ତଙ୍କୁ ସନ୍ୟାସୀ ପରଂପରା ଅନୁଯାଇ ପଦ୍ମାସନରେ ଉପବିଷ୍ଟକରାଇ ସ୍ନାନ କାର୍ଯ୍ୟ ବଢ଼େଇଦେଇଥିବା ଦରକାର ବୋଲି ଗୌରୀ ଭାବିଲା । ସେ ଦାସୀଙ୍କ ଖଞ୍ଜାରୁ ଚାରିଜଣ ପ୍ରୌଢ଼ାଦାସୀଙ୍କୁ ଡ଼ାକି ଆଣିଲା । ମହନ୍ତଙ୍କ ଦେହକୁ ପିଢ଼ା ଉପରେ ପଦ୍ମାସନରେ ଆସୀନ କରାଇଲା । ଗୋସେଇଁଙ୍କ ହାତ ଦୁଇଟିକୁ ଧ୍ୟାନ ମୁଦ୍ରାରେ ରଖାଗଲା । ତାପରେ ଅଁଳା, କସ୍ତୁରୀ, ଚନ୍ଦନ, ମାଢଣା କରି ପଞ୍ଚାମୃତରେ ସ୍ନାନ କରାଇଲା । ତାପରେ ଗଙ୍ଗୋଦକ ମିଶେଇ ଶହେ ଆଠ କୁମ୍ଭ ଜଳରେ ନିତ୍ୟାନନ୍ଦ ମହନ୍ତଙ୍କ ଦେହକୁ ଅଭିଷେକ କଲେ । ଦାସୀମାନେ ଦେହକୁ ସରାଗରେ ପୋଛିନେଇ ପୁଣି ସୁବାସିତ ଚନ୍ଦନ ଲେପିଲେ । ତିଳକ ଚିତ୍ରକଲେ । ଅଙ୍ଗରେ ସଜବସନ ପିନ୍ଧାଇଲେ । ଗଳାରେ ତୁଳସୀ ଜଟାର ମାଳ ଲମ୍ବେଇ ଦେଇ ବିମାନ ଉପରେ ବିଜେ କରାଇ ଦେଲେ । ଏହି ବିମାନରେହିଁ ଗୋସେଇଁ ନିଭୃତ ସେବାରେ ବିରାଜୁଥିଲେ । ଉପବନରୁ ଫୁଲ ତୋଳି ଆଣି ପଦ ସେବା କଲେ । ଏସବୁ ବିଧାନ ସରୁ ସରୁ ସକାଳ ଫର୍ଚ୍ଚାହେଲା ।

ଟହଲିଆ ଦେବାର୍ଚ୍ଚନ ପାଇଁ ମନ୍ଦିର କବାଟ ଫିଟେଇବା ପୂର୍ବରୁ ମହନ୍ତ ଗୋସେଇଁଙ୍କ ଦେହ ତ୍ୟାଗ ସମ୍ବାଦ ଜାଣିଲା । ଦୌଡ଼ି ଆସି ବିମାନ ପାଖରେ ମୁଣ୍ଡିଆ ମାରିଲା । ଧକେଇ ଧକେଇ କାନ୍ଦିଲା । ମଠ ପରଂପରାରେ ଦେହତ୍ୟାଗ ଅପ୍ରକଟ ଲୀଳାମାତ୍ର । ଆତ୍ମୀୟଙ୍କୁ ଓ ସଂପର୍କର ଲୋକମାନଙ୍କୁ ସାଧାରଣ ମୃତ୍ୟୁ ଭଳି ପ୍ରଭାବିତ କରୁଥିଲେ ମଧ, ଏହାକୁ ଏକ ଅଲୌକିକ ଘଟଣା ଭଳି ବିଚାର କରିବା ପାଇଁ ନିର୍ଦ୍ଦେଶ ଥିବାରୁ ସେ ଲୁହ ସମ୍ବରଣ କରି ଫେରିଗଲା । ପୂଜାରୀ, ପୁରୋହିତ, ଚାକରବାକର ଓ ଗାଁର ମୁଖିଆମାନଙ୍କୁ ସମ୍ବାଦ ଜଣେଇ ଦେଲା । ଧୀରେ ଧୀରେ ମଠ ଲୋକାରଣ୍ୟହେଲା । ଦାସୀମାନେ ବିମାନକୁ ଘେରି ରହି ସଂକୀର୍ତ୍ତନ କରିବା ଆରମ୍ଭକରିଦେଲେ । ଚଂପା ଓ ପୁଷ୍ପା ଭାଗବତର ଦଶମସ୍କନ୍ଧ ପାଠ କରିବାକୁ ଲାଗିଲେ । କନକ ଭଗବଦ୍‌ଗୀତାର ବିଭୂତି ଯୋଗ ଆବୃତ୍ତିକଲା । ମଠ ଭିତରେ ହରିକୀର୍ତ୍ତନର

ଉତ୍ତାଳ ଝଙ୍କାର ସାଙ୍ଗକୁ ଧୂପ ଗୋଗୁଳ ଓ ଚନ୍ଦନର ବାସ ପରିସରକୁ ଆହୁରି ଭାବମୟ କରିଦେଲା ।

ସ୍ଥିର ହେଲା ସେଦିନ ରାତିରେ ଉପବନ ଭିତରେ କଦମ୍ବ ବୃକ୍ଷ ମୂଳେ ହିଁ ଗୋସେଇଁଙ୍କୁ ସମାଧି ଦିଆଯିବ। ନିତ୍ୟାନନ୍ଦ ଓ ଗୌରୀ ସମାଧି ବିଧାନର ଆନୁସଙ୍ଗିକ କାର୍ଯ୍ୟରେ ମନଯୋଗକଲେ ।

ମଠରୁ ନିର୍ବାସନ ଦଣ୍ଡପାଇଥିବା ମହନ୍ତଙ୍କ ପୂର୍ବତନ ଚେଲା, ତା ସ୍ତ୍ରୀ ଓ କିଛି ଭଡ଼ାଟିଆ ଗୁଣ୍ଡା ମଧ ମହନ୍ତ ଗୋସେଇଁଙ୍କ ଦେହତ୍ୟାଗର ସମ୍ବାଦ ପାଇ ମଠରେ ହାଜର ହେଇଗଲେ। ଚେଲା ମଠ ସହିତ ଓ ଦିବଙ୍ଗତ ମହନ୍ତଙ୍କ ସାଙ୍ଗରେ ପୂର୍ବ ସମ୍ବନ୍ଧକୁ ଆଧାର କରି ମଠ ସମ୍ପତ୍ତିରୁ ଅଧେ ଦାବୀ କଲା । ତା ନ ମିଳିଲେ ସେ ଗାଦିନସୀନ ହେବାପାଇଁ ତାର ହକ ସାବ୍ୟସ୍ତ କରିବ। ସେ କହିଲା ସେ ହିଁ ମହନ୍ତଙ୍କ ବରିଷ୍ଠ ଶିଷ୍ୟ ଓ ଉପଯୁକ୍ତ ଦାୟାଦ। ମହନ୍ତ ଗାଦିରେ ବସିବାପାଇଁ ତାର ହିଁ ପୂର୍ଣ୍ଣ ଅଧିକାର ଅଛି। ସେ ଯଦି ବିବାହିତ ବୋଲି ମଠ ତାର ଦାବୀକୁ ଉପେକ୍ଷା କରେ ତା ହେଲେ ବର୍ତ୍ତମାନ ପଟ୍ଟଶିଷ୍ୟ ବୋଲାଉଥିବା ନିତ୍ୟାନନ୍ଦ ଦାସ ମଧ ଜଣେ ଗୃହସ୍ଥ ଓ ସେ ନିଜ ସ୍ତ୍ରୀଙ୍କ ସହିତ ମଠରେ ରହି ମଠ ପରିସରକୁ କଳୁଷିତ କରିସାରିଲେଣି। ପୂର୍ବତନ ଚେଲାର ଅଯୌକ୍ତିକ ଦାବି ଅମୂଳକ ବିଚାର, ମଠ ଅନ୍ତେବାସୀଙ୍କୁ ସ୍ତବ୍ଧ କରିଦେଲା । ତାର ଦାବି ଏତେ ହାସ୍ୟାସ୍ପଦ ଥିଲା ଯେ ମଠର ବା ମଠ ବାହାରର କେହି ଜଣେ ହେଲେ ତାହା ଗ୍ରହଣ କରିବାପାଇଁ ପ୍ରସ୍ତୁତ ନ ଥିଲେ।

ନିତ୍ୟାନନ୍ଦ ମହନ୍ତ ଗୋସେଇଁଙ୍କ ମହାପ୍ରୟାଣ ପରେ ଏକାନ୍ତ ଉଦାସୀନ ଓ ନିର୍ଲିପ୍ତ ହୋଇପଡ଼ିଥିଲେ । ସେ ଜନ୍ମମୃତ୍ୟୁର ଦେହ ଓ ଦେହାତୀତ ଅବସ୍ଥାର ଦ୍ୱନ୍ଦ୍ୱ ଭିତରୁ ସହଜରେ ନିଜକୁ ମୁକୁଳେଇ ପାରୁନଥିଲେ। ଏଭଳି ଏକ ମାନସିକତାରୁ ଓହରି ଆସି ବାସ୍ତବତାର ସାମନା କରିବା ସେ ଉଚିତ ମନେ କରୁନଥିଲେ । ଏଭଳି ଏକ ଗଣ୍ଡଗୋଳିଆ ପରିସ୍ଥିତିର ସ୍ଥାୟିତ୍ୱ ବେଶି ନୁହେଁ ଭାବି, ଏହାର ସମାଧାନ ମଠର କର୍ମଚାରୀ ଓ ଗାଁର ମୁଖିଆମାନଙ୍କ ଉପରେ ନ୍ୟସ୍ତ କରିଦେଲେ।

ମଠକରଣ ମଠର ସବୁଠାରୁ ଚାଲାକ ଲୋକ। ସେ ଚେଲାଙ୍କୁ କଚେରି

ଘରକୁ ଡ଼ାକି ନେଇ ଆଲମିରା ଭିତରୁ କଣ ଗୋଟାଏ ଦସ୍ତାବେଜ ବାହାର କରି ଦେଖେଇଲେ । ସେତେବେଳକୁ ପାଖରେ ସନ୍ୟାସୀ ଗନ୍ତାୟତ, ଗୋବର୍ଦ୍ଧନ ପଣ୍ଡା, ଚିନାରି ସରାବ, ଦାମୋଦର ସୁବୁଦ୍ଧି ମହାପାତ୍ର ମଧ୍ୟ ଉପସ୍ଥିତ ଥିଲେ । ଦସ୍ତାବେଜ ବୋଧହୁଏ ମହନ୍ତ ଗୋସେଇଁଙ୍କ ଉଇଲ୍‌ର ନକଲ ଥିଲା । ଏଥିରେ ମହନ୍ତ ଗୋସେଇଁ ମଠର କେସ୍ ପତ୍ର ଦାୟିତ୍ୱରେ ଥିବା ଓକିଲ ମୃତ୍ୟୁଞ୍ଜୟ ରଥଙ୍କ ସମକ୍ଷରେ ନିଜର ଇଚ୍ଛାକୁ ଲିପିବଦ୍ଧ କରିଥିଲେ ଓ ଏହି ଦସ୍ତାବେଜ ପରବର୍ତ୍ତୀ କାଳରେ କୋର୍ଟରେ ରେଜିଷ୍ଟ୍ରିଭୁକ୍ତ ହେଇଥିଲା । ମହନ୍ତ ଗୋସେଇଁ ଏଥିରେ ଉଲ୍ଲେଖ କରିଥିଲେ ଯେ ମୋ ଅନ୍ତେ ମୋର ଶିଷ୍ୟ ନିତ୍ୟାନନ୍ଦ ମୋର ଉତ୍ତରାଧିକାରୀ ହେବେ । ସେ ହିଁ ଗାଦିରେ ଆସୀନ ହେବେ ଓ ମଠର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତିର ରକ୍ଷଣାବେକ୍ଷଣ ତାଙ୍କରି ଦାୟିତ୍ୱରେ ରହିବ । ସେ ମଠର ସମସ୍ତ କର୍ମଚାରୀଙ୍କ ନିଯୁକ୍ତି, ପ୍ରତିପାଳନ ଓ ଆବଶ୍ୟକ ସ୍ଥଳେ କର୍ମନିବୃତ୍ତି କରିପାରିବେ । ସେ ମଠର ପରିଚାଳନା, ଠାକୁରମାନଙ୍କର ନିତ୍ୟ ସେବା, ବାରବ୍ରତ, ପୂଜା ମହୋତ୍ସବ ସୁଚାରୁରୂପେ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ନିଭୃତ ସେବାର ମର୍ଯ୍ୟାଦା ମଧ୍ୟ ରକ୍ଷା କରିବେ । ଏହା ସହିତ ମଠ ମନ୍ଦିର ଓ ଖଞ୍ଜା ଘରର ମରାମତି, ଆବଶ୍ୟକ ସ୍ଥଳେ ନୂତନ ଗୃହ ନିର୍ମାଣ ମଧ୍ୟ କରିପାରିବେ । ଠାକୁରଙ୍କ ପୂଜା ସେବା ପାଇଁ ଫୁଲ ଓ ତୁଳସୀ ଯୋଗାଇ ଦେଉଥିବା ଉପବନର ସୁରକ୍ଷା ଓ ଅଭିବୃଦ୍ଧି ମଧ୍ୟ ତାଙ୍କ ଦାୟିତ୍ୱର ସୀମା ଭିତରେ ରହିବ । ମଠ ସଂଲଗ୍ନ ପୁଷ୍କରିଣୀର ପଙ୍କୋଦ୍ଧାର ଓ ମଠର ଦାନଗ୍ରାମ ଓ ସମସ୍ତ ଭୂସମ୍ପତ୍ତି ସେ ହେପାଜତ କରିବେ । ମଠ ପାଇଁ ଖଞ୍ଜା ଯାଉଥିବା ଅତିଥି ଅଭ୍ୟାଗତଙ୍କ ବ୍ୟବସ୍ଥା ବଳବତ୍ତର ରହିବ । କୌଣସି ଭକ୍ତ, ଅତିଥି ଓ ଅଭ୍ୟାଗତ ମଠରୁ ଅପମାନିତ ହେଇ, ରିକ୍ତହସ୍ତରେ ଫେରିବେ ନାହିଁ ।

ଗୌରୀଦାସ୍ୟାମ୍ମା ଜଗନ୍ନାଥ ମନ୍ଦିରରେ ବଡ଼ସିଂହାର ବେଳେ ଗୀତଗୋବିନ୍ଦ ସେବା ଓ ରାଧାକୃଷ୍ଣ ମନ୍ଦିରରେ ଠାକୁରମାନଙ୍କର ଅଙ୍ଗ ସେବା ବଞ୍ଚିଥିଲା ଯାଏଁ କରିବେ । ଏହି ସେବାରୁ ତାଙ୍କୁ କସ୍ମିନ କାଳେ ନିବୃତ୍ତି ଦିଆଯାଇ ପାରିବ ନାହିଁ । ଏହା ବ୍ୟତୀତ ନିଭୃତ ସେବାର ଦାୟିତ୍ୱ ସମ୍ପୂର୍ଣ୍ଣ ଭାବେ ତାଙ୍କର । ସେ ମଠରେ ଥିବା ସମସ୍ତ ଦାସୀମାନଙ୍କର ମାତୃସ୍ଥାନୀୟା ହେଇ ରହିବେ । ସେ ଯଦି କୌଣସି ସମୟରେ ମଠ ପରିତ୍ୟାଗ କରିବାପାଇଁ ଇଚ୍ଛା ପ୍ରକାଶ କରନ୍ତି ତା ହେଲେ ସେ ତାଙ୍କର ଏ ସମସ୍ତ ଅଧିକାରରୁ ବଞ୍ଚିତ ହେବେ ।

ବୃନ୍ଦାବନର ମଠାଧୀଶ ଶ୍ରୀ ଶ୍ରୀ ବାଙ୍କ ବିହାରୀ ଦାସ ଗୋସ୍ୱାମୀ ମହାରାଜ ନିତ୍ୟାନନ୍ଦ ଦାସଙ୍କୁ ମଠର ମହନ୍ତ ଗାଦିରେ ଆସୀନ କରାଇବେ। ଏଥିପାଇଁ ବୃନ୍ଦାବନରୁ ରାଧାମାଧବ ଠାକୁରଙ୍କ ସ୍ୱତନ୍ତ୍ର ଆଜ୍ଞା ଓ ପ୍ରସାଦ ଆସିବ । ଗୋସ୍ୱାମୀ ମହାରାଜ ସ୍ୱତନ୍ତ୍ର ଭାବେ ଏ ଉତ୍ସବ ପାଇଁ ନିମନ୍ତ୍ରିତ ହୋଇ ଆସିବେ । ତାଙ୍କୁ ଯଥାବିଧି ସମ୍ମାନ ଜ୍ଞାପନ କରାଯିବ । ବୃନ୍ଦାବନର ରାଧାମାଧବ ମଠର ଆସ୍ଥାନ ପ୍ରତି ମାଞ୍ଚେଲି ମଠ ସମ୍ମାନ ଜଣାଉଥିବାରୁ ଏଭଳି ବ୍ୟବସ୍ଥା କରାଯିବ ।

ଗାଦି ଆରୋହଣ ଉତ୍ସବ ମୋ ଦେହତ୍ୟାଗର ବର୍ଷକ ଭିତରେ ବା ବର୍ଷ ପୂରିବା ପରେ ପରେ କୌଣସି ଏକ ପୁଣ୍ୟ ତିଥିରେ ସମ୍ପାଦିତ ହେଉ ବୋଲି ଶ୍ରୀ ଶ୍ରୀ ରାଧାକୃଷ୍ଣ ମହାପ୍ରଭୁଙ୍କ ଦାସାନୁଦାସ ହରେକୃଷ୍ଣ ଦାସ ଓ ମୋର ପୂଜ୍ୟ ଗୁରୁ ଶ୍ରୀ ଶ୍ରୀ ରାମାନୁଜ ଦାସ ଓ ଏହି ମଠର ସମସ୍ତ ଦିବଙ୍ଗତ ଗୁରୁମାନଙ୍କ ଆଜ୍ଞା ବୋଲି ଜ୍ଞାନ କରି ପାଳନ କରାଯିବ । ସ୍ୱା. ହରେକୃଷ୍ଣ ଦାସ, ମୁକାମ . ମଠ ମାଞ୍ଚେଲି ।

ଚେଲାଙ୍କୁ ମହନ୍ତ ଗୋସେଇଁଙ୍କ ଏ ଉଇଲ୍‌ଟି ପଢ଼େଇ ସାରିଲା ପରେ ଚେଲାଙ୍କର ବୁଦ୍ଧି ହଜିଗଲା । ଏବେଳକୁ ମଠ ଭିତରେ ଗଣ୍ଡଗୋଳ ଆଶଙ୍କା କରି ଗାଁର ମୁଖିଆ, ଖୁଣ୍ଟିଆ, ଟହଲିଆ, ଚୋପଦାର, ଚଷା, ହଳିଆ ଓ ଆପଟ ଗଉଡ଼ମାନେ ଚେଲାଙ୍କୁ ଓ ଗୁଣ୍ଡାମାନଙ୍କୁ ଉଚିତ ଶିକ୍ଷା ଦେବାପାଇଁ ଠେଙ୍ଗା ବାଡ଼ି ଧରି ମଠର ବାହାର ମେଲା ଅଗଣାରେ ପ୍ରସ୍ତୁତ ହୋଇସାରିଥିଲେ । ମଠ ପରିସରରେ ଉତ୍ତେଜନା ଗୁମୁରି ଉଠୁଥିଲା ।

ମଠରେ ଓ ଗାଁ ଭିତରେ ନିତ୍ୟାନନ୍ଦଙ୍କର ଓ ଗୌରୀମ୍ମାଙ୍କର ଯଥେଷ୍ଟ ସମ୍ମାନ ଥିଲା । ଲୋକେ ତାଙ୍କୁ ରାଧାକୃଷ୍ଣଙ୍କର ଚଳନ୍ତି ପ୍ରତିମା ଭଳି ଜ୍ଞାନ କରୁଥିଲେ । ଏଣୁ ଲୋକମାନେ ଅଯାଚିତ ଭାବରେ ନିତ୍ୟାନନ୍ଦଙ୍କୁ ସାହାଯ୍ୟ କରିବାପାଇଁ ଆଗେଇ ଆସିଲେ । ଚେଲା ଓ ତା ସହିତ ଆସିଥିବା ଭଡ଼ାଟିଆ ଗୁଣ୍ଡାମାନେ ଏ ପ୍ରବଳ ବିରୋଧର ସାମନା କରିନପାରି ମଠ ଛାଡ଼ି ପ୍ରାଣ ବିକଳରେ ତୁରନ୍ତ ପଳେଇଗଲେ । ମଠାକାଶରେ ଘୋଟି ଆସୁଥିବା କଳାମେଘ ଖଣ୍ଡକ ରାଧାକୃଷ୍ଣଙ୍କ ଅପାର ଦୟାରୁ ହଟିଗଲା ।

ମହନ୍ତଙ୍କ ଦେହତ୍ୟାଗ ପରଦିନ ଠାରୁ ଗାଦି ଉପରେ ତାଙ୍କର ପୂର୍ଣ୍ଣାବୟବ ଫୋଟଟିଏ ଥାପନା କରାଗଲା । ତା ଉପରେ ନାମାକ୍ଷରୀର ଉତ୍ତରୀୟ

ବେଢ଼ଣ କରାଗଲା । ମହନ୍ତଙ୍କ ଜପାମାଳ ଓ କୋଥଳି ଫୋଟସମକ୍ଷରେ ରଖାଗଲା । ମହନ୍ତଙ୍କ ବ୍ୟବହୃତ ବାଡ଼ି, କଠଉ, ବ୍ୟାସାସନ, ଶ୍ରୀହସ୍ତ ପୋଛା, ଗଡୁ, ପିକଦାନି, ପ୍ରଭୃତି ଗାଦିପାଖରେ ଥୁଆହେଲା । ଫୋଟ ଆଗରେ ଘିଅର ଅଖଣ୍ଡ ଦୀପଟିଏ ବସାଗଲା ଓ ମଠର ଦାସୀମାନେ ପାଳିକରି ଏହି ଦୀପକୁ ଜଗିରହିଲେ । ଏହି ଦୀପ ବର୍ଷେ ଯାଏଁ ସମାଧି ମନ୍ଦିର ପ୍ରତିଷ୍ଠା ହେଲା ଯାଏଁ ଏଇଠି ହିଁ ପ୍ରଜ୍ୱଳିତ ହେଉରହିବ ନିଦାନ ହେଲା । ରୁପାଗିନାରେ ଠାକୁରଙ୍କ ଚରଣାମୃତ ଭକ୍ତ ଓ ଦର୍ଶକଙ୍କ ସେବାପାଇଁ ଥୁଆହେଲା । ଭଜନ କୋଠିରେ ଅହର୍ନିଶ ନାମ କୀର୍ତ୍ତନର ବ୍ୟବସ୍ଥା ହେଲା । ଏଥକୁ ଝୁଲଣଗାୟେଣି, ବୈଷ୍ଣବ ଓ ନମସ୍କରଣୀୟ ବ୍ରାହ୍ମଣେ ନିଯୁକ୍ତି ହେଲେ । ସଂଧ୍ୟା ବେଳକୁ ଗାଁର ଆବାଳ ବୃଦ୍ଧ ବନିତା ମଠକୁ ନିମନ୍ତ୍ରିତ ହେଇ ଆସୁଥିଲେ, କୀର୍ତ୍ତନରେ ଭାଗ ନେଉଥିଲେ, ନାମ ଜପୁଥିଲେ ଓ ହରିପଙ୍ଗତରେ ପତ୍ର ପକେଇ ମହନ୍ତଙ୍କୁ ସ୍ମରଣା କରି ଆନନ୍ଦରେ ଘର ଫେରୁଥିଲେ । ତେର ଦିନ ଯାଏଁ ଏ ତେରିଆ ବିଧିଲାଗିଲା ।

ନିତ୍ୟାନନ୍ଦ ଓ ଗୌରୀ ବ୍ୟକ୍ତିଗତ ଭାବେ ଏ ସମସ୍ତ ଆୟୋଜନ ଦାୟିତ୍ୱରେ ଥିଲେ । ଗାଁ ଲୋକେ ଉତ୍ତରାଧିକାରୀ ମହନ୍ତ ନିତ୍ୟାନନ୍ଦ ଓ ଗୌରୀମାଙ୍କୁ ପ୍ରଣାମ କରିବା ଆରମ୍ଭ କରିଦେଲେ । ସେମାନେ ସହାସ୍ୟ ବଦନରେ ସେମାନଙ୍କ ଶ୍ରଦ୍ଧା ଗ୍ରହଣ କରି “ ସର୍ବଦେବ ନମସ୍କାର କେଶବଂ ପ୍ରତିଗଛତି ” ନ୍ୟାୟରେ “ବ୍ରହ୍ମାର୍ପଣ ମସ୍ତୁ” ଓ ‘ଶ୍ରୀରାଧେ ଶ୍ରୀରାଧେ’ କହି ସେମାନଙ୍କୁ ଆଶିଷ ପ୍ରଦାନ କରୁଥିଲେ ଓ ପ୍ରତିନମସ୍କାର ଜଣଉଥିଲେ । ଏମିତି ଭଜନ କୀର୍ତ୍ତନ ଓ ପଙ୍ଗତ ଭିତରେ ତେରୋଟି ଦିନ ବିତିଗଲା । ବୈଷ୍ଣବ ପରଂପରା ଅନୁସାରେ ଚଉଦଦିନି ଦିନ ମହାପ୍ରୟାଣ ଓ ନିର୍ମାଲ୍ୟ ଉତ୍ସବ ସମାପନ କରାଗଲା ।

ଏଦିନ ପାଇଁ ଏ ଖଣ୍ଡ ମଣ୍ଡଳର ଗାଁ ମୁଖିଆ ସରପଞ୍ଚ ଓ ମଠ ମାନଙ୍କର ଗାଦିନସୀନ ମହନ୍ତ ଓ ମଠାଧାରୀମାନଙ୍କର ବିରାଟ ମେଳଣୀ ହେଇଥିଲା । ପାରଳାଖେମୁଣ୍ଡିରୁ ନୀଳାମ୍ବର ମିଶ୍ରେ, ପାର୍ବତୀପୁରମରୁ ଡ଼ି.ନାରସେୟାଗାରୁ ମଧ୍ୟ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ହେଇ ବୈଷ୍ଣବ ମଣୋହି ଓ କୀର୍ତ୍ତନରେ ଯୋଗ ଦେଇଥିଲେ । ଅଜା ଆସିପାରିଥିବାରୁ ଏତେ ଜଂଜାଳ ଭିତରେ ବି ଗୌରୀ ଖୁବ୍ ଆନନ୍ଦିତ ହେଇପଡ଼ିଥିଲା । ନିତ୍ୟାନନ୍ଦଙ୍କ ଖଞ୍ଜାରେ ଅଜାଙ୍କ ପାଇଁ ବିଶ୍ରାମର ବ୍ୟବସ୍ଥା ହେଇଥିଲା, ନାରସେୟା ଗାରୁ କଟେଜିଘରେ ଓ ଅନ୍ୟାନ୍ୟ ମହନ୍ତମାନେ ମଠର ଅତିଥି ଆସ୍ଥାନ ଘରେ ରହଣି କରୁଥିଲେ ।

ଆସନ୍ନ ଫଗୁ ମେଳଣ ଓ ଦୋଳୋତ୍ସବ ଆୟୋଜନରେ ବ୍ୟସ୍ତ ରହି ଅଧିକାଂଶ ମଠାଧାରୀ ନିଜର ସ୍ୱତନ୍ତ୍ର ପ୍ରତିନିଧିମାନଙ୍କୁ ପଠେଇଥିଲେ । ପାର୍ବତୀପୁରମ୍ ରାଧାବିନୋଦ ମଠକୁ ବାର୍ତ୍ତା ପଠା ଯାଇଥିଲା କିନ୍ତୁ ମଠର କେହି ହେଲେ ବୈଷ୍ଣବ ମଣୋହି କାର୍ଯ୍ୟରେ ଉପସ୍ଥିତ ନଥିଲେ । କେବଳ ବିଧି ରକ୍ଷା କରି ମହନ୍ତ ହଳିଆ ହାତରେ ନଉତିଏ ଲୁଣ ଅରୁଆଚାଉଳ, ଦିତୁମ୍ବ କଞ୍ଚାମୁଗଡାଇ, ଅଢେ଼ ଘିଅ, ଓ ଉଖୁଡ଼ା ପଠେଇଦେଇ ନିଜ ମଠର କର୍ତ୍ତବ୍ୟ ସମ୍ପାଦନ କରିଦେଇଥିଲେ । ପାର୍ବତୀପୁରମ ମଠର ହଳିଆ ଗୌରୀମ୍ମାକୁ ଚିହ୍ନିପାରି ଓଳଗି ହେଲା । ହଳିଆ ଲକ୍ଷ୍ୟ କଲା ଗୌରୀ ଆଉ ନିଃସ୍ୱ ପାଟଣାଲିଆ ଘରର ଝିଅ ନୁହେଁ । ସାକ୍ଷାତ ଦେବୀ ଭଳି ଦେଖାଯାଉଛି । ବେଶ ଭୂଷା ଢଙ୍ଗ ଢାଙ୍ଗ କଥାଭାଷାରେ ବୈଷ୍ଣବୀୟ ଭାବ । ଗୌରୀ ନମ୍ର ହେଇ ବେଭାର ଗ୍ରହଣ କଲା ଓ ହଳିଆ ହାତରେ ରାଧାକୃଷ୍ଣଙ୍କ ଶ୍ରୀ କାପଡ଼ାରୁ ସୋରେ ଓ ଲାଗି ତୁଳସୀ ଚନ୍ଦନ ପଠେଇଦେଇ ମର୍ଯ୍ୟଦା ରକ୍ଷା କଲା । ସମସ୍ତମାନ ଅପମାନ ଭୁଲିଯାଇ ଜୀବନକୁ ସରସ ସୁନ୍ଦର ଭାବେ ଗ୍ରହଣ କରିବା ଏବଂ କ୍ଷମା ଓ ଦୈନ୍ୟ ପ୍ରକାଶ ବୈଷ୍ଣବ ପରଂପରାର ସର୍ବଶ୍ରେଷ୍ଠ ଭୂଷଣ ହୋଇଥିବାରୁ ସେ ନିଜକୁ ସଂଯତ କରିନେଇ ଜୟ ରାଧେ ଜୟ ରାଧେ କହି ଖାଲି ହସି ଦେଲା ।

ମଠାଧୀଶମାନଙ୍କୁ ଯଥାବିଧି ସମ୍ମାନ ଦେଖେଇବା ଓ ସେମାନଙ୍କ ରହଣିକୁ ଆନନ୍ଦମୟ କରିବାରେ ନିତ୍ୟାନନ୍ଦ ଓ ଗୌରୀ ହେଳା କରୁନଥିଲେ । ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟାତ୍ୟାଗ ଠାରୁ ଓ ଦୈନନ୍ଦିନୀ ପରେ ପହୁଡ଼ ପର୍ଯ୍ୟନ୍ତ ସେମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟର ତିଳେ ହେଲେ ଅବହେଳା ନହେବା ପାଇଁ ସ୍ୱତନ୍ତ୍ର ଦୃଷ୍ଟି ରଖିବାକୁ ଦାସୀମାନଙ୍କୁ ବିଭିନ୍ନ ସେବାରେ ନିୟୋଜିତ କରିଥିଲେ । ମହନ୍ତ ଗୋସେଇଁ ମାନେ ଓ ମଠାଧୀଶମାନେ ପୁଷ୍କରିଣୀରେ ସ୍ନାନ କଲାବେଳେ ସେଠାକୁ ଯିବାକୁ ଅନ୍ୟମାନଙ୍କୁ ବାରଣ ଥିଲା । ମୋଟା ମୋଟି ଉପବନ ଓ ତଦ୍ ସଂଲଗ୍ନ ପୁଷ୍କରିଣୀ ସମାଗତ ଅତିଥିମାନଙ୍କ ସ୍ୱଚ୍ଛନ୍ଦ ବିହାର ପାଇଁ ଉଦ୍ଦିଷ୍ଟ ଥିଲା । ନିତ୍ୟାନନ୍ଦ ଗାଦିରେ ଆସୀନ ନହେଇଥିବାରୁ ସେ ଦିବଙ୍ଗତ ମହନ୍ତଙ୍କ ଦୀକ୍ଷିତ ଶିଷ୍ୟ ଭାବରେ ପରମ ବୈଷ୍ଣବ ମାନେ ମଠରେ ବିରାଜିବା ଦିନ ପଦପ୍ରକ୍ଷାଳନ କରି ନିଜକୁ ଧନ୍ୟ କରିଥିଲେ । ଗୌରୀମ୍ମା ସେମାନଙ୍କର ପାଦକୁ ଗାମୁଛାରେ ପୋଛିଦେଇ ପୁଣ୍ୟ ସଂଚୟ କରିଥିଲେ । ସେମିତି ମଠରୁ ବିଦାଗି ଦେଲା ବେଳେ ସମସ୍ତଙ୍କୁ ରାଧାକୃଷ୍ଣଙ୍କ ଶ୍ରୀ କାପଡ଼ା, ନିର୍ମାଲ୍ୟ, ତିଳକ ଖଡ଼ି ଓ ଲାଗି ତୁଳସୀ ଚନ୍ଦନ ଦେଇ ମେଲାଣି ଦେଇଥିଲେ ।

ଚଉଦ ଦିନ ବେଳକୁ ସମାଧି ଆସ୍ଥାନ ଉପରେ ମଣ୍ଡପର ପୀଠଟିଏ ତିଆରି ସରିଥିଲା । ଏହି ମଣ୍ଡପ ତଳେହିଁ ମହନ୍ତ ଗୋସେଇଁଙ୍କ ମର ଶରୀରକୁ ଶଗଡ଼େ ଲୁଣ ଭିତରେ ପଦ୍ମାସନରେ ବସେଇ ଦିଆହେଇଥିଲା । ଗଞ୍ଜାମ ମଥୁରାର କାରିଗରମାନେ ରାତି ଦିନ ଲାଗିପଡ଼ି କାମ ସାରିଦେଇଥିଲେ । ପୀଠ ଉପରେ ଖମ୍ବ, ପୀଢ଼କାମ, ତା ସାଙ୍ଗକୁ ଖୋଦେଇକାମ, ପିତୁଳାକାମ ଓ ଡ଼ାଳିଲତାକାମ ବାକି ରହିଥିଲା । ନିତ୍ୟାନନ୍ଦ ଓ ଗୌରୀଙ୍କ ଅନ୍ତରର ଇଚ୍ଛା ଥିଲା ମହନ୍ତ ମହାରାଜାଙ୍କ ସମାଧି ମଣ୍ଡପଟି କାରୁକାର୍ଯ୍ୟ ବିମଣ୍ଡିତ କୀର୍ତ୍ତିଟିଏ ହେବ ଓ ତାରି ଭିତରେ ଗୋସେଇଁଙ୍କ ପୂର୍ଣ୍ଣାବୟବ ପ୍ରତିମାଟିଏ ଆସନ୍ତା ବର୍ଷ ଫଗୁ ପୂର୍ଣ୍ଣମୀ ସରିକି ପ୍ରତିଷ୍ଠା ହେବ । ଗୋସେଇଁ ମହାପ୍ରଭୁଙ୍କ ଏହା ହିଁ ଇଚ୍ଛା ଥିଲା । କିନ୍ତୁ ମଠର ଅନ୍ୟାନ୍ୟ ଗୋସେଇଁଙ୍କ ମୂର୍ତ୍ତି ସବୁ ଭଜନକୋଠି ଭିତରେ ହିଁ ପୂଜାପାଉଥିଲା ।

ଅଜା ଏ ଦାୟିତ୍ୱ ନିଅନ୍ତୁ ବୋଲି ନିତ୍ୟାନନ୍ଦ ଓ ଗୌରୀ ତାଙ୍କୁ ଅନୁରୋଧ କଲେ । ଅଜା ପ୍ରସ୍ତାବ ଦେଲେ ମହନ୍ତଙ୍କ ମୂର୍ତ୍ତି ଉପରମୁଣ୍ଡକୁ ରାଧାବିନୋଦଙ୍କ ମୂର୍ତ୍ତିଟିଏ ସ୍ଥାପନାହେବ । ଅଜା କଳ୍ପନା କରୁଥିଲେ ସେହିମୂର୍ତ୍ତିଟି ଚାରି ପାଞ୍ଚ ଫୁଟ ଉଚ୍ଚରହେବ , ବଇଠା ଲାଗିଲେ ପୁରୁଷେ ଯାଏଁ ହେବ । ଏଣୁ ପ୍ରତିମା ମଣ୍ଡପ ଭିତରେ ହିଁ ପ୍ରାଣ ପ୍ରତିଷ୍ଠା ପାଇବେ । ମହନ୍ତ ଗୋସେଇଁ ରାଧାବିନୋଦଙ୍କ ଚରଣ କମଳ ତଳେ ଜପ କରୁଥିବା ଭଙ୍ଗିରେ ପଦ୍ମାସନରେ ଉପବିଷ୍ଟ ହେବେ । ଏଣୁ ରାଧାବିନୋଦଙ୍କ ମୂର୍ତ୍ତି ଓ ମହନ୍ତଙ୍କ ପ୍ରତିମା ଉଭୟକୁ କାରିଗରମାନେ ଉପବନ ଭିତରେ ଆସ୍ଥାନ ପାଖରେ ହିଁ ଖୋଦନ କରିବେ । ପାରଳାବିନ୍ଧାଣି ପଥର କାମରେ ସରସା ନ ହେଇଥିବାରୁ ମଥୁରା କାରିଗରମାନେ ହିଁ ଏହି କାମ କରିବେ । ଅଜା ନକ୍ସା ପ୍ରସ୍ତୁତ କରିବେ ଓ ତତ୍ତ୍ୱାବଧାରକ ରହିବେ ।

ଏ କାର୍ଯ୍ୟ ସମ୍ପୂର୍ଣ୍ଣ ନହେଲେ ନିତ୍ୟାନନ୍ଦ ଗାଦି ଆସୀନ ହେବେନି ବୋଲି ମନସ୍ଥକରି କାରିଗରମାନଙ୍କୁ ଆଠ ମାସ ଭିତରେ ମଣ୍ଡପ କାର୍ଯ୍ୟ ସାରିଦେବା ପାଇଁ ନିର୍ଦ୍ଦେଶ କରିଦେଲେ । ସେ କାରିଗରମାନଙ୍କୁ ଭରସା ଦେଇ କହିଲେ ଯେ କାରିଗରମାନଙ୍କୁ ବୁଢ଼ା ମହନ୍ତଙ୍କ ସ୍ୱନକ୍ଷତ୍ର ଦିନ ମଠକୁ ସ୍ୱତନ୍ତ୍ର ନିମନ୍ତ୍ରଣ ରହିବ । ସେମାନେ ପାରିଶ୍ରମିକ ବାଦେ ପାଟ ଜଥା ଓ ମା'ମୁଲ୍ ପାଇବେ ।

ନୀଳାମ୍ବର ମିଶ୍ରେ, ନିତ୍ୟାନନ୍ଦ ଓ ଗୌରୀକୁ ନିଜକଥା ତକ କହିବାପାଇଁ ମାଞ୍ଚେଲିରେ ତର ପାଇଲେନି । ସେ ଦିହେଁ ତ ଜଞ୍ଜାଳ ଭିତରେ କଣ୍ଠାଗ୍ରତ ହେଇପଡ଼ିଥିଲେ । ଆଉ ଅଜାଙ୍କ ଦୁଃଖ ଶୁଣିଥାନ୍ତେ ବା କେତେବେଳେ । ଅଜା ଗତବର୍ଷ କଳାକୁଞ୍ଜ ବିଜୟନଗର ନେଇଥିଲେ । ପ୍ରଥମେ ପ୍ରଥମେ ବଢ଼ିଆ ଚାଲିଲା, କି ଦେଖିବ ଲୋକ ଭିଡ଼ । ସପ୍ତାହେ ଯାଇଛି କି ନାହିଁ ଆସିଲା ଝଡ଼ ବାତ୍ୟା । ଅଦିନ ମେଘ ଅଜାଡ଼ିଦେଇଗଲା, ଚାଳଛପର ଉଡ଼ିଗଲା । କେରପାଲ୍ ସବୁ ଛିଣ୍ଡି ଛିନ୍ନଛତ୍ର ହେଇପଡ଼ିଲା । ପିତୁଳାପିତୁଳୀମାନଙ୍କ ଉପରେ ଘର ମାଡ଼ିବସିଲା । ବାହାରେ ଯାହା ଭିତରେ ବର୍ଷା ତତୋଧିକ । କଳାକୁଞ୍ଜର ସିନ୍ ଆଟାରେ କଟା । ମଣ୍ଡଣି ପାଣିରେ ବତୁରିଗଲା, ପିତୁଳୀମାନେ ପ୍ରଥମେ ସଳପି ଯାଇ ଫିମ୍ପି ମାରିଗଲେ । ତା ପରେପରେ ଅତଡ଼ା ଖସିଲା ଭଳିଆ ଦେହରୁ ମୁଣ୍ଡରୁ ଛେଲା ଛାଡ଼ିଲା । କାହାର ସ୍ତନ ଫାଳେ ଖସିପଡ଼ିଲା ତ କାହାର ନିତମ୍ବ ଭିତରର ବାଉଁଶ ଖମ୍ବ ଫୁଟିବାହାରି ପଡ଼ିଲା , ବର୍ଷାତ ଅନବରତ ଚାଲିଛି । ଚାରିଆଡ଼େ ପାଣିର ସୁଅ । ଯେଉଁ ପଡ଼ିଆରେ କୁଞ୍ଜପଡ଼ିଥିଲା ସେଠି ଆଣ୍ଠୁଏ ପାଣି । ସବୁଆଡ଼େ ଲାଗିଲା ଚିଲିକାମୟ ହେଇଯିବ, ଡ଼ାକବାଜି ଯନ୍ତ୍ରରେ ପାଣିପଶିଯାଇ ଶବ୍ଦ ଆଉ ଯୁରିଲାନି, ବଲ୍‌ବ ସବୁ ଠୋ ଠା ଫାଟିଲେ, ଅଜା ମୁଣ୍ଡରେ ହାତଦେଇ ବସିଲେ । ଖାଲି ହନ୍ତସନ୍ତ ହେଲେ । ବିକଳହେଇ କହିଲେ ଆହା, ମୋ ସୁନାର ପିତୁଳା ପିତୁଳୀମାନେ, ତମକୁ ଆଉ ଦେଖିହେଉନି । କେତେ ହିନସ୍ତା ହେଉନ ତମେମାନେ । ଦେଖ, ମୂଷଳ ଧାରାରେ ଇନ୍ଦ୍ର ବର୍ଷାକରୁଛି । ମୁଁ ତ କୃଷ୍ଣଚନ୍ଦ୍ର ହେଇନି ଯେ ତମକୁ ରକ୍ଷାକରିଦେବି । ତିନ୍ତୁଥ, ସନ୍ତୁଥ । ତେଣିକି ତମ ଭାଗ୍ୟ, ମୋ ଭାଗ୍ୟ । ଯେଉଁମାନେ ଏଠି ରହିଯିବେ ରହିଯିବେ ଆଉ ଯେତେକ ମୋ ସଙ୍ଗରେ ଯିବେ ପୁଣି ଚେଙ୍ଗା କରେଇଦେବି । କାଠ କଣ୍ଢେଇ ଯାକ ବିଲି ଯାଇ ନାହାନ୍ତି । ତାଙ୍କ ମୁଣ୍ଡ, ବେକ, ହାତ ଗୋଡ଼ ନଡ଼ ନଡ଼ ହେଲାଣି । ଆଣ୍ଠୁ ଗଣ୍ଠିରୁ କନା ଉପୁଡ଼ି ଗଲାଣି । ଝଡ଼ ବାତ୍ୟା ଶେଷ ହେଲାବେଳକୁ ଅଜାଙ୍କର ବି ସବୁ ଶେଷ ।

ପାଣ୍ଡବ ମାନେ ମହାଭାରତ ଯୁଦ୍ଧସାରି ଫେରିଲାବେଳର ଅବସ୍ଥା । କଳାକୁଞ୍ଜ ଭାଙ୍ଗିରୁଜି ନାରଖାର ହେଇଯାଇଛି । ଯେତେକ ବଳିଲେ ସେ ଗୋଟା

ଗୋଟି କରି ସାଙ୍ଗରେ ନେଇ ଫେରିଲେ । ଲାଗୁନଥିଲା ଅଜା ଆଉଥରେ ସେମାନଙ୍କୁ ନୂଆଜୀବନ ଦେଇ ପୁନର୍ନବା କରିଦେଇ ପୁଣି ସେମାନଙ୍କ ମୁହଁରେ ଲାବଣ୍ୟ ଫୁଟେଇ ପାରିବେ । ଅଜାଙ୍କ ନିଜ ବୟସ ବି ତ ଖସିଲାଣି । ବର୍ଷାମାଡ଼ରେ ତାଙ୍କ କାଶ ବଢ଼ିଯାଇଛି । ମାସେ ଦେଢ଼ମାସ ଘର ଫେରି ଜରରେ ପଡ଼ିଲେ । ବଡ଼ପୁଅ ଖବର ପାଇ ଦିନକ ପାଇଁ ଆସିଥିଲା । ବହେ ଗାଳିଦେଇ ଅଭିମାନ କରି ଫେରିଗଲା । ସାନ ପୁଅ ତ ରୋକ୍‌ଠୋକ୍ କହିଲା, ନନା ଯଥେଷ୍ଟ ହେଇଗଲା, ଏ ଧନ୍ଦା ଏତିକିରେ ବନ୍ଦରହୁ ।

ମିଶ୍ରେଙ୍କର ଏହା ଏକ ବିପର୍ଯ୍ୟୟ । ପ୍ରକୃତି, ପରିବେଶ, ପରିବାର ଶେଷରେ ନିଜର ପାରିଲାପଣିଆ ସବୁ ବାମହେଲେ । ମିଶ୍ରେ ମନସ୍ଥକଲେ ଆଉ ନୁହେଁ । ରୂପନ୍ୟାସ, ବର୍ଣ୍ଣନ୍ୟାସର ମଧ ଏକ ସୀମା ଅଛି । ଯାହା ହେଉଛି ହେଉ ଆଉ ପାରିହେବନି । ଖରାରେ ଦି ଚାରିଦିନ ଶୁଖାଶୁଖି କରି କଣ୍ଢେଇମାନଙ୍କୁ ଆଟୁରେ ଗଡ଼େଇଦେଲେ । ମନା ସିନା କରୁଥିଲେ, ପିତୁଳା ପିତୁଳୀମାନଙ୍କୁ କୋ ଫିଙ୍ଗିହେଉଛି । ଲୋଭ ତ । ଗଡ଼ୁଥାନ୍ତୁ । ଏବେ ମିଶ୍ରେ ବେଶ୍ ଭାବପ୍ରବଣ ହେଇଉଠିଛନ୍ତି । ବହୁ ସମୟରେ ଶୂନ୍ୟ ଆକଶଟାକୁ ଚାହିଁରହୁଛନ୍ତି । ନିଜ ଜୀବନର ଆଗକଥା ସବୁ ଭାବୁଛନ୍ତି ବୋଧହୁଏ । ଆଜିକାଲି ମିଶ୍ରେ ଖୁବ୍ ଏକା ଓ ଅସହାୟ ଲାଗୁଛନ୍ତି । ନିତ୍ୟାନନ୍ଦ ଥିଲାଯେ ସକାଳୁ ନାହିଁ ଉପରଓଳି ନାହିଁ ମାଡ଼ି ଆସୁଥାଏ । ବେଳେବେଳେ ପୁରାଣ ପଢ଼େ ତ ବେଳେ ବେଳେ କଳାକୁଞ୍ଜ । ଗୌରୀ ବି ଗୁଣର ଝିଅଟିଏ, ଏଠି ବେଶ୍ ଚଳେଇ ନେଲା । ଏବେ ମାଞ୍ଚେଲିରେ ବି ଚଳେଇ ନେଉଛି , ବୁଦ୍ଧିମତୀ ପିଲାଟେ ।

ମିଶ୍ରେ ମନେମନେ ଖୁସିଯେ ସେମାନେ ଡ଼କେଇ ପଠେଇ ଭଲ କଲେ । ଲାଗିଲା ମିଶ୍ରେଙ୍କ ଭିତରେ ସେଇ ପୁରୁଣା ଦମ୍ ଅଛି । କଳାକୁଞ୍ଜ ବେଳର ସେ ପୁରୁଣା ଝୁଙ୍କ ଅଛି । ଅସହାୟତା ଭିତରୁ ମୁକୁଳି ଯିବାପାଇଁ ବାଟଟେ ତ ଫିଟିଗଲା । ମଠାନ୍ନ ଗଣ୍ଡେ ଖାଇ ଖଞ୍ଜାରେ ଶୋଇବାକୁ ତ ମିଳିଗଲା । ଅଜା ମଠକୁ ଗଲେ ରଜା ଭଳିଆ ବ୍ୟବହାର । ଗୌରୀ ସବୁକଥା ଟିକିନିଖି ବୁଝିବ, ପାଖରେ ଗେଲେଇ ହେଇ ବସିବ । ନୀଳିମା ନହେଲେ ରେଣୁକାକୁ ଅଜାଙ୍କ ଗୋଡ଼ ହାତରେ ହାତ ବୁଲେଇ ଆଣିବାକୁ କହିବ । ସେମାନେ ଅଜା ପାଖରେ କେତେ ଟାହିଟାପରା ହେବେ, ଛୋପରା ହେବେ । ପଚାରିବେ ଅଜା, ତମ ଆଈ କାହିଁ, ଆମକୁ ନେଇଯାଉନ । ଆମେ ଘର ପାଇଟି କରିବୁ, ଆଉ ଆଈ ଯେଉଁ ଅଙ୍ଗ ସେବା କରୁଥିଲା ତା ବି କରିବୁ । ଦେଖ,

ନେଲେ ଦି ଜଣକୁ ନେବ । ସେ ଭାତରାନ୍ଧିଦେଲେ ମୁଁ ପାନ ଭାଙ୍ଗିଦେବି । ଏତିକି କଥାରେ ଅଜାଙ୍କ ମନ ଚହଲିଯାଏ । କହିବେ ଟୋକି ଯାକ କେଡ଼େ ଅସମ୍ଭାଳ ହେଲେଣି ।

## ଗୋଟିଏ ଖୁଲ୍ଲୁମୁଲ୍ଲୁ ଅପରାହ୍ଣ ।

ନୀଳାମ୍ବର ମିଶ୍ରେ ଏକ ଲକ୍ଷରେ ଚାହିଁଛନ୍ତି । ତାଙ୍କର ବିପୁଳ ଦେହଟି କୁନ୍ଦା କାଠର କୁର୍ଚ୍ଚି ଉପରେ ଅଜାଡ଼ି ହେଇ ପଡ଼ିଛି । ଗୋସେଇଁ ବାପାଙ୍କ ଅମଳର କୁର୍ଚ୍ଚି, ବାଁ ହାତଟି ଖସିପଡ଼ିଲାଣି । ଖିଲସବୁ ହୁଗୁଳି ଗଲାଣି । ସେଗୁଡ଼ିକୁ ଧରିରଖିବା ପାଇଁ ପରେ ପିତଳର ଯେଉଁ ବନ୍ଧୁଅ ବାଡ଼ିଆ ହୋଇଥିଲା ତାହା କଳିଙ୍କି ଢ଼ିଲା ଧରିଲାଣି । ତଥାପି ଆଜିକାଲି ଅପରାହ୍ଣମାନଙ୍କରେ ଏହି କୁର୍ଚ୍ଚି ଉପରେ ବସିରହି ଦିଗ୍‌ବଳୟକୁ ଚାହିଁବାକୁ ମିଶ୍ରେ ମହାଶୟଙ୍କୁ ଭଲଲାଗୁଛି । ନୀଳାମ୍ବର ମିଶ୍ରେଙ୍କ ବାପା ଦିଗମ୍ବର ଓ ତାଙ୍କ ବାପା ବାନାମ୍ବର ମିଶ୍ରେଙ୍କୁ ନିଜ ଉପରେ ବସେଇ ଆସିଥିବା ଓ ପୂର୍ବ ପୁରୁଷଙ୍କ ହାଇମ୍ ଦେଖିଥିବା କୁର୍ଚ୍ଚି ନୀଳାମ୍ବର ମିଶ୍ରେଙ୍କ ନିଃସଙ୍ଗ ଜୀବନର ଅତିଆପଣାର, ଅତି ଅନ୍ତରଙ୍ଗ । ମିଶ୍ରେ କହନ୍ତି ଏହି କୁର୍ଚ୍ଚି ଉପରେ ଦଣ୍ଡେ ବସିପଡ଼ିଲେ ପରଂପରା ସହିତ ସଂପର୍କଟିଏ ଆପେ ଆପେ ଯୋଡ଼ି ହୋଇଯାଏ । ମିଶ୍ରେ କୁର୍ଚ୍ଚି ଉପରେ ବସି ବାପ ଗୋସେଇଁ ବାପାଙ୍କ ପ୍ରଶସ୍ତି ବାଢ଼ନ୍ତି । ସେମାନେ କିମିତି ଆଶୁ କବି ଥିଲେ ମୁହେଁ ମୁହେଁ ସଂସ୍କୃତରେ ଶ୍ଳୋକ ରଚନା କରୁଥିଲେ, ରାଜଦରବାର ସେମାନଙ୍କ ଉପସ୍ଥିତିରେ କିଭଳି ଗରିମାମୟ ହେଇ ଉଠୁଥିଲା । କଥା କହିଲା ବେଳେ ସେ ଲଥାବି ଯୋଡ଼ନ୍ତି, ଇତିହାସ କିମ୍ବଦନ୍ତୀ ଓ ସ୍ମୃତି କୁ ଫେଣ୍ଟା ଫେଣ୍ଟି କରି ବଂଶର ପାରିଲାପଣକୁ ପରିବେଷଣ କରନ୍ତି । ପଡ଼ିଶା ଘରର ରଥ ଆପଣେ, ଦାଣ୍ଡଦୁଆରିର ଆଚାର୍ଯ୍ୟେ ନାସ ସେବନ ଉଦ୍ଦେଶ୍ୟରେ ମିଶ୍ରେଙ୍କ ଘର ଗଡ଼ନ୍ତି ଓ କଥା ଯାକ ପଣାଭଳି ପିଇଯାଆନ୍ତି । ସେମାନଙ୍କୁ ମିଶ୍ରେଙ୍କଠୁ କଥା ଶୁଣିବାକୁ ଭଲଲାଗେ, ନିଜ ପାଖରୁ ଆରମ୍ଭହେବ । ସରିବ କଳାକୁଞ୍ଜରେ ।

ନୀଳାମ୍ବର ମିଶ୍ରେ ଅଗଣା ପିଣ୍ଡାରେ ଜାଉଁଳି ଖମ୍ଭକୁ ଡାକି ହେଇ ପଡ଼ିଥିବା କୁର୍ଚ୍ଚିଉପରେ ବାଁଗୋଡ଼ ଲମ୍ବେଇ ଡ଼ାହାଣ ଗୋଡ଼ ଉପରକୁ ଉଠେଇ ବଙ୍କୁଲି ବାଡ଼ିଟିକୁ କୁର୍ଚ୍ଚି ବାଡ଼ାରୁ ଝୁଲେଇ ଦେଇ ବସିଛନ୍ତି । ତାଙ୍କ ଥନ୍ତଲା ପେଟ ଉପରେ

ନଅଖିଅ ଶୁଭ୍ର ପଇତା ଦାଉଦାଉ ହେଉଛି, ପଇତାରେ ହାତଗଣ୍ଠି ବେଳର ପଥର ବସା ସୁନା ମୁଦିଟି ଫରଫାସିରେ ବନ୍ଧାହୋଇଛି । ପେଟ ଉପରି ଭାଗରେ ବ୍ରାହ୍ମଣିଆଙ୍କ ଯାଉଁଳି ଗଣ୍ଡିଲି ଭଳି ଛାତିଟା ତଳକୁ ଝୁଲିପଡ଼ିଛି । ନାହିଟି ଗହିରିଆ । ତଳିପେଟ ତଳକୁ ଗାମୁଛାଟିଏ ପିନ୍ଧାହେଇଛି । କଣ ଦିଶୁଛି ନ ଦିଶୁଛି ସେଥିପ୍ରତି ପରବାଏ ନାହିଁ । ବୟସାଧିକ୍ୟରେ ଖସି ପଡ଼ିଥିବା କାନ୍ଧ ଉପରେ ପାକଲା ଗାମୁଛା ଗୋଟିଏ ନୁହେଁ, ହଳେ । ବାଁହାତରେ ରୁପାର ନାସଦାନି, ଗୋଟିଏ ଚିମୁଟା ନାସ ଦକ୍ଷିଣ ପୁଡ଼ାରେ ଶୁଙ୍ଘିଦେଇ ନୀଳାମ୍ବର ମିଶ୍ରେ ଅପଲକ ଆଖିରେ ଚାହିଁ ରହିଛନ୍ତି ।

ମିଶ୍ରେଙ୍କ ତୀକ୍ଷ୍ଣଦୃଷ୍ଟି ଲମ୍ବିଯାଇଛି ତାଙ୍କ ମଝିଅଗଣାରୁ ଗିରିସୋଲା ଇଛାପୁର ବାରୁଆ ସୋମପେଟା ମଞ୍ଜୁଷା ଟେକାଲି ଡ଼େଇଁ କୂର୍ମପାଟକର ବ୍ରାହ୍ମଣ ଶାସନ ଆଡ଼େ । ସବୁ ଖାଲି ଏବେ ସ୍ମୃତି । ଦିନଥିଲା ଏହି କୂର୍ମପାଟକରୁ କଳା ସଂଗୀତ ନିପୁଣା ଗୁଣବତୀ ରୂପବତୀ ଦେବଦାସୀମାନେ ପୁରୀ ଜଗନ୍ନାଥ ମନ୍ଦିରରେ ଠାକୁରଙ୍କ ସେବାରେ ବିନିଯୋଗ ହେଉଥିଲେ, ସେମାନଙ୍କ ପାଦର ଘୁଙ୍ଗୁରରୁ ନିକ୍ୱଣିତ ମନ୍ଦ୍ରଧ୍ୱନିରେ ମନ୍ଦିର ଗମ୍ଭୀରା ଝଂକୃତ ହେଇ ଉଠୁଥିଲା । ଜଗନ୍ନାଥେ ଶ୍ରୀଅଙ୍ଗରେ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ଲାଗିହେଇ ନୃତ୍ୟ ଉପଭୋଗ କରୁଥିଲେ ଓ ଗୀତଗୋବିନ୍ଦର ସୁଲଳିତ ପଦାବଳୀ ଦେବଦାସୀଙ୍କ ବୀଣାଜିଣା କଣ୍ଠରୁ ଶୁଣି ଶୁଣି ପହୁଡ଼ ଯାଉଥିଲେ । କୋକିଳ ପ୍ରଭା ବୈକୁଣ୍ଠ ବାସୀ ହେଲା ପରଠାରୁ ମନ୍ଦିର ଗମ୍ଭୀରାନୃତ୍ୟର ଛନ୍ଦରେ ଚଂଚଳିତ କରି ଜଗନ୍ନାଥଙ୍କୁ ଉନ୍ମତ୍ତ କରିବାକୁ ଆଉ କେହି ନାହାନ୍ତି ।

ମିଶ୍ରେ ମହାଶୟଙ୍କ ଭାବନାର ଖିଅ ବିସ୍ତାରି ଯାଉଛି ଅବର୍ତ୍ତମାନ ସ୍ଥିତି ଭିତରକୁ । ହେଇଟି ପରିଲାଗୁଛି । କିନ୍ତୁ ଏଭିତରେ ପ୍ରାୟ ଷାଠିଏଟି ବର୍ଷ ବିତି ଗଲାଣି । ସେ ବାହାହେଇ ଥିଲେ ବଂଶଧାରା କୂଳରେ ମୁଖଲିଙ୍ଗମ୍ ଗାଁର ସୁଦର୍ଶନ ଷଡ଼ଙ୍ଗୀଙ୍କ ଜ୍ୟେଷ୍ଠାକନ୍ୟା ଲବଙ୍ଗଲତାକୁ । ବାହାଘର ବେଳକୁ ଲବଙ୍ଗ ଗୃହ ଯୋଗ୍ୟାହେଇନଥିଲେ । ଦିଗମ୍ବର ମିଶ୍ରେ ତୋଳାକନ୍ୟାକୁ ନିଜର ବୋହୂଭାବେ ଗ୍ରହଣ କରିଥିଲେ । ଏହି ଘଟଣାର ପାଞ୍ଚବର୍ଷପରେ ମୁଖଲିଙ୍ଗମ୍ ତ୍ରିନାଥ ଡ଼ାକୁଆ ଆସି ନୀଳାମ୍ବର ମିଶ୍ରେଙ୍କ ପାଦକୁ ହଳଦି ପାଣିରେ ଧୋଇଦେଇ ଓଳଗି ହେଇଥିଲା । ମିଶ୍ରେ ବାପାଙ୍କ ଉପସ୍ଥିତିରେ ଲାଜେଇ ଯାଇଥିଲେ । ତ୍ରିନାଥ ସୁଉକେ ପଇସା ଆଉ ହଳେ ଗାମୁଛା ମେଲାଣି ନେଇ ବାହୁଡ଼ି ଯାଇଥିଲା । ତାପରେ ନିବୁଜ ସବାରିରେ ଲବଙ୍ଗଲତା ବୋହୂହେଇ

ଆସିଥିଲେ । ଲବଙ୍ଗଲତା ରାଧାଙ୍କ ସୁନା ପ୍ରତିମାଭଳି ଝଟକୁ ଥିଲେ । ବିସ୍ତାରିତ କଜ୍ଜଳମଖା ଆଖି, ହଳଦି ଗୁରୁ ଗୁରୁ ଦେହ, ପୁନେଇ ଜହ୍ନଭଳି ଗୋଲିଆ ମୁହଁ , ନାକପୁଡ଼ାରେ ନୋଥ ହଂସଗୁଣା, ଓଲମ୍ବିତ ଧଳାପଥର ଦିଆ ଦଣ୍ଡି । କପାଳ ଉପରେ ଅଳକା ପଟି, ମଝିରେ ଝୁଲିଥିଲା ମଥାମଣି, ମଥାମଣିରୁ ସିନ୍ଥି ଉପରେ ବଂଶଧାରା ନଦୀର ଧାର ଭଳି ଲମ୍ବଯାଇଥିଲା ସୁନାର ଡ଼ୋରି, ବେଣୀ ମୂଳରେ ନାଗରମ୍ ତା ତଳକୁ କାକରା ସେବତୀ, ହେଇ ନିତମ୍ବଡ଼େଇଁ ବେଣୀ ଝୁଲିଛି । ଅଗରେ କଦମ୍ବ ଝୁମ୍ପା । ମଥାରୁ ଝରିପଡ଼ିଥିଲା ଇଟମଲା ଫୁଲର ମାଳ, ପୁଣି ଖୋସାହେଇଥିଲା କିଆ ଫୁଲର ପାଖୁଡ଼ା । ଗଳାରେ ଚାପସରି, କଣ୍ଠିମାଳ, ଖାସୁ, ଗଜମୁକ୍ତା ହାର ନିଟୋଳ ବକ୍ଷଉପରେ ଅଳାଡ଼ି ହେଇପଡ଼ିଥିଲା । ଲବଙ୍ଗଲତା ଜରିଦିଆ କାଞ୍ଜିବରମ୍ ଗେରୁପାଟର ହାତେ ଓଢ଼ଣାଟାଣିନେଇ ସବାରିରୁ ଓହ୍ଲାଇଲେ । ନୀଳାମ୍ବରଙ୍କ ବୋଉ ଅନ୍ନ ନିଉଛାଳି ହୁଳହୁଳା ଦେଇ ହଳଦିଆ ଚାଉଳ, ବରକୋଳି ପତ୍ରରେ ବନ୍ଦେଇ ଘର ଗମ୍ଭୀରାଭିତରକୁ ବୋଉପିଲାକୁ ନେଇ ଯାଇଥିଲେ ।

ନୀଳାମ୍ବର ମିଶ୍ରେଙ୍କ ନିସ୍ତେଜ ପଡ଼ିଆସିଥିବା ଦେହରେ ଶିହରଣଖେଳିଗଲା । ସେ ଆଉ ସ୍ମୃତିର ପେଟରା ଫିଟେଇବାକୁ ଅମଙ୍ଗହେଲେ । ସ୍ମୃତି ମଧୁମୟ ନିଶ୍ଚୟ । ତଥାପି ଥରେ ଥରେ ସ୍ମୃତିର ସମ୍ମୋହନ ମଣିଷକୁ ଅସହାୟ କରିପକାଏ । ଦୃଷ୍ଟିବାହୁଡ଼େଇ ଆଣିଲେ କୂର୍ମପାଟକରୁ ନିଜ ଅଗଣାଭିତରକୁ ଯେଉଁଠି ପାଟ ଟେରାବାଡ଼ ଭିତରେ ରାଧା ଓ ଲଳିତା ଉଲଗ୍ନ ହେଉଥିଲେ । ମିଶ୍ରେତ ନାନା ରଙ୍ଗରେ ମାତିଥିଲେ । ତାଙ୍କର ବେଳ ନଥିଲା ନିଜ ଠାକୁରଙ୍କ କଥା ବୁଝିବାକୁ । କଳାକୁଞ୍ଜ ପଛରେ ଧାଇଁ ଧାଇଁ ସେ ନୟାନ୍ତ ହେଇଯାଇଥିଲେ । ପିତୁଳାପିତୁଳୀ ଗଣ୍ଡାକ ଥିଲେ ବୋଲି ମିଶ୍ରେ ମିଛମାୟାରେ ନଡ଼ବଡ଼ ହେଉଥିଲେ । ପେଟ ପୋଷିବା କଥା ମିଛ । ସେମାନଙ୍କୁ ଦେଖିଲେ ତାଙ୍କ ମନ କୁଣ୍ଢେ ମୋଟ ହେଇ ଯାଉଥିଲା, ପ୍ରାଣ ପୂରି ଉଠୁଥିଲା । ସେମାନଙ୍କ ସାଥିରେ ପ୍ରତିବର୍ଷ ରଂଜହଂସ । ଦେ, କନା ପକା, ଯୋଡ଼ା ଯୋଡ଼ି କର । ରଙ୍ଗ ଦେ, ମାଠ କର, ଏମିତି କରି କରି ତାଙ୍କ ଦିନତକ ନିଶ୍ଚିରେ ବିତି ଯାଉଥିଲା । କଳାକୁଞ୍ଜ ସରିଲା ତ ଘରକଥା ମନେ ପଡ଼ିଲା । ଦଶ ପନ୍ଦର ବର୍ଷ ହେଲାଣି ନିଜ ଠାକୁର ସେମିତି ପଡ଼ିରହିଛନ୍ତି, ଏବର୍ଷ ମାହେନ୍ଦ୍ର ବେଳା ଜୁଟିଛି । ନବକଳେବର ହେଉଛି । କାମ ବଢ଼ିଗଲେ ମିଶ୍ରେ ମାଙ୍କେଲି ଯିବେ ।

ମଣିଷେ ଉଚ୍ଚର ତ୍ରିଅଁଙ୍ଗା ବିଗ୍ରହ । ଡ଼ାକିଲେ ଓ' କରିବା ଦେବତା ରାଧାମୋହନ, ରାଧାରାଣୀ ଓ ତାଙ୍କ ସହଚରୀ ଲଳିତା । ନୀଳାମ୍ବର ମିଶ୍ରେ ଟେରାବାଡ଼ ଭିତରେ କ' ଣ ଘଟିଯାଉଛି ତା ସ୍ୱଚକ୍ଷୁରେ ଦେଖିବା ପାଇଁ ଇଚ୍ଛୁକ ନଥିଲେ । କିନ୍ତୁ ତାଙ୍କର ଅନ୍ତର୍ଦୃଷ୍ଟି ଯିମିତି ଫେଡ଼ି ଯାଇଥିଲା, ଯେଉଁ ଆଖି କୂର୍ମପାଟକର ପରିତ୍ୟକ୍ତ ଓ ଅବଲୁପ୍ତ ବ୍ରାହ୍ମଣ ଶାସନରୁ ଲବଙ୍ଗଲତାଙ୍କ ସ୍ମୃତିକୁ ସଜୀବ କରିଦେଇଥିଲା ସେ ଆଖିରେ ସେ ସବୁ ଘେନି ନେଉଥିଲେ । ଯେତେ ସବୁ ଦୃଶ୍ୟମାନ ଓ ଅଦୃଶ୍ୟ ସତ୍ତାର ଲୀଳା ଖେଳା । ନିଜ ଠାକୁରଙ୍କ ଦେହରେ ମିଶ୍ରେ ନିଜେ ହାତ ଦିଅନ୍ତିନି । କେଉଁ ପୂର୍ବ ପୁରୁଷରୁ ପରଂପରା ଗଡ଼ି ଆସିଛି । ଚିତ୍ରକାର ଘରକୁ ଖବର ଯିବ । ସେମାନେ ଆସିବେ । ନବନ୍ୟାସ ହେବ । ଏମାନେ କଣ କଳାକୁଞ୍ଜର ପିତୁଳୀ ହେଇଛନ୍ତି ଯେ ହାଡ଼ି ବାଉରୀ ଯିଏ ହେଲେ ଛୁଆଁ ଛୁଇଁ କରି ଚିତ୍ରଙ୍ଗି କରିଦେବ । ବଡ଼ ପ୍ରତ୍ୟକ୍ଷ ବିଗ୍ରହ ।

ଟେରାବାଡ଼ ପଡ଼ିଲେ ହିଁ ଚିତ୍ରକାମ ହେବ । କିନ୍ତୁ ଟେରାବାଡ଼ ଧର୍ମକୁ ଆଖିଠାର ଭଳି । ବିଧାନକୁ ଅଛି ମାତ୍ର ନଥିଲା ଭଳି । ବାହାରୁ ଟେରାବାଡ଼ ଭିତରେ ସବୁ ଦୃଶ୍ୟ ବାରି ହେଇଯାଉଥିଲା । ଚିତ୍ରକାର ସାହିର ନାତିଆ ପ୍ରକାଶ ମହାପାତ୍ର ଓ ତା ଦାଦା ବ୍ରହ୍ମାନନ୍ଦ ଶ୍ରୀଅଙ୍ଗରୁ ପାଟପତନି ଓହ୍ଲେଇ ଦେଲେ । କିରଟୀ ମୁକୁଟ, ନାକଚଣା, ନୋଥ, କାନର ବେଣ୍ଟୁଳା କାଢ଼ି ମିଶ୍ରେ ଦେଇଥିବା ଫରୁଆ ଭିତରେ ରଖିଲେ । ଗୋପୀନାଥଙ୍କ ବଂଶୀ, ପୀତାମ୍ବରୀ ପାଟ, ଉତ୍ତରୀୟ ସବୁ କଢ଼ାଗଲା । ଯଶୋଦାଙ୍କ ଛଡ଼ା ଏ ଯାବତ୍ ଏଭଳି ଦୁଃସାହସିକ କାର୍ଯ୍ୟ କିଏ କରିନଥିଲା, ରାଧାଙ୍କ କଥା ସବୁବେଳେ ନିଆରା । ମିଶ୍ରେ ଆଶ୍ୱସ୍ତ ଥିଲେ ଯେ ସକାଳର ଧୂପ ବଢ଼ିଗଲା ପରେ ଠାକୁରମାନେ ପହଡ଼ ଯିବା ଆଗରୁ ବିଗ୍ରହମାନଙ୍କ ଦେହରୁ ଆତ୍ମାକୁ ଅଲଗା କରି କଂସା ଦର୍ପଣରେ ବିମ୍ବିତ କରିଦେଇଥିଲେ । ସେଥିଲାଗି ପୁନଃନ୍ୟାସ ପୂଜା, ସମର୍ପଣ ବିସର୍ଜନ ଓଗେର କର୍ମ ମିଶ୍ରେ ଠାକୁର ଘର ଭିତରେ ବଢ଼େଇ ସାରିଥିଲେ । ଚିତ୍ରକର ହାତରେ ମୂର୍ତ୍ତିଗୁଡ଼ିକ ସମର୍ପି ଦେବା ଆଗରୁ କହିବାକୁ ଗଲେ ବିଗ୍ରହମାନଙ୍କ ଦେହରେ ପ୍ରାଣ ନଥିଲା ।

ପ୍ରକାଶ ଓ ବ୍ରହ୍ମାନନ୍ଦ ନବନ୍ୟାସର ବିଧି ଜାଣିଛନ୍ତି । ବିଧାନକୁ ନେଇ ଲେଖା ତାଳପତ୍ର ପୋଥି ଘରେ ଅଛି ବୋଲି ଭୁରୁଡୁ ମାରୁଛନ୍ତି । ଥିଲେ ବି ସେ ତାଳପତ୍ର ଅକ୍ଷର କଣ ପଢ଼ିପକେଇବେ ଯେ ! ଅଜା ପୋଥି ମାଗିଲେ ଖାଲି ବାଆଁରେଇବେ । କିନ୍ତୁ ବିଧି ନିର୍ଦ୍ଦେଶିତ ହେଇ ସେମାନେ ଯାହା ସବୁ କରିଯାଉଛନ୍ତି

ତାର ତାତ୍ତ୍ୱିକ ମହତ୍ତ୍ୱ କଣ ସେ ହେଜିପାରୁଛନ୍ତି ?   ଯିଏ ଶତ ସହସ୍ର ଗୋପୀଙ୍କ ପାଲଟା ବସ୍ତ୍ରକୁ ପବନକୁ କହି ହରଣ କରି କଦମ୍ବ ଡ଼ାଳରେ ବାନ୍ଧିଦେଇଥିଲେ , ଯିଏ ନିଜକୁ ଶତଧାରେ ବିମ୍ବିତ କରି ଆତ୍ମା ଓ ପରମାତ୍ମାର ନିବିଡ଼ ସଂପର୍କକୁ ଯମୁନା ନଦୀର ବାଲି ଉପରେ ରୂପାୟିତ କରି ପାରିଥିଲେ, ଯିଏ ଦ୍ରୌପଦୀର ଲଜ୍ଜାକୁ ନିବାରଣ କରିବା ପାଇଁ ଅଦୃଶ୍ୟରୁ ଶାଢ଼ିର ବେଢ଼ଣ ଲମ୍ବେଇ ଦେଇଥିଲେ ସେହି ପରଂବ୍ରହ୍ମ ଗୋପୀନାଥଙ୍କୁ ବ୍ରହ୍ମାନନ୍ଦ ଉଲଗ୍ନ କରୁଛି । ପ୍ରକାଶ ରାଧାଙ୍କ କାଞ୍ଚୋଲା ଖୋଲି ସାରିଲାଣି, ପାଟର ଘେରକୁ ଖୋଲି ମୁକୁଳା କରିସାରିଲାଣି । ରାଧାଙ୍କ ସ୍ତନ ନିତମ୍ବ ଜାନୁ ଜଘନ ରସାଳବାହୁ ବାରି ହେଇ ପଡ଼ିଲାଣି । ରାଧା ଅତି ଅସହାୟ ଅବସ୍ଥାରେ ଟେରାବାଡ଼ ଭିତରେ ଠିଆ ହେଇଛନ୍ତି । ନୀଳାମ୍ବର ମିଶ୍ରେ ଅନୁମାନ କରିନେଲେଣି ଟେରାଭିତରେ କଣ ଘଟି ଯାଉଛି । ଆହା ମୋ ପ୍ରାଣପ୍ରିୟେ ରାଧିକେ ! ଆହେ ଲଳିତେ! ଆହେ ଗୋପୀନାଥ ! ମିଶ୍ରେ ପୁଲକିତ ହେଇଉଠିଲେ । ଥନ୍ତଲା ପେଟରେ ଘନଘନ ସ୍ଫୁରଣ ହେଲା । ଦେହ ରୋମାଞ୍ଚିତ ହୋଇଗଲା । ଭକ୍ତିର ଆତିଶଯ୍ୟ ରେ ଆଖିରେ ପ୍ରେମାଶ୍ରୁ ଭରିଗଲା, ବଂଶଧାରାରେ ବନ୍ୟା ଆସିଲାପରି । ମିଶ୍ରେ ଆଉ ସମ୍ଭାଳି ଗଲେନି । କୋହ ଉଠିଲା । ତୁହାକୁ ତୁହା ଘନ ଘୋଉ ବର୍ଷା ଭଳି ଅଜାଡ଼ି ହେଇଗଲା । ମିଶ୍ରେ ଗାମୁଛାରେ ମୁହଁ ପୋଛିଲେ । ନିଜକୁ ସଂଯତ କରିନେଲେ । ପ୍ରକୃତିସ୍ଥ ହେଲେ ।

ହଇରେ ନାତିଆ ଟୋକେ, ମିଶ୍ରେ ପ୍ରକାଶ ଓ ବ୍ରହ୍ମାନନ୍ଦକୁ ସଂବୋଧନ କଲେ । ମୋର ପ୍ରାଣର ମିତଣୀରେ ସେମାନେ, କେହି କାଠର ପ୍ରତିମା ନୁହନ୍ତିରେ । ଜିଅନ୍ତା ଠାକୁରରେ ସେମାନେ, ଡ଼ାକିଲେ ଓ' କରିବା ଦେବତାରେ ।  ଅନ୍ନଭୋଗ ଖାଉଥିବା ଠାକୁରରେ । ରାଧା ମୋ କୁଳଲକ୍ଷ୍ମୀ । ଲଳିତା ମୋ ଝିଅ ଭଳି । ତମକୁ କ'ଣ ନ ଜଣା । ଚିତ୍ରକାର ଘରର ପିଲା ହେଲେ ମଧ୍ୟ ତମେ ତ ଆମ ବଂଶର ପିଲା ଭଳି । ଗୋପୀନାଥ ତ ଏ ବଂଶର ଇଷ୍ଟ । ତମେମାନେ ଆମ ବଂଶର ନାତି ପରା । ଶ୍ରୀଅଙ୍ଗକୁ ବାଧାଲାଗିବ, ଧୀରେ ଧୀରେ ଲୁଗା ପାଲଟାଅ ରେ ।

ମିଶ୍ରେଙ୍କୁ ଲାଗୁଛି ଗମ୍ଭୀରା ଭିତରେ ଚଉଠି ରାତିର ଘିଅ ଦୀପର ନିଷ୍ପ୍ରଭ ଆଲୁଅରେ ସେ ଲବଙ୍ଗଲତାଙ୍କୁ ଉଲଗ୍ନ କରୁଛନ୍ତି । ସେ ନବବଧୂର ଅନାଘ୍ରାତ ଦେହର ସମ୍ମୋହନରେ ଚକିତ ଓ ବିସ୍ମିତ ହେଇ ଉଠୁଛନ୍ତି । ସେ ଅନୁଭବ କରୁଛନ୍ତି ତାଙ୍କର ଶରୀରରେ ଅଦ୍ଭୁତ ଶିହରଣ, କଂପନ । ତାଙ୍କର ସମସ୍ତ ଧାର୍ମିକ ଚେତନା

ଅଧ୍ୟାତ୍ମିକ ସାଧନା ଓ ବର୍ଷ ବର୍ଷର ସଂସ୍କାରକୁ ଅତିକ୍ରମ କରି ଦେବତାର ଦେହରେ ମଧ ମିଶ୍ରେଙ୍କ ମୋହ ଘୋଟି ଯାଉଛି । ମଣିଷ ଓ ଦେବତାର ଏକାଭଳି ଆକର୍ଷଣରେ ମିଶ୍ରେ ତଟସ୍ଥ । କେଉଁ କାଳର ଅଳୋଡ଼ା ସ୍ମୃତିଟିଏ ତାଙ୍କୁ ବିଚଳିତ କରିଦେଉଛି । ମିଶ୍ରେ ପ୍ରକୃତିସ୍ଥ ହେବା ପାଇଁ ହା କୃଷ୍ଣ! ହା କୃଷ୍ଣ! ଉଚ୍ଚାରିଲେ । ପରଂବ୍ରହ୍ମଙ୍କ ଉଦ୍ଦେଶ୍ୟରେ ହାତ ଟେକିଲେ ।

ଦିନେ ରାତିରେ ମିଶ୍ରେ ସହଧର୍ମିଣୀଙ୍କୁ ନେଇ ଗମ୍ଭାରି ଘରେ ପଲଙ୍କ ଉପରେ ଶୋଇଛନ୍ତି । ବାହାରେ ଜହ୍ନପକ୍ଷ ରାତି । ଜହ୍ନ ପିଠଉ ଭଳି ବିଛେଇ ହେଇ ପଡ଼ିଛି । ରାତି ତିନି ହେବ । ମିଶ୍ରେ ପରିସ୍ରା କରିବାକୁ ଉଠିଛନ୍ତି । ଅଗଣା ଭିତରେ ଦେଖିଲେ ଧଳା ସରସର ଖିରଦୋର ପାଟପିନ୍ଧି ମୁଣ୍ଡ ଉପରେ ହାତେ ଓଢ଼ଣା ଟାଣି, କୁଳବୁଆସୁଣୀ ଭଳି ସ୍ତ୍ରୀ ଲୋକଟିଏ । ବୃନ୍ଦାବତୀଙ୍କ ଚଉରା ପାଖରେ ମୁଣ୍ଡଆ ମାରିଲା । ତାପରେ ଉଠି ଠିଆ ହେଲା ମିଶ୍ରଙ୍କୁ ଆଡ଼ କରି ଖିଲି ଖିଲି ହସିଲା । ଟୋପା ଜହ୍ନ ରାତିରେ ସବୁ ବାରିହେଇ ପଡୁଥାଏ । ମିଶ୍ରେ ସବୁ ଠିକ୍ ଠିକ୍ ଦେଖିପାରୁଛନ୍ତି । ଲାଗିଲା ଲବଙ୍ଗ ହୁଏତ ଆଗରୁ ଉଠିପଡ଼ି ଅଗଣାରେ ଠିଆ ହେଇଛି । ମିଶ୍ରେଙ୍କ ମନରେ ଦକା ପଶିଲା । ଛାତି ଧଡ଼ଧଡ଼ ହେଲା । କାନରେ ଦିଶୁଥ ପଇତା ଗୋଡ଼ିଆ ହେଇଛି ମିଶ୍ରେ ଘର ଭିତରକୁ ଦୌଡ଼ିଲେ । ଲବଙ୍ଗ ନିଘୋଡ଼ ନିଦରେ ଶୋଇଛନ୍ତି । ତାଙ୍କ କପାଳରେ ହାତ ଦେଲେ, ଦେହରେ ହାତବୁଲେଇ ଆଣିଲେ ଜର ଖଇ ଫୁଟୁଛି । ତାଙ୍କୁ ଅତର୍ଛିଆ ଲାଗିଲା । ପୁଅ ଦିଟା ବଡ଼ ହେଇଗଲେଣି । ଅଲଗା ଘରେ ନିଶ୍ଚିନ୍ତିରେ ଘୁଙ୍ଗୁଡ଼ି ମାରୁଛନ୍ତି । ମିଶ୍ରେ ମାନସିକ କରି ଲବଙ୍ଗଙ୍କ ମୁଣ୍ଡଆଡ଼େ ଅରୁଆ ଚାଉଳ ମୁଠେ ଓ ତାପରେ ଗୁଆଟିଏ ଥାପିଲେ । ତାତି ଓହ୍ଲେଇ ଯିବ ଭାବିଲେ । ଠାକୁର ଘର ଖୋଲି ଶାଳଗ୍ରାମ ଖଟୁଲି ପାଖରେ ଘିଅ ଦୀପଟିଏ ଜାଳିଦେଲେ ।

ସନ୍ତର୍ପଣରେ ମଝିଅଗଣାରୁ ବାଡ଼ି ଆଗଣକୁ ଆସିଲେ । ସେଦିନ କୁରୁପା ବି ନାହିଁ । କୁରୁପା ମିଶ୍ରେଙ୍କ ହଳିଆ, ଜମିବାଡ଼ି କଥା ବୁଝେ । ବାଡ଼ିକବାଟ ଗେଡ଼ା ଖୋଲିଲେ । ବାଡ଼ି ଲମ୍ବିଯାଇଛି ପଦର ଭିତରକୁ । ତା ପଛକୁ ଖଳା । ଲାଗୁଛି ବର୍ତ୍ତମାନରୁ ଭବିଷ୍ୟ ଯାଏଁ ଏକ ବିସ୍ତାର । ଅନ୍ନ ସଂସ୍ଥାନର ପ୍ରବୃତ୍ତି ପାଇଁ ଆୟୋଜନ । ଖଳାକୁ ଲାଗି ଆମ୍ବ ତୋଟା । ଆମ୍ବତୋଟାର ଭାଡ଼ି ଉପରେ ନିତିଆ, ହାଡ଼ିଆ ଶୋଇଥିବେ । ମିଶ୍ରେଙ୍କ ନିଜ ଅତି ଆପଣାର ବାଡ଼ିଟି କାହିଁକି ନିଛାଟିଆ, ନିଛାଟିଆ

ଲାଗିଲା । ରୋଷେଇଘର ଛାତକୁ ଲାଗି ଛାମୁଣ୍ଡିଆ ଉପରେ ଜହ୍ନିଲଟା ମାଡ଼ିଛି । ଫୁଲଫୁଟିଛି । ତୋଫାଦେଖାହେଉଛି । ଆଉ କଡ଼କୁ ତମାଳ ଲତା ପାଚେରି କାନ୍ଥଟା ଉପରେ ଲଟେଇଯାଇଛି । ଭୁରୁ ଭୁରୁ ଗନ୍ଧରେ ବାଡ଼ିପଟ ଉଛୁଳି ପଡୁଛି ।

ମିଶ୍ରେଙ୍କୁ ଟିକିଏ ଆଗରୁ ଲାଗୁଥିଲା ସେଇଠି ପୋଖରୀପାଣି ହେଇଯିବ । ଏଣୁ ସେ ପଇତାକୁ କାନ ଉପରେ ଆଉ ପରସ୍ତେ ଗୁଡ଼େଇ ହେଲେ । ବୁଦାଳିଆ ଗଛ ଛାଇ ଭିତରେ ମିଶ୍ରେ ଦେଖିଲେ ଅବିକଳ ସେଇ ସ୍ତ୍ରୀ ଲୋକର ଛାଇଟି ଧୀରେ ଧୀରେ ଆଗେଇ ଗଲା । ଶେଷରେ ଆମ୍ବତୋଟାର ନିରନ୍ଧ୍ର ସବୁଜିମା ଭିତରେ ହଜିଗଲା । ମିଶ୍ରେଙ୍କୁ ଖୁଦୁମୁଦୁ ଲାଗିଲା ମନ ଭିତରେ ଦକା ପଶିଗଲା । ତାଙ୍କୁ ଲାଗିଲା ରକ୍ତ ଧମନୀ ଭିତରେ ଜମାଟ ବାନ୍ଧି ଦେଉଛି । ତାଙ୍କ ଦେହ ଶିହରି ଉଠିଲା । ମିଶ୍ରେ ଏତେ ସହଜରେ ହଡ଼ବଡ଼େଇବା ଲୋକ ନୁହନ୍ତି । ଭୟ ନିବାରଣ ପାଇଁ ମହାମୃତ୍ୟୁଂଜୟ ମନ୍ତ୍ର ବାରମ୍ବାର ଉଚ୍ଚାରଣ କରିବାକୁ ଲାଗିଲେ । ଢ଼ାଳଟିକୁ ନେଇ ପଛକୁ ଫେରିଲେ । ଭାବିଲେ ଏସବୁ ଭ୍ରମମାତ୍ର । ଧୈର୍ଯ୍ୟ ସଂଗ୍ରହକଲେ । ସିଦ୍ଧାନ୍ତରେ ଉପନୀତ ହେଲେ କେଉଁ ଏକ ଅତୃପ୍ତ ଆତ୍ମା ପିଶାଚିନୀ ରୂପରେ ଘୂରି ବୁଲୁଛି । ଘରକୁ କିଳି ଦେଲେ ସବୁ ଠିକ୍ ହେଇଯିବ । ଗୋପୀନାଥଙ୍କ ପାଖରେ ଗୁଆ ଘିଅ ଦିସେର ପୋଡ଼ି ଦେବାକୁ ହେବ । ଏସବୁ ଉପଚାର ମନସ୍ଥ କରି ମଝିଅଗଣାରେ ଅଣ୍ଡାପାଣି ହେଲେ । ଲୁଗା ବଦଳେଇଲେ, ଗମ୍ଭୀରିକୁ ଆସି ବଟୁଆରୁ ବଟିକା ବାହାର କଲେ । ବଟିକା ମହୁରେ ଲବଙ୍ଗଲତାକୁ ଚଟେଇଦେଇ । ସେମାନଙ୍କ ଶୋଇବାଘରକୁ ଯାଇ ଦୁଇ ପିଲାଙ୍କ ମୁଣ୍ଡରେ ଶାଳଗ୍ରାମ ତୁଳସୀ ଛୁଁଏଁଇ ଦେଇ ଲେଉଟି ଆସି ଶେଯରେ ପୁଣି ଗଡ଼ିଗଲେ । ଗଡ଼ପଡ଼ହେଲେ । ଆଖିକୁ ଆଉ ନିଦ ଆସୁନି । ସେ ଘଟଣାଟିକୁ ପୁନର୍ବାର ହୃଦୟଙ୍ଗମ କରିବା ପାଇଁ ଚେଷ୍ଟାକଲେ । ଏଭଳି ଆଧିଭୌତିକ ଦୃଶ୍ୟର ଉଦ୍ଦେଶ୍ୟ କଣ ହେଇପାରେ ? ତାତ୍ପର୍ଯ୍ୟ କଣ ଥାଇପାରେ ? ଲବଙ୍ଗଲତାକୁ ଦଣ୍ଡେ ଚାହିଁ ରହିଲେ । ତାଙ୍କ ଦେହରୁ ତାତି ଓହ୍ଲେଇଆସୁଛି । ମିଶ୍ରେଙ୍କ ଆଖିକୁ ଛାଇନିଦିଆ ଲାଗିଛି । ମିଶ୍ରେ ସ୍ୱପ୍ନଦେଖୁଛନ୍ତି । ଠାକୁରଘର ଶାଳଗ୍ରାମ ଖଟୁଲିରୁ ଘୁଙ୍ଗୁରର ଝୁମ୍ ଝୁମ୍ ଶବ୍ଦ ଭାସିଆସିଲା । ତାଙ୍କୁ ମନେହେଲା କିଏ ଯିମିତି ଲାସ୍ୟ ଭଙ୍ଗିମାରେ ନୃତ୍ୟ କରୁଛି । ସେ ଅଗଣା ଆଡ଼କୁ ନିରେଖି ରହିଁଲେ ଦେଖିଲେ ସେଇ ଏକାଭଳି ରୂପଲାବଣ୍ୟଭରା ପ୍ରତିମା । ତାଙ୍କୁ ଲାଗିଲା ଲବଙ୍ଗର ଗଢ଼ଣ ଭଳି । ସେଇ ଏକାଭଳି ନିତମ୍ବ, ଏକାଭଳି ପଦ୍ମପାଖୁଡ଼ାର ପାଦ, ଏକାଭଳି ଗ୍ରୀବା, କଟୀ, ସବୁ ତାଙ୍କ ଲବଙ୍ଗଙ୍କ ଆକୃତିର ପ୍ରକୃତିର ଏକାଭଳି ସର୍ଜନା ।

କି ମଧୁମୟ ସେ ନିକ୍ୱଣର ସଙ୍ଗୀତ । ତା ପରେ କ୍ଷଣିକରେ ସବୁ ଶୂନ୍‌ଶାନ ହେଇଗଲା । ଶୂନ୍ୟରୁ ବାଣୀହେଲା ତମ ସାଙ୍ଗରେ ମୋର ଲୀଳା ଖେଳା ଶେଷ । ମୋତେ ଫେରିଯିବାକୁ ହେବ । ମୁଁ ରାଧାଂଶରେ ଜନ୍ମନେଇଥିଲି । କିଏ କାହାକୁ କହିଲା ଭଳି ବାକ୍ୟଟିଏ ।

ମିଶ୍ରେ ଧଡ଼ ପଡ଼ ହେଇ ଉଠି ବସିଲେ । ଦେଖିଲେ ଲବଙ୍ଗଲତା ନିଘୋଡ଼ ନିଦରେ ଶୋଇଯାଇଛି । ସକାଳ ହେଇ ଆସୁଛି । ହେଜିବାକୁ ଚେଷ୍ଟା କଲେ ଯାହା ସବୁ ଘଟିଗଲା ଉଭୟ ଜାଗ୍ରତରେ ଓ ସ୍ୱପ୍ନରେ । ସେ ଶୁଭ୍ର ବସ୍ତ୍ରାବୃତା କିଏ ହେଇପାରନ୍ତି । ସେ କଣ ଲବଙ୍ଗଲତାଙ୍କ ଆତ୍ମାର ଆଲୌକିକ ପ୍ରକାଶ ? ଯାହା ସବୁ ସେ ଶୁଣିଲେ ସେ କଣ ଦୈବୀ ବାଣୀ ନା ନିଜ ମନର ଭ୍ରମ ? ଲବଙ୍ଗଲତା ତ ଜଣେ ସାଧାରଣ ନାରୀ, ତାଙ୍କ ନିକଟରେ କୌଣସି ଅସାମାନ୍ୟ ଗୁଣର ପରିସ୍ଫୁଟନ ସେ ଉପଲବ୍ଧ କରିନାହାନ୍ତି । ସେ ପୁଣି କଣ ଶରୀରୀରୁ ଅଶରୀରୀ ହେଇପାରନ୍ତି ? ସେ କଣ ଯୁଗ ଯୁଗର ସାତ୍ତ୍ୱିକ ପ୍ରେମ ସମ୍ପର୍କକୁ ସ୍ୱୀକାର କରିବାପାଇଁ ସାଂସାରିକ ବୋଧ ଭିତରୁ ଉତ୍ତରଣ କରିପାରନ୍ତି । ଯଦି ସେ ରାଧା ତା ହେଲେ କି ପାପର ପ୍ରଭାବରେ, ବା କି ପ୍ରଲୋଭନରେ ପଡ଼ି ନୀଳାମ୍ବର ମିଶ୍ର ଭଳି ଜଣେ ଅର୍ବାଚୀନ ବ୍ରାହ୍ମଣ ପାଖରେ ଧରା ଦେଲେ । ଦୁଇଟି ପୁତ୍ର ସନ୍ତାନର ଜନନୀ ହେଲେ । ମିଶ୍ରେ କୂଳକିନାରା ପାଉନାହାନ୍ତି । ଚିନ୍ତା ଲମ୍ବି ଯାଉଛି ସ୍ଥିତିରୁ ଅସ୍ଥିତି ଯାଏଁ । ମିଶ୍ରେ ପୁଣି ଭାବୁଛନ୍ତି ନନ୍ଦ ବି ତ ଜଣେ ସାଧାରଣ ଗଉଡ଼ ରାଜା, ତା ସ୍ନେହରେ ପୁଣି ତ ବନ୍ଧା ହେଲେ ମୋହନ । ଯଶୋଦା ଗଉଡୁଣୀ ହାତରୁ ଦୁଧ, ଦହି ଛେନା ଖାଇଲେ । ହସିଲେ କାନ୍ଦିଲେ ଧୂଳି ଧୂସର ହେଲେ ମାଡ଼ ଗାଳି ଖାଇଲେ । ଏ ସବୁ ପରଂବ୍ରହ୍ମଙ୍କର ଲୀଳାଖେଳା । ଛାର ସଂସାରର ଜଞ୍ଜାଳି ମଣିଷ କଣ ବୁଝିପାରିବ ?

ମିଶ୍ରେ ଲକ୍ଷ୍ୟ କଲେ ଲବଙ୍ଗଲତା ଅନ୍ତଃସତ୍ତ୍ୱା ହେଇଛି । ଗର୍ଭ ବଢ଼ି ବଢ଼ି ପାଞ୍ଚରୁ ଛଅ ମାସର ହେଲାଣି । ମିଶ୍ରେ ଏବେ ଏବେ ସଂସାରର କଥା ହେଜୁଛନ୍ତି । ବାପା ମା ଥିଲା ବେଳେ ସେମାନେ ସେ ସବୁର ଦାୟିତ୍ୱ ତୁଲେଇ ନେଉଥିଲେ । ବାପାଙ୍କ କାଳ ହେବା ଆଗରୁ ବୋଉ ବହୁଦିନରୁ ଚାଲି ଯାଇଥିଲେ । ମିଶ୍ରେ ଆନନ୍ଦ ଓ ବିସ୍ମୟରେ ପିତୃତ୍ୱର ଏଭଳି ଏକ ଅବାଧ୍ୟ ଉନ୍ମେଷକୁ ଗ୍ରହଣ କରି ନେଲେ । ଲବଙ୍ଗଲତାର ଦେହରେ ଧୀରେଧୀରେ ଆଳସ୍ୟର ଲହଡ଼ା ଖେଳିବାକୁ ଲାଗିଲା ।

ଦେହ ଗରୁ ହେଲା । ପାଟି ଅରୁଚି ହେଲା । ସାଇ ପଡ଼ିସାରୁ ଖୁଡ଼ୀ, ଦେଠେଇ, ନାନୀ, ମାଉସୀମାନେ ଆସି ଲବଙ୍ଗଲତାର ଆସନ୍ନ ମାତୃତ୍ୱର ଯତ୍ନ ନେଲେ । ଚେରମୂଳି ଦେଲେ । ବାଛବିଚାର କଥା କହିଲେ । ଲବଙ୍ଗଲତାର ଏହା ତୃତୀୟ ଗର୍ଭ । ମାଇପି ନଥିବା ଘରଟା ଏଭଳି ପରିସ୍ଥିତିରେ ଅଡୁଆ ଲାଗେ । ସାଇପଡ଼ିଶାର ମୁରବୀ ମାଇପିମାନେ ହାତେ କୁ ଦି'ହାତ କରି ମିଶ୍ରେଙ୍କ ଆଗାମୀ ବର୍ଦ୍ଧିଷ୍ଣୁ ସଂସାରର ଭାରକୁ ସମ୍ଭାଳି ନେଲେ ।

ଲବଙ୍ଗଲତାର କିଛିଟା ସମସ୍ୟା ଲାଘବ ହେବାରେ ଲାଗିଲା । ସେ କିଛିଟା ଆଶ୍ୱସ୍ତି ଅନୁଭବ କଲେ । ତଥାପି ନୀଳାମ୍ବର ମିଶ୍ରେଙ୍କ ରାତିଯାକ ପୂର୍ବ ଭଳି ମଝିମଝିରେ ଆଧିଭୌତିକ ଶକ୍ତିର ପ୍ରଭାବରେ ଯନ୍ତ୍ରଣାମୟ ହେଇ ଉଠିଲା । ସେ ଲବଙ୍ଗଲତାକୁ ଭରସି ରାତିର କିଛି ହେଲେ କଥା ତା ଆଗରେ ପ୍ରକାଶ କରୁନଥିଲେ । ମନ କଥା ମନରେ ମାରି ନୀଳାମ୍ବର ମିଶ୍ରେ ମାନସିକ ଦୁଶ୍ଚିନ୍ତାରେ ଭାରାକ୍ରାନ୍ତ ହେଇପଡ଼ିଲେ । ଏଣେ ଲବଙ୍ଗଲତାର ଗର୍ଭ ବଢ଼ିବାରେ ଲାଗିଲା । ସେଦିନ ଅମାବାସ୍ୟାର ଘୋର ଅନ୍ଧକାର ରାତି । ଘୁଙ୍ଗୁରର ରୁଣ୍‌ଝୁଣ ଶବ୍ଦରେ ମିଶ୍ରେଙ୍କ ନିଦ ଚାଉଁ କରି ଭାଙ୍ଗିଗଲା । ମିଶ୍ରେ ଦେଖୁଛନ୍ତି । ଶୋଇବା ଗମ୍ଭୀରା ଘର କବାଟ ଖୋଲି କିଏ ଜଣେ ଯିମିତି ପଦାକୁ ବାହାରିଗଲା । କାନ୍ଥଠଣାରେ ଧିମେଇ ଧିମେଇ ଜଳୁଥିବା ଲଣ୍ଠନଟିକୁ ମିଶ୍ରେ ଆଉଟିକିଏ ତେଜିଦେଲେ । ସେ ଗମ୍ଭୀରି ଭିତରୁ ଗୋଡ଼ କାଢ଼ି ଅଗଣାକୁ ବାହାରି ଆସିଲେ । ଅନିମେଷ ନୟନରେ ଚାହିଁଛନ୍ତି, ଅବିକଳ ସେମିତି ଗୋଟିଏ ଧଳା ଛାଇ ତୁଳସୀ ଚଉଁରା ପାଖରେ କୁଆଡ଼େ ହଜିଗଲା । ମିଶ୍ରେଙ୍କ ମନରେ ଶଙ୍କା ପଶିଲା । ପ୍ରାଣ କଲବଲ ହେଲା । ସେ ହତାଶରେ ଭାଙ୍ଗି ପଡ଼ିଲେ ।

ଦାରୁବିଗ୍ରହଙ୍କ ନବକଳେବର ବିଧିବଦ୍ଧୁଛି ।

ଟେରାବାଡ଼ ଭିତରୁ ବ୍ରହ୍ମାନନ୍ଦ ଓ ପ୍ରକାଶ ଏକା ଥରକେ ଭରସା ଦେଲାଭଳି କହି ଉଠିଲେ । ଅଜ୍ଞା ଅଧୌର୍ଯ୍ୟ ହୁଅନି । ଆମର ବାପା, ଦାଦା ପରା ଏମାନଙ୍କୁ ଗଢ଼ିଛନ୍ତି । କଣ ଆଉ କହି ପ୍ରବୋଧିବୁ ତମକୁ । ତମେତ ପଣ୍ଡିତ ଶାସ୍ତ୍ରଜ୍ଞ । ତମେ ଯଦି ଭାବରେ ବୁଡ଼ିଯିବ ତାହେଲେ ଏ ନବକଳେବର କାର୍ଯ୍ୟ ବଢ଼ିବ କିମିତି । ଆମର ବଂଶର ହାତ ତିଆରି ଠାକୁରଠାକୁରାଣୀ ପରା ଏମାନେ । ଆମ ଆଗରେ ତ

ଉଲଗ୍ନ ହେଉଛନ୍ତି ,ଉଭାହେଉଛନ୍ତି । ଆମେ ଚିତ୍ରକର ପରା । ଆମେ ଦେବତାଗଢୁ । କାଠ ପାଷାଣରେ ଆମେ ହିଁ ଭାଷା ଫୁଟାଉ । ପ୍ରାଣ ଭରିଦେଉ । କାଠ ପାଷାଣ ଦେବତା ହେଇଯାଆନ୍ତି । ଏତକ କହିସାରି ଦିହେଁ ମୁଣ୍ଡିଆ ମାରିଲେ । ପ୍ରଭୁ ! ଦୋଷାଦୋଷକୁ କ୍ଷମାଦିଅ । ଆମେ ଅଜ୍ଞାନ ଚିତ୍ରକାର ମାତ୍ର ।

ଏବେ ଶ୍ରୀଅଙ୍ଗ ଫିଟିବା ବେଳ । ଦେବତା ଆଉ କଣ କି? ମଣିଷ ଭଳିଆ ତ ଗଢ଼ଣ, ସେମିତି ଆଖି ସେମିତି ନାକ, ମୁହଁ, ଦେହ ହାତ ସବୁ ସେମିତି । ଦେବତା ମଣିଷ ଗଢ଼େ । ଆଉ ମଣିଷ ନିଜେ ଗଢ଼ି ହେଇ ସାରିଲା ପରେ ଦେବତାକୁ ସର୍ଜନା କରେ । ସିଏ ଯାହା, ସେମିତି ଦେବତାକୁ ଗଢ଼ିପକାଏ । ଖିଆଲ ଆସିଲେ କେତେବେଳେ ଦୁଇରୁ ଚାରିହାତ ତ ବେଳେବେଳେ ଗୋଟିଏରୁ ଚାରିମୁଣ୍ଡ ଖଞ୍ଜିଦିଏ । ସେ ଯାହା ନୁହେଁ, ଯାହା ହେବା ସମ୍ଭବ ନୁହେଁ ସେଭଳି ଦେବତାକୁ ଗଢ଼ିଦେଇ ଓରମାନ ମେଣ୍ଟାଏ । ଦେବତା ହାତରେ ସେ ଧରେଇଦିଏ ମାନସ ସରୋବରର ପଦ୍ମ, ମହୋଦଧି ବେଳାରୁ ସାଉଁଟା ଶଙ୍ଖ , କେଉଁ ମନ୍ଦିର ଚୂଡ଼ାର ନୀଳଚକ୍ର ଓ ଆଖଡ଼ା ଘରର ଗଦା । ଏସବୁ ପାଇଲା ପରେ ତା ଦେବତା ଐଶ୍ୱର୍ଯ୍ୟବନ୍ତ ହୁଏ, ସେ ଗମ୍ଭୀର ହେଇଉଠେ । ସେ କହେ, ମୁଁ ସମସ୍ତ ଜଗତର ଉତ୍ପତ୍ତି ଓ ସଂହାର କର୍ତ୍ତା ବୋଲି ଜାଣ । ମୋଠାରୁ ଅଧିକ ଶ୍ରେଷ୍ଠ ଆଉ କିଛି ନାହିଁ । ସୂତାରେ ମଣି ଗୁନ୍ଥା ହେବାପରି ସମଗ୍ର ବିଶ୍ୱ ମୋ ଦେହରେ ଗୁନ୍ଥି ହେଇ ରହିଛି । ମୁଁ ଜଳରେ ରସ, ଚନ୍ଦ୍ର ଓ ସୂର୍ଯ୍ୟଙ୍କ ଠାରେ ପ୍ରକାଶ, ବେଦମାନଙ୍କରେ ପ୍ରଣବ, ଆକାଶରେ ଶବ୍ଦ, ପୁରୁଷମାନଙ୍କ ମଧରେ ରେ ପୌରୁଷ ରୂପରେ ବିଦ୍ୟମାନ ।

ନବନ୍ୟାସର ବିଧି ବଢୁଛି ଟେରାବାଡ଼ ଭିତରେ ।

ଶ୍ରୀଅଙ୍ଗରୁ ବସ୍ତ୍ର ଖୋଲାହେଉଛି । ବ୍ରହ୍ମାନନ୍ଦ ଲଳିତାବାଡ଼ର ଚିତ୍ରକର । ପ୍ରକାଶ, ବାପା ରାଧାଗୋବିନ୍ଦଙ୍କ ଅନ୍ତେ ରାଧାବାଡ଼ର ସେବକ । ଗୋପୀନାଥଙ୍କ ପାଇଁ ଉଭୟ ବାଡ଼ରୁ ଯିଏ ହେଲେ ବିଧି ବଢ଼େଇ ଦିଅନ୍ତି । ବେଳେ ବେଳେ ଉଭୟେ ମିଶି ମଧ ସେବାକାମ ଉଠେଇ ନିଅନ୍ତି । ପ୍ରକାଶ ପିତଳ ତସଲାରେ ଥିବା ପାଣିରେ କନା ବୁଡ଼େଇ ଦେଇ ରାଧାଙ୍କୁ ତିନ୍ତେଇ ସାରିଲାଣି । କନାପରସ୍ତ ଗାଲରେ; କପାଳରେ ସ୍ତନ ଉପରେ କୁଣ୍ଢେଇ ଗଲାଣି । ଆଉ କେତେବେଳେ ଯାଏଁ ସେ

ଅପେକ୍ଷା କରନ୍ତା । କନା ଚିରିବା ଆରମ୍ଭ କଲା ଫଡ୍‌ଫାଡ୍ ସର୍‌ସାର । ରାଧା ଆଗରୁତ ଉଲଗ୍ନ ହେଇପଡ଼ିଥିଲେ ଏବେ ଲାଗୁଛି ଆତ୍ମାଭଳି ଶରୀରରୁ ନିଆରା ହେଇ ପଡୁଛନ୍ତି । ଶରୀରଟା ତ ଆବରଣ ମାତ୍ର ।

ନୀଳାମ୍ବର ମିଶ୍ରେ କୁର୍ଚ୍ଚି ଉପରେ ଖାଲି, ଡ଼ହଳ ବିକଳ ହେଉଛନ୍ତି । ସେ ଅନୁଭବ କରୁଛନ୍ତି ତାଙ୍କର ଅତି ଆପଣାରମାନେ ଟେରା ବାଡ଼ ଭିତରେ ଧର୍ଷିତା ହେଉଛନ୍ତି । ଯେତେ ଅନ୍ୟଥା ମନେଇଲେ ବି ମନ ମାନୁନି । ବାରମ୍ବାର ମନକୁ ଏକଥା ଆସୁଛି । ନିଜ ଅସହାୟତା କଣ କାହା ଆଗରେ କହି ହେବ । ଟେରାବାଡ଼ ଭିତରେ ପ୍ରାଣପ୍ରିୟା ରାଧାରାଣୀ ପ୍ରକାଶ ହାତରେ ନିଜ ଦେହଟାକୁ ସମର୍ପିଦେଇ ଅତି ଅସହାୟା ଭାବେ ଠିଆ ହେଇଛନ୍ତି । ଲାଗୁଛି ନାତିଆ ଚିତ୍ରକର ହିଁ ଏବେ ସର୍ବ ଶକ୍ତିମାନ । ରାଧାଙ୍କୁ ଏଭଳି ପାଇବାପାଇଁ କୃଷ୍ଣ କେତେ ଯେ ଯମୁନା ଯାଇ ନାହାନ୍ତି, ବଂଶୀ ବାଇ ନାହାନ୍ତି । କୁଞ୍ଜ ରଚି ନାହାନ୍ତି, ବିରହରେ କେତେ ଅଶ୍ରୁ ଢ଼ାଳିନାହାନ୍ତି ।

ଏବେ ସ୍ତନ ଉପରୁ ବକ୍ଷରୁ ବାହୁଯୁଗଳରୁ କନା ବାହାରି ଯାଇ ଶ୍ରୀଅଙ୍ଗ ହିନସ୍ତା ଦିଶିଲାଣି । ତାପରେ ପେଟ ତଳିପେଟ ଜଘନ ଜଙ୍ଘ ନିତମ୍ବ ଗୋଡ଼ ରୁ କନା ଉତରା ହେଇଗଲାଣି । ମିଶ୍ରେ ଡ଼କାପକେଇଲେ, ହଇରେ ନାତିଆ ଟୋକେ ଆସ୍ତେଆସ୍ତେ କରି ଥିରିଥିରି କରି ଅଳ୍ପଅଳ୍ପ କରି ଉଶ୍ବାସ ପ୍ରମାଣେ କାଢ଼ରେ । ବାଧାହେଲେ ଶ୍ରୀ ଅଙ୍ଗରୁ ରକ୍ତ ନିଗିଡ଼ି ଯିବ । ଛୁରି ଚଲାନା, ଫାଟମାନଙ୍କ ପାଖରେ, ଯୋଡ଼ମାନଙ୍କ ପାଖରେ । ମାମୁଲି ପ୍ରକାରେ ହାତରେ ଚିରିବୁ । ମୁଁ ଆଉ ତମ ଉତ୍ପାତ ସହିପାରୁନିରେ । ମତେ ଆଉ ଡ଼ହଳ ବିକଳ କରାନା । ତଳେ ଚିତ୍ରିତ ରଙ୍ଗ ପରସ୍ତଦିଆ ପୁରୁଣା କନାର ଟୁକୁରା ଗଦା ହେଇଗଲାଣି । ମିଶ୍ରେଙ୍କୁ ଲାଗୁଛି ଏ ଦୁଇ ନାତିଆ ଟୋକା ତାଙ୍କର ପ୍ରାଣର ଅତି ପ୍ରିୟ ଠାକୁର ଠାକୁରାଣୀଙ୍କୁ ଅଗତ୍ୟା କରିସାରିଲେଣି ।

ଗଣେଶ୍ୱର, ଡ଼ାକନାଁ ଗଣିଆ, ପିତଳ ଢ଼ାଳରେ ଚାହା ନେଇ ଟେରା ବାଡ଼ ଏପଟେ ହାଜର, ଗଣିଆ ପ୍ରକାଶର ଦ୍ୱିତୀୟ ସ୍ତ୍ରୀ ରୁକ୍ମିଣୀର ବଡ଼ ପୁଅ, ବୟସ ତେର ଚଉଦ ହେବ । ଧଡ଼ଧଡ଼ିଆ, ବଢ଼ନ୍ତ ଦେହ ନୁହେଁ, ନାହି ତଳକୁ ହାପ୍‌ପେଣ୍ଟ ଖସିଆସି ପେଟଟା ଟୁମୁକୁଳେଇ ଯାଇଛି । ଦେହରେ ସବୁଜ ରଙ୍ଗର ସାଣ୍ଡୋ ବାନିଏନ୍ । ତା ଉପରେ ତେଲୁଗୁ ଭାଷାରେ କଣ ପଦେ ଦିପଦ ଛପାହେଇଛି । ଗଣିଆ

ବଡ଼ ଖୁଡୁ ଖୁଡ଼ିଆ । ଚାହା ଡ଼ାଲଟି ଟେରାବାଡ଼ ଫାଙ୍କରେ ଭିତରକୁ ବଢ଼େଇ ଦେଇ ଆଁଟା କରି ଚାହିଁ ରହିଲା । ବାପା କାଛରେ ଚିତ୍ର କଲାବେଳେ, ପଟିଉପରେ ଆଙ୍କିଲାବେଳେ, ମୁଖା ଉପରେ କନା ପକେଇଲା ବେଳେ ଗଣେଶ ଏମିତି ଦେଖେ, ବେଳେ ଅଧେ ବାପାଙ୍କୁ ରଙ୍ଗସଢ଼େଇ ବଢ଼େଇ ଦିଏ । ଖଜୁରୀଡ଼ାଙ୍ଗ ତଳେ ଛେଚି ବ୍ରସ ତିଆରି କରେ ନ ହେଲେ କଇଠ ଅଠା ପାଣି ପକେଇ ଶୁଖିଲା ସଢ଼େଇ ରଙ୍ଗକୁ ଓଦାକରେ ଓ ଆଙ୍ଗୁଠି ଟିପରେ ଘସି ରଙ୍ଗ ମିଶେଇଦିଏ ।

ଏତେ ଉଛର କାଠ ମୂର୍ତ୍ତିରୁ କନା ଉତାରି ଦେଲାପରେ ଦାରୁ ଖରା ପାଉନଥିବା ମଣିଷ ଦେହର ରଙ୍ଗଭଳି ଦେଖାଗଲାଣି । ରାଧାଙ୍କ ମୂର୍ତ୍ତିଟି ଗଣେଶ୍ୱରକୁ ପଡ଼ିଶାଘର ତା ପାଠ ପଢ଼ାସାଙ୍ଗ ସାବିତ୍ରୀ ଭଳି ଦେଖାଗଲା । ସାବିତ୍ରୀ ତା ବୋଉ ସାଙ୍ଗରେ ଓଦା ଲମ୍ବାଗାମୁଛାଟିଏ ପିନ୍ଧି ବନ୍ଧରୁ ବାହୁଡ଼ିଲାବେଳେ ସେ ତାକୁ ଦେଖେ, ଲକ୍ଷ୍ୟ କରେ । ସାବିତ୍ରୀ ବେଶ୍ ଲୋଭନୀୟ ଦେଖାଯାଏ କ୍ୟାଲେଣ୍ଡରର ରୂପ ଭଳି । ଓଦା ଗାମୁଛା ଭିତରେ ତାର ଉକୁଟି ଆସୁଥିବା କଞ୍ଚା ଯୌବନ ଗଣେଶ୍ୱରକୁ ମୁଗ୍ଧ କରିଦିଏ । ଚିତ୍ରକାର ଘରର ପିଲା, କେତେ କଣ କଳ୍ପନା କରିବସେ । ସାବିତ୍ରୀ ମୁହଁ ତଳକୁ କରି ଦାଣ୍ଡରେ ଗାମୁଛାର ପଣତକୁ ଦାନ୍ତରେ କାମୁଡ଼ି ଧରି ଘରକୁ ଫେରୁଥାଏ ।

ଗଣେଶ୍ୱରକୁ ଟେରାବାଡ଼ ଫାଙ୍କରେ ଲାଗିଲା ସେ ସାବିତ୍ରୀର ଲଙ୍ଗଳା ଦେହଟାକୁ ଦେଖୁଛି । କି ଅଦ୍ଭୁତ ସେ ଦୃଶ୍ୟ । ପ୍ରକାଶ ଗିଲାସରେ ଡ଼ାଲରୁ ଚାହା ଗଡ଼େଇ ସୋଡ଼ ସୋଡ଼ କରି ପିଇବାକୁ ଲାଗିଲା । ଡ଼ାଲଟିକୁ ବ୍ରହ୍ମାନନ୍ଦ ଦାଦା ଆଡ଼କୁ ବଢ଼େଇ ଦେଲା । ବ୍ରହ୍ମାନନ୍ଦ ଲଳିତାଙ୍କ ମୂର୍ତ୍ତି କାମରୁ ହାତ ଉଠେଇ ଚାହା ଢ଼ାଳିଲା ଓ ପିଇଲା । ନୀଳାମ୍ବର ମିଶ୍ରେ ଗଣେଶ୍ୱର ଏମିତି ଚାହିଁବାଟାକୁ ପସନ୍ଦ କରୁନଥିଲେ । କୁର୍ଚ୍ଚି ଉପରୁ ଘଡ଼ଘଡ଼ି ଭଳି ପାଟିଟାଏ କଲେ । ଶଳା ନାତି ମେଞ୍ଚଡ଼ ବାପାର ଅମୁକଟାକୁ ଚାହିଁଚୁ କିରେ । ଶଳା ଯାଉଚୁନା । ଟେରାବାଡ଼ ଭିତରୁ ପ୍ରକାଶ ଓ ବ୍ରହ୍ମାନନ୍ଦ ମଧ ଚିଲେଇ ଉଠିଲେ । ପ୍ରକାଶ ମନ୍ତବ୍ୟ ଦେଲା, ଆଜିକାଲି ପିଲେ ବଗୁଲିଆ ହେଇଗଲେଣି । ଗଣେଶ୍ୱର ଖାଲି ଚାହା ଡ଼ାଲ ନେଇ ଏକା ଡ଼ିଆଁକେ ଘର ଧରେ । ତା ବୋଉ ଯେତେଥର ମିଶ୍ରଅଜା ଘରକୁ ଚାହା ନେବାପାଇଁ ବରାଦ ଦିଏ ଗଣେଶ୍ୱର ଏତେ ଗାଳି ଗୁଲଜ ଶୁଣିଲାପରେ ବି ଆଗତୁରା ବାହାରିପଡ଼େ । ତାର ମନ ଥାଏ ସେ ସାବିତ୍ରୀକୁ ଆଉଥରେ ଦେଖିବ । ବନକକାମ ପାଇଁ ଯୋଗାଡ଼ ଆରମ୍ଭ ହେବା

ଦିନଠାରୁ ଗଣେଶ୍ୱର ଯେତେ ବେଳେ ମୌକା ପାଏ ରାଧା ଓ ଲଳିତା ଦେହର ନଗ୍ନସୌନ୍ଦର୍ଯ୍ୟକୁ ପିଇଯାଏ । ରାଧା ପଛରେ ଗୋପୀନାଥ, ତାଙ୍କ ଆଗକୁ ତାପରେ ଲଳିତା ତିନିହେଁ ଉଲଗ୍ନ ହେଇଠିଆ ହେଇଛନ୍ତି । ଗଣେଶ୍ୱର କେତେ କଣ ଭାବିବସେ ସେ କୃଷ୍ଣହେଇ ସାବିତ୍ରୀର ବସ୍ତ୍ର ହରଣ କରୁଛି । ସାବିତ୍ରୀର କକା ଝିଅ ଭଉଣୀ କନକ ବି ଉଲଗ୍ନ ହେଇ ଠିଆ ହେଇଛି । ତା ସ୍କୁଲର ଯେତେକ ଝିଅପିଲା ସମସ୍ତେ ଗୋପୀହେଇ ଯାଇଛନ୍ତି । ତା ଗାଁର ବନ୍ଧ ଯିମିତି ଯମୁନା ପାଲଟି ଯାଏ ।

ପ୍ରକାଶ ଓ ବ୍ରହ୍ମାନନ୍ଦ ନିର୍ବିକାର ଭାବରେ ରାଧା ଓ ଲଳିତାଙ୍କ ସ୍ତନ ନିତମ୍ବ ଚିବୁକ ଉପରେ ବେପରୁଆ ଭାବେ ହାତ ଘସି ଆଣୁଛନ୍ତି, ସନ୍ଧାମାନଙ୍କରେ ସଦଳଓଷ ମାଠି ଦେଉଛନ୍ତି । କନା ଅଠା ପୋଚରେ ବୁଡ଼େଇ ଦେଇ ସ୍ତନ ଉପରେ ଚାପିଧରି ହାତରେ ମୁଠେଇ ଆଣୁଛନ୍ତି । ଗଣେଶ୍ୱର ଏସବୁ ଦେଖିଲେ ତା ଦେହରେ ଅଦ୍ଭୁତ ଶିହରଣ ଖେଳିଯାଏ । ତା ବାପା ପ୍ରକାଶ ଓ ଦାଦା ବ୍ରହ୍ମାନନ୍ଦ କଳରେ ପାନ ଖିଲଟି ମାନ ଜାକି ଦେଇ କେଡ଼େ ବାଗରେ ରାଧା ଓ ଲଳିତାଙ୍କ ସ୍ତନ ମର୍ଦ୍ଦନ କରୁଥାନ୍ତି । ନିତମ୍ବକୁ ଆଉଁଷି ଆଣୁଥାନ୍ତି । ଯୋନି ଉପରେ ଚାଖଣ୍ଡ ମାପର କନା ଖଣ୍ଡେ ପକେଇ ଦେଇ ଜଘଂତକୁ ହାତ ନିଠେଇ ଆଣୁଛନ୍ତି । କି ଲାଜକଥା । ମଣିଷମାନଙ୍କ ଭଳି ଠାକୁର ଠାକୁରାଣୀଙ୍କ ଲାଜ ଜାଗା ଥାଏ ? ତା ହେଲେ ସେମାନେ ଆମଠୁ ଆଉ ଭିନ୍ନ କଣ ? ରାଧା ଓ ଲଳିତାଙ୍କ ସ୍ତନ ଯୁଗଳ ଉପରେ ହାତ ବୁଲେଇ ଆଣିବା ପାଇଁ ତାର ଅସମ୍ଭବ ଇଚ୍ଛାହୁଏ । ପୁଣି ଭାବେ ଆଉ ଟିକିଏ ବଡ଼ ହେଇଗଲେ ସେ ବାପା ଦାଦାଙ୍କ ଭଳି ରାଧା ଓ ଲଳିତାଙ୍କୁ ଉଲଗ୍ନ କରିଦେବ । ବେଳେ ବେଳେ ଭାବେ ସାବିତ୍ରୀକୁ ଡ଼ାକିଆଣିଲେ ସାଙ୍ଗରେ ରାଧା ଗୋପୀନାଥ ଓ ଲଳିତାଙ୍କ ନବନ୍ୟାସ ଦେଖିଯାଆନ୍ତା ।

ଚିତ୍ରକର ସାହିମୁଣ୍ଡର ସଖୀନାଟ ଆଖଡ଼ାରେ ଗଣେଶ୍ୱରର ସାଙ୍ଗ ଭଜମନ ନାଟ ଶିଖେ । ସିଏ ମଝିରୁ ପାଠ ଛାଡ଼ିଦେଲା । ତା ବାପା କହିଲା ପାଠ ପଢ଼ିବା କଣ ହେବ । ତା ବାପା ବି ତା ବୟସରେ ନାଟ ରସରେ ମାତି ବହୁତ ଉଡ଼େଇଛି । ଗଣେଶ୍ୱର ଓ ଭଜମନ ଏକା ବୟସର ପିଲା । ଭଜମନ ଏବେ ବାଳ ବଢ଼େଇଛି, ରାଧାପ୍ରେମଲୀଳାରେ ରାଧାହୁଏ । ବେଣୀ ପାରେ । ତା ସାଙ୍ଗରେ ଅନେକ ପିଲା ଏଠି ସଖୀନାଟ ଶିଖନ୍ତି ।

ବିଶ୍ୱମୋହନ ବାଡ଼ତ୍ୟା ନାଟମାଷ୍ଟ୍ର । ତାର ଲୋଭିଲା ଲୋଭିଲା ଆଖି, ବନଲତା ଭଳି ଭଙ୍ଗିମାରେ ତଲ୍ଲୀନ ହେଇ ଉଠୁଥିବା ଦେହ ଗଣେଶ୍ୱର ଦେଖିଛି । ପାଠ ପଢ଼ିବା ଅପେକ୍ଷା ନାଟ କରିବାରେ ଭଜମନର ଶ୍ରଦ୍ଧା ବେଶି । ବିଶ୍ୱମୋହନ ସଖୀ ପିଲାମାନଙ୍କୁ ଗୋଲ କରି ଠିଆ କରି ମଝିରେ କୃଷ୍ଣ ଭଳି ଗୋଡ଼ ଛନ୍ଦି ଠିଆ ହେଇଯାଏ । ନିଜେ ନାଚେ ଓ ସଖୀମାନଙ୍କୁ ଆଖଡ଼ା ଭିତରେ ନାଚ ଶିଖାଏ । ସେଦିନ ଗୀତଗୋବିନ୍ଦର ପୀନପୟୋଧର ଭଙ୍ଗି ଦେଖେଇଲା ବେଳକୁ କି ରସବନ୍ତ ଭାବରେ ନିଜର ଛାତି ଉପରେ ହାତ ଦୁଇଟକୁ ଘୂରେଇ ଆଣି କୁଣ୍ଡଳି କାଟି ଦୁଇଟି ସ୍ତନ ର ବର୍ତ୍ତୁଳତା ଦେଖେଇଦେଲେ । ଭଜମନ ତ ମେଞ୍ଚଡ଼ ଟୋକା ତାର ବା କି ଛାତି, ସେ ମଧ୍ୟ ହାତ ବୁଲେଇ ଆଣି ଭଙ୍ଗି ଦେଖେଇଲା ।

ଗଣେଶ୍ୱର ଦଳେ ଟୋକାଙ୍କ ସାଙ୍ଗରେ ଆଖଡ଼ା ଘର କାନ୍ଥକୁ ପିଠି କରି ଠିଆ ହେଇ ଦେଖୁଥିଲା । ତାର ମନେ ପଡ଼ିଗଲା ଟେରାବାଡ଼ ଭିତରର ରାଧାଙ୍କ ପୀନପୟୋଧରର ଦୃଶ୍ୟ । ସେ ଭାବି ବସିଲା ବଡ଼ ହେଲେ ସେ ଚିତ୍ର କରିବ ନାଟ ବି କରିବ । ତା ବାପା ପ୍ରକାଶ ଯେତେବେଳେ ତୂଳୀକାଠି ପଟିଉପରେ ବୁଲେଇ ଆଣେ , କୃଷ୍ଣଚିତ୍ର ହେଇଯାଏ, ରାଧାଚିତ୍ର ହେଇଯାଏ, ବେଳେ ବେଳେ ସଖୀମାନେ ଉଲଗ୍ନ ହେଇ ଯମୁନାରେ ଠିଆହେଇ ଯାଆନ୍ତି । ଯାଦୁକରର କାଉଁରୀ କାଠିର ସ୍ପର୍ଶଭଳି ତୂଳୀ ମଣ୍ଡଦିଆ ଚିକ୍କଣ ପଟି ଉପରେ ଅଦ୍ଭୁତ କରାମତି ଦେଖାଏ । ଚିତ୍ର ଆଙ୍କିଲା ବେଳେ ପ୍ରକାଶ କଲରେ ପାନ ଜାକିଥାଏ ଓ ମନ ଉଚାଟ ଥିଲାବେଳେ ଗୀତଗୋବିନ୍ଦରୁ ପଦେ ଅଧେ ବୋଲିଦିଏ । ଧୀରସମୀରେ, ନହେଲେ ଯାହି ମାଧବ, ନହେଲେ ପୀନପୟୋଧର । ଆଗରୁ ଚିତ୍ରକରମାନଙ୍କ ତୁଣ୍ଡରେ ରସରସିଆ ଗୀତ ସବୁ ପଇଟୁଥିଲା ।

ନବନ୍ୟାସର ବିଧି ବଢୁଛି ।

ଏବେ ପ୍ରଥମ କନା ମାଠ ବେଳର ସମୟ । ରାଧା ଲଳିତା ଓ ଗୋପୀନାଥଙ୍କ ପ୍ରଥମ କନା ମାଠ ସରିଆସିଲାଣି । ନୀଳାମ୍ବର ମିଶ୍ରେ ବ୍ରହ୍ମପୁରରୁ ବାଛି ବାଛି ଖଦୋର ପାଟକନା ଆଣିଛନ୍ତି । ଏମିତି ବନକ ତ ନିତିଦିନିଆ କଥା ନୁହେଁ । କେଉଁ ଦଶ ବାର ବର୍ଷରେ ଥରେ । ଏଣୁ ଏହି ନବବନକର ସରଂଜାମ ନିଆରା । ଦି ମାସ ତଳୁ ପ୍ରକାଶ ଯାବିତା ଲେଖି କନା ରଙ୍ଗ ଅଠା ବରାଦ କରିସାରିଥିଲା ।

ପାରଳାଖେମଣ୍ଡିରେ ଧଳା ସଦଳଓଷ ମିଳିବନି ବୋଲି ମିଶ୍ରେ ସାନ ପୁଅକୁ ଚିଠିଲେଖି ଖବର ଦେଇଥିଲେ । ସଞ୍ଜୟ ଭୁବନେଶ୍ୱରରୁ ବାଛି ବାଛି ଧଳା ସଦଳ ଓଷ ଲୋକ କରି ପଠେଇ ଦେଇଛି ।

ପ୍ରକାଶର ସ୍ତ୍ରୀ ମଠାଲୁଗା ପିନ୍ଧି କନା ମାଠ ପାଇଁ ଖେଟା କରି ଅଠା ରାନ୍ଧିଛି । ଅଠା ହାଣ୍ଡି ଆଉ କିଏ ଛୁଇଁ ଦେଲେ ବାରିବେ ବୋଲି ନିଜେ ପ୍ରକାଶ ପାଟ ବଦଳେଇ ଅଠା ହାଣ୍ଡି ଉପରେ କଦଳୀପତ୍ର ଢ଼ାଙ୍କି ନେଇ ଆସିଛି । ଠାକୁରଙ୍କ ଦେହରେ ଯାହା ଲାଗିହୁଏ ତାହା ତ ପ୍ରସାଦ । ପାଟପ୍ରସାଦ, ଖଡ଼ିପ୍ରସାଦ, ରଙ୍ଗ ପ୍ରସାଦ, ଚିତ୍ରକାର ବନକର ସବୁ ଦରବ ପ୍ରସାଦ କରି ଠାକୁରଙ୍କୁ ଅର୍ପଣ କରେ । ସେ ଜାଣେ ତାର ସମଗ୍ର ଚିତ୍ରକର୍ମ ହିଁ ଯଜ୍ଞ ପ୍ରସାଦ । ସେ ନିଷ୍ଠାରେ ତାହା କରେ ।

ନବନ୍ୟାସ ପାଇଁ ଭଲଦିନଟେ ଠିକଣା କରିବା ବଡ଼ କଷ୍ଟକାମ । ନଅରରେ ମିଶ୍ରେଙ୍କର କାମର ଭିଡ଼ ନଥିବ, ରଥଯାତ୍ରା ଆଗକୁ ଥିବ, ପ୍ରକାଶ ଓ ବ୍ରହ୍ମାନନ୍ଦର ଯଜମାନ ପାଇଟି ବହଳ ନଥିବ, ଯଜମାନଙ୍କ ଜାତକ ସୁଝିଲା ଭଳିଆ ପାଂଜି ଦେଖି ତିଥି, ବାର ନକ୍ଷତ୍ର ଗଣନା କରି ମାହେନ୍ଦ୍ରବେଳା ଠିକଣା ହେବ । ପୁଣି ଘରୁଆ ଘରୋଇ କଥାକୁ ମଧ ନିଘା କରିବାକୁ ହେବ । ପୁଅ ପୁତୁରାମାନଙ୍କର ଅଫିସ କଚେରୀ ଛୁଟିଥିବ, ବଡ଼ବୋହୂ ସାନବୋହୂ ମାସିଆରି ଛୁଆଁ ହେଇନଥିବେ କି ତାଙ୍କ ବାପ ଘରର ଛୁତିକା ମୃତିକା ନଥିବ, ଏତେ କଥା ଠିକଣା ହେଲାବେଳକୁ ବର୍ଷ ପରେ ବର୍ଷଗଡ଼ିଯାଏ । ମହଣେ ଘିଅ ହେଲେ ରାଧା ନାଚିବେ ବୋଲିବା କଥା । ମହାବାରୁଣୀ ବୁଡ଼ ଯୋଗ ଠିକଣା ହେଲାଭଳି କଥା । କିନ୍ତୁ ସେଥିରେ ମଧ ଯାହା ନିଶ୍ଚିତତା ଥାଏ ଏ କାମରେ ସେତକ ବି ନଥାଏ । ପନ୍ଦର ବର୍ଷ ପରେ ଏ ବର୍ଷ ନବନ୍ୟାସ ବେଳା ପଡ଼ିଛି । ଯେମିତି ପୁରୀ ଶ୍ରୀଜଗନ୍ନାଥଙ୍କ ନବକଳେବର ପଡ଼ିଥାଏ ।

ଘରେ ପୁଅ, ବୋହୂ, ପୁତୁରା ପୁତୁରାବୋହୂଙ୍କ ଗହଳି । ନାତି ନାତୁଣୀ ଧାଁ ଧପଡ଼ ଲାଗିଛି । ଅନ୍ୟାନ୍ୟ କୁଣିଆ ମଇତ୍ର ମଧ ଘରେ ଭିଡ଼ ଜମେଇଛନ୍ତି । ଶ୍ୱଶୁରଙ୍କ ଖାତିରିରେ ବୋହୂମାନେ ନିଜେ ମଝିଅଗଣା ଟପି ଦାଣ୍ଡ ମେଲା ଆଡ଼କୁ ଆସୁନାହାନ୍ତି । ମିଶ୍ରେ ଏସବୁ ଶୁଭ କାର୍ଯ୍ୟରେ ଘୋର କଟକଣା କରିଦିଅନ୍ତି । ସ୍ତ୍ରୀଲୋକଙ୍କ ଛାଇ ଟେରାବାଡ଼ ଉପରେ ପଡ଼ିବନି, ନାତିନାତୁଣୀ ମେଞ୍ଚଡ଼ ପିଲେ । ରାଧାକୃଷ୍ଣଙ୍କୁ ଉଲଗ୍ନ

ଦେଖିଲେ ତାଳିମାରି ଡ଼େଇଁବେ । ଅଜାଙ୍କୁ ଥଟା କରିବେ । ତାଙ୍କ ମା' ମାନଙ୍କୁ କେତେ କଥା ବନେଇ ଚୁନେଇ ପଚାରିବେ । ଘରେ ଫାର୍ସ ହେଉଯିବ । ଏଣୁ ମିଶ୍ରେଙ୍କ ଅନୁଶାସନ କଡ଼ାକଡ଼ି ଲାଗୁ ହେଇଛି । ତଥାପି ବେଳେଅଧେ ଏ ନିୟମ ପିଲାଙ୍କ ଲାଗି ଆପେ ଆପେ ଭାଙ୍ଗିପଡୁଛି ।

ଅମାବାସ୍ୟା ରାତି । ବାହାରେ କୋହଲା ପବନ ବର୍ଷା । ଅଦିନିଆ ମେଘ କେଉଁଠି ଥିଲା କେଜାଣି ଖାଲି ବର୍ଷାକଲା । ଲବଙ୍ଗଲତା ଯନ୍ତ୍ରଣାରେ ଆକୁଳ ବିକଳ ହେଉଛନ୍ତି । ଗର୍ଭ ଯନ୍ତ୍ରଣା । ମିଶ୍ରେ ସାଇପଡ଼ିଶାଙ୍କୁ ଡ଼ାକିଲେ । ପିଲାଦିଟା ସଂସାରର ଏସବୁ ରହସ୍ୟ କଣ ବା ବୁଝିବେ । ରଥ ମାଉସୀ, ଖାଡ଼ଙ୍ଗାଖୁଡ଼ୀ, ନବନାନୀ ଆସିଲେ । ଲବଙ୍ଗଲତାକୁ ସାମାନ୍ୟ ଭରସା ମିଳିଲା । ହେଲେ ଗର୍ଭଯନ୍ତ୍ରଣାକୁ ରୋକିବ କିଏ? ସକାଳ ହେବାକୁ ପହରେ ବାକି ଅଛି । ଲବଙ୍ଗଲତାଙ୍କର ଝିଅଟିଏ ଜନ୍ମହେଲା । ମିଶ୍ରେଙ୍କ ଆନନ୍ଦ କହିଲେ ନସରେ, ଦି ପୁଅରେ ଝିଅ । ପୁଣି ଏତେଦିନ ଅନ୍ତରରେ ।

କିନ୍ତୁ ସୂତିକାର ଗାଦିକା ଶେଷହେଇନି, ଏକୋଇଶି ଦିନ ବି ଯାଇନି । ଲବଙ୍ଗଲତା ଅସୁସ୍ଥ ହେଇ ପଡ଼ିଲା । ପେଟରେ ପାଣି ଭର୍ତ୍ତିହେଇ ଫୁଲିରହିଲା । ଏଣେତ ଦେହ ଦୁର୍ବଳ, ରକ୍ତଶୂନ୍ୟ, ତା ସାଙ୍ଗକୁ ଜଳଉଦରି ଭଳିଆ ବେମାରି, ସେ ନିଶ୍ୱାସ ପ୍ରଶ୍ୱାସ ନେବାରେ ଯନ୍ତ୍ରଣା ଅନୁଭବ କଲା । ମା ବେମାରରୁ ପିଲା ବି ବେମାର, ପରିସ୍ଥିତି ସଙ୍ଗୀନ ମନେହେଲା । ନୀଳାମ୍ବର ନିଜେ ଆର୍ୟୁବେଦ ଜାଣିଛନ୍ତି, ହେଲେ ନିଜକଥାକୁ ତାଙ୍କ ବୁଦ୍ଧି ପଇଟିଲା ନାହିଁ । ସେ ଅଥୟ ହେଇ ପଡ଼ିଲେ । ରଥ କବେଇଙ୍କ ଠାରୁ ଆଣି ଔଷଧ ପ୍ରଯୋଗ କଲେ । ତଥାପି ଲବଙ୍ଗର ସ୍ୱାସ୍ଥ୍ୟରେ ସାମାନ୍ୟତମ ଉନ୍ନତି ଦେଖା ଗଲାନାହିଁ । ଶେଷରେ ଲବଙ୍ଗଲତା ସନ୍ନିପାତ ରୋଗରେ ଆଖିବୁଜି ଦେଲା ।

ମିଶ୍ରେଙ୍କ ଜୀବନରେ ସବୁଠାରୁ ବଡ଼ ଧକ୍କା, ସବୁଠାରୁ ବଡ଼ ବିପତ୍ତି ପଡ଼ିଲା । ମିଶ୍ରେଙ୍କୁ ଚତୁର୍ଦିଗ ଅନ୍ଧାର ଦିଶିଲା । ପାଦତଳୁ ଭୂଇଁ ଖଣ୍ଡେ କିଏ କାଢ଼ିନେଲା ଭଳି ଲାଗିଲା । ଜୀବନର ସରସତା, ପ୍ରେମମୟତା, ମାଧୁରୀ ରିକ୍ତ ପାଣ୍ଡୁର ଆଭାରେ ଘୋଡ଼େଇ ହେଇ ପଡ଼ିଲା । ଗାଉ ଗାଉ ଛନ୍ଦଟିଏ ହଜିଗଲେ ଯିମିତି ସବୁତକ ବେସୁରା ହୋଇଯାଏ, ସେଥିରେ ନା ରହେ ସ୍ୱପ୍ନ ନା ଗାଇବାର ମାଦକତା, ସେମିତି ମିଶ୍ରେଙ୍କ ଜୀବନ ବିବର୍ଣ୍ଣ ଓ ପ୍ରୀତିଶୂନ୍ୟ ହେଇଗଲା । ମିଶ୍ରେ ଅନ୍ତରଭିତରେ ବିକଳିଲେ । ହା

ଲବଙ୍ଗ ! ଲବଙ୍ଗ! ହେଲେ । ଏତେ ବଡ଼ ପୁରୁଷ, ସୁଠାମ ମଣିଷଟାକୁ ବିଷାଦ ଘୋଟିଗଲା । ଦିନେ ଅଧେ ପାଇଁ ନୁହେଁ, ସମଗ୍ର ଜୀବନ ଝୁରି ହେବା ସାର ହେଇଛି । ଏହା ବିଧାତା କଲା ।

ଦୁଃଖ ସେତିକିରେ ସରିଲାନି । ପିଲାଟି ମାକୁ ଝୁରିଲା, ମିଶ୍ରେ ତରତରରେ କାଳେ ବଂଚିଯିବ ବୋଲି ନାଁ ଦେଇଥିଲେ ଲଳିତା । ଏ ଅଳ୍ପଦିନରେ ମାଛେଉଣ୍ଡ ପିଲାର ଅବସ୍ଥା ଯିମିତି ହୁଏ, ପିଲାଟା ଛାତିରେ କଫ ଜଡ଼ିଗଲା । ନିଶ୍ୱାସ ସଁ ସଁ ହେଲା । ଛାତିପିଞ୍ଜରା ଉଠିଲା ପଡ଼ିଲା । ଚାହୁଁଚାହୁଁ ଦେହ ହାତ ଥଣ୍ଡା ପଡ଼ିଗଲା ଶେଷରେ ଲଳିତା ବି ଲବଙ୍ଗ ଯୁଆଡ଼େ ଯାଇଥିଲା ସିଆଡ଼େ ମା'କୁ ଖୋଜି ଖୋଜି ଚାଲିଗଲା ପରି ଉଭେଇଗଲା ।

ମିଶ୍ରେ ପତ୍ନୀବିୟୋଗର ଅବସାଦ ଭିତରେ ଆଉଟୁ ପାଉଟୁ ହେଇ କୂଳକିନାରା ଖୋଜୁ ଖୋଜୁ ଆଉ ଏକ ବିପତ୍ତି ତାଙ୍କ ସ୍ଥିତିକୁ ଦୋହଲାଇ ଦେଲା । ସେ ପଥର ଭଳି ସ୍ଥାଣୁ ଓ ନିର୍ବାକ ହେଇଗଲେ । ମଣିଷ ଦେହରେ ଦୁଃଖ ଯେତିକି ଭିଜିବା କଥା ଭିଜେ । ତାପରେ ବାକି ଦୁଃଖ ପଥର ଉପରେ ପାଣି ନିଗିଡ଼ି ଗଲାଭଳି ନିଗିଡ଼ିଯାଏ । ସେମିତି ମିଶ୍ରେଙ୍କ ଅବସ୍ଥା । ସେ ଯିମିତି ଭାଗ୍ୟ ହାତରେ ଖେଳଣା କଣ୍ଢେଇ ହେଇଗଲେ ।

ମିଶ୍ରେ ପଲଙ୍କଟା ଉପରେ ଉପରଓଳିଟାରେ ହତାଶରେ, ଗଡ଼ିପଡ଼ିଛନ୍ତି । ଆଖିକୁ ନିଦ ଆସୁନି । ଅନ୍ତର ଭିତରଟା କୋରି ହେଇ ପଡୁଛି । ଛାଇ ନିଦିଆ ଆସିଲାବେଳକୁ ସେ ଦେଖୁଛନ୍ତି ପୁଣି ସେହି ଶୁଭ୍ରବସ୍ତ୍ର ପିନ୍ଧିଥିବା ନାରୀ ମୂର୍ତ୍ତିଟିକୁ । ସେ ଏଥର ତାଙ୍କ ପଲଙ୍କ ଉପରେ ବିସିଛି, ତାଙ୍କ ଦେହରେ ହାତ ବୁଲେଇ ଆଣୁଛି । କହୁଛି ଶୁଣୁଛ? ମିଶ୍ରେ ସିମିତି ଅର୍ଦ୍ଧଶାୟିତ ଅବସ୍ଥାରେ ସେଇ ଛାୟା ମୂର୍ତ୍ତିଟିର ପ୍ରଶ୍ନରେ ହଁ ଭରୁଛନ୍ତି । ପଚାରୁଛନ୍ତି କିଏ? ଲବଙ୍ଗ ? କହ । ଛାୟା ମୂର୍ତ୍ତିଟି ଉତ୍ତର ଫେରଉଛି । ଶୁଣ! ମଣିଷ ମରିଗଲେ ରକ୍ତମାଂସର ଦେହଟା ମାଟିରେ ମିଶିଯାଏ । ହେଲେ ଦେହର ଅବିକଳ ଛାଇ ଘୂରିବୁଲୁଥାଏ । ମାୟା ମମତା ଆହୁରି କଟିନଥାଏ । ଛାଇ ମୂର୍ତ୍ତି ପୁଣି ପୁଣି ଫେରିଆସିବାକୁ ଚାହେଁ । କିନ୍ତୁ ଦେହତ ନଥାଏ, ସେମିତି ଶୂନ୍ୟରେ ସ୍ୱପ୍ନଭଳି ରହିଯାଏ । ତମେ କଣ ଅନୁଭବ କରୁଛ ! ମୋ ନୈରୂପ୍ୟ ଉପସ୍ଥିତି ? ମୁଁ ଏବେ ଏକା

ନୁହେଁ । ଆଉ ଅସହାୟା ନୁହେଁ । ମୋ ସାଙ୍ଗରେ ମୋ ଝିଅ ଲଳିତା, ରାଧାଙ୍କ ପାଖରେ ଲଳିତା ଭଳି । କେଉଁ ଜନ୍ମରେ ମୋ ସଖୀଥିଲା ଏ ଜନ୍ମରେ କନ୍ୟାହୋଇ ଜନ୍ମହେଲା । ସଖୀପରା କିମିତିବା ରହନ୍ତା କନ୍ୟାଭଳି । ଆମେ ଦୁହେଁ ଏବେ ସଖୀ । ଦୁଇଟି ଛାୟାମୂର୍ତ୍ତି । ଏଇଠି ଅଛୁ ତମରି ଘରେ ତମରି ପାଖରେ । ଦିଅ, ଆମପାଇଁ ପିତୁଳୀ ଗଢ଼େଇଦିଅ । ଆମକୁ ଦେହଟିମାନ ଦିଅ ।

ମିଶ୍ରେଙ୍କର ନିଦ ହଠାତ୍ ଭାଙ୍ଗିଗଲା । ସେ ଅଧୀର ହୋଇ ଚାରିଆଡ଼କୁ ଚାହିଁଲେ, ପଲଙ୍କତଳ କବାଟସନ୍ଧି । ବଇଆଲମିରା ଖୋଲିଲେ । ପିଲାମାନେ ଘରେ ନାହାନ୍ତି । ଶୋଇବା ଘର କବାଟ ଖୋଲି ବାରଣ୍ଡାକୁ ଆସିଲେ ଏପଟ ସେପଟ ଚାହିଁଲେ । ତାପରେ ପାହାଚ ଓହ୍ଲେଇ ଅଗଣା, ଅଗଣାର ତୁଳସୀ ଚଉରାକୁ ଅନେଇଲେ । ସେ କିଛି ପରିଷ୍କାର ଦେଖିପାରୁନାହାନ୍ତି । ଅଥଚ ତାଙ୍କୁ ଲାଗୁଛି ଶୁଭ୍ର ଶୀର୍ଣ୍ଣ ଛାୟା ମୂର୍ତ୍ତିଟିଏ କୋଳରେ ଶିଶୁଟିଏ ଧରି ଧୀରେ ଧୀରେ ନିଷ୍କ୍ରାନ୍ତ ହୋଇଯାଉଛି । ସେ ଆକର୍ଷିତ ହୋଇ ତାର ପିଛାଧରିଛନ୍ତି । ମିଶ୍ରେ ଠାକୁର ଘର କବାଟ ଖୋଲିଲେ । ଦେଖିଥାନ୍ତେ ବା କଣ ? ଗୋପୀନାଥ ଏକାକୀ କଦମ୍ବ ମୂଳରେ ତ୍ରିଭଙ୍ଗୀରେ ଠିଆହୋଇଛନ୍ତି । ଅଧରରେ ମୂରଲୀ, ରଙ୍ଗାଧର, ବାଙ୍କ ଚାହାଣିରେ ମିଶ୍ରେଙ୍କୁ ଚାହିଁଲେ । ମିଶ୍ରେଙ୍କୁ ଲାଗିଲା କିଏ ଯିମିତି କିଛି କଥା କହିଲା ଅଷ୍ଫୁଟରେ, ମୁଁ ଆଉ କେତେ ଦିନ ଏମିତି ଏକୁଟିଆ କଦମ୍ବମୂଳେ ଠିଆ ହୋଇଥିବି ? ରାଧାରାଣୀ କାହାନ୍ତି । ନୀଳାମ୍ବର ଦେ ମୋ ପାଇଁ ରାଧାରାଣୀଟିଏ ଗଢ଼ିଦେ ।

ମିଶ୍ରେ ସଂଭ୍ରମିଗଲେ । ଠାକୁରଘର କବାଟ ଆସ୍ତେବନ୍ଦକରିଦେଇ ଦୁଆର ମୁହଁରେ ମୁଣ୍ଡିଆଟେ ମାରିଲେ । ତାପରେ ପଛସାଉଡ଼ି କବାଟ ଖୋଲି ଚାଲିଲେ ବାଡ଼ ଭିତରକୁ । ସବୁଆଡ଼େ ଶୂନ୍ୟ । ମନର କେବଳ ଭ୍ରମ । ମଣିଷ ମରିଗଲା ପରେ ସବୁତ ଶୂନ୍ୟହୋଇଯାଏ । ନାମ ରୂପ ଗନ୍ଧ ବର୍ଣ୍ଣ ସବୁ ମିଳେଇଯାଏ । ରହିଯାଏ କେବଳ ସ୍ମୃତି ଓ ସ୍ୱପ୍ନ । ସ୍ମୃତି ପୁଣି ପୁନର୍ନବା ହୁଏ । ସେ ସବୁକିଛି ଭିଆଣ କରି ପାରେ, ଯାଦୁକରର ମାୟାଜାଲ ବିଛେଇ ହୋଇଯାଏ । ବେଳେବେଳେ ସବୁ ସ୍ୱପ୍ନ ସତ୍ୟ ହୁଏ । ସ୍ୱପ୍ନ ହିଁ ତ ସତ୍ୟ । ବଂଚିବାର ବୁଭୁକ୍ଷା ଥିଲେ ସ୍ୱପ୍ନ ହିଁ ବଂଚେଇ ଦିଏ । ଆଉ ସତ ସଂସାର କଣ କି ! ଏକ ସ୍ୱପ୍ନ ତ ।

ମିଶ୍ରେ ବେଳେବେଳେ ଏମିତି ସ୍ୱପ୍ନାବିଷ୍ଟ ହେଇ ଚଂଚଳ ହେଇ ପଡ଼ନ୍ତି । ମିଶ୍ରେ ଏବେ ସ୍ୱପ୍ନରେ ହିଁ ବଂଚିରହିଛନ୍ତି । ଦେହ ଧରିଛନ୍ତି, ଖାଉଛନ୍ତି, ପିଉଛନ୍ତି, ଲୁଗାପିନ୍ଧୁଛନ୍ତି, ଅନଉଛନ୍ତି, ଆଖିବୁଜୁଛନ୍ତି, ସବୁ ସ୍ୱପ୍ନରେ । ସବୁ ସ୍ୱପ୍ନଭଳି । ଏଣୁ ସେ ସ୍ୱପ୍ନ ଅପେକ୍ଷାରେ ଥାଆନ୍ତି । ଏକଥା ବା ପିଲାଙ୍କୁ କଣ କହିବେ ।

ଟେରାବାଡ଼ ଭିତରେ ନବନ୍ୟାସ ବିଧି ବଢୁଛି ।

ଗୋପୀନାଥ ରାଧା ଓ ଲଳିତାଙ୍କ ଶ୍ରୀଅଙ୍ଗରେ ପାଟକନା ପରସ୍ତହେଇ ମାଠ ସରିଲା । ଏବେ ଖଡ଼ିପ୍ରସାଦ ଆସିବ । ପ୍ରକାଶ ଶୁଚିହେଇ ଶିଳରେ ଖଡ଼ି ବାଟିଛି । ରୋବଣାରେ ପେଷିଛି । ମଣ୍ଡପାଟ କରିଛି । ଦୁଧସର ଭଳି ଦିଶୁଛି । ଖଡ଼ିମଣ୍ଡ ଯେତେ ଚିକ୍କଣ ହେବ, ରଙ୍ଗକାମ ସେତେ ଚଅକ ଧରିବ । କଇଥ ଅଠାର ମଣ୍ଡ ଦେଇ ଖଡ଼ି ତିଆରିଛି । ସକାଳୁ ଗାଧୁଆ ପାଧୁଆ ସାରି, ମଠା ପିନ୍ଧି ପ୍ରକାଶ ଖଡ଼ିପ୍ରସାଦ ନେଇ ମିଶ୍ରେଙ୍କ ଘରେ ପହଞ୍ଚିଲା । ବ୍ରହ୍ମାନନ୍ଦ ଓ ପ୍ରକାଶ ପିତୁଳାଙ୍କ ଉପରେ ଖଡ଼ି ଲିପିଆଣିଲେ । ମିଶ୍ରେ ବାହାରେ ଥାଇ ତାଗିଦା କରୁଛନ୍ତି, ବାପ ବହଳ ପାତଳ କରନି । ସମାନେ ହାତସରସ କରିଆଣ, ଦେଖ ସନ୍ଧାଯାକରେ ବେଶିଲାଖିଗଲେ ଗଢ଼ଣରେ ଫରକ ପଡ଼ିବ , ଚାରି ଆଡ଼ରୁ ପୋଛିଆଣ । ଦୈବଯୋଗକୁ ଖରାଚାଉଁ ଚାଉଁ ହେଇଛି । ମିଶ୍ରେ କହୁଛନ୍ତି ଧାସରେ ତ ଶୁଖିଯିବ । ମିଶ୍ରେ ପଚାରିଲେ, ନାତିଆ, ସାଥିରେ ଗରଡ଼ା ଆଣିଚୁ ତ ? ଶୁଖିଯାଉ, ଘସିବୁ । ନେ, ଏଇଟା ରଖିଥା କହି ଛୋଟ ରକମର ଗଣ୍ଡେହେବ ଚିକ୍କଣ ଖରଡ଼ା ପ୍ରକାଶ ହାତକୁ ବଢ଼େଇଦେଲେ । ଦି ଦିନଧରି ଖଡ଼ିଘସା ଚାଲିଲା, ଢ଼ିପ, ଖାଲ, କନାର ବାଁପଡ଼ିଆ ମରାହେଇ ଚିକ୍କଣ ହେଇଗଲା ଏବେ ପିତୁଳାଙ୍କ ଦେହରେ ହାତ ପକେଇଲେ ହାତ ଖସିପଡୁଛି ପିତୁଳାଙ୍କ ଦେହରୁ ଚିକ୍ ବାହାରିଲାଣି ।

ଏବକୁ ସାତ ଦିନ ହେଲାଣି ପିତୁଳାଙ୍କ ନବନ୍ୟାସର ବିଧାନ ଚାଲିଛି ।

ମିଶ୍ରେ ଟେରାବାଡ଼ ସେପଟେ ବାରଣ୍ଡାରେ ଚୌକି ଉପରେ ଗୋଡ଼ ଲମ୍ୱେଇ ବସି ରହୁଛନ୍ତି । ପ୍ରକାଶର ପୁଅ ଗଣିଆ ଚାହାଧରି ଆସିଲେ ତା ସାଙ୍ଗରେ

ଗମାତ ହେବେ, ପଚାରିବେ ସେ ଟୋକୀଟା କାହିଁରେ ? ପ୍ରକାଶ ଟେରାବାଡ଼ ଭିତରୁ ଖାଲି କାନେଇଥିବ ଅଜାଙ୍କ ଟାପରାକୁ । ଆର ଥରକୁ ଆସିଲାବେଳେ ଶଳା ଟୋକୀଟାକୁ ନେଇ ଆସିବୁ । ତାକୁ ମଧ୍ୟ ଚିତ୍ରଙ୍ଗୀ କରିଦେବା । ତୁ ଏବୁଠୁ ହାଙ୍କଡ଼ ଖାଇଲୁଣି । ନିଶଦାଢ଼ି ଉଠିନି । ପେଣ୍ଡ୍ ଅଣ୍ଡାରୁ ଗଳିପଡୁଛି । ତୋର ପୁଣି ମାଇପିଲାଟେ ସାଙ୍ଗ ଦରକାର । ଗଣିଆ କହିଲା, ଅଜା ମୁଁ ନୁହେଁ, ସିଏ ଏକା ମୋ ପଛରେ ଲାଗିଛି । କଣ ଚିତ୍ରାହେଉଛି ଦେଖିବ । ବାପାକୁ କହିଲାରୁ ବାପା କହିଲା ଏତା ଦେଖିବା ତାପୁକଥା । ଇଙ୍ଗଳା ଠାକୁର ଠାକୁରାଣୀ ଦେଖିଲେ ଭେଟଣା ହେଇଯିବ । ବାପାଙ୍କର ଥରେ ଝାଡ଼ା ବାନ୍ତି ହେଇଥିଲା । ଢେଙ୍କେ ବାପା ଗୁଣି ଗାରେଡ଼ି କରି ମହାପ୍ରଭୁଙ୍କୁ ସାଷ୍ଟାଙ୍ଗ ହେଇ ଭଲକଲେ ।

ମିଶ୍ରେ ପିଲାଟାର ଚତୁର କଥାରେ ବହେ ହସିଲେ । କହିଲେ ତୁ ଶଳା ବାପା ଦାଦା ପାଇଁ ଚାହା ଆଣୁଚୁ ନା ମଝିମଝିରେ ଆସି ଟେରା ବାଡ଼ କଣରେ ଦେଖୁଚୁ । ଗଣିଆ କହିଲା, ଅଜା ମୁଁ କଣ ଦେଖୁଛିକି ? ତୁଛାକୁ ମତେ ଦୃଶ୍ୟ ହେଇଯାଉଛି ନା । ମୋର ଦୋଷ ନାହିଁ, ମୋତେ ଝାଡ଼ାବାନ୍ତି ହେବନି । ମା'କୁ କହିଲାରୁ ସେ କହିଲା, ହଁ ବା ପିଲାଲୋକଙ୍କୁ ଦୃଶ୍ୟହେଲେ ବାଧକ ନାହିଁ ।

ଅଜା କହିଲେ,ରେ ସିଆଣିଆ ଚିତ୍ରକାର ଟୋକା, ତୁଟା ବିଛୁଆତିଟେ, ବଡ଼ ସରସ କଥା କହୁଚୁ । ପାଣିରେ ସର ପକେଇଲା ଭଳିଆ । ଦେ ନେଇଆ ତୋର ମାଇପିଲା ସାଙ୍ଗକୁ । ତାକୁ ବି ଦୃଶ୍ୟହେଉ ତତେ ଯିମିତି ହେଉଛି । ତୁ ତ ଠାକୁରାଣୀର ଯୋନିଟା ଦେଖୁଛୁ ସେ ଠାକୁରଙ୍କ ଅଣ୍ଡକୋଷଟା ଦେଖୁ । ଶଳେ ସମସ୍ତଙ୍କୁ ମନା । ଯ', ବନ୍ଧୁହୁଡ଼ାରେ ଦେଖାଦେଖିହେବ । ଗଣିଆ ମୁହଁଟାକୁ ନେଉଳ ଭଳିଆ କରି ତଳକୁ ଚାହିଁଥାଏ । ପ୍ରକାଶ ଟେରାବାଡ଼ ଭିତରୁ କହିଲା ଅଜାଙ୍କ କଥାଯାକ ପୁଅକୁ ଗନ୍ଧେଇଲା । ସେ ମାଇପିଲାଟା ସାଙ୍ଗରେ ସବୁବେଳେ ଇଟର ପଟର, ପାଠ ପଢ଼ାନାହିଁ, ଚିତ୍ର ନାହିଁ । ଭଲହେଇଛି, ଅଜା ଶୁଣେଇ ଦେଇଛନ୍ତି ମଂଛି କଥାଟା ।

ମିଶ୍ରେଙ୍କ ସ୍ୱପ୍ନ ଦେଖାରେ ବିରାମ ନାହିଁ ।

ଖରାବେଳଟାରେ ଗଡ଼ପଡ଼ ହେଇାବେଳକୁ ମିଶ୍ରେ ଏକାଭଳିଆ

ସ୍ୱପ୍ନ ଦେଖୁଛନ୍ତି । ଏକାଭଳିଆ କଥା । ହଇହେ ଶୁଣୁଚ, ଦାରୁ ପିତୁଳୀ ଗଢ଼ିଦିଅ, ମୁଁ ତମ ପାଖେ ପାଖେ ରହିବି । ତମ ଠାକୁରଘରେ, ରାଧାହେଇରହିବି । ତମେ ବି ଏକୁଟିଆ । ଗୋପୀନାଥ ବି । ଏ ବର୍ଷ ମହେନ୍ଦ୍ରତନୟା ପୂର୍ଣ୍ଣଗର୍ଭାହେଲେ ବଢ଼ିପାଣି କୂଳ ଲଙ୍ଘିଲେ ଦେଖିବ କାଠ ଦିଗଡ଼ ଭାସିଆସୁଛି । ଗୋକର୍ଣ୍ଣେଶ୍ୱର ମହାଦେବ ମନ୍ଦିର ମୋଡ଼ ପାଖରେ ଆପେ ଆପେ ଗଡ଼ ଦିଟା କୂଳପାଖ ଭଙ୍ଗା ଅତଡ଼ା କୋରଡ଼ରେ ଠେକି ଯିବେ, ଲୋକ ଲଗେଇ ପାଣିରୁ ଛାଣି ଆଣିବ । ଶଗଡ଼ରେ ଆଣି ଦାଣ୍ଡଦୁଆରେ ପକେଇଦେବ, ପାଣିନିଗିଡ଼ି ଯାଇ ଖରା ଖାଇଗଲେ ପିତୁଳୀ ଦୁଇଟି ଖୋଳେଇଦେବ । ମୋ ପାଇଁ ଆଉ ଲଳିତା ପାଇଁ । ରାଧାଗୋବିନ୍ଦ ମହାପାତ୍ର ହାତରେ ମୋ ପ୍ରତିମା, ବ୍ରହ୍ମାନନ୍ଦ ମହାପାତ୍ର ହାତରେ ଲଳିତାର, ଗଢ଼େଇ ନେବ । ଗୋପୀନାଥଙ୍କ ଉଁଚା ପାକାପାଖି ମୋ ମୂର୍ତ୍ତି ଓ ତାକୁ ଚାହିଁ ଲଳିତାର । ମନେ ରହିଲା ?

ମିଶ୍ରେ ସ୍ୱପ୍ନ ଭିତରେ ବିଭୋର ହେଇ ପଡ଼ିଛନ୍ତି । ନିଦ ହଠାତ୍ ଭାଙ୍ଗିଗଲା । ଖରାବେଳିଆ ନିଦ, ଏମିତିକା ଧଡ଼ଧାଡ଼ ଭାଙ୍ଗିଯାଏ । ମିଶ୍ରେ ଉଠି ପଡ଼ି ପଲଙ୍କରେ ବସିପଡ଼ିଲେ । ଲବଙ୍ଗ, ଲବଙ୍ଗ ହେଲେ । ଏତେ କଥା ମନରେ ଥିଲା, ରକ୍ତ ମାଂସ ଦେହ ଧରି ରହିଥିଲେ ହେଇନଥାନ୍ତା ? ଯଦି କଥା ହେଲା ରହିବା, ରହିଥାନ୍ତୁ, ସମସ୍ତେ ଯିମିତି ରହନ୍ତି । ଘରସଂସାର କରି ସୁଖଦୁଃଖ ଭିତରେ ଭାଜି ହେଇ, ଶୀତକାକର ସହି ମୋ ସାଙ୍ଗରେ ପଡ଼ିଥାନ୍ତୁ । ପିଲାଦିଟା ବଢୁଛନ୍ତି । ପାଠ ପଢୁଛନ୍ତି, ଚାକିରିକରିବେ ଦେଖିଥାନ୍ତୁ । ବାହାକରିଥାନ୍ତୁ, ବୋହୂ ଆଣିଥାନ୍ତୁ, ନାତିନାତୁଣୀ ଦେଖିଥାନ୍ତୁ । ଏବେ କହୁଛନ୍ତୁ ପିତୁଳୀହେବୁ । କହୁଛନ୍ତୁ ମୋତେ, ଗଢ଼ିଦେ, ତୁ ତାହେଲେ ଧରିନେଉଛୁ ପିତୁଳୀଯାହା ମଣିଷ ତାହା !

ପିତୁଳୀ ବରଂ ମଣିଷଙ୍କ ଅପେକ୍ଷା ଅଧିକା ଆପଣାର । ମଣିଷ ଯିମିତି ଭାବିବ, ପିତୁଳୀ ସେମିତି ରହିବ, ହସିବ କାନ୍ଦିବ, କଥା କହିବ ! ବିପଦ ଆପଦର ସାଥିଦେବ । ଲବଙ୍ଗ କହିଛି, ସେ ପିତୁଳୀ ହେବ । କାଠର ପିତୁଳୀ ହେବ, ରାଧାରାଣୀହେବ । ଏଇଠି ରହିବ, ମୋତେ ନିଘା ରଖିବ । ଗୋପୀନାଥଙ୍କୁ ସଖ୍ୟ ଦେବ, ଲଳିତାକୁ ମଧ୍ୟ ସଙ୍ଗରେ ରଖିବ ।

ଏଣେ ନବନ୍ୟାସ ବିଧିରେ ହଳଦି ବନକ ଆରମ୍ଭହେଲା । ରାଧାଙ୍କ

ଓ ଲଳିତାଙ୍କ ଦେହ, ଗୋପୀନାଥଙ୍କ ପୀତାମ୍ବର ପାଟ, ଗହଣାଗାଣ୍ଠି ରଙ୍ଗହେଲା । ବଇଠାରେ ପ୍ରକାଶ ଓ ବ୍ରହ୍ମାନନ୍ଦମିଶି ହଳଦିଆ ଦେଲେ, ତାପରେ ହିଙ୍ଗୁଳ ବନକ । ରାଧାଙ୍କ ପାଟ ଓ କୃଷ୍ଣ, ରାଧା ଓ ଲଳିତାଙ୍କ ହାତପାପୁଲି, ପାଦ ତଳିପାରେ ହିଙ୍ଗୁଳ ବନକ ଦିଆଗଲା । ତାପରେ, ସଫେଦା, କଳାରଙ୍ଗ ଦେଇ ଠାକୁରମାନଙ୍କୁ ରଙ୍ଗ କରାଗଲା ।

ରଙ୍ଗ ବନକ କାମ ସରିଲାପରେ ମୋଟକଳାକାମ ଆରମ୍ଭହେଲା । ମୋଟକଳା କାମରେ ରୂପ ଆରେଇ ଯାଏ । ଏ ବେଳକୁ ତୂଳୀରେ ନିଘା ଆସିଯାଇଥାଏ । ଏବେ ଠୁ କାରିଗର ମାନଙ୍କ ଆରମ୍ଭ ହୁଏ ସଂଯମର ବେଳ । ଗୋପୀନାଥ, ରାଧା ଲଳିତାଙ୍କ ବେଣୀ, ଆଖିପତା, ଆଖିଡ଼ୋଳା ଚାରିକଡ଼େ ଗାର, ହାତ ଆଙ୍ଗୁଠିମାନଙ୍କ ସନ୍ଧାରେ ଗାର । ସେମିତି ପାଦର ଆଙ୍ଗୁଠି ବାହାର କରିବା ପାଇଁ ଗାର ମାନ ଦିଆଗଲା । ମୋଟକଳାକାମ ହାତ ଆଖି ଓ ମନକୁ ମୁନ କରିଦିଏ ।

ବ୍ରହ୍ମାନନ୍ଦ ମୋଟକଳାକାମ କଲାବେଳକୁ, ପ୍ରକାଶ ଗୁଣା ଗାର କାମ, ଅଳଂକାର, ଶାଢ଼ିର ଧଡ଼ି, ଅଣ୍ଟାର ଘାଗୁଡ଼ି, ରାଧାଙ୍କ ପାଟ ଉପରେ ଛିଟ, ଲଳିତା ପାଟରେ ଲତା ଡ଼ାଳି ଚିତ୍ର ସାରିଦେଲା । ବନକ ଓ ମୋଟକଳା ଉଭୟ ମୋଟା କାମ । ଏଥିରେ ବିଶେଷ ବାହାଦୁରି ନାହିଁ । ଅସଲ ହେଲା ସରୁକଳାକାମ । ଏବେ ରେଖା ବିନ୍ୟାସରେ କାରିଗରି ଦେଖାଇବାରେ ବାହାଦୁରି ଅଛି । ପିତୁଳୀଉପରେ କାଣି ଆଙ୍ଗୁଠିରେ ଭରାରଖି ହାତ ସଳଖକରି ଗାର ଟାଣିବା ବିଦ୍ୟା ଆୟତ କରିଥିଲେ ହିଁ ସରୁକଳାକାମ କରିହେବ । ଏହି ରେଖାର ସାବଲୀଳ ଅଥଚ ଦୃତ ଓ ଦୃଢ଼ ବିନ୍ୟାସରେ ବିନ୍ଧାଣିର ଚାତୁରୀ ଜଣାପଡ଼େ । ବ୍ରହ୍ମାନନ୍ଦ ଓ ପ୍ରକାଶ ଉଭୟେ ରେଖାବିନ୍ୟାସ କରିବାରେ ସିଦ୍ଧହସ୍ତ । ସରୁକଳା କାମ କରିବାପାଇଁ ସେମାନଙ୍କୁ ଦୁଇ ଦିନ ଲାଗିଲା । ଅଜା ବାହାରପଟୁ ହୁରି ଛାଡୁଥାନ୍ତି । ନାତିଆ ମାନେ , ସରୁକଳାକାମରେ ସବୁ ରହିଲା । ସୁନ୍ଦର ଅସୁନ୍ଦର ଏଇଥିରୁ ହିଁ ବାରିହେବ । ହୁସିଆରରେ ଗିରା ଟାଣିବ । ନିଶ୍ୱାସ ବୁନ୍ଧିବରେ ପିଲେ । ଗାର ଭିଡ଼ାହେବ ଏକାଥରକେ । ଥଙ୍ଗ ଥଙ୍ଗ ହେଲେ ଗାର ଲହଡ଼ା ମାରିଯିବ, ପାଠ ସରିଯିବ । ବିଜାର ଲାଗୁଛି ଯଦି ଆଉ ଗିଲାସେ ଗିଲାସେ ଚାହା ପିଅ ସିନା, କାମ ସରସାକର । ଯିମିତି ଦେଖିଲେ ମନ ପ୍ରହୃଷ୍ଟ ହେଇଯିବ ।

ଦେଖ, ପିଲେ। ଲୁଗାରେ ଘୋଡ଼େଇ ହେଇ ପଡ଼ିବ ବୋଲି କୌଣସି ଦୃଶ୍ୟ ହେଉନଥିବା ଅଙ୍ଗ ଗାର ନ ପକେଇ ଛାଡ଼ିଦେବନି । ସେମିତି କଲେ ପିତୁଳା, ପିତୁଳୀ ଅମାର୍ଗ ହେଇଯିବ । ଆମକୁ ସିନା ସବୁ ଦୃଶ୍ୟହେବନି, ଠାକୁରତ ସବୁ ଦେଖୁଛି । ଯିଏ ରାତି ଦିନ ଭିଆଣ କରୁଛି ତାକୁ କିଭଳି ବେଖାତିରି କରିବ । ସବୁ ନିଖୁଣ କରି ଚିତ୍ରକରିଦିଅ ।

ପ୍ରକାଶ ବ୍ରହ୍ମାନନ୍ଦ ଗୁଣା ଗାର କାମ ସାରିଦେଇ କଇଁଠ ଅଠା ଗିନା ଖୋଜିଲେ । ପ୍ରକାଶର ଭାରିଯା ମିଶାରୁ ଚିତ୍ରିବା ପାଇଟିରେ ପାରଙ୍ଗମ । କଇଁଠ ଅଠା ବତୁରେଇ ଛାଣି ଗିନାରେ ଯତନରେ ପଠେଇଥିଲା । ପୂଜା ପ୍ରତିମାରେ ସଦଳଉଷ ବା ଲାଖ ଝଳି ଦେବା ବିଧି ନାହିଁ । ସେମାନେ ମାମୁଲି ପ୍ରକାରେ ସଫା ଧଳା ଧୋତିରେ ମୂର୍ତ୍ତି ଯାକକୁ ପୋଛି ଆଣିଲେ । ବଢ଼ିଆ ଚଅକ ଉଠିଲା । ତାପରେ କଇଁଠ ଅଠା ପାଣି ପିଆଇ ଦେଲେ । ଝଳି ଉକୁଟି ଉଠିଲା । ଦୀପ୍ତି ଫୁଟିଲା । ବ୍ରହ୍ମାନନ୍ଦ ଅଜାଙ୍କୁ କହିଲା ଏବେ ନେତ୍ରୋତ୍ସବ ନବଯଉବନ ବିଧାନ ପାଇଁ ସଜ ଠିକଣାକର । ପ୍ରକାଶ ଅଜାଙ୍କୁ ଲମ୍ୱା ଯାବିତା ଧରେଇଦେଲା । ସେମାନଙ୍କ ପାଇଁ ଧୋତି ଜୋଡ଼ ହଳେ ଲେଖା, ସେମାନଙ୍କ ଭାରିଯାମାନଙ୍କ ପାଇଁ ଶାଢ଼ି ରାଇକା ଓ ସାୟା, ଅଜାଙ୍କ ମଧ ଜଥା ହଳେ, ଦି ପୁଅଙ୍କ ପାଇଁ ଧୋତି, ବୋହୂମାନଙ୍କ ପାଇଁ ଶାଢ଼ି ଓଗେର ଓଗେର । ଏତେ ଲମ୍ୱା ଚିଠା ଦେଖି, ଅଜାଙ୍କ ଯିମିତି ବୁଦ୍ଧି ହଜିଗଲା । ଅଜା ଏଥିରୁ ଉଦ୍ଧାର ପାଇବା ପାଇଁ ଚିତ୍ରକାରମାନଙ୍କୁ କହିଲେ ଶୁଣିଲୁ ବାପ ବ୍ରହ୍ମାନନ୍ଦ ଆଉ ପ୍ରକାଶ । ଆଖିଫୁଟେଇବା ପରେ ପରେ ତ ପ୍ରାଣ ପ୍ରତିଷ୍ଠା କର୍ମହେବ । ଏଣୁ ତମେ ଖାଲି ନବଯଉବନ ପାଇଁ ଯେତିକି ମାମୁଲି ଲୋଡ଼ା ତାକୁ ହିଁ ବୋଲ । ଅଜା ସବୁଥିରେ କାଣ୍ଟଛାଟ କରି ଯାବିତା ମୁତାବକ ସାମାନ ପୁଅ ମାନଙ୍କ ହାତରେ ଘେନି ଆଣିଲେ ।

ତା' ପରଦିନ ସକାଳୁ ସ୍ନାନାଦି କର୍ମସାରି, ଅଜା ଦେଇଥିବା ନୂଆଲୁଗା ପିନ୍ଧି ବ୍ରହ୍ମାନନ୍ଦ ଓ ପ୍ରକାଶ ହାଜର ହେଇପଡ଼ିଲେ । ଚିତ୍ରକରମାନେ ଘରେ ପହଞ୍ଚି ପୁଣି ଗୋଡ଼ ଧୋଇ ଶୁଦ୍ଧହେଇ, ଆଚମନ କରି କଳା ରଙ୍ଗ ସଡ଼େଇ ଓ ତୁଳୀକାଠିକୁ ତୁଳସୀ ଦେଇ ପୂଜାକରି, ଠାକୁରଙ୍କ ଆଗରେ ହାତ ଯୋଡ଼ିସାରି ଚକ୍ଷୁଦାନ କଲେ । ଚିତ୍ରକାରମାନେ କହିବା ପ୍ରକାରେ ବାହାରେ ଶଙ୍ଖ ଘଣ୍ଟା ବାଜିଲା ଓ ବୋହୂମାନେ ହୁଳ ହୁଳି ପକେଇଲେ ।

ଅଜାଙ୍କ ସ୍ୱପ୍ନ ଦେଖାରେ ବିରାମ ନାହିଁ ।

ଶେଯ ଧରିଲେ ଲବଙ୍ଗର ନୈରୂପ୍ୟ ବାସନା ଶୁଭ୍ରଛାୟା ହେଇ ଅଜାଙ୍କ ମନ ଭିତରେ ଉଭା ହେଇଯାଉଛି । ପଚାରୁଛି, ପିତୁଳୀ କାହିଁ? ମୋର ଓ ଇଳିତାର । ଅଜା ସ୍ୱପ୍ନ ଭିତରେ ବି ଉତ୍ତର ଫେରଉଛନ୍ତି । ବର୍ଷା ଦିନ ତ ଆହୁରି ଅନେକ ବାକି । ତା ପରେ ସମୟ ବିତି ଯାଉଛି,ବର୍ଷା ଆସୁଛି, ଶ୍ରାବଣର କଳାମେଘ ଚଉଦିଗକୁ ଘେରିଯାଉଛି , ବର୍ଷା ଗାଜୁଛି । ମହେନ୍ଦ୍ରତନୟାରେ ବଢ଼ି ଆସୁଛି ।

ଅଜା ସନ୍ତର୍ପଣରେ ଘରୁ ଗୋଡ଼ କାଢ଼ି ଦିଜଣ ହଳିଆକୁ ସାଙ୍ଗରେ ନେଇ ଆଗେଇଛନ୍ତି ଦାରୁ ସନ୍ଧାନରେ । ଅଜା ଭାବୁଛନ୍ତି ସେ ଇନ୍ଦ୍ରଦ୍ୟୁମ୍ନ ପାଲଟିଯାଇଛନ୍ତି ଓ ଥାଟ ନେଇଯାଉଛନ୍ତି ସମୁଦ୍ର କୂଳକୁ । ଜଗନ୍ନାଥଙ୍କ ଦାରୁ ଭାସି ଆସିବ । ଦର୍ଶନରେ ଚକ୍ଷୁ ପବିତ୍ର ହେବ । ହଳିଆ ସଦା ବଢ଼ିପାଣିର ଖର ସ୍ରୋତ ଭିତରେ କଣ ଗୋଟାଏ ଠାବ କଲା । ଅଜା କହିଲେ, ସେଇଟା ଦାରୁ ହେଇଥିବ ପରା ଦେଖେ । ଅନଉଥା, କୁଆଡ଼କୁ ମୋଡ଼ ନେଉଛି । ଦାରୁ ଗୋଟେ ନୁହେଁ ଦିଟା ସେମାନଙ୍କ ଆଡ଼କୁ ଭାସି ଆସିଲା । ସେମାନେ ନଦୀର ମୋଡ଼ ପାଖରେ ଠିଆ ହେଇଛନ୍ତି । ଏପଟରେ ନଦୀ ଅତଡ଼ା ଖାଇ ଖାଇ ବନ୍ଧରେ ଗାତମାନ ସୃଷ୍ଟି ହେଇଯାଇଛି । ଅଜା ଓ ହଳିଆମାନେ ଯେଉଁ ମଙ୍ଗକୁ ଠିଆ ହେଇଛନ୍ତି, ଲାଗୁଛି ସେଥିରୁ ବଡ଼ ଚକଡ଼ାଟିଏ ଖସିପଡ଼ିବ ଆଉ ସେମାନେ ବଢ଼ି ପାଣିରେ ଭାସିଯିବେ । କାଠଗଡ଼ ଦିଟା ଭାସି ଭାସି ଆସି ଲାଗିଲେ ଯିମିତି ଲବଙ୍ଗ ସପନେଇଥିଲା । ସଦା ନିଜ ଅଣ୍ଟାରେ ଦଉଡ଼ି ଫରଫାସି କଲା । ନଦୀହୁଡ଼ାରେ ଥିବା ଆମ୍ବଗଛ ଗଣ୍ଡିରେ ଦଉଡ଼ିର ଆର ମଙ୍ଗକୁ କସିଦେଲା । ଅଜାଙ୍କୁ ଓ ସାଙ୍ଗରେ ଆସିଥିବା ନେଦ୍ରାକୁ କହିଲା, ଇୟ ରଖିଥିବ । ଟାଣ କହିଲେ ଟାଣିବୁ । ତା ପରେ ଠାକୁରଙ୍କୁ ଜୁହାରଟି ହେଇ ପାଣିକୁ ଡ଼େଇଁଲା । ବଢ଼ି ପାଣି ତଳକୁ ଧାପି ନେଉଛି, ନେଦ୍ରା ଦଉଡ଼ିକୁ ଝିକିଲା । ସଦା ଉଲଟ ସ୍ରୋତରେ ଟାଣିହେଇ ଉପରକୁ ଉଠିଲା । ଅଣ୍ଟାରେ ଗୁଡ଼େଇ ଅଧିକା ରସି ନେଇଥିଲା । କସି କରି ଦି ଗଣ୍ଡିର ବେଢ଼ରେ ଦି ଘେରା ବେଢ଼େଇ ଆଣିଲା । ବଢ଼ିପାଣି ସୁଅରୁ ହୁରି ପକେଇଲା, ନେଦ୍ରାକୁ ଦଉଡ଼ି ଟାଣ କରିବାପାଇଁ କହିଲା । ଅଜା କହିଲେ ଦଉଡ଼ି ଧର । ଦି ଜଣ ଦଉଡ଼ି ଟାଣିଲେ । ସଦାନନ୍ଦ ଓ କାଠଗଡ଼ ଦିଟା ପଛକୁ ପଛ ହେଇ ଉପର ମୁଣ୍ଡ୍ ଆଡ଼କୁ ଟାଣିହେଇ ଆସିଲେ । ପାଦକୁ ଭୂଇଁ ଲାଗିବାରୁ ସଦାକୁ ଦମ୍ଭ ମିଳିଲା । ତାପରେ ଗଣ୍ଡି ଦିଟାକୁ ଝିକିଝିକି ମାଟି ଉପରକୁ ଶୁଖିଲା ଚଢ଼ପକୁ ଆଣିଲେ ।

ସଙ୍ଗରେ ଆଣିଥିବା ଶଗଡ଼ରେ କାଠଗଡ଼ ଲଦି ସେମାନେ ଘରକୁ ଫେରିଲେ ଓ ଅଜାଙ୍କ ଦାଣ୍ଡଦୁଆର ମେଲାରେ ବଉଳ ଗଛ ତଳେ ଗଣ୍ଡିଦିଟାକୁ ଗଡ଼େଇ ଦେଲେ । ପାଣି ନିଗିଡ଼ି ଯାଇ ଖରା ଖାଇ ଟାଣ ହେଇଗଲେ କାମ ହେବ ।

ନବନ୍ୟାସ ବିଧିର ଶେଷଦିନ ଫଗୁ ପୂର୍ଣ୍ଣମୀରେ ପ୍ରାଣ ପ୍ରତିଷ୍ଠା ହେବ ।

ଅଜା ନିଜେ ସବୁଦିନ ଭଳି ସ୍ନାନାଦି ନିତ୍ୟକର୍ମ ସାରି ଚେରାବାଡ଼ ଭିତରୁ ଚିତ୍ରିତ ପିତୁଳୀମାନଙ୍କୁ ନେଇ ଠାକୁର ଘର ଭିତରେ ସିଂହାସନରେ ବିଜେ କରାଇଲେ । ଆଜି ଯାଏଁ କଂସା ଦର୍ପଣରେ ପ୍ରତିଫଳିତ ଠାକୁରଙ୍କ ସ୍ୱରୂପ ହିଁ ଶାଳଗ୍ରାମଙ୍କ ସହିତ ଠାକୁରଘରେ ପୂଜା ପାଉଥିଲେ । ଦର୍ପଣରେ ଆରୋପିତ ଆତ୍ମାକୁ ପିତୁଳୀମାନଙ୍କରେ ପୁନଃ ବିନ୍ୟାସ କରି ସେ ଠାକୁରମାନଙ୍କୁ ଜୀବନ ଦାନ କଲେ । ସେଦିନ ଅଜାଙ୍କ ଘରେ ମହୋତ୍ସବର ଆଡ଼ମ୍ବର । ଅଜାଙ୍କ ଠାରୁ ଆରମ୍ଭ କରି ନାତି ନାତୁଣୀ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ନୂଆ ଲୁଗା । ବୋହୂମାନେ ସକାଳ ପହରୁ ରନ୍ଧା ବଢ଼ାରେ ଲାଗିଯାଇଛନ୍ତି । ଅରୁଆନ୍ନ, ମୁଗପଇଡି, ବେସର, ଆମ୍ବିଳ, ଚାଉଳ ଖିରି, ମିଠାବଡ଼ା, ଚନ୍ଦ୍ରକାନ୍ତି ଓ ନଡ଼ିଆ ଚକୁଳି ଭୋଗ ହେବ । ଅଜା କହିଲେ ମହାପ୍ରୁ ଯାକ ଏତେ ଦିନ ହେଲା ଭୋକରେ ଅଛନ୍ତି । ଏ ଚିତ୍ରକାର ଯାକ ତ ମହାପ୍ରୁ ତିନିଟାକୁ ଚୂଡ଼ଚୂଡ଼ା କରିଦେଲେ । ଆଜି ମଣୋହି ବଢ଼ିବ । ଜୀବନ୍ୟାସ ବିଧିର ଘିଅପୋଡ଼ା ବାସ୍ନାକୁ ତରକାରି ଛୁଙ୍କର ଘିଅ ବାସ୍ନାରେ ନୀଳାମ୍ବର ମିଶ୍ରେଙ୍କ ଘର ଭଣଭଣ ବାସୁଛି । ବାସ୍ନାରେ ଉଛୁଳି ପଡୁଛି ଘର ।

ଆଜି ଗୋପୀନାଥ ରାଧାରାଣୀ ଓ ଲଳିତା ପୁନର୍ନବା ହେଲେ । ଶୃଙ୍ଖଳା କାଠ କଞ୍ଚା ହେଲା । ଉସୁନା ଧାନ ଗଜା ହେଲା । ଏଇଆ ତ ପୁନର୍ନବା ହେବାର ମହିମା । ମାଟି କାଠ ପଥରରେ ରୂପ ସଂଚରେ, ପଲ୍ଲବିତ ହୁଏ । ରୂପ ତ ଲୁଚି ରହିଥାଏ ଦୃଶ୍ୟ ଓ ଅଦୃଶ୍ୟମାନ ସତ୍ତା ଭିତରେ । ତାକୁ ଖୋଜିବାକୁ ହୁଏ, ଆବିଷ୍କାର କରିବାକୁ ହୁଏ । ଏହାହିଁ ତ ହେଲା ସୃଷ୍ଟି, ବିଶ୍ୱର ଓ ସମସ୍ତ ଦେହଧାରୀ ଜୀବନମାନଙ୍କର । ନଶ୍ୱର ହେବା ସୃଷ୍ଟିର ଏକ ପ୍ରକ୍ରିୟା । ଏହା ହେଲେ ହିଁ ସୃଷ୍ଟି ସମ୍ଭବ ହୁଏ । ଏହି ପ୍ରକ୍ରିୟାର ଆଉ ଏକ ଉନ୍ମୀଳନ ହେଲା ପୁନର୍ନ୍ୟାସ । ପୁନର୍ନବା ଏକ ମହାସ୍ରୋତ, କେଉଁ ଏକ ଅବ୍ୟକ୍ତ କାଳ ଓ ସ୍ଥିତିରୁ ପ୍ରବାହରେ ଭାସି ଆସେ । ବେଳେବେଳେ ଦୃଶ୍ୟ ହୁଏ । ପୁଣି ବେଳେବେଳେ ଦୃଷ୍ଟିଶକ୍ତିର, ଇନ୍ଦ୍ରିୟାନୁଭୂତିର ବାହାରେ । ପୁନର୍ନବାର

ପ୍ରକ୍ରିୟା ବ୍ୟତିରେକ ଭୂମା ଅବ୍ୟକ୍ତ ରହିଯାଏ । ପୁନର୍ନବା ପରଂବ୍ରହ୍ମଙ୍କୁ ମଣିଷ ଆଗରେ ଉଭା କରେଇଦିଏ ।

ଅଜାଙ୍କ ସ୍ୱପ୍ନ ଦେଖାରେ ବିରାମ ନାହିଁ ।

ଖରାଦିନର ଗୁଳୁଗୁଳିରେ ରାତି ନିଦ ହେଉନି । ଖରାବେଳଟାରେ ତଳେ ଶୀତଳା ପଟିଟେ ପକେଇଦେଇ ନୀଳାମ୍ବର ମିଶ୍ରେ ଗଡ଼ପଡ଼ ହେଲାବେଳକୁ ଲବଙ୍ଗ କୋ ଶୋଏଇ ଦେଉଛି ଯେ । ଖାଲି ସପନଉଛି । ଏଥର ସ୍ୱପ୍ନରେ କହିଲା ଶୁଣୁଚ! ପିତୁଳୀ ଖୋଦେଇବା ଉଚ୍ଛୁରୁ କଲ, ପଡ଼ିଶା ଘର ଖାଡ଼ଙ୍ଗୀ ବୋହୂ ମାରୁକନା ଯାକ କାଠ ଉପରେ ଶୁଖେଇଦେଲା । କାଠ ଅମାର୍ଗ ହେଇଗଲା । ଦି ଦିନି ହେଲା ମୋ ଦେହରୁ ରକ୍ତ ଶୁଖୁନି । ଯ' ଦେଖୁନ ।

ନୀଳାମ୍ବର ଖରାବେଳଟାରେ ଦଉଡ଼ିଲେ । ଦେଖିଲେ, ସତକୁ ସତ କାଠଗଡ଼ ଦିଟା ମାରା ହେଇଯାଇଛି । ଗଣ୍ଠିମାନଙ୍କରୁ ରକ୍ତ ଭଳିଆ ଖଇରିଆ ରଙ୍ଗର ଅଠାଳିଆ ଅଠାଳିଆ ଦୋରୁଅ ନିଗୁଡୁଛି । ଅଧା ଧାର ଶୁଖି ଜମାଟ ବାନ୍ଧିଗଲାଣି । କି ଅଦ୍ଭୁତ ଏ ଘଟଣା । ମିଶ୍ରେ ସ୍ତମ୍ଭୀଭୂତ ହେଇପଡ଼ିଲେ । ଏ କି ଅଘଟଣ । ସେଇ ଖରାବେଳଟାରେ ଦଉଡ଼ିଲେ ରାଧାଗୋବିନ୍ଦ ମହାପାତ୍ର ଘରକୁ । ରାଧାଗୋବିନ୍ଦ ଦାଣ ଘରଟାରେ ନିଘୋଡ଼ ନିଦରେ ଶୋଇଥିଲା । ତା ଭାରିଯା ମଂଜୁ ଗୋସେଇଁଙ୍କୁ ଦେଖିପଡ଼ି ନିଜ ପିନ୍ଧା ଲୁଗାକୁ ବାଗ କରି ଚଟାପଟ ଉଠିପଡ଼ି ଓଳଗି ହେଲା । ରାଧାଗୋବିନ୍ଦ ଉଦବସ୍ତ୍ର ହେଇ ଶୋଇଛି । ମଂଜୁ ତାଙ୍କ ଦେହଉପରେ ଗାମୁଛାଟା ଟାଣିନେଇ ଘୋଡ଼େଇଦେଇ ତାଙ୍କୁ ଉଠେଇଦେଲା । ଉଠ ଗୋସେଇଁ ଆସିଛନ୍ତି । ମହାପାତ୍ରେ ଧଡ଼ପଡ଼ ହେଇ ଉଠିଲେ । ମିଶ୍ରେ ମହାପ୍ରୁଙ୍କୁ ଦେଖି ଛାନିଆ ହେଇଗଲେ । ଏଡ଼େ ଅବେଳଟାରେ ତମେ ନିଜେ? ମିଶ୍ରେ ଶୀତଳା ପଟିଟା ଉପରେ ବସିପଡ଼ିଲେ । ସେ ଭାରି ବ୍ୟସ୍ତ ଦେଖାଯାଉଥିଲେ । ଖରାରେ ଚାଲିଆସିଥିବାରୁ ତାଙ୍କ ଗୋରା ମୁହଁଟା ଝାଉଁଳି ପଡ଼ିଥିଲା । ସେ ଗାମୁଛାରେ ମୁହଁ ପୋଛି ତାଙ୍କ ବକ୍ତବ୍ୟ ଆରମ୍ଭ କଲେ । ମହାପାତ୍ରେ ବୁଝିଲନା, ବଉଳଗଛ ମୂଳେ କାଠଗଡ଼ ଦିଟାକୁ ଦେଖିଥିବ, ବାହାରେ ଆଠ ନ ମାସେ ହେବ ପଡ଼ିଲାଣି । କୁଆ କୋଇଲି ତ ହଗୁଛନ୍ତି । ସାହି କୁକୁରଙ୍କୁ ବାରଣ ନାହିଁ ଶଳେ ଯାଉଣୁ ଆସୁଣୁ ଗୋଡ଼ ଟେକୁଛନ୍ତି । ସେଥିକୁ ଅବଶ୍ୟ ବାଧକ ନାହିଁ । ପଡ଼ିଶା ଖାଡ଼ଙ୍ଗା

ଘର ବୋହୂଟା ବୁଝିଲାନି । ମାରୁଲୁଗା ଯାକ ଶୁଖେଇ ଦେଲା । ଏବେ କାଠରୁ ରକ୍ତ ବହୁଛି ।

ରାଧାଗୋବିନ୍ଦ ଘଡ଼ିଏ ମିଶ୍ରେଙ୍କୁ ଅନେଇଲା । ତାପରେ ନିଜ ପେଟ ଭିତ ରେ ସାଇତିଥିଲା ଭଳିଆ କଥାଟିଏ କହିଲା । ବୁଝିଲ ନା ମିଶ୍ରେ ଆପଣେ, ଦୃଚାଉଳରେ ବନ୍ଦିଦେବା, ଆପେ ଶୁଦ୍ଧି ହେଇଯିବ । ତାପରେ ଗୋଟିଏ ବାଳୁତ ପିଲାକୁ ଏପଟୁ ସେପଟ ଡ଼ିଆଁଇଦେଲେ ଦୋଷ କଟିଯିବ । ଆଉ ବେଶି ଦିନ ବାହାରେ ନ ପକେଇ ଦାଣ୍ଡ ଘର ଭିତରକୁ ନେଇଯିବା । ସେଇଠି ଶୀଘ୍ର କାମ ଆରମ୍ଭ କରିଦେବା । ତମେ ଶୁଣିଲେ ମଧ୍ୟ ଆଚମ୍ବିତ ହେବ, ମତେ ବି ଆଈ ସପନେଇ ଛନ୍ତି ହେ । କିରେ ନାତିଆ ଟୋକା କେଡ଼େ ନିରାଳମ୍ବରେ ଶୋଇପଡ଼ୁଛୁ । ଚିନ୍ତାଶୂନ୍ୟ ହେଇ ଘରେ ତ ଗଡ଼ିପଡୁଛୁ । ମୁଁ ଆଉ କେତେଦିନ ଦାଣ୍ଡରେ ପଡ଼ି ହିନସ୍ତା ହେଉଥିବି, ତମେ ଆମ ଘରକୁ ନଆସିଥିଲେ ମୁଁ ତ ଏବେ ତମ ଘରକୁ ଯାଇଥାନ୍ତି । କାଲି ଭଲ ଦିନ ଅଛି ପରା । ତମେ ଟିକେ ପାଞ୍ଜିଟା ଦେଖିଦିଅ । କାଲିକି ହିଁ ଶୁଭଟା ଦେଇ କାମ ଆରମ୍ଭ କରିଦେବା । ମୁଁ ବ୍ରହ୍ମାନନ୍ଦକୁ ଖବର ଦେଇଦେଉଛି । ମାସଟି ଲାଗିବ ।

ମିଶ୍ରେ ଘରକୁ ଆଉ ଚିତ୍ରକାର ଘରକୁ ଅଜା ନାତି ସମ୍ପର୍କ । ଏ ସମ୍ପର୍କ କିଏ ଜାଣି ଶୁଣି ଯୋଡ଼ିନି । ଆପେ ଆପେ ଯୋଡ଼ି ହେଇଯାଇଛି । ଯଜମାନ ପରିସୀମା ବଳୟରୁ ସମ୍ପର୍କ ଅତିକ୍ରମି ଯିମିତି ଏ ଲେଖା ଅସ୍ଥିମଜ୍ଜାଗତ ହେଇ ଯାଇଛି । ଅଜା ଘର ସମସ୍ତେ ଅଜା, ବଡ଼ ହେଉ କି ପିଲା ହେଉ । ସେମିତି ଚିତ୍ରକାର ଘର ସମସ୍ତେ ନାତି । ମଣିଷମାନେ ବଦଳିଗଲେ ବି ସମ୍ପର୍କ ଆଜି ଯାଏଁ ବଦଳିନି ।

ତାପରଦିନ ଗୁରୁବାର । ଲୋକେ କହନ୍ତି ଗୁରୁବାରେ କାର୍ଯ୍ୟ ସିଦ୍ଧି ହୁଏନି । କିନ୍ତୁ ବିଦ୍ୟାରମ୍ଭ ପାଇଁ ଭଲ ଦିନ । ପୁଣି ଆଈଙ୍କ ପିତୁଳୀ ହେବ । ଆଈ ତ ସାକ୍ଷାତ ଲକ୍ଷ୍ମୀ । ଗୁରୁବାରଟା ହିଁ ଠିକ୍ ହେବ ।

ପିତୁଳୀ ଗଢ଼ଣ କାମ ଆରମ୍ଭ ହେଲା ।

ରକ୍ଷାହେଇଗଲା, ରାଧାଗୋବିନ୍ଦ ଓ ବ୍ରହ୍ମାନନ୍ଦ ପିତୁଳୀ ଗଢ଼ଣ ପାଇଁ ସେମାନଙ୍କୁ ନିଆରା ଘରଟିଏ ଦରକାର କହିଲେନି ନହେଲେ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ବୁଢ଼ା ମହାରଣା ଭଳି କଷ୍ଟ ରଖିଥାନ୍ତେ । ସେମାନେ ରୁଦ୍ଧ କୋଠରୀ ଭିତରେ ଏକୋଇଶି ଦିନ ଏକୋଇଶି ରାତି ନିବୁଜ ହେଇ ରହିବେ । ପିତୁଳୀ ଗଢ଼ିବେ, ଅଜା କବାଟ ମୋଟରୁ ଖୋଲିବେନି । ବାହାରୁ ଖାଲି ଠକ୍ ଠକ୍ ଶବ୍ଦକୁ କାନେଇଥିବେ । ଆଗତୁରା କବାଟ ଖୋଲାହେଇଗଲେ ପିତୁଳୀ ଗଢ଼ଣ କାମ ଯେତିକି ସେତିକିରେ ରହିବ । ଗୋଡ଼ ନଥିବ, ହାତ ଖଣ୍ଡିଆ ହେଇଥିବ, ଆଖି ନାକ କାନ ଗଢ଼ଣ ହେଇନଥିବ । ଜଗନ୍ନାଥଙ୍କ କଥା ସିନା ଚଳିଯାଇଥିଲା, ସେ ହାତ ନଥାଇ ମଧ୍ୟ ମହାବାହୁହେଇଗଲେ , କାନ ନଥାଇ ଆରତଙ୍କ ଦୁଃଖ ଶୁଣିଲେ, ଆଖି ନଥିଲା ବୋଲି କଳା ଡୋଳା ଦେଇ ପୁଣି ଚିତ୍ର କରାଗଲା । ରାଧା ଲଳିତାଙ୍କ କଥା ନିଆରା । ପିତୁଳୀ ଅଧା ହେଲେ ରାଧା ଓ ଲଳିତା ଭଳିଆ ଆଉ ଦିଶିବେନି । ଏ ଚିତ୍ରକାର ଯାକ ସାଧାରଣ ମଣିଷ ବୋଲି ଜଗନ୍ନାଥ ଠାକୁରଙ୍କ ମହାରଣା ଭଳି ଆଚମ୍ବିତ କଥା କହିଲେନି । ସେମାନେ ଗନ୍ଧର୍ବ ହେଇଥିଲେ, ନିଜେ ବିଶ୍ୱକର୍ମାହେଇଥିଲେ କଥା ନିଆରା ହେଇଥାନ୍ତା । କିନ୍ତୁ ଯିଏ ପିତୁଳୀ ସର୍ଜନା କରେ ସେ ତ ଦେବତା, ବିଶ୍ୱକର୍ମା । ସେ ହିଁ ବିଧାତାକୁ ଇଙ୍ଗିତ ଦେଇପାରେ । ବିଧାତାର ପ୍ରତିବାଦୀ ହେଇପାରେ । ବିଧାତା ସେଭଳି ମଣିଷକୁ ହିଁ ଈର୍ଷା କରେ ।

ତାପରେ ନୀଳାମ୍ବରଙ୍କ ଘର ଭିତରେ ଆସ୍ଥାନଟିଏ ଖୋଜାହେଲା । ଲୋକବାକ ଯା ଆସ କରୁନଥିବେ, ମାଇପି ଲୋକଙ୍କ ଛାଇ ପଡୁନଥିବ, ଘର ନିବୁଜ ଥିବ । ପିଲା ପିଚିକାଙ୍କ ମଧ୍ୟ ଆତଜାତ ନଥିବ । ମିଶ୍ରେ ଆଉ ଯିବେ କୁଆଡ଼େ । ଦାଣ୍ଡଘରେ ତ ହବନି, ଶୋଇବା ଘର ତ ଗଲା, ପିଲାମାନଙ୍କ ଘରତ ଜିନିଷପତ୍ର ଭର୍ତ୍ତି, ରନ୍ଧାଘର ପାଖ ସାଉଡ଼ିରେ ତ ସମସ୍ତଙ୍କ ଚଳ ପ୍ରଚଳ, ପୋଖରୀ ପାଣି ବାଟ ସେବାଟେ, ବାଡ଼ି ପଟ ଅଗଣାରେ ତ ଗାଈଗୁହାଳ, ଠାକୁର ଘର ତ ଛୋଟିଆଟିଏ । ଆସି ଆସି ଦାଣ୍ଡ ଅଗଣାର ବାରଣ୍ଡାରେ କଥା ରହିଲା । ଖୋଲା, ଆଲୁଅ ପଡ଼ିବ, ପ୍ରଶସ୍ତ ଜାଗା । ଅଜା କହିଲେ ସେ ଆକଟ କରିଦେବେ ଟେରାବାଡ଼ ପକେଇଦେବେ ଓ ନିଜେ ବାହାରେ କୁର୍ଚ୍ଚି ପକେଇ ବସିଗଲେ ଟୋକା ଟାକିଳିଆ ଭରସିବେନି । ନିଶ୍ଚିନ୍ତିରେ କାମ ଚାଲିବ ।

ରାଧାଗୋବିନ୍ଦ କହିଲା ଠିଆ କୁରାଢ଼ୀରେ କାଠଗଡ଼ ଦିଟାକୁ ବଉଳମୂଳେ ସାଟାମ କରିଲା ପରେ ଘରଭିତରକୁ ନେଇ ଆସିବ । ଅଜା ଦୁଟାଉଳ ପଞ୍ଚାମୃତ ଯୋଗାଡ଼ କଲେ । ରାଧାଗୋବିନ୍ଦ କଣ ଗୋଟାଏ ମନ୍ତ୍ରପଢ଼ି ଦୁଟାଉଳ କାଠଗଡ଼ ଉପରେ ଏମୁଣ୍ଡୁ ସେମୁଣ୍ଡ ଇଡ଼ିଦେଲା । ତାର ନାତିଟା ଘରକୁ ଆସିଥାଏ, ତାକୁ ଲଙ୍ଗଳା କରି ଡ଼ିଆଁଇ ଦେଲା । ତାପରେ, ଗଣ୍ଡିମାରି, ଗୋଟିଏ ପାଞ୍ଚଫୁଟ ଓ ଅନ୍ୟଟି ଚାରିଫୁଟର, ଦିଟା ଗଡ଼ କାଟିଲା । କହିଲା, ଏଥର କାମ କରିବାକୁ ବାଗ ହେବ ।

ତାପରେ ଟେରାବାଡ଼ ଭିତରେ ଖୋଦେଇ କାମ ଆରମ୍ଭହେଲା । ରାଧାଗୋବିନ୍ଦ ତା ବାପାଙ୍କ ଟିପ୍ପଣୀ ବହି ସାଙ୍ଗରେ ଆଣିଥିଲା । ବାପା ଦେବରାଜ ମହାପାତ୍ର ବିଭିନ୍ନ ଭଙ୍ଗିରେ ରାଧା, ଲଳିତା, କୃଷ୍ଣ, ରାମ, ସୀତାଙ୍କ ମୂର୍ତ୍ତିର ଏକ ଗାରିଆ ଟିପ୍ପଣୀ ଲେଖିଦେଇ ଯାଇଛନ୍ତି । ଖାଲି ଭଙ୍ଗିଯାକ, ହାତର ମୁଦ୍ରାଯାକ, ଅଳଂକାର ଯାକ ଠାରି ଦେଇଛନ୍ତି । ଯିଏ ଖୋଦେଇ କରିବ ସେ ତାକୁ ଆହୁରି ବନେଇ ଚୁନେଇ ଫଳେଇବ । ରାଧାଗୋବିନ୍ଦ ଅଜାହାତକୁ ଟିପ୍ପଣୀ ଖାତାଟା ବଢ଼େଇଦେଲା । କହିଲା ବାଛ, କୋଉଟା କରିବା । ରାଧା ମୂର୍ତ୍ତି ଓ ଲଳିତା ମୂର୍ତ୍ତି ଏକା ଗଢ଼ଣର । ରାଧାଟିକିଏ ବଡ଼ ହେବେ ଆଉ ଲଳିତା ଟିକିଏ ସାନ । ରାଧା ଖାଇଲା ହାତରେ ତାମ୍ବୁଳ ଧରିବେ, ଆଉ ଲଳିତା ଧରିବେ ମୁଖବାସ । ଉଭୟଙ୍କ ଡ଼େବିରି ହାତ ଝୁଲା ରହିବ ।

ଅଜା କହିଲେ ମା ଝିଅତ, ଏକା ଛାଞ୍ଚ ରେ ପକେଇଦେ । ରହିଲାନି ସିନା ବଡ଼ ହେଇଥିଲେ ତା ମା ଭଳିଆ ଏକା ଦିଶନ୍ତା । ରାଧାଭଳିଆ ଦିଟା ପିତୁଳୀ ଯାକ କରିଦେ । ସାନବଡ଼ ରଖିବୁ । ପଛକଥା ଯାକ ଅଜାଙ୍କୁ ମନେ ପଡ଼ିଲା । ସେ ଟିକିଏ ଆନମନା ହେଇ ଗଲେ ।

ରାଧାଗୋବିନ୍ଦ ଓ ବ୍ରହ୍ମାନନ୍ଦ ଟେରାବାଡ଼ ଭିତରେ ଖୋଦେଇ ଆରମ୍ଭକଲେ ଅଜା କୁର୍ଚ୍ଚିପକେଇ ପିଣ୍ଡାରେ ବସନ୍ତି । ଗୁଳୁଗୁଳି ହେଲେ ମଝିମଝିରେ ଟେରାବାଡ଼ର କନା ଉଠେଇ ଦିଆଯାଏ । କାଠକୁ ଛେଲେଇ ଛେଲେଇ ଚୋର ପଳଖା ବାହାରକଲେ । ଆଣ୍ଠ ମଞ୍ଜ ଅଂଶତକ ରହିଲା, କୋଠେ କୋଠେ ଟିକେ ଟିକେ ଭନମ ଫାଟ । ସେ ଚଳିବ , ଅସୁବିଧା କରିବନି । ପିତୁଳୀର ମୋଟକୁ ପାଇଲା ଭଳିଆ ଚାରି ପାଲକା କଲେ, ରାଧା ଓ ଲଳିତା ଉଭୟେ ମାପରେ ସାତ ତାଳ ହେବେ । ଅଙ୍ଗାରରେ

କାଠଗଡ଼କୁ ତିନିଭାଗରେ ଠାରିଦେଲେ । ମୁଣ୍ଡରୁ ଛାତି ମଝିଲା ପର୍ଯ୍ୟନ୍ତ ଗୋଟି ଭାଗ, ଛାତିରୁ ନାଭି ତଳ ଯାଏଁ ଦ୍ୱିତୀୟ ଭାଗ ଓ ନିତମ୍ବରୁ ତଳିପାଯାଏଁ ତୃତୀୟ ଭାଗ । ପ୍ରଥମ ଭାଗରେ ମୁଣ୍ଡ ବେକ, କାନ୍ଧର ବେନି ଅଂଶ ଓ ବୁକୁର ଉପର । ଦ୍ୱିତୀୟ ଭାଗ ମଝିରେ ଅଣ୍ଟା ପାଇଁ ରୋକଡ଼ ହେଇ ପୁଣି ତଳ ଉପର ଦିଥାକିଆ ହେବ । ତୃତୀୟ ଭାଗଟା ଅନ୍ୟ ଦିଟା ଭାଗ ଅପେକ୍ଷା ଟିକିଏ ଅଧିକ ଲମ୍ବା, ଜଙ୍ଘତକ ଗୋଟିଏ ଓ ଆଣ୍ଠୁରୁ ବଳାଗଣ୍ଠି ଯାଏଁ ଗୋଟିଏ ।

ଶିଳ୍ପୀ ଧୀରେ ଧୀରେ ନିହାଣ, ବାରସି ଚଳେଇଲେ । ଅଜାଙ୍କୁ ଲାଗୁଥାଏ ସେମାନେ ଗଡ଼ଭିତରୁ ମୂର୍ତ୍ତିଦୁଇଟିକୁ ଉଭା କରଉଛନ୍ତି । ବୀଜ ଭିତରେ ବୃକ୍ଷ ଭଳି ପିତୁଳୀମାନେ ଗୋପ୍ୟ ହେଇ ଅଛନ୍ତି । ଚିତ୍ରକାରଙ୍କ ସ୍ପର୍ଶ ଲାଗିଲେ ପଲ୍ଲବିତ ହେଇଯିବେ । ପଥର ଭିତରେ ଅହଲ୍ୟା ଲୁଚିରହିଲା ଭଳି କାଠଗଣ୍ଡି ଭିତରେ ପିତୁଳୀମାନେ ଆତ୍ମଗୋପନ କରିଛନ୍ତି । ଶିଳ୍ପୀର ଆବାହନରେ ସେମାନେ ଉଭାହେଇଯିବେ । ସ୍ୱପ୍ନ ଭିତରେ ସେମାନେ ବିଦେହୀ ହେଇଛନ୍ତି । ଚିତ୍ରକାରମାନେ ସେମାନଙ୍କୁ ଦେହ ଦେବେ । ସେମାନେ ଦେହ ହିଁ ମାଗୁଛନ୍ତି । ପିତୁଳୀ ଉଠି ଆସିବେ । ଗୋପୀମାନେ ଯମୁନା ନଦୀରୁ ପାଲଟା ବସ୍ତ୍ର ପାଇଁ ଉଠି ଆସିଲା ପରି ।

କାଠରେ ପିତୁଳା ଗଢ଼ିବା ଉପନିଷଦରେ ନେତି ନେତି ଭଳିଆ । ଆହୁରି କଟାହେବ, ଆହୁରି କଟାହେବ, କାନ୍ଧରୁ, ବାହୁରୁ, ଜଙ୍ଘରୁ, ପେଟରୁ, ଗୋଡ଼ରୁ କଟାହେବ । କାରିଗରମାନେ କହୁଥିବେ ଉଁ ହୁଁ ହେଲାନି ଆହୁରି କଟା ହେବ । ଦେ କାଟ । କଟା ଚାଲିଲା । ତାପରେ ରାଧାଗୋବିନ୍ଦ ମନ ପୂରେଇ ମୂର୍ତ୍ତିଟିକୁ ଦେଖିବ, ମନ ପାଇବନି । ପୁଣି ନିଜକୁ କହିବ କାଟେ । ପାଲକା ଭାଗମାପ ସବୁ ଆସ୍ତେ ଆସ୍ତେ ବର୍ତ୍ତୁଳ ହେବ । ଏବେଳଠୁ କାଠଖୋଦେଇରେ ସଂଯମ ଆସେ । ପିତୁଳୀ ଯାକ ଝାପସା ଝାପସା ଦିଶିବେ ପୋଖରୀରୁ ଗାଧୋଇ ଓଦା ସରସର ଲୁଗାରେ ଘର ବାହୁଡୁଥିବା ମାଇକିନାଙ୍କ ଦେହ ଭଳି । ତାପରେ ନିହାଣ ମନ୍ଥର ହେଇଯାଏ । ଠକ୍ ଠାକ୍ ଶବ୍ଦ ଠୁକ୍‌ଠୁକ୍‌ରେ ପରିଣତ ହୁଏ ଯିମିତି ସଙ୍ଗୀତ ଆଳାପ କଲେ ପଦ ଯାକ ବେଳେବେଳେ ଦୀର୍ଘ ହୁଏ ତ ବେଳେବେଳେ ହ୍ରସ୍ୱ ହୁଏ । ଶେଷରେ ଠୁକ୍ ଠୁକ୍ ଶବ୍ଦ ହିଁ ସଙ୍ଗୀତମୟ ହେଇଯାଏ । କାଠୁରିଆ ପକ୍ଷୀର ଶବ୍ଦ ଭଳି ରହି ରହି ଶୁଭେ । ସେଥିରେ ସ୍ୱପ୍ନ ଭରି ହେଇଯାଏ । ବାରସି ରହିଯାଏ ହାତୁଡ଼ି ଆସେ । କାମ ଯେତେ ଆଗାଏ କାରିଗର

ନିରେଖୁ ଥିବେ ସେତେ ବେଶି, କାଠ କାଟୁଥିବେ କମ । ସେହି ନେତି ନେତି ଧାରା । ସ୍ଥୂଳରୁ ସୂକ୍ଷ୍ମକୁ ଗତି । ବାହ୍ୟରୁ ଅନ୍ତରକୁ । ଦେହରୁ ଆତ୍ମାକୁ ।

ରୂପକାର କହିବେ ଏହା ରାଧାଙ୍କ ଅସଲ ଗଢ଼ଣ ନୁହଁ । ଆହୁରି କାମ ବାକି ଅଛି । ଏମିତି କହି କହି ପୁଣି କାମରେ ଆଗେଇବେ । ନିହାଣକୁ ଧୀରେ ଧୀରେ କାଠରେ ଠୁକେଇବେ । ଲୁହାର ହାତୁଡ଼ି ଯାଇ କାଠର ମୁଗୁର ଆସେ । ନିହାଣ ବଡ଼ରୁ ଛୋଟ ହୋଇ ନହୁରୁଣୀ ହୁଏ । ତାପରେ ମୁଗୁର ବି ଅଲୋଡ଼ା ହେଇପଡ଼େ । ଶେଷକୁ ନହୁରୁଣୀ ଖାଲି ଚାଲେ । ଯେତେ ଟିପ ସରସା ହୁଏ ନହୁରୁଣୀ ଫୁଲ ଭଳି ଉଶ୍ୱାସ ଲାଗେ, ରୂପ ଯେମିତି ନହୁରୁଣୀରେ ଲେଖିହେଇ ଯାଉଥାଏ କାଠ ଉପରେ ।

ଅଜା ପିତୁଳୀମାନଙ୍କର ଅବୟବର ପ୍ରତି ଉନ୍ମେଷରେ ଶିହରି ଉଠନ୍ତି । ତାଙ୍କୁ ଲାଗେ ଶିଶୁଟିଏ ମାତୃଗର୍ଭରୁ ଜନ୍ମନେଉଛି । ତାଙ୍କୁ ଲାଗୁଛି ଲବଙ୍ଗଲତା ଶିଶୁକନ୍ୟାଟିକୁ ଜନ୍ମଦେଉଛନ୍ତି । ପ୍ରଥମେ ମୁଣ୍ଡ, ତାପରେ ଦେହ । ତା ପରେ କାନ୍ଧ ହାତ ଗୋଡ଼ ଧୀରେ ଧୀରେ ହେଇ ଜହ୍ନ ଉଇଁ ଆସୁଛି ମେଘଭିତରୁ । ଆକାଶ ପରିଷ୍କାର ହେଇଯାଉଛି । ଜ୍ୟୋସ୍ନା ଖେଳିଯାଉଛି ।

ଲବଙ୍ଗଲତା ପିତୁଳୀ ଗଢ଼ଣକାମକୁ ଯିମିତି ନିଘା ରଖିଛନ୍ତି । କାମ ପସନ୍ଦ ନହେଲେ ଚିତ୍ରକାରମାନଙ୍କୁ ସପନାନ୍ତି, କେବେ ରାଧାଗୋବିନ୍ଦକୁ ତ କେବେ ବ୍ରହ୍ମାନନ୍ଦକୁ । ରାଧାଗୋବିନ୍ଦକୁ କହନ୍ତି, ତୁ ମୋ ଡ଼େବିରିପଟ କମର ପାଖର ଭଙ୍ଗିଟା ଠିକଣା ଭାବେ କଲୁନି । ମୋର ତ ଚର୍ବି ମେଦ ଭରା ଦେହ ନୁହେଁ । ଅଣ୍ଟାଉପରେ ପରସ୍ତେ କାଠ ଛାଡ଼ି ଦେବା ମୋର ପସନ୍ଦ ହେଉନି । ତୋତେ ସେଠି ଆଉଥରେ ନିହାଣ ଲଗେଇବାକୁ ହେବ । ଖାଇଲା ପାଖ ନିତମ୍ବଟା ସାମାନ୍ୟ ଉପରକୁ ଟାଣିଲା ଭଳିଆ ହେବ । ଡ଼େବିରି ପଟ କମରରେ କୁଞ୍ଚରହିବ । ମୁଁ ପରା ଗୋପୀନାଥଙ୍କୁ ତାମ୍ବୁଳ ବଢ଼େଇଦେବି । ଦେଖିଚାହିଁ କରିବୁ । ତୋର ତ ପାକଲା ହାତ । ପୁଣି ଏମିତି ବାଟ ହୁଡୁଛୁ କାହିଁକି ?

ରାଧାଗୋବିନ୍ଦ ଛାନିଆରେ ଧଡ଼ପଡ଼ହେଇ ଉଠିପଡ଼େ । ଶେଯରେ ବସିରହେ, ପାଣି ଦିଚାରିଢ଼ୋକ ପିଏ । ଲଣ୍ଠନଟାକୁ ଟିକିଏ ତେଜିଦିଏ, ତାକୁ ରୂପମାନେ

ଦୃଶ୍ୟ ହୁଅନ୍ତି । ଯେତେ ଯେତେ ମଠ ମନ୍ଦିରରେ ସେ ପିତୁଳୀ ଗଢ଼ିଥିଲା, ଚିତ୍ରମାନ କରିଥିଲା ସମସ୍ତେ ତା ପାଖକୁ ଆସନ୍ତି । କାନ୍ଥମାନଙ୍କର ଚିତ୍ରମାନେ ସଜୀବ ହୋଇ ଉଠନ୍ତି । ସମସ୍ତେ ପଚାରନ୍ତି, ରାଧାଗୋବିନ୍ଦ! ତମର କଣ ହେଲା ? ଏତେ ଚିନ୍ତିତ କାହିଁକି ? ଏତେ ଗୁଡ଼ିଏ ପିତୁଳା ପିତୁଳୀ ସର୍ଜନା କରିସାରି ମଧ ତମେ ଏମିତି ଅଥୟ ? ରାଧାଗୋବିନ୍ଦ ସରାଗରେ ମଞ୍ଜୁଦେହରେ ହାତ ବୁଲେଇ ଆଣେ । ତା କମର ପାଖରେ ହାତ ପାପୁଲିରେ ବେଢ଼ଣ କସେ । ମଞ୍ଜୁର ନିଦ ଚାଉଁ କରି ଭାଙ୍ଗିଯାଏ । ରାଧାଗୋବିନ୍ଦଙ୍କୁ ଏମିତି ଅବସ୍ଥାରେ ଦେଖି ପ୍ରଥମେ ସେ ଲାଜେଇ ଯାଏ । ତାପରେ ମଞ୍ଜୁ ପଚାରେ, ତମର ଆଜି କଣ ହେଇଛି ? ପାଗଳ ଭଳିଆ କାହିଁକି ହେଉଛ ।

ମୁଁ ରାଧାକୁ ଖୋଜୁଛି । ମଞ୍ଜୁ ପଚାରିବ, ଏତେ ରାତିରେ ? ପୁଣି ଏଇଠି ? ତମ ରାଧାତ ମିଶ୍ରେ ଅଜାଙ୍କ ଘରେ ବଢୁଛନ୍ତି ଗୋପରେ କୃଷ୍ଣଚନ୍ଦ୍ର ବଢ଼ିଲା ପରି । କେତେ ରାଧା ତ ଗଢ଼ିଛ । କେତେ ଲଳିତା ବିଶାଖା ଚମ୍ପକଲତା ରଙ୍ଗରେଖା ତୁଙ୍ଗବିଦ୍ୟା ତ ତୁମରି ହାତରୁ ଉତୁରିଛନ୍ତି । ପୁଣି ପିତୁଳୀଟିଏ ତିଆରିବା ପାଇଁ ଏତେ ଚିନ୍ତା କଣ? ରାଧାଗୋବିନ୍ଦ ରସିକତା କରିକହିବେ, ମଞ୍ଜୁ ତୁ ଟିକିଏ ଠିଆ ହେଇପଡ଼ିଲୁ ଉଦୁବସ୍ତ୍ରହେଇ । ମୁଁ ତୋ ନିତମ୍ବକୁ ଥରେ ଦେଖିନିଏ । କୋ ଆଡ଼କୁ ବଙ୍କଉଛି । ଆଇ କଣ କହିଲାଣି ତା ଡ଼େବିରି ଅଣ୍ଟାରେ ବହଳହେଇ କାଠ ରହିଯାଇଛି । ତାକୁ କୁଆଡ଼େ ମେଦ ପରସ୍ତ ଭଳିଆ ଦିଶିଲାଣି । ମଞ୍ଜୁ ସ୍ୱାମୀଙ୍କ ଏଭଳିଆ କଥାରେ ଲାଜେଇଯିବ । କହିବ ମୋର କଉ ବୟସଟା ଅଛିଯେ ମୋତେ ଦେଖିବ । ସେ ଦିହ ଆଉ ସେମିତି କଣ ଅଛି? ମୁଁ ପରା ଲବଙ୍ଗଲତା ଆଇଙ୍କ ବୟସର ମଣିଷ । ମୋତେ ଦିକୋଡ଼ି ହେଲାଣି । ତମେ ପରା ଆସି ବୁଢ଼ାବେ ହେଲଣି । କାରିଗରଙ୍କ ଛୋପରା ବୁଦ୍ଧି ଗଲାନି, ପିଲା ଛୁଆ ଜନ୍ମ କରିକରି କୋ ନିତମ୍ବ ଅଛି ନା କମର ଅଛି । ସକାଳୁ ସଂଧ୍ୟାତ କମର କସି ଦଉଛି । କଟ କଟ ହେଉଛି । ହେ! ତମକୁ ଲାଜ ଲାଗୁନି ଏମିତିକା କଥା କହିବାକୁ । ତମେ ଆମ ଆଦ୍ୟ ଜୀବନରେ ବି ଏମିତି କେବେ କହିନ । ଏ ବୟସରେ ତମ ଆଗରେ ଉଦୁବସ୍ତ୍ର ହେଇ ଠିଆହେଲେ ରାଧାଭଳିଆ ଦିଶିବି ନା ଲଳିତା ଭଳିଆ । କୋ ଜନ୍ମରେ ରାଧାରାଣୀ ଥିବ ପରା ଏବେ ତ ଗଉଡ଼ ସାହି ସାମାନ୍ୟ ରାଧାଗଉଡୁଣୀ ଠୁଁ ବି ହୀନ । ତମ ଘରେ ଖଟି ଖଟି ମୁଁ ନୟାନ୍ତ ହେଲିଣି । ମୁଣ୍ଡରେ ପାନିଆ ଦେବାକୁ ବି ତର ରହୁନି । କେବେ ହେଲେ ମୋ ମନ ଲାଖି ଶାଢ଼ିଟିଏ ପିନ୍ଧିପାରିଲିନି । ସବୁବେଳେ ତ ରୋକଡ଼

ପଣତ । ଯେତେକ ରୂପକାର ସେତେକ ବିକଳ ଅବସ୍ଥା । ରୂପ ବିକି ବିକି କିଏ ବଡ଼ ଲୋକ ହେଲାଣି ? ପୁରୁଷ ପୁରୁଷ ଧରି ଯଉ ଚିତ୍ରକାରକୁ ସେଇ ଚିତ୍ରକାର । ଘରେ ସରସ୍ୱତୀ ରହିଲେ ଲକ୍ଷ୍ମୀ ଆସିବେ କୁଆଡୁ । ତମର ପରା ଦିଟା ଝିଅ ଶାଶୁ ଘରେ ଖଟିଲେଣି । ନାତୁଣୀ ପ୍ରେମହାରା ଟୋକିଟେ ହେଇ ବାହାରିଯିବ । ପୁଅର ବୋହୂପରା ଆସିଲାଣି । କୋ ସରାଗ ଦେଖଉଛ ? ଦେଖଉଥ କହି ଲଣ୍ଠନଟାକୁ ମିଞ୍ଜି ମିଞ୍ଜି କରିଦେଇ ମଞ୍ଜୁ ଶୋଇପଡ଼ିଲା ।

କେବଳ ମିଶ୍ରେ ଅଜାଙ୍କ ଖୋଦେଇ କାଠର ଲବଙ୍ଗଲତା ନୁହନ୍ତି । ରାଧାଗୋବିନ୍ଦ ଭାବୁଛନ୍ତି ତାଙ୍କ ଭାରିଯା ମଞ୍ଜୁ , ନାତୁଣୀ ପ୍ରେମହାରା, ବୋହୂ ଫୁଲ, ଆଉ ଯେତେକ ନାରୀ ସମସ୍ତେ ରାଧିକା । ଏ ସଂସାରଟା ତ ରାଧାମୟ । ସେମାନଙ୍କ ବାହୁ ସ୍ତନ ନିତମ୍ବ ଜଘନରେ ଆକାଶ ଛାଇହେଇ ପଡ଼ିଛି । କାହାକୁ ବା ବାଛିବେ ନିଜର ପିତୁଳୀ ବୋଲି । ପିତୁଳୀରେ ବୟସର ଅନ୍ତର ବା କଣ ?

ରାଧାଗୋବିନ୍ଦ ସକାଳୁ ଉଠିଲା । ଭାରିଯା ମଞ୍ଜୁ ରାଗରେ ମୁହଁଭାରି କରିଛି । ତାକୁ ବୋଧହୁଏ ତାଙ୍କ କଥା ପସନ୍ଦ ଯାଇନି । ନିତ୍ୟକର୍ମ ବଢ଼େଇ ସାରି ସେ ଅଜାଙ୍କ ଘରେ ସଅଳ ସଅଳ ପହଞ୍ଚିଲା । ରାଧାଙ୍କ ନିତମ୍ବ ପାଖରେ ତାର ସମସ୍ତ ଚିନ୍ତା ଓ ଚେତନା ଅଟକି ଯାଇଛି । ପିତୁଳୀ ଆଗରେ ରାଧାଗୋବିନ୍ଦ ବସିଲା । ନିଠେଇ ନିଠେଇ ନିରେଖିଲା, ସ୍ତନକୁ ଜଘନକୁ ନିତମ୍ବର ବର୍ତ୍ତୁଳତାକୁ । ଲଳିତାକୁ ବି ଚାହିଁଲା, ଗଢ଼ଣ ଏକା । ସେ ଯାହା, ବ୍ରହ୍ମାନନ୍ଦ ବି ସେଇଆ ଗଢ଼ିଛି । ସେଇ ନିତମ୍ବ ତାକୁ ମନେ ପକେଇଦେଲା । ମଞ୍ଜୁ ନୂଆବୋହୂଟିଏ ହେଇ ଆସିଥାଏ । ଷୋଡ଼ଶୀ । ଲବଙ୍ଗଲତା ଆଇଙ୍କ ସାଙ୍ଗ, ଏକାବୟସର । ଦିଜଣ ଜାକ ଗୋଟିଏ ଗାଁର ଝିଅ, ଗୋଟିଏ ସାଇର । ବୟସ ଉଣେଇଶିବିଶ ଏପାଖ ସେପାଖ ହେବ । ଦିଜଣ ବଉଳ ବନ୍ଧେଇଥିଲେ ବଉଳ ଗଛମୂଳେ ବଉଳଫୁଲକୁ ସାକ୍ଷୀରଖି । ଏକାଠି ଖେଳୁଥିଲେ ବୋହୂ ବୋହୂକା, ଯାନି ଯାତ୍ରାରେ ଏକାଠି ମଉଜ କରୁଥିଲେ । ଏକାଭଳିଆ ଆଚୁ ନାଇହେଉଥିଲେ । ଏକା ରଙ୍ଗର ଶାଢ଼ି ପିନ୍ଧୁଥିଲେ । ଦୈବଯୋଗକୁ ଏକା ଗାଁରେ ବୋହୂହେଲେ । ପୁଣି ଏକା ସାହିରେ । ଖାଲି ଫରକ ଭିତରେ ଲବଙ୍ଗଲତା ଆଇ ହେଇଗଲେ ମଞ୍ଜୁ ନାତୁଣୀ ହେଇ ରହିଗଲା ।

ରାଧାଗୋବିନ୍ଦ ଏଇଥିପାଇଁ ଭାବୁଥିଲା ଉଭୟଙ୍କର ନିତମ୍ବ ଓ ଦେହ ଗଢ଼ଣର ସାମଞ୍ଜସ୍ୟ ଥିବ । ଆଈ ଏତେ କଥା ସପନେଇଲା ଆଉ ପଦେ ଅଧିକା କଥା କହିଦେଇଥିଲେ ତ ତାଙ୍କ ଚିନ୍ତା ରହନ୍ତାନି । ନହେଲେ ମଞ୍ଜୁକୁ ସପନେଇଦେଇଥିଲେ ତ ମଞ୍ଜୁ ଓଲଟି ରାଧାଗୋବିନ୍ଦଙ୍କୁ ଶେଯରୁ ଉଠେଇ କହିଦିଅନ୍ତା । କେତେ ସରାଗରେ ପାଖକୁ ଲାଗି ଆସି କାନରେ ଫୁସ୍‌ଫୁସ୍ ହେଇ କହନ୍ତା । ହେ ଶୁଣୁଚ , ମୋ ବଉଳ ଲବଙ୍ଗମ ଆମ ମିଶ୍ରେଘର ଆଈ ଲବଙ୍ଗ, ମୋତେ ସପନେଇଛନ୍ତି । କହିଛନ୍ତି ତାଙ୍କ ପିତୁଳୀର ନିତମ୍ବ କୁଆଡ଼େ ତମେ ଠିକ୍ ଭାବେ ଗଢ଼ଣ କରିନ । ଆହୁରି କହିଛନ୍ତି, ତମକୁ ମୋ ନିତମ୍ବ ଦେଖେଇବା ପାଇଁ । ବଉଳର କଥା ଆଉ ଭାଙ୍ଗିବି କିମିତି ? ନିତମ୍ବ ଦେଖିବ ପରା ଦେଖୁନ । ମୋର ଆଉ ଲବଙ୍ଗଙ୍କ ଏକା ଭଳିଆ ତ । ରାଧାଗୋବିନ୍ଦ ଭାବୁଛି । ମଞ୍ଜୁ ତା ନୀବୀବନ୍ଧ ଖୋଲିଦିଅନ୍ତା ଅକାତରରେ । ସେ ଯେ ମଞ୍ଜୁକୁ ସେହି ଏକାଭଳିଆ କଥା କହିଲା । କିନ୍ତୁ ସବୁ କୁଆଡ଼େ ଲାଜଭିତରେ ପୋତି ହେଇଗଲା । ଅଭିମାନ ନିତମ୍ବକୁ ଘୋଡ଼େଇ ପକେଇଲା ।

ରାଧାଗୋବିନ୍ଦର ମନେପଡ଼ିଗଲା, ରଜାଙ୍କ ଉଆସ ଭିତରର ବୃନ୍ଦାବନ ଉପବନକଥା । ସେଥିରେ ଥିବା ମାର୍ବଲର ପିତୁଳୀମାନଙ୍କୁ ସେ ଦେଖିଛି । ସେମାନଙ୍କ ଗଢ଼ଣକୁ ସେ ଅନୁଭବ ବି କରିଛି । ସେଥିରେ ସୁନ୍ଦରତା ଅଛି କିନ୍ତୁ ତା ଭିତରେ ରକ୍ତ ମାଂସର କଥା ହିଁ ବାରମ୍ବାର ଅନୁରଣିତ ହେଉଛି । ରକ୍ତମାଂସର ପାର୍ଥିବ ସମ୍ବେଦନତା ଭିତରୁ ଉତ୍ତରଣ ଉପଲବ୍ଧକରିହେଉନି । ରାଧାଗୋବିନ୍ଦ ଭାବୁଛି, ପାରଳାମହାରଜା ଏତେବଡ଼ ମଣିଷ, ମାନରେ, ଜ୍ଞାନରେ ଦେଶଭକ୍ତିରେ ତାଙ୍କର ପରାକାଷ୍ଠା ଥିଲା । ଭାଷାପାଇଁ, ଜାତିପାଇଁ ସେ ତ୍ୟାଗ କରିଥିଲେ । ଅନ୍ୟପାଇଁ ଧନ ସଂପତ୍ତି ଓ ସମୟ ଅଜସ୍ର ବ୍ୟୟ କରିଛନ୍ତି । ଅଥଚ ସେ ବୁଝିପାରିଲେନି ଇଂଲଣ୍ଡ ଦେଶର ପିତୁଳୀ ଓ ଆମ ଓଡ଼ିଶୀ ପିତୁଳୀର ଫରକ କେତେ ? ଗୋଟିଏ ରକ୍ତମାଂସର ବାହ୍ୟରୂପକୁ ଗଢ଼ି ଦିଏ ଓ ଅନ୍ୟଟି ଅନ୍ତର୍ନିହିତ ଭାବଧାରାକୁ ନିଛକ ଭାବେ ଫୁଟାଏ । ଉଭୟେ ଦିଶନ୍ତି ତ ଏକାଭଳି ମଣିଷ । କିନ୍ତୁ ଚିହ୍ନରା ଗ୍ରାହକ ପାଖରେ ସେମାନେ ଭିନ୍ନ ଭିନ୍ନ । ଆମ ଓଡ଼ିଶୀ ନାୟିକାର ବୃଶାଳ ବପୁ,ଗୁଣ୍ଠୁଣି ହାତୀ ଭଳି କୁହୁଳୁ କୁହୁଳୁ ଭାବ । ତା ନିତମ୍ବକୁ କି ଦେଖିବ, ସ୍ତନ ଜଘନକୁ କି ଉପମାରେ ମଣ୍ଡିବ, ଜଙ୍ଘକୁ ଗୋଡ଼କୁ ବାହୁକୁ କଣ ବା ବର୍ଣ୍ଣିବ । ଲାଗିବ ସବୁ ତ କଳ୍ପନା ସମ୍ଭୂତ ପିତୁଳୀ, ଯେଉଁଠି ରକ୍ତ ମାଂସର ଦେହ ହାର ମାନିଯାଇଛି । ନଶ୍ୱରତା ଅମରତ୍ୱ ପାଇଯାଇଛି , ମଣିଷ ଦେବ ଦେବୀ ହେଇଯାଇଛନ୍ତି ।

ଇଂଲଣ୍ଡ ଦେଶର ପିତୁଳୀ ଭିତରେ ମାର୍ବଲ ପଥରର ଶୀତଳ ଶୀତଳ ଭାବ । ଆମ ଦେଶକୁ କଣ ଶୀତଳ କଥା ଶୋଭା ପାଏ ? ଏଠି ପରା ସବୁ ଉଷ୍ମ । ଓଡ଼ିଶା ସୂର୍ଯ୍ୟର ଦେଶ । କୋଣାର୍କର ପିତୁଳୀଟିକୁ କୁଣ୍ଢେଇ ପକେଇଲେ ଉଷ୍ମ ସ୍ନେହ ଅଜାଡ଼ି ହେଇ ପଡ଼ିବ । ଘର୍ମାକ୍ତ ନହେଲେ ପ୍ରେମର କଉଡ଼ି ମିଳିବ କୁଆଡୁ । ମାର୍ବଲ ମୂର୍ତ୍ତି ଦେଖିଲେ ମୋତେ ଲାଗେ ରକ୍ତହୀନ ଏକ ନିର୍ବେଦ ଅଭିବ୍ୟକ୍ତି ଭଳି । ଏତେ ବଡ଼ ମହାରଜା ହେଇ ଶେଷରେ ଶୀତଳ ମାୟାରେ ଘାଣ୍ଟି ହେଲେ । ରାଧାଗୋବିନ୍ଦ ଭାବି ଯାଉଛି । ଉପବନରେ ସିନା ମାର୍ବଲ ପିତୁଳୀର ମଣ୍ଡଣି ହେଇଗଲା, ହେଲେ ତାଙ୍କ ଉଆସ ଭିତରେ ମନ୍ଦିରରେ ଆମ ବାପା ଗୋସେଇଁ ବାପାଙ୍କ ହାତକାମ । ଆମ ପିତୁଳୀ ପରା ଠାକୁର । ମହାରଜା ଏକଥା ନିଶ୍ଚେ ଜାଣିଛନ୍ତି । ଏଠି ଠାକୁର ହେବାକୁ ହେଲେ ମାର୍ବଲର ସ୍ନିଗ୍ଧତା ଚଳିବନି ।

ମାର୍ବଲର ଶ୍ରୀରାଧା ପିତୁଳୀ ରାଧାଗୋବିନ୍ଦ ଜୀବନରେ କେବେ ଦେଖିନି । ଭାବିଲା ଏ ପ୍ରସଙ୍ଗଟା ଅଜାଙ୍କୁ ପଚାରିବ । ତାପରେ ଶଙ୍କା କଲା,ଅଜା ରଜାଙ୍କ ପୁରୋହିତ ଘର ଲୋକ ତ, ସେ ଭାବିବେ କଣ ? ଏଣୁ ନିଜ ଭିତରେ ନିଜ ମନକଥା ଚାପି ରଖିଲା । କିନ୍ତୁ ପେଟ ଗୋଳେଇ ଘାଣ୍ଟି ହେଲା । ଶେଷରେ ପଚାରିଦେଲା, ଅଜା ମୋଟରୁ ରାଗିଲେନି । ବରଂ ତା ମନକୁ ପାଇଲା ପରି କଥା କହିଲେ , ବୁଝିଲୁ ରାଧାଗୋବିନ୍ଦ, ବୃନ୍ଦାବନ ଉପବନର ମୂର୍ତ୍ତି ଯାକ ଲଣ୍ଡନର ବେଶ୍ୟା ମାଇକିନା ଯାକରେ । ରଜାଙ୍କ ଉପବନ ଉପଭୋଗର ଜାଗା , ଏଠି ରଜାରାଣୀ ବିହାର କରିବେ । ବେଶ୍ୟାମାନଙ୍କ ପିତୁଳୀ ରହିବନି ତ, ରାଧା ଲଳିତା ମହାପ୍ରୁ ରହିବେ ବୋଲି ଭାବୁଚୁ ? ରାଧାଗୋବିନ୍ଦ ପଚାରିଲା, ଅଜା ତମକୁ ଏ ପିତୁଳୀଙ୍କ ଗଢ଼ଣ କଣ ପସନ୍ଦ ଲାଗୁଛି । ବିଲାତି ମାଇକିନା ଯାକରେ ସେଠି ସରସତା କାହିଁ ? ଏଡ଼େ ଏଡ଼େ ପେଣ୍ଡା, ଏଡ଼େ ଏଡ଼େ ଜଙ୍ଘ, ତାକୁ ଚାହିଁ ନିତମ୍ବ କାହିଁ ? ଛାତି କାହିଁ । ହାତରେ ତ ପଡ଼ିବନି । ମାଇକିନା ହେଇଥିବ, ଜଙ୍ଘା ଲସର ପସର ହେଉଥିବ, ଛାତିରେ ଅମୃତ ଭାଣ୍ଡ ରଖିଥିବ, ଗାଲ ଫାଲୁକା ହେଇଥିବ, ଜଘନ କଥା ଛାଡ଼ । ତା ହେଲେ ସିନା ପସନ୍ଦ ହେବ ।

ରାଧାଗୋବିନ୍ଦର ଏଭଳି କଥାରେ ଅଜା ଯିମିତି ଚହଲି ଗଲେ । ଭାବିଲେ ରଜା ଆଡ଼କୁ କଥା ଚାଲିଯିବ ସୁବିଧା ନୁହଁ । ନିଜକୁ ସଂଯତ କରିନେଇ ରାଧାଗୋବିନ୍ଦକୁ ଉପଦେଶ ଦେବା ଛଳରେ କହିଲେ, ଦେ, ସେଥିରେ ତୁ ପଶନା,

ଆମ ରାଧାରାଣୀ ଓ ଲଳିତାଙ୍କ କଥା ବୁଝ । ଦେଖ ଓଡ଼ିଶୀ ଧରଣରୁ ଧାରେ ଖସିବୁନି । ରାଧାଗୋବିନ୍ଦ କହିଲା, ଆମ ବଂଶିକ ପରଂପରା ଯାହା ତାକୁ ଆମେ କିମିତି ଛାଡ଼ିଦେବା ।

ଟେରାବାଡ଼ ଭିତରେ ରାଧା ଓ ଲଳିତାଙ୍କ କାମ ଆଠଣା ଦଶଣା ପର୍ଯ୍ୟନ୍ତ ହେଇଗଲାଣି । କାରିଗରମାନେ ଶେଷ ପର୍ଯ୍ୟନ୍ତ ସେଇଆ ହିଁ କହୁଥିବେ । ସେମାନେ ଦଶଣା ବାରଣା ପର୍ଯ୍ୟନ୍ତ ଯିବେ । ସେଇଠି ଅଟକି ଯିବେ । କାରିଗରଙ୍କ ଧାରଣା ଭଗବାନ ହିଁ ଷୋହଳ କଳା, ସେଥିରୁ କଳାଏ ନନ୍ଦବଳା । କିଏ ହେଲେ ସମ୍ପୂର୍ଣ୍ଣ ନୁହଁନ୍ତି । ସେଇଥିପାଇଁ ଜଗନ୍ନାଥଙ୍କୁ ଖଣ୍ଡିଆ କରି କାରିଗର ଛାଡ଼ିଦେଇଛି । ଯିଏ ସମ୍ପୂର୍ଣ୍ଣ ସେ ତ ବିନ୍ଦୁଟିଏ । ତାର ସ୍ୱରୂପ ପୁଣି କଣ ? ପୁର୍ଣ୍ଣତାର ରୂପହେଲା ଅରୂପ ଅବ୍ୟକ୍ତ ଅଚିନ୍ତ୍ୟ ଅଗୋଚର, ଏକ ଉଦ୍‌ଭାସିତ ସ୍ଥିତି, ସମ୍ପୂର୍ଣ୍ଣ ଉଜ୍ଜ୍ୱଳ ବା ଅନ୍ଧାର । ଏଣୁ ଏ ଅରୂପକୁ ସାକାର କରିବାକୁ ପ୍ରୟାସ କରୁଥିବା ସବୁ ରୂପ ସବୁବେଳେ ଅପୂର୍ଣ୍ଣ ।

ରାଧାରାଣୀ ପୂର୍ଣ୍ଣଗର୍ଭା, ମଞ୍ଜୁଳା, ରାସେଶ୍ୱରୀ । ଏଣୁ ପିତୁଳୀର ଅଙ୍ଗ ସୌଷ୍ଠବରେ ମାଧୁର୍ଯ୍ୟ ଭାବର, ରସଘନତାର, ଉତ୍ତାଳ ଶୃଙ୍ଗାରୀ ଭାବର ସ୍ଫୁରଣ ରହିବା ସମୀଚୀନ ହେବ । ସ୍ତନ ଜଘନ ନିତମ୍ବ ଗ୍ରୀବା ନିଖୁଣ ହାତର କାରିଗରି ସ୍ପର୍ଶରେ ବିକଶିତ ହେଲେ ପିତୁଳୀ ପ୍ରାଣବନ୍ତ ହେବ । କାରିଗର ନିଜର କଳାତ୍ମକ ସୃଷ୍ଟିରେ ନାରୀକୁ ତାର ନାଯ୍ୟ ସୌଷ୍ଠବ ଲାବଣ୍ୟ ଓ ପ୍ରେମମୟତା ଦେବାରେ କେବେ କୁଣ୍ଠା କରିନି , ଯିମିତି କୁଣ୍ଠା କରିନି ଉପେନ୍ଦ୍ର ଭଞ୍ଜେ ତାର ନାରୀମାନଙ୍କୁ ବର୍ଣ୍ଣିବାରେ । ସେମାନଙ୍କ ଅଙ୍ଗରେ ସେ ଜହ୍ନରଜ୍ୟୋସ୍ନା, ବସନ୍ତର ମଳୟ, ଫୁଲମାନଙ୍କର ମହକ ଭରିଦେବାରେ କେବେ ଦ୍ୱିଧା କରିନି । କବି ରକ୍ତମାଂସର ଦେହକୁ ଦିବ୍ୟ ପ୍ରତିମାରେ ରୂପାନ୍ତରିତ କରିଦେଇଛି । ଉପମାରେ ପରିପୂର୍ଣ୍ଣ କରିଦେଇଛି ବର୍ଣ୍ଣନା । ସବୁ ଯୁଗରେ ନାରୀ ହିଁ ସ୍ରଷ୍ଟାର ନିୟତରେ ସ୍ଥାନିତ ହେଇଛି । ତାର ଭାବରାଜ୍ୟରେ ଶୀର୍ଷ ଆସନ ଆବୋରି ବସିଛି । ଆକାଶ ଭଳି ବିକଶିତ ହେଇଛି । ରୂପରେ ଓ ଗନ୍ଧରେ ଚଉଦିଗ ମହକେଇ ଦେଇଛି ।

ଏ ରାଧାମୟ ବିଶ୍ୱରେ ରାଧାଙ୍କ ପିତୁଳୀ ସର୍ଜ୍ଜନା କଲାବେଳେ ଯେତିକି ସଚେତନତା, ଯେତିକି ବିଦଗ୍ଧତା, ଯେତିକି ରସୋତ୍ତୀର୍ଣ୍ଣ ମାନସିକତା ଆବଶ୍ୟକ,

ତାର କାଣିଚାଏ ଜଣା ହେଇଗଲେ ରାଧା ଅସହାୟା ହେଇ ପଡ଼ିବେ । କୃଷ୍ଣଙ୍କ ପାଖରୁ ନିଜର ଅଙ୍ଗ ବୈକଲ୍ୟ ପାଇଁ ପ୍ରତ୍ୟାଖ୍ୟାତା ହେଇଯିବା ଭୟରେ ଶଙ୍କିତା ହେଇପଡ଼ିବେ ।

ରାଧାଗୋବିନ୍ଦ ଖୋଦେଇ କରିଚାଲିଛି । ତାର ମନମୂନ ଏକାଗ୍ର କରି । ତାର ନିଷ୍ଠା ଓ ବିଶ୍ୱାସର ଭରସାରେ ନୀଳାମ୍ବର ମିଶ୍ରେ ସ୍ୱପ୍ନ ଦେଖି ଚାଲିଛନ୍ତି । ତାଙ୍କର ପ୍ରାଣମୟୀ ଲବଙ୍ଗଲତାର । ଲବଙ୍ଗଲତାର ମୃଣାଳ ଭଳି ବାହୁ, କମ୍ବୁ ଭଳି ଗ୍ରୀବା, ଡ଼ମରୁ ଭଳି କଟି, ଦଧିଭାଣ୍ଡ ଭଳି ନିତମ୍ବ, କଳସ ଭଳି ସ୍ତନ ଯୁଗଳ, ଓଲଟ ରମ୍ଭା ଗଛ ଭଳି ଜଙ୍ଘର ଭାବନା ମିଶ୍ରେଙ୍କ ସ୍ଥିତିକୁ, ତା ବିପୁଳାୟିତ ଆହ୍ଲାଦନ ଭିତରେ ବେଢ଼େଇ ଆଣୁଛି । ମିଶ୍ରେ ଅନୁମାନ କରୁଛନ୍ତି ଏ ସବୁ ଥିରୁ ରସଚୟନ କରି ରାଧାଗୋବିନ୍ଦ ପିତୁଳୀ ଗଢୁଛି । ସେ ପୁଣି ପିତୁଳୀର ଗଢ଼ଣରେ ଭରିଦେବ ତା ଭାରିଯା ମଞ୍ଜୁର ଲାଳିତ୍ୟ ଓ ଆଭା । ଯେତେ ରାଧା ବୋଲି କହ, ଲଳିତା କହ, ସେ ପ୍ରଥମେ ସ୍ରଷ୍ଟାର ହିଁ ମାନସପ୍ରତିମା । ସେ ପ୍ରତିମାର ପ୍ରତିଟି ଛନ୍ଦରେ ପ୍ରତିଟି ସୌଷ୍ଠବରେ ନିଜର, ଅତି ନିଜର ଯାହାକୁ ସେ ଆଘ୍ରାଣ କରିଥାଏ, ଯାହାର ସେ ରସାସ୍ୱାଦନ କରିଥାଏ, ତାକୁ ହିଁ ଚାକ୍ଷୁଷ କରେ । ପିତୁଳା ଖୋଦେଇଲାବେଳେ ସେ ଅନୁଭବ କରେ ତାର ନିର୍ଜୀବ ପିତୁଳୀ ଚଂଚଳିତ ହେଇଯାଉଛି ଓ ସେ ତାର ବାହୁଲତାରେ ଛନ୍ଦି ହେଇଯାଉଛି । ସ୍ରଷ୍ଟା ନିଜ ସୃଷ୍ଟିର ମାୟାରେ ନିଜେ କବଳିତ ହେଇପଡ଼େ ବିଧାତା ଭଳି । ସେ ତା ସୃଷ୍ଟି ଭିତରେ ଦୃଶ୍ୟମାନ ନୁହେଁ । ରାଧାପିତୁଳୀ ଗଢ଼ି ସାରିଲା ପରେ କିଏ ବା କାହିଁକି କହିବ ଏ ପ୍ରତିମା କାରିଗରର ଭାରିଯା ମଞ୍ଜୁଲତାର ବୋଲି । କାରିଗର ରାଧାଗୋବିନ୍ଦ ଲବଙ୍ଗଲତାଙ୍କ ଅଙ୍ଗ ସୌଷ୍ଠବ ବା କିମିତି ଦେଖିଲା, କିମିତି ଘେନିଲା ? କିଏ କାହିଁକି ଜାଣିବ ଏ ସୃଷ୍ଟିର ପ୍ରକ୍ରିୟା ଭିତରେ ଏତେ ସ୍ୱପ୍ନ ଅଛି ଓ ସ୍ୱପ୍ନ ସବୁ ଅଦୃଶ୍ୟକୁ ଦୃଶ୍ୟମାନ କରୁଛି । ସ୍ୱପ୍ନର ବିଚିତ୍ର ଜାଲରେ ଅଯୌକ୍ତିକତା ଅଛି ବୋଲି ଧରାପଡ଼େନି । ସ୍ୱପ୍ନ ଯାହାକୁ ଆବୋରି ବସେ ସେ ସତ୍ୟ ହେଇଯାଏ ।

ରାଧାଗୋବିନ୍ଦ କେବେ ତା ବାପା କହିଥିବା ପ୍ରସଙ୍ଗଟିଏ ମନେ ପକେଇଲା । ରଜା କାରିଗରକୁ କହିଥାନ୍ତି, ନାୟିକାର ପିତୁଳୀଟିଏ ଗଢ଼ିଦେବାପାଇଁ । ନଅର ଭିତରେ ଏମିତି ତ କେତେ ପିତୁଳୀ ଅଛି । ମନ୍ଦିରରେ ବି କମ୍ ନୁହେଁ । କାରିଗର ତେଣୁ ଭାବିଲା କଣ କଲେ ତା ପିତୁଳୀ ସବୁଠୁ ନିଆରା ହେବ ଓ ରଜାଙ୍କ ମନ ପସନ୍ଦ ହେବ । ସେ ପିତୁଳୀଟିଏ ଗଢ଼ିଲା । ତାର ବାମ ଜଙ୍ଘରେ ତିଳଚିହ୍ନଟିଏ ଅଙ୍କିଦେଲା ।

ପିତୁଳୀ ନେଇ ରଜାଙ୍କ ପାଖରେ ହାଜର ହେଲା, ରଜା ପିତୁଳୀ ଦେଖିଲେ କିନ୍ତୁ ଅସଲ କଥା ହେଜିପାରିଲେନି । କହିଲେ କାରିଗରକୁ ଭଣ୍ଡାର ଘରୁ ଗୋଟିଏ ସ୍ୱର୍ଣ୍ଣ ମୁଦ୍ରା ଦେଇଦିଅ । କାରିଗରର ମନ ଫିକା ପଡ଼ିଗଲା । ସେ ତାର ପିତୁଳୀଟି ରାଜାଙ୍କୁ ଭେଟିଦେବାପାଇଁ ଅମଙ୍ଗ ହେଲା । ରଜା କହିଲେ, କାରିଗର ଯଦି ଅରାଜି ହେଉଛି ତାକୁ ଦୁଇଟି ସ୍ୱର୍ଣ୍ଣ ମୁଦ୍ରା ଦେଇଦିଅ । କାରିଗରର ମନ ଆହୁରି ଭାଙ୍ଗିପଡ଼ିଲା । ସେ ହାତ ଯୋଡ଼ି ରଜାଙ୍କୁ କହିଲା ମଣିମା ମୋତେ କ୍ଷମା କରନ୍ତୁ, ଇଏ ମୋର ଅତି ଆଦରର ପ୍ରାଣ ପିତୁଳୀ । ତାକୁ ହାତଛଡ଼ା କରିପାରିବିନି । ଆପଣ ରସିକ ପ୍ରବର, ଚିହ୍ନରା ଗ୍ରାହକ ଏଣୁ ଆପଣଙ୍କୁ ମୋ କାରିଗରି ଦେଖେଇବାକୁ ଆଣିଥିଲି । ଆଦେଶ ହେଉ ମୁଁ ଫେରେଇ ନେଇଯାଏ । ସେ ପିତୁଳୀଟିକୁ ଗାମୁଛାରେ ଗୁଡ଼େଇ କାଖତଳେ ଯାକି ଘର ଫେରିଲା । ବାଟରେ ସୁନାରି ସାଙ୍ଗ ସାଥିରେ ଦେଖାହେଲା । ଦିହେଁ ସୁନାରି ଘର ପିଣ୍ଡାରେ ବସି ଦୁଃଖ ସୁଖ ହେଲେ । ସୁନାରି ପଚାରିଲା ଭାଇ ଏକୁ କଣ ଧରିଚ ? କାରିଗର ସୁନାରିକୁ ସବୁ କଥା କହିଗଲା । ସୁନାରି ଦେଖିବାପାଇଁ ଚାହିଁଲା । କାରିଗର ଗାମୁଛା ଖୋଲିଲା ଥର ଥର ହାତରେ ପିତୁଳୀଟିକୁ ସୁନାରି କୋଳରେ ଦେଲା । ସୁନାରି ଖୁବ୍ ନିରେଖି ନିରେଖି ଦେଖିଲା । ସେବି ତ ଜଣେ କାରିଗର , ରସିକ ବିନ୍ଧାଣି । ପଚାରିଲା, ଭାଇ ଏ ତିଳ ଚିହ୍ନ କୁଆଡୁ ଆଣିଲ । ତମେ କଣ ଏ ନାୟିକାକୁ ଦେଖିଚ ? କାରିଗର ମନରେ ଓ ପ୍ରାଣରେ ଯିମିତି ଆଶାର ଜୁଆର ଖେଳିଗଲା । ସେ ଗଦ୍‌ଗଦ୍ ହେଇ ସୁନାରିକୁ କୁଣ୍ଢେଇ ପକେଇଲା, କହିଲା ଭାଇ ଗୁଣ ଚିହ୍ନେ ଗୁଣିଆ । ଏ ପିତୁଳୀକୁ ରଖିବ ଯଦି ରଖ ।

ଚିହ୍ନରା ଗ୍ରାହକ ହେଲେ ସ୍ରଷ୍ଟା ମନର ଭାଷା ବୁଝି ହୁଏ । ସୁନାର ମୂଲ୍ୟରେ କଳାସୃଷ୍ଟିକୁ ତଉଲି ହୁଏନା । କାରିଗର ତା କଳାରେ ଏମିତି କଣ ଖଞ୍ଜିଦେଇଥାଏ ଯେ ସେଇଠି ହିଁ ବିଶ୍ୱର ସବୁ ଆଖି ଲାଖିଯାଏ । ସେଇଠି ହିଁ ଦିନ ରାତି ଅଟକି ରହେ । ସେହି ସନ୍ତକଟି ହିଁ ତାର ପ୍ରାଣ । ରାଧାଗୋବିନ୍ଦ ମନେମନେ କଳ୍ପନା କରିଥିଲା ସେ ଶ୍ରୀରାଧାଙ୍କ ବାମ ଜଙ୍ଘରେ ତିଳଚିହ୍ନଟିଏ ବନକ ବେଳେ ଆଙ୍କିଦେବ । ଅଜା ପଛେ ଯାହା ଭାବନ୍ତୁ । ଏତିକି ସ୍ୱାଧୀନତା ତାର କଣ ନାହିଁ ?

ମଞ୍ଜୁକୁ ଦେଖିବା ଓ ଲବଙ୍ଗଲତାର ଅଙ୍ଗ ବିଭାବକୁ ସପନେଇବା ଏକା କଥା । ମଞ୍ଜୁତ କହିଛି ତା ବଉଳ ଲବଙ୍ଗଲତା ତା ଭଳି । ଲବଙ୍ଗଲତା ଆଗରୁ ତ ସପନେଇଛନ୍ତି ମଞ୍ଜୁର ନିତମ୍ବ ଗଢ଼ଣରେ ପିତୁଳୀ ଗଢ଼ିବାପାଇଁ । ଆଉ ଏବେ ତିଳ ଚିହ୍ନ

ତ । କିଏ କଳିପାରିବ ଏ ସ୍ୱପ୍ନ କେତେ ଦୀର୍ଘ !

କିନ୍ତୁ ଶିଳ୍ପୀ କାଳର ଉଜାଣି ସ୍ରୋତରେ ପହଁରି ପାରେ । ଉସ୍ୱରେ ଅନାୟାସରେ ପହଞ୍ଚିପାରେ । ତା ପାଇଁ ସମୟର ଅବକ୍ଷୟ ଅମୂଳକ । ସେ ଦେଖେ ପୁଣି ଦେଖୁ ଦେଖୁ ସ୍ୱପ୍ନ ରାଜ୍ୟକୁ ଚାଲିଯାଏ । ପୁଣି ଦେଖେ, ରକ୍ତ ମାଂସର ଦେହ ମନ କିମିତି ପ୍ରତିମାରେ ଯୌବନାନ୍ୱିତ ହେଇଯାଉଛି । ଏ ଶକ୍ତିର ସେ ହିଁ ଅଧିକାରୀ । ବିଧାତା ନୁହଁନ୍ତି । ଏକ ଅବକ୍ଷୟିତ ଦେହରେ ଯୌବନର ଲହଡ଼ା ଛୁଟେଇ ଦେବାରେ ବିଧାତା ବି ଅସମର୍ଥ । ବିଧାତା ପ୍ରୀତ ହେଲେ ମୃତ୍ୟୁ ଯାଚିବେ । କହିବେ ତୋର ଅଲୋଡ଼ା ଦେହ ମତେ ଦେଇଦେ ମୁଁ ତୋତେ ଯୌବନ ଦେବି । କାରିଗର କିନ୍ତୁ ସେକଥା କହିବନି । କହିବ ମୁଁ ତୋତେ ଏଇ ଦେହରେ ହିଁ ଯୌବନ ଭରି ଦେବି, ଆ'ମୋ ହାତକୁ ନିହାଣ ମୁଗୁର ବଢ଼େଇଦେ । ରଙ୍ଗ ସଢ଼େଇ ଦେ, ତୂଳୀ ଦେ, ମୁଁ ରଚିଦିଏ ସୂର୍ଯ୍ୟାସ୍ତ ଭିତରେ ଏକ ନୂଆ ସକାଳର ସୂର୍ଯ୍ୟୋଦୟ । ରାଧାଗୋବିନ୍ଦର ଦାୟିତ୍ୱ ଅପରିସୀମ । ସେ ଖଣ୍ଡା ଧାରରେ ଚାଲିଲା ଭଳିଆ ଚାଲୁଥାଏ । ବ୍ରହ୍ମାନନ୍ଦ କାରିଗର ହେଲେ ମଧ୍ଯ ତା ଆଗଲେ ପିଲା । ସେ ପରଂପରାର ସଂଯମୀ ଡ଼େଣାରେ ଉଡ଼ିବାକୁ ବାଧ୍ୟ ହୁଏ । ଲଳିତା ଗଢୁଚି ତ ତେଣୁ ରାଧାଙ୍କୁ ଆଶ୍ରା କରେ ।

ରାଧାଗୋବିନ୍ଦ କହେ, ହେ ମାନମୟୀ ରାଧା ମୋ କଳ୍ପନାରେ ଧରା ଦିଅ ମଞ୍ଜୁଲତା ଭଳି । ସେ ମନେମନେ ସଙ୍କଳ୍ପ କରେ ମୋ ମଞ୍ଜୁଲତାକୁ ହିଁ ରାଧାରେ ବଦଳେଇ ଦେବି । ତାର ସ୍ତିମିତ ସ୍ତନଯୁଗଳକୁ ଉତ୍ତାଳ କରି ଖୋଦେଇ କରିଦେବି, ତାର ଜଘନକୁ ଆବେଗର ଫେନକରେ ଗୁମ୍ଫିତ କରିବି । ତାର ଥବିର ନିତମ୍ବରେ ଭରି ଦେବି ଅନେଶ୍ୱତ କୋଟି ମାୟା । ମୁଁ ଶିଳ୍ପୀ, ମୁଁ ସ୍ରଷ୍ଟା, ମୁଁ ପାରିବି । ମୁଁ ହିଁ ପାରିବି । ଆସ ଯେତେ ଉପମା ଉପମେୟ ଅଛ, ଆସ । ଯେତେ ଜ୍ୟୋସ୍ନା ମଳୟ ବସନ୍ତ ଅଛ, ଆସ । ମୟୂର ମୟୂରୀ ସେମାନଙ୍କ ପୁଚ୍ଛର ବର୍ଣ୍ଣିଳ ପାଟବ, ଚଂପା ମଲ୍ଲି ମାଳତୀ କଦମ୍ବ ବଉଳର ବାସ୍ନା, ଆସ । ଆସ ଅଧାମ ସର ଲହୁଣୀର କୋମଳ କାରୁଣ୍ୟ । ଆସ ଯେତେ ବର୍ତ୍ତୁଳତା ସୁଠାମତା ଘନତା ସାନ୍ଦ୍ରତା, ଆସ ଯେତେ ଛନ୍ଦ, ଯେତେ ସରାଗ ସବୁ ଆସ । ମୁଁ ସମସ୍ତଙ୍କୁ ଏକାକାର କରି ଲେପିଦେବି ରାଧାଙ୍କ ସର୍ବାଙ୍ଗରେ । ନାରୀ ତ ରୂପର ଦର୍ପଣ । ତେଣୁ ତମେ ସବୁ ପ୍ରତିବିମ୍ବିତ ହେଇ ଯାଅ ମୋ ପିତୁଳୀ ଦେହରେ ।

ରାଧାଗୋବିନ୍ଦ ଏବେ ଆଉ ସାମାନ୍ୟ କାରିଗର ନୁହେଁ । ନିହାଣ ନହୁରୁଣୀର କେବଳ ମାଲିକ ନୁହେଁ । ସେ ଏବେ ଏକ ଉତ୍ତରିତ ଦିବ୍ୟ ସତ୍ତା । ସେଇଥିପାଇଁ ତା ମୁହଁରୁ ଏଭଳି ଭାଷାର ନିରନ୍ତର ସ୍ଫୁରଣ ହେଉଛି । ସ୍ରଷ୍ଟାର ଆସନ ବିକ୍ରମାଦିତ୍ୟର ସ୍ୱପ୍ନ ସିଂହାସନ ଭଳି, ରମଣର ଶୀର୍ଷ ବିନ୍ଦୁ ଭଳି, ଧ୍ୟାନର ଚୂଡ଼ାଗ୍ର ଭଳି । ଥରେ ସେଠି ବିରାଜିଲେ, ରୋଗ ଶୋକର ଭୟ ରହେନି । ଏକ ଅନିର୍ବଚନୀୟତାରେ ମଜ୍ଜି ରହିଯାଏ ବ୍ୟକ୍ତିସତ୍ତା ।

ରାଧାଗୋବିନ୍ଦ ସେଭଳି ଏକ ସ୍ଥିତିରେ ପହଞ୍ଚିଗଲାଣି । ତା ସାଙ୍ଗରେ ସେ ନେଇଛି ବ୍ରହ୍ମାନନ୍ଦ ନୀଳାମ୍ବର ମଞ୍ଜୁଲତା ଓ ଲବଙ୍ଗଲତା । ଏ ସମସ୍ତେ ତାର ଅନୁଭୂତିର ମଧୁଭାଣ୍ଡରୁ କାଣିଚାଏ କାଣିଚାଏ ପାଇଛନ୍ତି । ସେତିକିରେ ସେମାନେ ବିହ୍ୱଳିତ । ସେମାନେ ସେତିକିରେ ନାଚୁଛନ୍ତି, ନିଜ ସତ୍ତା ସତେ ଯିମିତି ହରେଇ ବସୁଛନ୍ତି । ସେମାନେ ନିଜ ନିଜର ନୟନ ପିତୁଳୀମାନଙ୍କୁ ଶ୍ରେଷ୍ଠ ବୋଲି ଭାବିନେଇଛନ୍ତି । ନୀଳାମ୍ବର ଲବଙ୍ଗଲତାକୁ ହିଁ ଦିନରାତି ସ୍ୱପ୍ନ ଦେଖୁଛନ୍ତି । ସେ ସ୍ମୃତିର ମହେନ୍ଦ୍ରତନୟାରେ ନିତ୍ୟ ସ୍ନାନ କରି ନିହାଣର ଠକ୍‌ଠକ୍ ଶବ୍ଦରୁ ରୂପର ସଂଯୋଜନା କରୁଛନ୍ତି । ରୂପର ପ୍ରାକ୍ଆଧାର ହେଲା ସଙ୍ଗୀତ । ମଞ୍ଜୁଲତା ରାଧାଗୋବିନ୍ଦଙ୍କ ଅନ୍ୟମନସ୍କତାରୁ ଧରିନେଇଛନ୍ତି ତାଙ୍କ ସ୍ୱାମୀ ତାଙ୍କ ଭିତରେ, ତାଙ୍କ ଦେହ ଓ ମନରେ ଲବଙ୍ଗଲତାକୁ ହିଁ ଖୋଜୁଛନ୍ତି । ବ୍ରହ୍ମାନନ୍ଦ ତ ଯୁବକ । ତାର ନବବିବାହିତା ପତ୍ନୀର ଅପହଞ୍ଚ କଳ୍ପନା ବିଳାସ ଭିତରେ ସନ୍ଦିଗ୍ଧତା ସହ ସେ ଲଳିତାର ସନ୍ଧାନରେ ଅଛି ।

ରାଧାଗୋବିନ୍ଦ ଖୋଦେଇ କରିଚାଲିଛି । ରାଧାରାଣୀ ଏବେ ହାଣ୍ଡିରେ ଭାତ ଭଳି ବିଉଷିଲେଣି । ତାଙ୍କର ଅଙ୍ଗ ସବୁ ଦୃଶ୍ୟ ହେଲାଣି । ପାଖରେ ତାଙ୍କର ଚିର ସହଚରୀ ଲଳିତା, କନ୍ୟା ଲଳିତା ଓ ଅନ୍ୟ ଏକ ନାରୀ ଲଳିତା । ସବୁ ଲଳିତା ତ ଏକ । ସେ ସେହି ଏକା ଲଳିତାକୁ ହିଁ ଏମିତି ଭିନ୍ନ ଭିନ୍ନ ଦେଖୁଛି । ରାଧାଗୋବିନ୍ଦ ରାଧାଙ୍କୁ ଠିଆ କରଉଛି । ବେଳେବେଳେ ପିଠି ପାଖ ଖୋଦେଇବା ଥିଲେ କୋଳ ଉପରେ ମୁହଁ ମାଡ଼ି ଶୁଆଇ ଦେଉଛି । ସେ ଅନୁଭବ ତାର, ନୀଳାମ୍ବରଙ୍କର ନୁହେଁ । ତାର ଦୁଃଖ ହିଁ ସେତିକି । ସେ ଭାବୁଛି ତାର ଅନୁଭବ ଅଙ୍ଗାକୁ ସଂଚରି ଯାଉ । ସେ ବି ରାଧାଙ୍କର ଅଙ୍ଗ ସ୍ପର୍ଶ ଘେନନ୍ତୁ । ନୀଳାମ୍ବରଙ୍କର କିନ୍ତୁ ଅସୂୟା ଆସୁଛି । ସେ ଟେରାବାଡ଼ କଣେ ଦେଖୁଛନ୍ତି ରାଧାଗୋବିନ୍ଦ ତାଙ୍କ ରାଧାରାଣୀଙ୍କୁ ଅଙ୍କଶାୟିନୀ କରିସାରିଲାଣି,

ସେ ନାଚାର । ପିତୁଳୀ କାରିଗର ପାଖରେ ଥିଲା ଯାକ କାରିଗରର । କାରିଗର ଯାହା କରୁ ପଛକେ କାହାର କିଛି କହିବାର ନଥାଏ । ଅବଶ୍ୟ ଯିଏ ଯାହା ଭାବିବାରେ ବାଧକ ନାହିଁ ।

ରାଧାଗୋବିନ୍ଦ ବେଳେବେଳେ ରାଧାଙ୍କୁ ଚିତ କରି ଶୁଆଇ ଦିଏ ତା କୋଳ ଉପରେ ନହେଲେ ଅଖା ଓ ପୁରୁଣା ଲୁଗାର ଶେଯରେ ଗଡ଼େଇଦିଏ । କି ଲୋଭନୀୟ ଦେଖାଯାଆନ୍ତି ଏତିକିରେ ବି ରାଧାରାଣୀ । ମିଶ୍ରେ ଅଜା ଅସମ୍ଭାଳ ହେଇପଡ଼ନ୍ତି । ଛାର ନାତିଆ ଶେଷରେ ଲବଙ୍ଗଲତାଙ୍କୁ କୋଳରେ ଶୁଆଇଲା । ରାଧାଗୋବିନ୍ଦ ଭାବୁଛି ରାଧା କିଏ, ଲବଙ୍ଗଲତା କିଏ ଆଉ ମଞ୍ଜୁ କିଏ? ସମସ୍ତେ ନାରୀ ତ । ନୀଳାମ୍ବରଙ୍କ ଶଙ୍କା ହେଉଛି ସତରେ ରାଧାଗୋବିନ୍ଦ ଓ ବ୍ରହ୍ମାନନ୍ଦ ରାଧା ଓ ଲଳିତାଙ୍କୁ ରମଣ କରିବେ । ସେମାନେ ତ ପିତୁଳୀ ଗଢ଼ିବା ଭିତରେ ଅଧା ଆଘ୍ରାଣ କରିସାରିଲେଣି । ସେମାନଙ୍କ ସ୍ତନକୁ ଜଘନକୁ ନିତମ୍ବକୁ ଶାଣିତ ନିହାଣ ମୁନରେ ରକ୍ତାକ୍ତ କରି ରତିରଞ୍ଜିତ କରିସାରିଲେଣି, ରୁଧିରମୟ କରିସାରିଲେଣି । ନୀଳାମ୍ବର ବାହାର ପଟେ ରହି ରବେଇ ଖବେଇ ହେଉଛନ୍ତି । ଅସହାୟତାରେ ଗୁମୁରି ଉଠୁଛନ୍ତି । କହୁଛନ୍ତି ସେମାନଙ୍କୁ ବିଦାରି ଦିଅନି । ଲହୁଣି ଭଳିଆ ଦେହ ସେମାନଙ୍କର, ଦୁଧ ଘିଅର ସମ୍ଭଳା ଦେହ ସେମାନଙ୍କର । ଥିରିଥିରି କରି ନିହାଣ ଚଲା । ଟିପ ଟାଣ ହେଲେ ରକ୍ତ ନିଗିଡ଼ି ଯିବ । କାରିଗର ଦିଜଣ ନୀଳାମ୍ବରଙ୍କ କଥା ଏ କାନରେ ପକେଇ ସେକାନରେ ବାହାର କରିଦିଅନ୍ତି । ସେମାନେ ଜାଣନ୍ତି ସେମିତି ହେଲେ ରମଣ ହିଁ ହେଇପାରିବ । ପିତୁଳୀ ଗଢ଼ଣ ନୁହେଁ ।

ରାଧାଗୋବିନ୍ଦ ଏବେ ରାଧାପିତୁଳୀ କାମ ସମାପ୍ତ କରିବ । ଏବୁକୁ ଯାହା କାମ ବାକି ରହିଲା, ସୁନା ତଉଲ ଭଳିଆ କାମ । କାମ ନିଖୁଣ ହେବା ଲୋଡ଼ା । ଉଣେଇଶ ବିଶ ହେଇଗଲେ ରୂପକଳ୍ପନାରେ ସାମଞ୍ଜସ୍ୟ ରହିବନି । ଗ୍ରୀବା ତ୍ରିବଳିଯୁକ୍ତ ହେବ , କାନ୍ଧର ଗଢ଼ଣ ପ୍ରଶସ୍ତ ଓ ବର୍ତ୍ତୁଳ ହେବ । ଓଡ଼ିଶୀ ଗଢ଼ଣରେ ତ ହାଡ଼ ବି ଦିଶିବନି । ହାଡ଼ ଦିଶିଲେ ସେ କି ନାରୀ ପିତୁଳା । ସ୍ପର୍ଶ କଲେ ଯିମିତି ସମଗ୍ର ଶରୀରରେ କମ୍ପନ ଅନୁଭୂତ ହେବ । ବାହୁ ଦିଟା ତ ଏକାସାଙ୍ଗରେ ଖୋଦେଇ ହେବନି ,ଖିଲାଣ ହେଇ ଯୋଡ଼ା ହେବ । ଯୋଡ଼ାଟା ଯିମିତି କାଖ ସନ୍ଧାରେ ଖାପି ବସିବ । ହାତ ପାପୁଲି ବି ସିମିତି ମଣିବନ୍ଧ ସାଙ୍ଗରେ ଯୋଡ଼ିବ । ବାହୁ ଦୁଇଟି କାନ୍ଧ ପାଖରୁ ବୃଣାଳ ହେଇ

ତଳକୁ ଗଡ଼ି ଆସିବ । ତାହା ଯେତେ ରସାଳ ଦିଶିବ, ସେଥିରେ ସେତେ ମାଦକତା ଭରି ହେଇଯିବ । ରାଧାଗୋବିନ୍ଦ ଖୁବ୍ ସତର୍କ ଯିମିତି କହୁଣିର ଯୋଡ଼ାହାଡ଼ ଭଳି ପଦାକୁ ବାହାରି ନ ଆସେ । କହୁଣି ଭିତରକୁ ପଶିବ, ତାହେଲେ ଲାଗିବ ଅଳପ ବୟସୀ । ହାତ ମୃଣାଳ ନାଡ଼ ଭଳି ଗୋଲିଆ ହେବ । ପାପୁଲି ମଣ୍ଡା ପିଠା ଭଳି ଫୁଲି ଫୁଲି ରହିବ, ଅଙ୍ଗୁଳି ସବୁ ଚଂପାକଡ଼ି ମୂଳରୁ ମୋଟାହେଇ ଅଗକୁ ସରୁଆ ଓ ମଝିରେ ସାମାନ୍ୟ ଫୁଲିଲା ପରି । କାଞ୍ଚୁଲା ପିନ୍ଧେଇ ଦେଲେ ବାହାର ଯେତିକି ଅଂଶ ପଦାକୁ ଦିଶିବ ସେତିକି ଲୋଭନୀୟ ହେବ । ତାକୁ ମନରେ ରଖି ରାଧାଗୋବିନ୍ଦ ଦୁଇଟି ବାହୁ ଓ ହାତ ପାପୁଲିକୁ ଉହାରେ ଘସିଘସି ଚିକ୍କଣ କଲା । ସନ୍ଧା ଯାକ ହେଲା ମୂଳ । କନା ପଡ଼ିଗଲେ ଏ ଜାଗାଗୁଡ଼ାକହିଁ ଅଡୁଆ ଅଡୁଆ ଲାଗେ । ଯେତେ କାଠ ବନେଇ ଚୁନେଇ କାଟିଥ ଶେଷ ପାଦିଆକୁ ଏହି ସନ୍ଧା ଯାକ ହିଁ ମାଡ଼ ଖାଇଯାଏ । ରାଧାଗୋବିନ୍ଦ ଏ ସବୁ ରହସ୍ୟ ଜାଣେ । ଏଣୁ ପ୍ରଥମରୁ ହିଁ ସେଗୁଡ଼ିକୁ ସାଧିଦେଉଛି ।

ତାପରେ ସେ ଧରିଲା ରାଧାଙ୍କ ଛାତି ଅଂଶର କାମ । ଛାତିରୁ ସ୍ତନ ଦିଟା ଯିମିତି ସୁଠାମ ହେଇ ବାହାରିବ, ଟାଣ ଦିଶିବନି କି ହଗୁଳା ଦିଶିବନି , ଆରୋହ ଓ ଅବରୋହରେ ସାମଞ୍ଜସ୍ୟ ରହିବ । କାଖ ପଟୁ ଦେଖିଲେ ଲାଗିବ ଯିମିତି ପାହାଡ଼ଟିଏ ମୁଣ୍ଡ ଟେକିଛି । ଆଗପଟୁ ଦେଖିଲେ ଲାଗିବ ଯୋଡ଼ି କଳସ ଭଳି, ଅମୃତ ନିଗିଡ଼ିଯିବ । ଗୋଲ ହେବ ବର୍ତ୍ତୁଳ ହେବ ଓ ସୁନ୍ଦର ହେବ । ରାଧାଗୋବିନ୍ଦ ଏ ସବୁ କଥା ହେଜି ହେଜି ରାଧାଙ୍କ ଛାତିକୁ ଚିକ୍କଣଉଛି । ନିହାଣ ଦାଗକୁ ମିଟଉଛି । ଚୂଚୁକ ଦିଟା ଗୋଟା ଚଣା ଆକାରରେ ହେବ । ଅନାଘ୍ରତ ସ୍ତନ ତ । ତା ପରେ ଭାବୁଛି ପିତୁଳୀର ନା ରାଧାଙ୍କର , ତାର ପୁଣି ବଳୟ ରହିବ । ପତଳା କାଠର ଆସ୍ତରଣଟି ଚୂଚୁକକୁ କେନ୍ଦ୍ରକରି ଚନ୍ଦ୍ର ମଣ୍ଡଳ ଭଳି ଶୋଭା ପାଇବ । ନହୁରୁଣୀ ଚଳେଇବା କାଇଦାରୁ ଜଣା ପଡ଼ିଯିବ ତାହା ଚୂଚୁକମଣ୍ଡଳ ବୋଲି । ରାଧାଗୋବିନ୍ଦ ନିଜେ ମୋହିତ ହେଇପଡୁଛି ତା ନିଜ ଗଢ଼ଣରେ । ନହୁରୁଣୀ ଚଳେଇସାରିଲା ପରେ ସେ ହାତ ବୁଲେଇଆଣୁଛି । ହାତରେ କାଠଗୁଣ୍ଡ ଲାଗିଗଲେ ସେ ଅନୁଭବ କରୁଛି କୁଙ୍କୁମଚନ୍ଦନର ଗୁଣ୍ଡ ଲାଗୁଛି । କି ପ୍ରେମଦଗ୍ଧ ଅନୁଭୂତି ସେ ।

ସେ ଘର ଫେରି ମଞ୍ଜୁକୁ ଏ କାବ୍ୟିକ ଅନୁଭୂତି କହିବ ବୋଲି ହେଲା । ଉପରଓଳିଟା, ମଞ୍ଜୁ ବାଳ ବାନ୍ଧିବା ପାଇଁ ମୁଣ୍ଡ କୁଣ୍ଡାଉଛି । ଝଟ କରି ମୁଣ୍ଡରେ ଗିବନ ବାନ୍ଧିବ । ତାର ହାତ ଦୁଇଟି ଅଳସା ନାୟିକାର ହାତ ଭଳି ମୁଣ୍ଡ ଉପରକୁ କରିଛି । ତାର

ମାଂସଳ ବାହୁ ଦିଟା ଖୁବ୍ ସତେଜ ଦିଶୁଛି । ପିଠିଉପରେ ଘଞ୍ଚ କଳାବାଳ ମେଲେଇ ହେଇ ପଡ଼ିଛି । ସେ ହାତ ପିଠି ପଟକୁ କରି ବାଳ ଗୁଣ୍ଡେଇ ଆଣୁଚି । ତାର ସ୍ତନ ଦିଟା ଓଟାରି ହେଇ ଉପରକୁ ଉଠିପଡ଼ିଛି । ଘରେ ଖାଲି ପିଲେ ଥିଲେ ତ ସେ ବେପରୁଆ ଭାବେ ଶୃଙ୍ଗାର ବିଳାସରେ ମାତିଯାଇଥିଲା । ରାଧାଗୋବିନ୍ଦ ଘରେ ପାଦ ଦେଉଦେଉ ଶଙ୍କିଗଲା । ଶାଢ଼ି ପଣତଟାକୁ ଉଠେଇ ଦାନ୍ତରେ କାମୁଡ଼ି ଧରିଲା । ଉଦ୍ୟତ ସ୍ତନ କି ବାରଣ ମାନେ । ଶାଢ଼ିର ଭାଙ୍ଗମାନଙ୍କ ଭିତରୁ ଉଚ୍ଛୁରି ଆସିଲା । ରାଧାଗୋବିନ୍ଦ ମଞ୍ଜୁ ପାଖରେ ସରାଗରେ ବସିପଡ଼ିଲା । ମଞ୍ଜୁ କହିଲା ଆଜି ଏତେ ପ୍ରେମ କୁଆଡୁ ବହୁଛି । ରାଧାଗୋବିନ୍ଦ ଉତ୍ତର ଫେରେଇଲା, ଏବେ ପରା ମୁଁ ଘର ଫେରୁଛି । ଦେଖୁନ ମୋହାତରେ ଚନ୍ଦନ କୁଙ୍କୁମର ଆଭା ମଣ୍ଡି ଯାଇଛି । ଦେଖୁଚି ଠିକ୍ ମୋ ପିତୁଳୀ ଭଳି ତମର ସ୍ତନ ଯୁଗଳ ମୋତେ ମୁଗ୍ଧ କରିଦେଉଛି । କହିବ ଯଦି ମୁଁ କୁଙ୍କୁମ ବୋଳିଦେବି । ଛି! ପିଲେ ଅଛନ୍ତି । ଏମିତିକା ଛୋପରା କେଣେ ହଉଚ ।

ସମସ୍ତଙ୍କ ସମକ୍ଷରେ ରାଧାଗୋବିନ୍ଦ ରାଧା ଓ ଲଳିତାଙ୍କ ସ୍ତନ ଉପରେ ହାତ ଆବୋରି ଆଣିଲେ ବାରଣ ନାହିଁ । ସେମାନେ କାରିଗର ପରା । ରକ୍ତ ମାଂସର ବିନଶ୍ୱର ଦେହଟାର ସ୍ତନ ଯୁଗଳ ଉପରେ , ସ୍ତନ ପୁଣି ନିଜ ପତ୍ନୀର ହେଲେ ବି ହାତ ସଂଚାଳିବା ପାଇଁ ଏ ଅବେଳଟାରେ ସମାଜ ବାରଣ କରିଛି । ଏଣୁ ମଞ୍ଜୁ ମନା କରୁଛି । କିନ୍ତୁ ମଞ୍ଜୁ ଅତି ନିର୍ଭୀକା ଭାବରେ ରାଧାଗୋବିନ୍ଦଙ୍କ ପାଖରେ ତାଙ୍କର ଅବକ୍ଷୟିତ ଦେହର ଭଙ୍ଗିମାକୁ ପ୍ରଦର୍ଶନ କରୁଛି । ମଞ୍ଜୁ କହିଲା ଜାଣିଛ, ତମେ ଯେତେ ବଡ଼ କାରିଗର ହେଲେ ମଧ ସ୍ତନ ଗଢ଼ଣରେ ଥିବା ରହସ୍ୟ ବୁଝିନଥିବ । ସୁଲକ୍ଷଣୀ ନାରୀମାନଙ୍କ ବାଁ ସ୍ତନ ଅପେକ୍ଷା ଡ଼ାହାଣ ସ୍ତନ ସାମାନ୍ୟ ଛୋଟ । କାହିଁକି ତ ପଚାରିଲନି ? ନ ଜାଣିଛ ଯଦି ପୁରାଣରୁ କହୁଛି ଶୁଣ ।

ଉମା ହିମାଳୟ ପର୍ବତ ଉପରେ ଘୋର ତପସ୍ୟାରେ ବସିଛନ୍ତି । ଶିବଙ୍କୁ ବରିବାପାଇଁ ତପସ୍ୟା । ଶିବ ଶେଷରେ ପ୍ରସନ୍ନ ହେଲେ , ବର ପ୍ରଦାନ କଲେ । ଉମା ବରରେ ସନ୍ତୁଷ୍ଟ ହେଇ ଶିବଙ୍କୁ ହଜାରେ ଆଠ ସୁବର୍ଣ୍ଣ ଚଂପା ଚଢ଼େଇ ପୂଜିବେ ବୋଲି ମନସ୍ଥ କଲେ । ସୁବର୍ଣ୍ଣ ଚଂପା ଖୋଜା ଚାଲିଲା । ସେ ଦୂତିମାନଙ୍କୁ ହିମାଳୟ ବନର ଚର୍ତୁଦିଗକୁ ପଠେଇଲେ । ଫୁଲ ତୋଳା ହେଇଆସିଲା । ଦୂତିମାନେ କହିଲେ ହଜାରେ ଆଠ ସୁବର୍ଣ୍ଣ ଚଂପା ସେମାନେ ତୋଳିଛନ୍ତି ବୋଲି । ଉମା ପୁଷ୍ପାଭିଷେକରେ

ବସିଲେ । ଶିବଙ୍କୁ ସ୍ମରଣା କରି ତାଙ୍କ ଉପରେ ଫୁଲ ଚଢ଼େଇ ଚାଲିଲେ । ସେ ହଠାତ୍ ହଜାରେ ଚାରି ପାଖରେ ଅଟକି ଗଲେ । ଦେଖିଲେ ଚାଙ୍ଗୁଡ଼ିରେ ଆଉ ଫୁଲ ନାହିଁ । ସେ ଦୂତିମାନଙ୍କ ମୁହଁକୁ ଚାହିଁଲେ । ସେମାନେ ତଟସ୍ଥ, ଏଭଳିଆ ଅଘଟଣ କିମିତି ଘଟିଲା । ଏଣେ ମାହେନ୍ଦ୍ର ବେଳା ଗଡ଼ିଯାଉଛି । ଗୌରୀ ଉତ୍କଣ୍ଠିତ ହେଇପଡ଼ିଲେ । ଆଉ ଅପେକ୍ଷା କଲେନି । ନିଜ ଡ଼ାହାଣ ସ୍ତନରୁ ଟିକିଏ ଟିକିଏ କାଟି ଫୁଲର ପାଖୁଡ଼ା ଭଳି ଶିବଙ୍କ ଉପରେ ବିଞ୍ଚି ଦେଲେ । ଶିବଙ୍କ ମାୟାରେ ଉମାଙ୍କ ସ୍ତନର କ୍ଷତ ତ ଶୁଖିଗଲା । ଆକାରରେ ଟିକିଏ ଛୋଟିଆ ହେଇଗଲା । ଏଣୁ ରାଧାଙ୍କ ସ୍ତନ ଗଢ଼ଣ କଲାବେଳେ ଏକଥା ମନେ ରଖିବ । ରାଧାଗୋବିନ୍ଦ ପିଲାଳିଆମି କରି ମଞ୍ଜୁକୁ କହିଲେ ତମେ ଏ ରହସ୍ୟ ତ ଆମ ଯୌବନ ବେଳରେ କହିନଥିଲ । ମଞ୍ଜୁ ଆଖିରେ ଦୁଷ୍ଟାମିର ହସଟେ ହସିଦେଇ ମୁହଁ ବୁଲେଇ ଆଣିଲା । ସେ ମଞ୍ଜୁର ଉପଲକ୍ଷ୍ୟକୁ କେବଳ ଗ୍ରହଣ କଲେନି, ରାଧାଙ୍କ ଦକ୍ଷିଣ ସ୍ତନକୁ ସାମାନ୍ୟ ଛୋଟ କରିଦେଲେ ।

ମଞ୍ଜୁ ମୂର୍ତ୍ତି ତତ୍ତ୍ୱ କହୁଛି, ସୁଲକ୍ଷଣୀ ନାରୀର ସ୍ତନ ଛାତି ଉପରେ ଘଞ୍ଚହେଇ ଲାଗି ଲାଗି ରହେ ଯାଉଁଳି ପର୍ବତ ଭଳି । ଦୁଇ ଚୂଚୁକର ଦୂରତା ଚାଖଣ୍ଡେ ହୁଏ । ଏହି ଚାଖଣ୍ଡ ପିତୁଳୀ ହାତର ମାପ । ଚିବୁକରୁ କପାଳ ଉପରେ ହାତ ବୁଢ଼ା ଆଙ୍ଗୁଳିରୁ ଅନାମିକା ଯାଏଁ ପ୍ରସାରିତ କରି ଧରିଲେ ଚାଖଣ୍ଡେ ହେବ । ଛାତି ମଝିରୁ ନାଭି କେନ୍ଦ୍ରକୁ ଦୂରତା ମଧ୍ୟ ଚାଖଣ୍ଡେ । ତାପରେ ନାଭିରୁ ଯୋନିକେନ୍ଦ୍ର ଯାଏଁ ଏକା ମାପ । ରାଧାଗୋବିନ୍ଦ ଏ ମାପ ଆଗରୁ ଜାଣିଥିଲା । ତେଣୁ ମାପକୁ ଅବଲମ୍ବନ କରି ତା କାମରେ ଆଗେଇଥିଲା ।

ତା ପରେ ରାଧାଙ୍କ ଉପରପେଟ ତଳିପେଟ ପିଠି ଯୋନିଦେଶ ଜାନୁ ଜଙ୍ଘ, ଗୋଡ଼ପେଣ୍ଡା କାମ ହେବାକୁ ବାକି ରହିଲା । ପେଟରେ ମାଂସଳ ଅନୁଭବ ରହିବ ଅଥଚ ମେଦର ଆଭାସ ରହିବ ନାହିଁ । ନାଭି ମଣ୍ଡଳ ପୂରିଲା ପୂରିଲା ଦିଶିବ ଓ ତା ଭିତରେ ଆକର୍ଷଣ ରହିବ ନାଭିର ଆବର୍ତ୍ତ । ନହୁରୁଣୀକୁ ଚେକେଇ କରି ବୁଲେଇ ବୁଲେଇ ଆଣିଲେ ନାଭିଟି ଗଭୀର ହେବ । ନାଭି ଗଭୀର ହେଲେ ନାରୀ ପ୍ରେମମୟୀ ହେବ । ତଳି ପେଟ ନାଭି ତଳୁ ଅନୁଚ୍ଚ ପାହାଡ଼ର ଅବରୋହ ଭଳି ଖସି ଆସି ଯୋନିଦେଶର ଉପର ମୁଣ୍ଡରେ ଥାକି ଯିବ । ସେଠି ବଳୟଟିଏ ଲମ୍ବିଯିବ ଦୁଇ ଜାନୁର ଉପର ମୂଳ ଯାଏଁ । ଏଇଠୁ ପୁଣି ଆରମ୍ଭ ହେବ ନାରୀ ଦେହର ସବୁଠାରୁ କାତର ଭରା

ଅଙ୍ଗଟିଏ ଯୋନିଦେଶ । ତିନି ପାହାଡ଼ ମୂଳେ ପୁଷ୍ଟିଳ ଉପତ୍ୟକା ଭଳି ଜାଗାଟିଏ, କୂର୍ମପିଠି ଭଳି ପୀଠଟିଏ, ସମସ୍ତ ଆକର୍ଷଣ ଓ ବିକର୍ଷଣର ସରହଦଟିଏ, ସମସ୍ତ ଆବେଗ ଓ ଆକାଂକ୍ଷିତ ମୁହୂର୍ତ୍ତମାନଙ୍କର ସରାଗଟିଏ । ରାଧାଗୋବିନ୍ଦ ଧାରୁଆ ନହୁରୁଣୀ ଉପର ମୁଣ୍ଡରୁ ତଳକୁ ଗଡ଼େଇ ଆଣି ଦି ଜଙ୍ଘ ସନ୍ଧିରେ ସାରିଦେଲା । ଚାରି ଦିଗରୁ ପୋଛି ଆଣିଲା ।

ନୀଳାମ୍ବରଙ୍କ ସମଗ୍ର ଦେହରେ ସ୍ପନ୍ଦନ ଜାଗିଗଲା । ରାଧାଗୋବିନ୍ଦକୁ ପଚାରିଲେ, ଗୁପ୍ତାଙ୍ଗ ମାଠୁଚୁକିରେ । ଅଜା ହଁ, ରାଧାଗୋବିନ୍ଦର ଉତ୍ତର ଫେରେଇଲା । ଚେରାବାଡ଼ ଭିତରେ ସବୁ ଯିମିତି ନିସ୍ତବ୍ଧ । ଧୀରେ ଧୀରେ କୋରିଆଣିବାର, ପୋଛିଆଣିବାର ଖସ୍‌ଖସ୍ ଶବ୍ଦ । ଅଜା ପୁଣି ରାଧାଗୋବିନ୍ଦକୁ କହିଲେ, ବାପ, ଧୀରେ ଧୀରେ ଇହୁରୁଣି ଚଳେଇବୁ । କଅଁଳ ଜାଗା ରାଧାରାଣୀଙ୍କ ଗୁପତ ଅଙ୍ଗ । ଆମକୁ ଦୃଶ୍ୟ ହେବା କଥା ନୁହଁ । ତୁ ତ କାରିଗର । ତୋତେ କିଏ ବା ବାରଣ କରିପାରିବ । କିନ୍ତୁ ମନେରଖ ତୋତେ ଦୃଶ୍ୟ ହେଲେ ମଧ ନ ହେଲା ଭଳି । ତୁ ସବୁ କଥା ଜାଣୁଥିଲେ ମଧ, ହେଜୁଥିଲେ ମଧ ନ ଜାଣିଲା ପରି । ପିତୁଳୀ କାମ ସରିଗଲେ ଏ ଦୃଶ୍ୟ ମନରୁ ପୋଛିଦେବୁ । ଠାକୁରାଣୀଙ୍କ ଲାଜ ମହତ କଥା ଲୁଚେଇ ରଖିବୁ । ସେ ପରା ଆମ ସମସ୍ତଙ୍କ ମା, ଜନ୍ମଦାତ୍ରୀ । ଜୀବନୀ ଶକ୍ତିର ଉତ୍ସ ପରା ସେଇଠି । ମୃତ୍ୟୁର ଓ ବିଲୟର ରହସ୍ୟ ମଧ ଏଇଠି ଲୁଚିରହିଚି । ମନେ ରଖିଥିବୁ ଏ ଦୃଶ୍ୟ ତୋତେ ନା ମୋତେ ଦେଖାହେଇଛି । ଅଜାଙ୍କ ସବୁ କଥା ଶୁଣିଲା ପରେ ରାଧାଗୋବିନ୍ଦ କହିଲା, ଅଜା ମୁଁ ପରା ତମ ବୟସ ପାଖାପାଖି ମଣିଷ , ଜୀବନରେ ତିରିଶି ଚାଳିଶି ପିତୁଳୀ ବି କରିଥିବି । ବାପା ଦାଦା ପିତୁଳୀ ଗଢ଼ିବା ବି ମୁଁ ଦେଖିଛି । ଆମେ ସମସ୍ତେ ପରା ବିବାହିତ, ପିଲା ଛୁଆର ବାପ, ଆମର ମନରେ କଣ ବିକାର ବୋଧ ଆସିବ ? ମା ସବୁବେଳେ ମା ଉଲଗ୍ନା ନରହୁ ବା ରହୁ ।

ପିତୁଳୀ ସ୍ୱୟଂ ସମ୍ପୂର୍ଣ୍ଣ ନହେଲେ ପୂଜା ପାଇଁ ଯୋଗ୍ୟ ହେବନି । ଏଣୁ ଶାସ୍ତ୍ର କହୁଛି ସବୁ ଅଙ୍ଗ ନିଖୁଣ ଭାବେ ଗଢ଼ଣ କର । ମୂର୍ତ୍ତି ନିଖୁଣ ନହେଲେ ଭୋଗ କିମିତି ଖାଇବ ? ଏ ପୁଣି ରାଧାଙ୍କ କଥା । ରାଧା ଯମୁନା କୂଳରେ କେଳି କରିବେ କୃଷ୍ଣଚନ୍ଦ୍ରଙ୍କ ସାଙ୍ଗରେ ରତିକ୍ରୀଡ଼ା କରିବେ, କୁଞ୍ଜ ଭିତରେ ଉଲଗ୍ନା ହେବେ, ସମ୍ପୂର୍ଣ୍ଣା ନହେଇଥିଲେ କୃଷ୍ଣଚନ୍ଦ୍ର କଣ କହିବେ ? ରାଧାଗୋବିନ୍ଦର କଥା ଟିକ ଶୁଣି ଅଜା ଆଶ୍ୱସ୍ତି ହେଲେ ।

ରାଧାଙ୍କ ଜଙ୍ଘ କଦଳୀ ଗଛର ଗଣ୍ଡି ଭଳିଆ ରସାଳ ହେବ ଓ ବୃଣାଳ ହେବ । ଆଣ୍ଠୁ ପଦ୍ମମଣ୍ଡଳ ଭଳି ଭିତରେ ଲୁଚି ରହିବ । ପେଣ୍ଡା ଆଣ୍ଠୁତଳୁ ବର୍ତ୍ତୁଳ ହେଇ ଗୋଡ଼ ଗଣ୍ଠି ଆଡ଼କୁ କ୍ରମଶଃ ସରୁ ହେବ । ଗୋଡ଼ର ଗଣ୍ଠି ଦିଶେ ନଦିଶେ ହେବ । ଚାରିଆଡ଼େ ଲାଗିବ ଯେମିତି ପୁରୁଷ୍ଟ ପୁରୁଷ୍ଟ ଖୋଦେଇ, ପାଦ ଭୂଇଁ ତଳେ ପୁରା ଚାପି ନ ରହି ସାମାନ୍ୟ ଲହରାୟିତ ହେବ , ଆଙ୍ଗୁଳିର ବିନ୍ୟାସରେ ସମତା ରହିବ, ଆଙ୍ଗୁଳି ଅଗରେ ନଖ ପୋତି ହୋଇରହିବ । ଗୋଡ଼ର ନେଡ଼ି ଅର୍ଦ୍ଧଚନ୍ଦ୍ର ଭଳି ଦେଖାଯିବ, ପାଦର ଉପରି ଭାଗ ଚକୁଳି ପିଠା ଭଳି ପୂରିଲା ପୂରିଲା ଦିଶିବ । ପିଠିଟା କଟି ମୂଳରୁ କାନ୍ଧ ଉପରକୁ କଦଳୀ ପତ୍ର ଭଳି ବିସ୍ତାରିଯିବ । ମେରୁ ହାଡ଼ ଜମାରୁ ଦିଶିବନି । ଲାଗିବ ଶିଅର ଭଳି । ସେଠୁ ଦିଭାଗର ପିଠି ଦିପଟକୁ ଓଙ୍କାଡ଼ି ହେଇ ପଡ଼ିବ । ତା ଉପରେ ବେଣୀ ଲମ୍ବି ଆସି ଶିଅରକୁ ଘୋଡ଼େଇ ଦେବ । ବେଣୀ ଅଗରେ ଝୁମ୍ପା ନିତମ୍ବ ଉପରେ ଦୋଳାୟିତ ହେବ ।

ଧୀରେ ଧୀରେ ରାଧା ପୂର୍ଣ୍ଣା ହେଲେ, ସାଙ୍ଗରେ ଲଳିତା ବି । ଉଭୟଙ୍କ ଅଧରରେ ଫୁଟି ଉଠିଲା ଲକ୍ଷେ ଚଂପାର ମୃଦୁମନ୍ଦ ହସ, ନେତ୍ର ବିସ୍ତାରିତ ହେଇ ଜ୍ୟୋତି ବିକିରିଲା । ନାସା ତିଳ ପୁଷ୍ପ ଭଳି କମନୀୟ ଦେଖାଗଲା । ନାକର ପୁଡ଼ା ଦୁଇଟି ସ୍ପନ୍ଦିତ ହେଲା ଭଳି ଲାଗିଲା । ଗଣ୍ଡ ଦେଶରେ ମନେହେଲା ଯମୁନାର ଭଉଁରୀ ଖେଳୁଚି, କପାଳ ଆକାଶ ଭଳି ବ୍ୟାପିଗଲା ଓ ଚିବୁକ ଅର୍ଦ୍ଧଚନ୍ଦ୍ର ଭଳି ଶୋଭାମୟ ଦିଶିଲା ।

ନୀଳାମ୍ବର ମିଶ୍ରେ ପିତୁଳୀ ଦୁଇଟିକୁ ଅବଲୋକନ କରି ତୃପ୍ତି ଅନୁଭବ କଲେ । ଆନନ୍ଦରେ ଅଧୀର ହେଇ ପଡ଼ିଲେ । ତାଙ୍କୁ ଲାଗିଲା ସାକ୍ଷାତ ରାଧାରାଣୀ ଓ ଲଳିତା ତାଙ୍କ ଘରେ ବିଜେ ହେଲେ , ସେମାନେ ସତେ ଯିମିତି ତାଙ୍କ ସ୍ମୃତିର ଲବଙ୍ଗଲତା ଓ କନ୍ୟା ଲଳିତା । ଅଜା ସ୍ୱଗତୋକ୍ତି କଲେ । ଲବଙ୍ଗ ଆଜି ତମର ଅଭିଳାଷ ପୂର୍ଣ୍ଣ ହେଲା ନା । ଆଉ ଟିକିଏ ପରେ ବନକ ହେଇଗଲେ ତମେ ସମ୍ପୂର୍ଣ୍ଣ ପୁନର୍ନବା ହେଇଯିବ । ଅଜା ଲବଙ୍ଗକୁ କହିଲା ଭଳି କହିଲେ, ମୁଁ ପ୍ରତିଟି କ୍ଷଣରେ ଓ ପ୍ରତିଟି ନିଶ୍ୱାସରେ ତୁମକୁ ହିଁ ଚାକ୍ଷୁଷ କରୁଛି । ତମେ ମୋ ଆଗରେ ମୋ ପଛରେ ଆକାଶରେ ଓ ଭୂମିରେ । ଚତୁର୍ଦ୍ଦିଗେ ତମକୁ ହିଁ ମୁଁ ଦେଖୁଛି । ମୁଁ ପିତୁଳୀ ଆରମ୍ଭ ହେବା ମୁହୂର୍ତ୍ତରୁ ଏ ପର୍ଯ୍ୟନ୍ତ ସ୍ୱପ୍ନାବିଷ୍ଟ ହିଁ ଥିଲି । ଗଗନରେ ପବନରେ ତମରି ରୂପ ଓ ଗନ୍ଧର

ଅଦୃଶ୍ୟ ମାୟା ଭରି ହେଇ ରହିଥିଲା । ଏବେ ତାହା ଦୃଶ୍ୟମୟ ହେଲା । ପିତୁଳୀକୁ ଜନ୍ମ ଦେବା ହେଲା ଏକ ନୈରୂପ୍ୟ କଳ୍ପନାର ଭାବକୁ ରୂପମୟ କରିବା । ବନକ ସରିଯାଉ ମୁଁ ତମକୁ ଠାକୁର ଘରକୁ ନେଇଯିବି ସେଠି ପୂଜା ପାଇବ, ନୈବେଦ୍ୟ ଗ୍ରହଣ କରିବ । ଗୋପୀନାଥ ବି ତମର ଆର୍ବିଭାବକୁ ଅପେକ୍ଷା କରିଥିବେ ।

ଅଜା ଏଥର ଶାନ୍ତିରେ ନିଶ୍ୱାସ ମାରିଲେ । ରାଧାଗୋବିନ୍ଦକୁ ଓ ବ୍ରହ୍ମାନନ୍ଦକୁ କୁଣ୍ଢେଇ ପକେଇ କହିଲେ ତମେ ତ ରାଧା ଓ ଲଳିତାର ପିତୁଳୀ ଖାଲି ଗଢ଼ିଲନି ମୋ ଜୀବନରେ ନୂତନ ସ୍ପନ୍ଦନ ଭରିଦେଲ । ତମେ ଖାଲି ରକ୍ତ ମାଂସ ଦେହର କାରିଗର ନୁହଁ, ତମେ ହିଁ ମୋର ବିଧାତା ।

ତାପରେ ବନକ କାମ ବିଧିମତେ ସରିଲା । ରାଧାଗୋବିନ୍ଦ ଓ ବ୍ରହ୍ମାନନ୍ଦ ପିତୁଳୀ ଦିହେଁକୁ ସାଷ୍ଟାଙ୍ଗ ପ୍ରଣାମ କଲେ । କହିଲେ ମା ମାନେ ଆମ ଦୋଷାଦୋଷ କ୍ଷମା କର । ଏବେ ପର୍ଯ୍ୟନ୍ତ ଆମେ ଦୁହେଁ ତମର ଜନ୍ମଦାତା ଥିଲୁ, ଜନ୍ମଦାତ୍ରୀ ବି ଥିଲୁ । ଏବେ ତମର ସନ୍ତାନ ହେଲୁ । ଆମକୁ ଆର୍ଶୀବାଦ କର । ତମେମାନେ ଆମକୁ ଛାଡ଼ି ଠାକୁର ଘରେ ବିଜେ ହେବ । ତମ ଦେହରେ ପ୍ରାଣ ସଂଚରି ଯିବ । ତମେ ହେଇଯିବ ପ୍ରତିମା, ଠାକୁର ପ୍ରତିମା, ଗନ୍ଧ ଓ ଧୂପର, ପୂଜା ଓ ନୈବେଦ୍ୟର ପ୍ରତିମା ।

ସ୍ୱପ୍ନ ପିତୁଳୀ ହେଇ ଗଢ଼ିଯିବାର ଅନୁଭୂତି ନୀଳାମ୍ବରଙ୍କ ପ୍ରାଣରେ ବଂଚିବାର ମୋହ ଭରିଦେଲା । ସେ ଏତେ ଗଭୀର ଭାବରେ ପିତୁଳୀ ସୃଷ୍ଟିର ଏ ପ୍ରକ୍ରିୟାରେ ନିମଜ୍ଜି ଯାଇଥିଲେ ଯେ ତାଙ୍କ ଭିତରେ ଆଶା ଓ ବିଶ୍ୱାସର ନୂତନ ସୂର୍ଯ୍ୟୋଦୟ ଘଟିସାରିଥିଲା । ସେ ମନେମନେ ସେଦିନ ସିଦ୍ଧାନ୍ତ ନେଇଥିଲେ, ସେ ନିଜେ ପିତୁଳା ରଚନା କରିବେ ଓ କଳାକୁଞ୍ଜ ମାଧ୍ୟମରେ ଜନମନ ହରିବେ । ଏହା ତାଙ୍କ ଜୀବନର ବଳକା ସମୟକୁ ରସାଣିତ କରିପାରିବ ।

ମାଞ୍ଚେଲି ମଠ ଉପବନର ସ୍ନିଗ୍ଧ ଶୀତଳ ଛାଇରେ ସମାଧି ମଣ୍ଡପ କାମ ଆଗେଇ ଚାଲିଛି । ଗଞ୍ଜାମ ମଥୁରାରୁ ପାଞ୍ଚଜଣ ବଛା ବଛା ବିନ୍ଧାଣି ଦିନରାତି କାମରେ ଲାଗିଛନ୍ତି । ଖମ୍ବ ଓରା ଶେଣି ଏଭଳିକି ପଣସା ମଧ କନ୍ଦା ପଥରରେ ତିଆରି ହେବ ବୋଲି ସ୍ଥିର ହେଇଛି ।

ଯୂପସ୍ତମ୍ଭ ପ୍ରତିଷ୍ଠା ବିଧାନ ପ୍ରଥମେ ଆରମ୍ଭ ହେଲା । ମିଶ୍ରେ ଆପଣେ ମଥୁରାର ବିନ୍ଧାଣିରତ୍ନ ବ୍ରଜସୁନ୍ଦରଙ୍କ ମୁଣ୍ଡରେ ସୂତ୍ରଧର ଶାଢ଼ି ବାନ୍ଧିଦେଲେ । କହିଲେ, ତମେ ହିଁ ଏହି ମଣ୍ଡପ ଓ ମୂର୍ତ୍ତି ନିର୍ମାଣର ମୁଖ୍ୟ ହେଲ । ପୂଜା ଓ ହୋମ ପାଇଁ ସମସ୍ତ ବ୍ୟବସ୍ଥା ହେଇସାରିଥିଲା । ନିତ୍ୟାନନ୍ଦ ମିଶ୍ରେଙ୍କୁ ଏ କାର୍ଯ୍ୟ ବଢ଼େଇ ନେବା ପାଇଁ କହିସାରିଛନ୍ତି । କାଠରେ ଯୂପସ୍ତମ୍ଭ ନିର୍ମାଣ ସରିଛି । ହୋମ କର୍ମ ବଢ଼ିଲା । ଅଥର୍ବ ବେଦର ବୈତାନ ସୂତ୍ର ଅନୁସାରେ ବିଷ୍ଣୁମନ୍ତ୍ର ଉଚ୍ଚାରଣ ପୂର୍ବକ ମିଶ୍ରେ ଓ ବ୍ରଜସୁନ୍ଦର ଉଭୟେ ଭୂମିରେ ଯୂପସ୍ତମ୍ଭକୁ ନ୍ୟାସ କଲେ । ଯୂପସ୍ତମ୍ଭ ବିଶ୍ୱକର୍ମାଙ୍କ ପ୍ରତିରୂପ । ଏହା ପ୍ରଜାପତିଙ୍କ ପ୍ରତୀକ ଓ ତେଜ ସ୍ୱରୂପ । ଏଣୁ ମଣ୍ଡପ ନିର୍ମାଣ ପୂର୍ବରୁ ଏହି ବିଧି ଆଚରଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ମିଶ୍ରେ ଓ ବ୍ରଜସୁନ୍ଦର ମିଶି ଏହାକୁ ଧୁଚାରୁ ରୂପେ ସମ୍ପନ୍ନ କଲେ ।

ମଣ୍ଡପଟି ଚଉରସିଆ, ବାରହାତ ଓସାର ଓ ବାରହାତ ଲମ୍ବ । ଚାରିକୋଣକୁ ଚାରୋଟି ଖମ୍ବ , ଖମ୍ବର ବଇଠାରେ ବଢୁଅ ଉପରେ ଗଜସିଂହ, ତା ଉପରେ କଳସ । କଳସ ଉପରେ, ଉପରକୁ ହାତଛନ୍ଦି ଅଳସା । ଗୋଟିଏ ଖମ୍ବରେ ଚାରୋଟି ଅଳସା ଚାରିଦିଗକୁ ଅନେଇ ରହିବେ । ଅଳସାମାନଙ୍କ ଉପରେ ଓଲଟ ପଦ୍ମ ଖମ୍ବର ମକୁଟ ହେବ, ତା ଉପରେ ଶେଣି ଓ ଓରା ଥୁଆହେବ । ଓରାମାନଙ୍କରେ ଲୀଳାପଟ୍ଟ ଖୋଦେଇ ହେବ, କୃଷ୍ଣଜନ୍ମରୁ କଂସ ମରଣ ପର୍ଯ୍ୟନ୍ତ । ଶେଣିମାନଙ୍କରେ ଡ଼ାଳିଲତା କାମ, ହଂସଧାଡ଼ି, ବଗଧାଡ଼ି, ଗାଈଧାଡ଼ି ଇତ୍ୟାଦି । କଣଛନ୍ଦାମାନଙ୍କରେ ରାହୁମୁଣ୍ଡ, ଓରା ଉପରେ ଖ୍ଲାଣ ହେଇଥିବା ଠିଆ ଖମ୍ବମାନଙ୍କରେ ସଖୀପଟା । ଶେଣି ଯୋଡ଼ମାନଙ୍କରେ କାଟେଣି ଛନ୍ଦ । ମଝିରେ ପଦ୍ମ ମଣ୍ଡଳ, ତାର ପୁଣି ଥାକଥାକ କରି

ପାଞ୍ଚୋଟି ଲହଡ଼ି । ପ୍ରତିଟି ଲହଡ଼ି ଭିତରେ ମୂଳ ଆଡୁ ଆରମ୍ଭ ହେଇ ବାହାରପଟକୁ ପଦ୍ମ ପାଖୁଡ଼ାମାନ ଖୋଦେଇ ସରିଛି । ପାଖୁଡ଼ା ଗୁଡ଼ିକ ଆଠ, ଷୋହଳ, ବତିଶି, ଚଉଷଠି କ୍ରମରେ ଶହେଅଠେଇଶିରେ ସରିଛି । ପ୍ରତି ପାଖୁଡ଼ାରେ ଅଦଳ ବଦଳହେଇ ଗୋପୀ ଓ କୃଷ୍ଣ କ୍ରୀଡ଼ା କରୁଛନ୍ତି । ପଦ୍ମମଣ୍ଡଳ ମଝିରୁ ପଣସାଟି ତଳକୁ ଖସିଆସିଛି । ପଣସା ଉପରୁ ଚଉଡ଼ା ହେଇ ତଳକୁ ସରୁଆ । ଥାକଥାକ ହେଇ ପାଞ୍ଚ ଥାକ , ସବା ଶେଷରେ କଦମ୍ବ ଫୁଲର କାଟେଣି ଗୁମ୍ଫାଟିଏ । ଏଥିରେ ମଧ ରାସକ୍ରୀଡ଼ା ନୃତ୍ୟଭଙ୍ଗୀର ମୂର୍ତ୍ତିମାନ ଶୋଭା ପାଉଛନ୍ତି । ପଣସାର ଝୁଲନ୍ତ ଅଙ୍ଗରେ ଓଲଟ ଶୁଆମାନେ କଦମ୍ବକୁ ଖୁମ୍ପୁଛନ୍ତି ।

ମଣ୍ଡପର ପିଢ଼ା ଛାତ, ଚାରିଦିଗକୁ ଚାଳଭଳି ଗଡ଼ାଣିଆ ପୁଣି ଥାକଥାକ ହେଇ । ମୁଣ୍ଡିମାରିବା ଜାଗା ଉପରେ ଖପୁରି ବେକି ଅଁଳା ଓ ଦଧିନଉତି । ବେକି ଚାରିକଡ଼କୁ ଚାରୋଟି ଦୋପଖା ସିଂହ । ଛାତର ମୁହାଣ୍ଡି ଯାକରେ କାଙ୍ଗୁରା ଓ ପ୍ରତି କଣମୁଣ୍ଡରେ କୁନ୍ଦଝରା । ସବୁ କାମ କନ୍ଦା ପଥରର । ମଣ୍ଡପର ପଶ୍ଚିମ ପଟ କାନ୍ଥ ସମ୍ପୂର୍ଣ୍ଣ ନିବୁଜ , ତା ଆଗକୁ କୃଷ୍ଣ ପ୍ରତିମା ବିଜେ ହେବେ । ଉତ୍ତର ଓ ଦକ୍ଷିଣ ପଟେ, ତିନି ଭାଗିଆ ତୋରଣ ଓ ତା'ରି ତଳକୁ ଜାଲି କାମ ସିଧା କାଟେଣି ଛନ୍ଦର ଗବାକ୍ଷ ଭଳି । ତୋରଣର ଉଭୟ ମଙ୍ଗରେ ଦୁଇଟି ଶାୟିତା ଅଳସା କନ୍ୟା । ଗୋଟିଏ ହାତ ମୁଣ୍ଡରେ ଭରା ଓ ଅନ୍ୟ ହାତଟି ନିତମ୍ବ ଉପରେ ଥୁଆ । ପୂର୍ବ ପଟର ଦୁଇ ଖମ୍ବକୁ ଲାଗି ଭିତରକୁ ପ୍ରସାରିତ ହେଇ ଦୁଇ ହାତ ଲେଖା ଉଭୟ ପଟକୁ ବନ୍ଦ । ବନ୍ଦ କାନ୍ଥ ଉପରେ ଗଙ୍ଗା ଓ ଯମୁନାର ମଗର ଓ କଚ୍ଛପ ବାହନ ଥାଇ ଏକ ପାଖିଆ ମୂର୍ତ୍ତି । ମଝି ମେଲା ଜାଗାରେ ତୋରଣ ରହିଛି ଓ ହାତେ ଓସାରର ଦୁଆରବନ୍ଧ ପିନ୍ଧିଆ ହେଇଛି । ଦୁଆରବନ୍ଧ ତ୍ରିଶାଖା ବିଶିଷ୍ଟ, ପ୍ରଥମେ ଲତା ଶାଖା, ତାପରେ ନାଗ ବନ୍ଧ ଓ ବାହାର ପଟକୁ ଡୋରିଆ । ଦୁଆରବନ୍ଧ କିନ୍ତୁ ମୁଗୁନି ପଥରର । ଲଲାଟ ବିମ୍ବରେ ଗୋପୀନାଥ, ଦୁଆରବନ୍ଧ ମୂଳରେ ମୃଗବିଡ଼ାଳ ମୂର୍ତ୍ତି । ଦୁଆରବନ୍ଧ ଉପର ମୁଣ୍ଡରେ ଦଶାବତାର ଧାଡ଼ିର ଖୋଦେଇ ନବଗ୍ରହ ପାଟ ଭଳି ଶୋଭା ପାଉଛି ।

ପାଞ୍ଚଛଅମାସ କାଳ ଘର୍ମାକ୍ତ ହେଇ କାରିଗର ଦଳକ ନିଷ୍ଠାର ସହିତ ଲାଗିପଡ଼ି କାମ ଉଠେଇ ଦେଇଛନ୍ତି । ଅଜା ମାସକେ ପନ୍ଦର ଦିନ ମାଞ୍ଜେଲିରେ ଆଉ ପନ୍ଦର ଦିନ ପାରଳାଖେମଣ୍ଡିରେ । ପାରଳାଖେମଣ୍ଡି ନ ଆସିଲେ ନହୁଏ । ଗାଈଗୋରୁ,

ଚାକର ବାକର, ବିଲବାଡ଼ି ଓ ଠାକୁରଘର କଥା ମଝି ମଝିରେ ତନଖି ନକଲେ ଯା ହାତରେ ବିଶ୍ୱାସ କରି ଛାଡ଼ିଦେବ, ବେଳପଡ଼ିଲେ ସେ ହିଁ ଅଡୁଆରେ ପକେଇ ଦେବ । ନିତ୍ୟାନନ୍ଦ ଓ ଗୌରୀ ତାଙ୍କୁ ପିତୁଳା କାମ ସଅଁପି ଦେଇଛନ୍ତି ବୋଲି ସେ ତନ୍ତୀଘର କଣ୍ଡା ଭଳି ଗାଁକୁ ମଠକୁ ହେଉଛନ୍ତି । ମଥୁରା ବିନ୍ଧାଣି ବଡ଼ ଗୁଣର । ପାରିବାର । ତଥାପି ଆଜିକାଲି ସବୁ କଥାକୁ ନିଘା ରଖି କାମ ତୁଲେଇବାକୁ ହେଉଛି ।

ଜାଉଁଳି କବାଟ ହେବ । ତା ପାଇଁ ଗଡ଼ ଓ ପଟା ମିଶେଇ ଶିଶୁ କାଠ ଶଗଡ଼େ ମାପଜୁପ କରି କଟେଇ ଆଣିବାପାଇଁ ନିତ୍ୟାନନ୍ଦ ଦିଜଣ କାରିଗରଙ୍କୁ ପାଖର ସୋମପେଟା ଜଙ୍ଗଲକୁ ପଠେଇଛନ୍ତି । ଦିପୁରି କବାଟ ହେବ, ଚଉରସିଆ ଠଣା ରହିବ । ଓସାର କଡ଼େ ପାଞ୍ଚ ଓ ଲମ୍ବା ବାଗରେ ଛ ହେଇ ଷାଠିଏ ଖୋପ ତିଆରି ହେବ । ପ୍ରତି ଖୋପରେ କୃଷ୍ଣଲୀଳାର ପ୍ରସଙ୍ଗମାନ ଖୋଦେଇ କରାଯିବ । ସବା ଉପର ଖୋପମାନଙ୍କରେ ଦଶାବତାର ଦୃଶ୍ୟ, ମତ୍ସ୍ୟ, କଚ୍ଛପରୁ ଆରମ୍ଭ ହେଇ କଲ୍କୀ ପର୍ଯ୍ୟନ୍ତ । ବୁଦ୍ଧଙ୍କ ଜାଗାରେ ଜଗନ୍ନାଥ ବିଜେ ହେବେ , ସବା ତଳ ଖୋପରେ ଚଉକ ଭଙ୍ଗିରେ ନୃତ୍ୟରତା ସଖୀମାନେ ରହିବେ । ତା ଉପର ଥାକର ଖୋପମାନଙ୍କରେ ଧେନୁପଲ ଗାଭୀବସ୍ତାସହ, ଦି' କବାଟରେ ମୁହାଁମୁହିଁ ହେଇ ଖୋଦେଇ ହେବ ।

ମଠର ଦିଜଣ ହଳିଆ ବାରୁଆ ପେଣ୍ଠପାଖ ମୁଣ୍ଡିଆରୁ ମୁଗୁନି ପଥର କଟେଇ ଶଗଡ଼ରେ ଲଦି ମାଝେଲି ମଠରେ ପହଞ୍ଚି ଯାଇଛନ୍ତି । ଶଗଡ଼ ଟାଣ ନହେଲେ ଛ ଫୁଟିଆ ପଥର ବୋହି ଆଣିବା ସମ୍ଭବ ନୁହେଁ ବୋଲି ନୂଆ ଶଗଡ଼ରେ ରଡା ଓ ଧୋବଲା ବଳଦ ହଳକୁ ଯୋଚି ନେବା ପାଇଁ ମଠକରଣ କହିଥିଲେ । ପଥରର ଚଉଡ଼ା ଚାରିଫୁଟକୁ ଘନକଡ଼ିଆ ମଧ ଚାରିଫୁଟ । ମଠର ବଳଦ ହଳକ ଘୋଡ଼ା ଭଳିଆ ଉଚ୍ଚା, ଓ ଟାଣୁଆ । ମୁଣ୍ଡର ଶିଙ୍ଗଯାକ ତିଖ ଓ ଭିତରକୁ ଆଉଜାଣିଆ । ଶିଙ୍ଗ ଅଗରେ ପିତଳ ଖୋପ, ବେକରେ ଘଣ୍ଟିଘାଗୁଡ଼ି ରଣଝଣ କରି ଝପଟି ଆସିଲେ ପନ୍ଦର କୋଡ଼ିଏ କୋଶ ଦୂରରୁ । ଶଗଡ଼, ଉପବନ ପଛକଡ଼ଦେଇ ମଠହତା ଭିତରେ ପଶିଲା, ଏକାଥରକେ କଦମ୍ବ ଗଛମୂଳେ ଛଣର ଶେଯ ଉପରେ ପଥର ଓହ୍ଲେଇ ଦିଆଗଲା ।

ମୁଗୁନି ପଥରର ଆକାର ପ୍ରକାର ଦେଖି ମିଶ୍ରେ ଓ କାରିଗରମାନେ ସନ୍ତୋଷ ପ୍ରକାଶ କଲେ । କଳା ମଚମଚ, ଖୁବ୍ ବାଗର ଓ ସଠିକ୍ ମାପର ସାଟାମ

ପଥର । ସାରା ପଥର । ଏବେ କଣ୍ଠା ଅଛି, ନିହାଣ ଧରିଲେ ଘେନିବ, କଥା କହିବ । ପଥର ଟାଣ ହେଇଗଲେ ନିହାଣ ଚଳେଇବା କଷ୍ଟହେବ । ପଥର ଶୁଙ୍ଘିଲେ ଜଣା ପଡ଼ିବ କି ଜାତିର ପଥର । ଚାଖିଲେ ତ ଭଲ ମନ୍ଦ ବାରି ହେଇଯିବ । ଅଜା ପଥରର ଷଟ୍‌ଗୁଣ ଭେଦ କରି ନିଦାନ କରି କହିଲେ ପଥରଟା ସମବର୍ଣ୍ଣା । ଏଣୁ କୃଷ୍ଣ ପ୍ରତିମା ପାଇଁ ଏକାନ୍ତ ଭାବେ ଉପଯୁକ୍ତ । ବ୍ରଜସୁନ୍ଦର ବିନ୍ଧାଣିରତ୍ନ ଶତକେଶି ବୃଷଭଙ୍କୁ ସ୍ମରଣା କରି ମନ୍ତ୍ରରେ ମନ୍ତ୍ରରେ ମହିଳୁକା ଗାଈର କ୍ଷୀରରେ ପଥରକୁ ଧୋଇଦେଲେ । ଆମକୁ ରକ୍ଷାକର, ଆମକୁ ଅନୁଗ୍ରହ କର କହି ବିନ୍ଧାଣିମାନେ ପଥର ଆଗରେ ମୁଣ୍ଡିଆ ମାରିଲେ । ନିହାଣ, ମୁଗୁର, ନହୁରୁଣୀ ଓ ଅନ୍ୟାନ୍ୟ ହାତ ହତିଆର ପଥର ଉପରେ ଥୋଇ ଅନୁକୂଳ ପୂଜା କଲେ । ବିନ୍ଧାଣିଙ୍କ ମୁଣ୍ଡରେ ଓ ନୀଳାମ୍ବର ଅଜାଙ୍କ ମୁଣ୍ଡରେ ନିତ୍ୟାନନ୍ଦ ପାଟର ଶାଢ଼ି ବାନ୍ଧିଦେଇ ଅନୁକୂଳ ଆଜ୍ଞା ଦେଲେ ।

ତା ପରେ ପଥରକୁ ସମତୁଲ କରାଗଲା । ନୀଳାମ୍ବର ତଳଭାଗକୁ ଦଶଅଣା, ଉପର ମୁଣ୍ଡକୁ ଛ ଅଣା କରି ଲମ୍ବା ବାଗିଆ ପଥରକୁ ଗାର ଦେଇ ବିଭାଗ କରିଦେଲେ । ନାଭିମୂଳକୁ ନିଦାନକରି ସେଠି ନିହାଣରେ ବିନ୍ଦୁଟିଏ ଦାଗିବାପାଇଁ ବ୍ରଜସୁନ୍ଦରକୁ କହିଲେ । ଏଇଟା ହେଲା ପ୍ରତିମାର ମର୍ମବିନ୍ଦୁ । ଏଇଠି ଉଦୁମ୍ବର କାଠର କିଲା ଠୁକିଦିଆଗଲା । ଏହି ବିନ୍ଦୁ ହିଁ ହେଲା କାଳର ପ୍ରତୀକ, ଏଥିରେ ପୂର୍ଣ୍ଣତା ଅଛି, ପ୍ରାଣଶକ୍ତି ମଧ ଅଛି । ମଣିଷ ଭିତରେ ଆତ୍ମାଭଳି ପ୍ରତିମାର ନାଭିକେନ୍ଦ୍ର ହେଲା ଅମରତ୍ୱର ଚିହ୍ନ । ଏହି ବିନ୍ଦୁରୁ ବୃତ୍ତଟିଏ ନୀଳାମ୍ବର ଆଙ୍କିଦେଲେ । ତାର ପରିଧି ଉର୍ଦ୍ଧ୍ୱରେ ହୃଦୟର ମଧ୍ୟସ୍ଥଳ ଓ ନିମ୍ନରେ ଗୁପ୍ତାଙ୍ଗର ମୂଳକୁ ଭେଦିଗଲା । ଏହି ତିନି ବିନ୍ଦୁକୁ ଛୁଇଁ ରେଖାଟିଏ ଅଙ୍କନ କରାଗଲା । ଏହା ହେଲା ମୂର୍ତ୍ତିର ଆଧାର ଦଣ୍ଡ । ପୁଣି ଆଧାର ଦଣ୍ଡ ଉପରକୁ ଚିବୁକକୁ କେନ୍ଦ୍ରକରି ଏକ ବୃତ୍ତ ଓ ତଳଭାଗରେ ଆଣ୍ଠୁକୁ କେନ୍ଦ୍ରକରି ଅନ୍ୟ ଏକ ବୃତ୍ତ ଅଙ୍କନ କରାଗଲା । ଏହି ତିନି ବୃତ୍ତ ହେଲା ସ୍ୱର୍ଗ ମର୍ତ୍ତ୍ୟ ଓ ପାତାଳ । ନୀଳାମ୍ବର ମିଶ୍ରେଙ୍କ କହିବା ହେଲା ମର୍ମ ବିନ୍ଦୁ ହିଁ ବ୍ରହ୍ମବିନ୍ଦୁ ଓ ବ୍ରହ୍ମବିନ୍ଦୁକୁ ବିସ୍ତାର କରି ସମସ୍ତ ରୂପ ସର୍ଜନା କରାଯାଏ । ବ୍ରହ୍ମବିନ୍ଦୁରେ ଧ୍ୟାନସ୍ଥ ହେଇ କାରିଗର ଏବେ ପଥରରେ ରୂପନ୍ୟାସ କରିବ । ଏଇଥିପାଇଁ ରୂପପ୍ରଜ୍ଞାର ଆବଶ୍ୟକତା ଅଛି । ରୂପପ୍ରଜ୍ଞା ବିକଶିତ ନଥିଲେ ବ୍ରହ୍ମଙ୍କର ଆଧାର କଳ୍ପନା କରିବା ଅଜ୍ଞତା ମାତ୍ର । 'ଓଁ ବିଶ୍ୱକର୍ମାୟ ! ବିଦ୍‌ମହେ କାରୁକାରାୟ ଧୀମହି ତନ୍ନୋ ଶିଳ୍ପୀ ପ୍ରଚୋଦୟାତ୍ ।' 'ଓଁ ବିଶ୍ୱକର୍ମାୟ ନମଃ' କହି ପଥରରେ ଅଙ୍ଗ ନିଦାନ ପରେ, ପ୍ରଥମ ନିହାଣ ସ୍ପର୍ଶ ଦେବା ଆମ ଶିଳ୍ପକାଶ୍ୟପ ପରଂପରାରେ ବିଧିଅଛି

ବୋଲି ବ୍ରଜସୁନ୍ଦର, ମିଶ୍ରେମହାଶୟଙ୍କୁ ସୂଚେଇ ଦେଲେ । ମୂର୍ତ୍ତିତତ୍ତ୍ୱରେ ପ୍ରଜାପତିଙ୍କ ବିଶ୍ୱନିଧାନର ନୀତି ନିୟମ ବଳବତ୍ତର ରହିଛି । ସେହି ତତ୍ତ୍ୱ ଅନୁଯାୟୀ ବୃତ୍ତ ସମୂହ ତେଜ ପ୍ରକାଶ କରନ୍ତି । ବର୍ଗକ୍ଷେତ୍ର ଜଳର ପ୍ରତିନିଧିତ୍ୱ କରେ ଓ କ୍ଷେତ୍ରର କର୍ଣ୍ଣ ବାୟୁର ରୂପ ହୁଏ ।

ନୀଳାମ୍ବର ମିଶ୍ରେ ଓ ବ୍ରଜସୁନ୍ଦର ବିନ୍ଧାଣି ଉଭୟେ ମିଶି ପଥର ଉପରେ ଖିଳପଞ୍ଜର ଆଙ୍କି ଅଙ୍ଗ ନିଦାନକୁ ଦୃଢ଼ୀଭୂତ କଲେ । ମୂର୍ତ୍ତି ଖୋଦନ ଯଜ୍ଞଭଳି କର୍ମ । ଯଜ୍ଞର ସବୁ ବିଧି ଓ ଆଚରଣ ମୂର୍ତ୍ତି ଖୋଦନ କର୍ମରେ ନିହିତ ଅଛି । ଭଗବାନ କୃଷ୍ଣ ବ୍ରହ୍ମ ସ୍ୱରୂପ । ଏଣୁ ତାଙ୍କର ମୂର୍ତ୍ତି ଖୋଦନକଳା ଯଜ୍ଞକର୍ମ ବୋଲି ବିବେଚନା କରିବାକୁ ହେବ ବୋଲି ମିଶ୍ରେ କାରିଗରମାନଙ୍କୁ ସୂଚେଇ ଦେଲେ । ରୂପ ସର୍ଜନା ଭିତରେ ଜଳ ଓ ଅଗ୍ନିର ମିଳନ ମିଥୁନ ଭାବର ଦ୍ୟୋତକ । ବର୍ଗକ୍ଷେତ୍ର ଜଳ ହେଲେ ତ୍ରିକୋଣ ଅଗ୍ନି ଭାବ ପ୍ରକଟ କରେ ଏବଂ ଏହା ଶେଷରେ ରାଧାକୃଷ୍ଣ ଯୁଗଳ ଭାବକୁ ସୃଷ୍ଟିକରି ମୂର୍ତ୍ତି ମଧ୍ୟରେ ସଂଚାରି ଦିଏ । ଯେଉଁମାନେ ବିନ୍ଧାଣି ସେମାନେ ହିଁ ଏହି ଯଜ୍ଞର ପୁରୋହିତ ବା ପୁରୋଧା । ଏଣୁ ମୂର୍ତ୍ତି ଖୋଦନର ରହସ୍ୟ ସମ୍ପର୍କରେ ସେମାନଙ୍କର ଜ୍ଞାନ ଥିବା ବିଧେୟ । ପୁରୋହିତ ଯିମିତି ଯଜ୍ଞ କୁଣ୍ଡରେ ଅଗ୍ନି ପ୍ରଜ୍ୱଳିତ କରି ମହାଛନ୍ଦ ରଚନା କରେ ସିମିତି ବିନ୍ଧାଣି ପଥରରେ ମୂର୍ତ୍ତି ଖୋଦନ କରି ସେହି ମହାଛନ୍ଦକୁ ହିଁ ବିମ୍ବିତ କରେ । ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ରଚନାରେ ଯଜ୍ଞର ମହାଛନ୍ଦ ହିଁ ମିଥୁନ ଛନ୍ଦରେ ରୂପାନ୍ତରିତ ହେଇଯାଏ । ଏହା ହିଁ ମୂର୍ତ୍ତି ଭେଦନ ବିଦ୍ୟାର ରହସ୍ୟ । ବ୍ରଜସୁନ୍ଦର ନିଜ ବାପାଙ୍କ ଠାରୁ ଯେତିକି ବାସ୍ତୁବେଦ ସମ୍ପର୍କରେ ଜ୍ଞାନ ଆହରଣ କରିଛନ୍ତି ତାକୁ ହିଁ ପାଥେୟ କରି ସେ ଆଜି ଯାଏ ମୂର୍ତ୍ତି ଗଢ଼ଣରେ ବ୍ରତୀ ହେଇଛନ୍ତି ଓ ବିଶ୍ୱକର୍ମାଙ୍କ ଅପାର କରୁଣାରୁ ସବୁବେଳେ ସଫଳକାମ ହେଇଛନ୍ତି । ନୀଳାମ୍ବର ଅଜା ବ୍ରଜସୁନ୍ଦରଙ୍କ ଶାସ୍ତ୍ର ପ୍ରବେଶରେ ମୁଗ୍ଧ ହେଲେ ଓ ତାଙ୍କରି ପୌରୋହିତ୍ୟରେ ମୂର୍ତ୍ତିକାମ ଠିକ୍ ଭାବେ ଉତୁରିବ ବୋଲି ନିଶ୍ଚିନ୍ତ ହେଇଗଲେ ।

ଯେଉଁ କାରିଗର ଶ୍ରୀକୃଷ୍ଣଙ୍କୁ ଏକ ଭାବି ପଥରରେ ନିହଣ ଚଲାଏ ସେ ରାଧାଙ୍କ ଉପସ୍ଥିତିକୁ ଅନୁଭବ କରିପାରେନି । ଏଣୁ ସେ ଶକ୍ତିର ଉତ୍ସକୁ ହରେଇ ଦେଇ ମାଧୁର୍ଯ୍ୟ ଭାବକୁ ମୂର୍ତ୍ତିରେ ଫୁଟେଇ ପାରେନି । ରୂପ ସର୍ଜନା ମାୟାର ପ୍ରକ୍ରିୟା ଏବଂ ଶକ୍ତି ହିଁ ଏ ମାୟାକୁ ଭିଆଣ କରିଥାଏ । ବୀଜ ମନ୍ତ୍ର ର ବିସ୍ତାରରେ ମାୟା ଚଂଚଳିତ ହେଇ ସମସ୍ତ ରୂପ ଚର୍ଚ୍ଚା ଭିତରେ ଜ୍ୟୋତି ଭରିଦିଏ । ମୂର୍ତ୍ତି ଭାବମୟ ହେଇ ଉଠେ,

ପଥର ଧ୍ୱନିଯୁକ୍ତ ହୁଏ । ଏହା ହିଁ ରୂପତତ୍ତ୍ୱର ମହିମା । ମଥୁରା କାରିଗରଙ୍କ ପୂର୍ବପୁରୁଷମାନେ ଏହି ତତ୍ତ୍ୱରେ ଦୃଢ଼ ରହି ମୂର୍ତ୍ତି ସର୍ଜନା କରୁଥିଲେ । ଏଣୁ ଏବେ ତାଙ୍କର ଉତ୍ତରସୂରୀମାନେ ପରଂପରା କ୍ରମେ ମୂର୍ତ୍ତି ଗଢ଼ଣ କରିପାରୁଛନ୍ତି ।

ନିହାଣ ମୁଗୁରର ଠଣ୍ ଠାଣ୍ , ଠକ୍ ଠାକ୍, ଶବ୍ଦରେ ଉପବନ ମୁଖରିତ ହେଇ ଉଠିଲା । ମୂର୍ତ୍ତି ଗଢ଼ଣର ଅନବରତ ଶବ୍ଦ ଓ ପତ୍ର ଗହଳରେ ତାର ମନ୍ଦ୍ରିତ ପ୍ରତିଧ୍ୱନି ମଠର ମେଲା ଅଗଣାମାନଙ୍କରେ ଅଜାଡ଼ି ହେଇପଡ଼ିଲା । ଅନ୍ତେବାସୀ ଉପଲବ୍ଧିକଲେ କୃଷ୍ଣଚନ୍ଦ୍ର ଉଭା ହେଉଛନ୍ତି । ଏ ଶବ୍ଦ ପ୍ରତିମା ଆବାହନର ସଙ୍ଗୀତ । ଏ ସଙ୍ଗୀତ ମାଧ୍ୟମରେ ହିଁ ବିନ୍ଧାଣି ରୂପକୁ ପ୍ରକାଶ କରାଏ ।

ଏକାଥରକେ ଚାରି ଚାରି କରିଗର ପଥର ଚାରିପଟୁ ଘେରି ଖୋଦେଇ ଆରମ୍ଭ କଲେ । ମୁଗୁନି ପଥର କାମ ଟାଣ ଯେତେ ସୁବିଧା ବି ସେତେ । କନ୍ଦା ପଥର ଭଳି ଚଡ଼କି ଯିବନି, ଫସ୍କା ଜାଗା ବାହାରିବନି, ପଥର ଯେତେ ଟାଣ ହେଲେ ବି ବିନ୍ଧାଣିଙ୍କ ବୋଲ ମାନିବ । କଥା କହିବ । ମୁକ୍ତିର ଗୀତ ଗାଇବ । ମୂର୍ତ୍ତି ଆତ୍ମ ପ୍ରକାଶ ପାଇଁ ଛଟପଟ ହେବ । ତରତରହେଇ ନିହାଣ ମାଡ଼ କୁଦେଇ ଗଲେ ପଥର ଖାଲି ଚଡ଼କିବ, ଝଲ୍‌ଝଲ୍ ନିଆଁ ଉହୁକିବ । ଲାଗୁଥିବ କଳାମେଘରେ ଘନ ଘନ ବିଜୁଳି ଚମକୁଛି ।

ନିତ୍ୟାନନ୍ଦ ଓ ଗୌରୀ ମନ୍ଦିରରେ ସକାଳ ଧୂପ ବଢ଼ିଗଲା ପରେ ଉପବନ ଆଡ଼େ ବୁଲି ଆସନ୍ତି । କାରିଗରଙ୍କ ସାଙ୍ଗେ କଥା କହନ୍ତି , ଭଲମନ୍ଦ ପଚାରିବୁଝନ୍ତି । ମିଶ୍ରେ ଅଜା ଥିଲେ ଗୌରୀ ତାଙ୍କରି ପାଖରେ ଦଣ୍ଡେ ଘଡ଼ିଏ ବସିଯାଏ । ମିଶ୍ରେ ମଧ ନିତ୍ୟକର୍ମ ସାରି ଚୁଡ଼ା କଦଳୀ ନବାତ ଛେନା ଚକଟା ଖାଇଦେଇ କାରିଗରଙ୍କ ସାଙ୍ଗରେ ଘସିମାଜି ହେଉଥାନ୍ତି । ଉପବନରେ ଅଜାଙ୍କ ପାଇଁ କନାଲଗା ଆର୍ମ୍‌ଚେଉକିଟିଏ ପଡ଼ିଥାଏ । ବୁଲାବୁଲି କରି ଅଜା ଥକିଗଲେ ମଝିମଝିରେ ସେ ଚଉକି ଉପରେ ବସିପଡ଼ନ୍ତି ।

ପଥର ଖୋଦେଇ କାମ ଖାଲି କଷ୍ଟ ଓ ସମୟ ସାପେକ୍ଷ ନୁହେଁ । ଏଥିରେ ନିଘା ନିଷ୍ଠା ଲୋଡ଼ା । ଶାସ୍ତ୍ର ପରଂପରାରୁ ଟିକିଏ ବିଚ୍ୟୁତ ହେଇଗଲେ ପ୍ରତିମା ଅପୂଜ୍ୟ ହେଇଯିବାର ଭୟ ଥାଏ । ଏଣୁ ନୀଳାମ୍ବର ମିଶ୍ରେ ଉପବନ ଭିତରେ କାରିଗରଙ୍କ ପାଖରେ ସେଇ କଥାକୁ ବାରମ୍ବାର ଦୋହରାଉଥାନ୍ତି । ତାଙ୍କର ଶଙ୍କା ଥାଏ ଟୋକାଟାକଳିଆମାନେ

ତରତର ହେଇ କିଛି କରିପକେଇଲେ ସବୁ ସରିଯିବ ।

ଆର୍ମ ଚଉକିରେ ଆଉଜିପଡ଼ି ନୀଳାମ୍ବର ମିଶ୍ରେ ନିତ୍ୟାନନ୍ଦ ଓ ଗୌରୀଙ୍କୁ ଭେଦନ ବିଦ୍ୟା ସମ୍ପର୍କରେ ଧାରଣା ଦିଅନ୍ତି । ସେ କହନ୍ତି ମୂର୍ତ୍ତିର ଚରିତ୍ରରୁ କାରିଗରକୁ ପ୍ରେରଣା ମିଳେ । ପ୍ରେରଣା ଥିଲେ ହୃଦୟରେ ରୂପ ସଂଦର୍ଶନ କରିହୁଏ । କାରିଗରର ତୃତୀୟନେତ୍ର ଖୋଲିଯାଏ । ପ୍ରଥମରୁ ପଥରକୁ ନ୍ୟାସ କରିଦେଲେ ପଛକୁ ଆଉ ସମସ୍ୟା ରହେ ନାହିଁ । ପଥରକୁ ନ୍ୟାସ କଲା ସମୟରେ ଗାଥା ପାଠ କଲାଭଳି ଢଟା ପରଂପରାରେ ଅଥର୍ବ ବେଦର ମନ୍ତ୍ର ବୋଲା ଯାଏ । ଭେଦନ କର୍ମ ପ୍ରାରମ୍ଭରୁ ମନ୍ତ୍ର ପଢ଼ି ନିହାଣକୁ ଟାଣ କରାଯାଏ । ଦୁର୍ଗାଙ୍କୁ ଆବାହନ କରି ନିହାଣ ମୂନରେ ପ୍ରତିଷ୍ଠା କରାଯାଏ । ଅଗ୍ନିହୋତ୍ର ଯଜ୍ଞ କରି ବୈଶ୍ୱାନରଙ୍କୁ ସମସ୍ତ କଳ୍ମଷ ଦୂରକରିବାପାଇଁ ସ୍ତୁତି କରାଯାଏ । ନିହାଣମାନଙ୍କର ବି ପ୍ରକାର ଭେଦ ଅଛି । ସେଗୁଡ଼ିକ ହେଲା ଲାଞ୍ଜି, ଲାଙ୍ଗଳୀ, ଗୃଧ୍ରଦନ୍ତୀ, ସୂଚୀମୁଖ ଓ ବଜ୍ର । ସମସ୍ତେ କିନ୍ତୁ ଦୁର୍ଗାଙ୍କ ଠାରୁ ଶକ୍ତି ଆହରଣ କରନ୍ତି । ପ୍ରତିମାର ବିଭିନ୍ନ ଅଙ୍ଗ ପାଇଁ ବିଭିନ୍ନ ଶୈଳୀର ଖୋଦେଇ ପାଇଁ ଏ ସବୁ ନିହାଣ ଦରକାର ହୁଏ ।

ନିହାଣ ଯାକକୁ ପ୍ରଥମେ ଗାଈ ମୂତରେ ବତୁରେଇଲା ପରେ ସେଥିରୁ ବାହାର କରି ପୋଲାଙ୍ଗ ତେଲ ଦେଇ ଧାରୁଆ କଲେ ପଥର କାଟିବାରେ ତାହା ସହାୟକ ହୁଏ । ଆଜି କାଲି ଏତେ ପାଠ ଭିତରକୁ କିଏ ଯାଉନାହାନ୍ତି । କେବଳ ଇଷ୍ଟଙ୍କୁ ସ୍ମରଣା କରି ବିନ୍ଧାଣିମାନେ ଖୋଦେଇରେ ଲାଗିପଡୁଛନ୍ତି । ଏଣୁ ଅଧିକାଂଶ ସମୟରେ ମୂର୍ତ୍ତି ଯାକ ମଧ୍ୟ ନିଷ୍ପ୍ରାଣ ହେଇଯାଉଛି ଓ ଅପୂଜ୍ୟ ରହିଯାଉଛି ।

ଥରେ ଥରେ ପଥର ଟାଣ ପଡ଼ିଲେ, ବୋଲ ନ ମାନିଲେ ବ୍ରଜସୁନ୍ଦର ନୀଳାମ୍ବର ମିଶ୍ରେଙ୍କ ସହିତ ପରାମର୍ଶ କରନ୍ତି । ମିଶ୍ରେ ସବୁ ବିପଦ ଆପଦ ପାଇଁ ନିବାରଣ ବିଧାନ ଜାଣିଛନ୍ତି । ଶଙ୍ଖଦ୍ରାବ, କଇଠଅଠା, ସୈନ୍ଧବଲୁଣ ଓ ପ୍ରସ୍ତରଭେଦି ଗଛର ଛେଲିକୁ ମିଶେଇ ପାଗ କରି ପଥର ଉପରେ ଦଶ ଦିନ ପର୍ଯ୍ୟନ୍ତ ଘର୍ଷଣ କଲେ ପଥର ନରମା ହେଇଯାଏ ବୋଲି ମିଶ୍ରେ ବ୍ରଜସୁନ୍ଦରଙ୍କୁ କହନ୍ତି । କେବଳ ମହେନ୍ଦ୍ରଗିରି ପାହାଡ଼ରେ ପ୍ରସ୍ତର ଭେଦି ଗଛ ଉପଲବ୍ଧ ହୁଏ । ମିଶ୍ରେ ଆଗରୁ ଅନୁମାନ କରି ସାଙ୍ଗରେ ଛେଲିରୁ ବୁଜୁଳେ ହେବ ପାରଳାଖେମଣ୍ଡିରୁ ନେଇ ଆସିଛନ୍ତି । ଏହା ଶିଳ୍ପାଗମର ଭେଦନ ବିଦ୍ୟା ।

ଖୋଦେଇ କାର୍ଯ୍ୟ ନିର୍ବିଘ୍ନରେ ଆଗେଇ ଚାଲେ । ଉପବନର ଶାନ୍ତ କାନ୍ତ ପରିବେଶ କାରିଗରମାନଙ୍କ ଉପରେ ପ୍ରଭାବ ବିସ୍ତାର କରେ । ବଉଳ ଫୁଲର ବାସ୍ନା, କଦମ୍ବର ମହକ, ଯୂଇ ଜାଇ ମଲ୍ଲିର ସୁଗନ୍ଧ ଭୁରୁ ଭୁରୁ ହେଇ ପବନରେ ବହିଆସେ ଓ ସମସ୍ତଙ୍କ ଦେହ ଓ ମନକୁ ଉଚ୍ଚାଟ କରିଦିଏ । ରୋଷେଇଶାଳରୁ ଗୁଆଘିଅ ପରଜାଣିର ଛିଟା ସାଙ୍ଗରେ ମଠର ମନ୍ଦିରମାନଙ୍କରୁ ଘିଅଦୀପ ଓ ଧୂପଆରତିର ମୃଦୁ ମୃଦୁମନ୍ଦ ବାସ ଉପବନ ଭିତରେ ଖେଳିଯାଏ ।

କୃଷ୍ଣ ପ୍ରତିମା କାମ ଚାଲିଛି । ଏ ଭିତରେ କନ୍ଧା ପଥର ବି ପହଞ୍ଚିଗଲା । ମହନ୍ତ ଗୋସେଇଁଙ୍କ ମୂର୍ତ୍ତି ଏଇଥିରେ ଖୋଦେଇ ହେବ । ଠିଆ ମୂର୍ତ୍ତି ତ ନୁହଁ, ଚାରିକୁ ତିନି ଫୁଟ ମାପର ପଥର କୋଳେଇ ଯିବ । ମିଶ୍ରେ ମହାଶୟଙ୍କ ପରିକଳ୍ପନାହେଲା ଗୋସେଇଁ କୃଷ୍ଣ ପ୍ରତିମାର ପାଦ ତଳେ ଥାପନା ହେବେ । ଠିକ୍ ଯିମିତି ତାଙ୍କ ମୁଣ୍ଡ ଭାଗ କୃଷ୍ଣଙ୍କ ଚରଣାରବିନ୍ଦରେ ସମର୍ପି ହେଇଯିବା ଭଳି ଲାଗିବ । ସେ ନିଜେ ସମ୍ପୂର୍ଣ୍ଣ ଭାବେ ଗୋସେଇଁଙ୍କ ମୂର୍ତ୍ତି ଗଢ଼ଣ ତଦାରଖ କରିବେ । ମଥୁରା କାରିଗରଙ୍କ କାମ ଓଡ଼ିଶୀ ଧରଣର । ଓଡ଼ିଶୀ ଶିଳ୍ପ ପରଂପରାରେ ଆଲେଖ୍ୟ ରଚନା ନାହିଁ ନୁହଁ, କିନ୍ତୁ ଏଥିରେ ବ୍ୟକ୍ତି ବିଶେଷର ସ୍ୱରୂପ ପ୍ରକାଶ ପାଏନି । ଏକ ଗୋଷ୍ଠୀଗତ ଚାରିତ୍ରିକ ଭାବ ଚିହ୍ନା ପଡ଼ିଯାଏ । ଏଣୁ ହରେକୃଷ୍ଣ ଗୋସେଇଁ ବୋଲି ମଧ୍ୟ ଶେଷରେ ଚିହ୍ନି ହେବନି । ମିଶ୍ରେ, ଗୋସେଇଁଙ୍କ ପ୍ରତିକୃତିକୁ କଳାକୁଞ୍ଜ ପରଂପରାରେ ଗଢ଼ିବେ । ତାଙ୍କୁ ମଥୁରାର ଦୁଇଜଣ ବିଜ୍ଞାଣି ସହଯୋଗ ଦେବେ ।

ଉପବନ ଏବେ ଲାଗୁଛି ବିଗ୍ରହ ଖଳା ଭଳି । ଗୋଟିଏ ପଟେ ଶ୍ରୀକୃଷ୍ଣ ଓ ଅନ୍ୟ ପଟେ ଗୋସେଇଁ ଖୋଦେଇ ହେଉଛନ୍ତି । କୃଷ୍ଣ ପ୍ରତିମାକୁ ପଥର କାରିଗରମାନେ ପଟକରି ଉବଡ଼େଇ ଦେଇଛନ୍ତି । ଅଣ୍ଟା, ପିଠି, ନିତମ୍ବ ଭାଗ ଖୋଦେଇ ହେଉଛି । ଏ ଖୋଦେଇ କାମ ଶେଷ ହେଇଗଲେ ମୂର୍ତ୍ତିକୁ ଆଗପଟକୁ ଗଡ଼େଇ ଦେଇ ଭାଗ ମାପ ଆଉଥରେ କଷିନେବେ । ପଥର ଖୋଦେଇ ଚିତ୍ର ଭଳିଆ ନୁହଁ ଯେ ଶେଷ ପାଦିଆରେ ରଙ୍ଗ ମେଞ୍ଚେ ବୋଳିଦେଇ ଭୁଲ ସଂଶୋଧନ କରିଦେଇ ହେବ । ଇଏ ପଥର ଥରେ କଟିଗଲେ ଗଲା । ଏଣୁ ସବୁ ବେଳେ ଗୋଡ଼େ ଗୋଡ଼େ ସତର୍କତା । ପଥର ଖୋଦେଇ ଓ ପ୍ରତ୍ନତାତ୍ତ୍ୱିକ ଖନନ ଭିତରେ ମାନସିକତା ସମାନ ଓ ଉପଲବ୍ଧି ମଧ୍ୟ ଏକାଭଳି । ପ୍ରଥମଟିରେ ପଥରେ ଲୁକ୍କାୟିତ ରୂପ ସୌଷ୍ଠବର ଉନ୍ମୋଚନ ଓ ପରଟିରେ ପୋତିହେଇ ନିଶ୍ଚିହ୍ନ

କଳାକାରିଗରିର ଉଦ୍‌ଘାଟନ । ଉଭୟ ଭିତରେ ଅକସ୍ମାତ ରୂପ ପ୍ରାପ୍ତିର ଆନନ୍ଦ ଅଛି, ଉତ୍କଣ୍ଠାର ଅନ୍ତ ନାହିଁ । ଏହା ଦୈହିକ ପ୍ରେମ ପ୍ରାପ୍ତିର ପୂର୍ବ ଅବସ୍ଥା ଭଳି । ପ୍ରେମ ଏଠି ପଥର ସାଙ୍ଗରେ । ପଥର ମାନିଯାଇଛି । କାରିଗର ହାତରେ ଧରାଦେଇଛି । କଳାର ବ୍ୟାପାର ମାଛହାଟରେ ମାଛ ତଉଲିଲା ଭଳିଆ କାର୍ଯ୍ୟ ନୁହେଁ । ମୁହଁଅନ୍ଧାର ସକାଳରେ ବାସ ବାରି ଫୁଲ ତୋଳିଲା ପରି । ହାତ କହିଦେବ, ବାସ୍ନା କହିଦେବ କିଏ ବୃନ୍ତଚ୍ୟୁତ ହେଲା । ଏଠି ନିହାଣ କଥା କହିବ,ସଙ୍ଗୀତ ଶୁଣେଇଦେବ ପଥର ଖୋଦେଇର ସଫଳତା । ସଂଗୀତ ରୂପକୁ ପ୍ରଚୋଦନା ଦେବ । ସଙ୍ଗୀତରୁ ରୂପ ସୃଷ୍ଟି ହେବ, ପଥରରୁ ନୁହେଁ । ପଥର ଅବଲମ୍ବନ ହେଇ ପଡ଼ିବ । ପଥର ଗଢ଼ିଦେବ ରକ୍ତମାଂସର ଦେହ ଆଉ ସଙ୍ଗୀତ ଭରିଦେବ ସେଥିରେ ପ୍ରାଣପାଟବତା, ପୁରୋହିତ ଜୀବନ୍ୟାସ ଦେବାର ବହୁ ଆଗରୁ ।

କୃଷ୍ଣ ସଙ୍ଗୀତର ସ୍ୱରୂପ । ମୁଗୁନି ପଥର ତ କୃଷ୍ଣଙ୍କ ଦେହର ରଙ୍ଗ ଭରିଦେଲା । ଲାବଣ୍ୟ ପ୍ରଥମରୁ ହିଁ ବୁଣିଦେଲା ଅବୟବମାନଙ୍କ ଉପରେ । ରୂପ ଉକୁଟିଗଲା । ଠକ୍‌ଠକ୍ ଶିଳା ଶବ୍ଦ ଅବାରିତ ବର୍ଷି ଯାଉଛି , ଗଛମାନଙ୍କ ଉପରେ । ଲତାକୁଞ୍ଜରେ ଓ ଫୁଲଶେଯରେ । ଉପବନ ଭିତରେ କୃଷ୍ଣଚନ୍ଦ୍ର କଦମ୍ବ ବନରେ ଉଭାହେଉଛନ୍ତି ଜହ୍ନଉଇଁଲା ପରି । ଶିଶୁର ଦରୋଟି ବଚନ ଭଳି ଓ ଶରତ୍ ସକାଳର କୁହୁଡ଼ି ପହଁରି ନଦୀରେ ଡ଼ଙ୍ଗାଟିଏ ଭାସିଗଲା ଭଳି ରୂପ ପ୍ରତିଭାତ ହେଉଛି । ପ୍ରତିଟି ଉନ୍ମେଷରେ ଶତ ଶତ ସମ୍ଭାବନା ବହନ କରି ଅଙ୍ଗ ପ୍ରତ୍ୟଙ୍ଗମାନେ ଦୃଶ୍ୟ ହେଉଛନ୍ତି । ମାଂସଳ ଜଙ୍ଘ, ଦମ୍ଭିଲାଗୋଡ଼, କମନୀୟ ପଦଯୁଗଳ । ତାପରେ କ୍ଷୀଣ ଅଥଚ ରସାଳ କଟିଦେଶ, ସାମାନ୍ୟ କୁଞ୍ଚିତ ଉଦର, ଗଭୀର ନାଭିମଣ୍ଡଳ, ପାତଳ ତଳିପେଟ, ତା ତଳକୁ ଗୁପତ ଅଙ୍ଗ ବାରି ହେଇ ଗଲାଣି । ଉର୍ଦ୍ଧ୍ୱଭାଗରେ ବିସ୍ତାରିତ ବପ୍ର, ଆଜାନୁ ଲମ୍ବିତ ଛନ୍ଦୋବଦ୍ଧ ଭୁଜ, ମୁରଲୀ ଫୁଙ୍କା ହାତର ମୁଦ୍ରାୟିତ ପାପୁଲି, ଚଂପା କଢ଼ିଭଳି ଆଙ୍ଗୁଠି ସବୁ ଦିଶି ଗଲାଣି । ଏବେ ରୂପଦର୍ଶନରେ ରୂପଭାବନା । ତଲ୍ଲୀନ ହେବା ବେଳ । ଏବେ ବ୍ୟକ୍ତରୂପକୁ ଆବାହନ କରିବା ସମୟ । ଧ୍ୟାନମନ୍ତ୍ରରେ ଶିଳ୍ପଚେତନାକୁ ଶାଣିତ କରି ପ୍ରାର୍ଥନା କରିବାର କ୍ଷଣ । ଯେତିକି ପଥର ଖୋଦିତ ହେଇ ମୂଳପଥରରୁ ଅନ୍ତରିତ ହେଇଗଲା ତାକୁ ବିସର୍ଜନ ଦେଇ ନୂତନର ସ୍ୱାଗତବନ୍ଦନା ଗାଇଲେ ପଥର ପ୍ରତିମା ବାକ୍‌ମୟ ହେବ । ପ୍ରତିମାର ଆବିର୍ଭାବ ହେବ, ଅବତରଣ ଘଟିବ ।

ଏବେ ଏବେ ଗୌରୀ ସମସ୍ତ ଅପରାହ୍ଣ କଦମ୍ବମୂଳେ ହିଁ କଟେଇ ଦିଏ । କୃଷ୍ଣ ପ୍ରତିମାକୁ ନିରେଖି ନିରେଖି ଦେଖେ । ତାର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗରେ ପ୍ରୀତିର ପ୍ଲାବନ ଖେଳିଯାଏ । ପ୍ରତିମା ସହିତ ତାର ସମ୍ପର୍କ ଅତି ନିବିଡ଼ । ଅତି ଏକାନ୍ତ । ଅତି ଆତ୍ମିକ । ପ୍ରତିମା ତା ପାଇଁ ସବୁବେଳେ ଏକ ଆଧ୍ୟାତ୍ମିକ ଚେତନା । ସେ ଚାହେଁ ଏଇ ଚେତନାର ବିକାଶ ହେଉ ଓ ତାରି ଭିତରେ ସେ ଆଲୋକବର୍ତ୍ତିକାଟି ଭଳି ଜଳୁଥାଉ ଯୁଗଯୁଗ ଧରି ।

ପୁରୁଷୋ ଉଚ୍ଚାର ନବଘନ ବର୍ଣ୍ଣର ଶ୍ରୀଅଙ୍ଗ ତାକୁ ପ୍ରଲୁବ୍ଧକରେ । ସେ ପ୍ରତିମାର ଛାତିରେ ବେକରେ ବାହୁରେ ହାତ ଛୁଆଁଇ ଆଣେ । ଦେହ କଂପିଉଠେ । କି ସ୍ନିଗ୍ଧ ଚିକ୍କଣ ଏ ପଥରର ଦେହ । କାରିଗରମାନେ କହନ୍ତି ଆହୁରି ଚିକ୍କଣ ହେବ । ଅନ୍ନ ଧୂପ ବେଳେ ଶ୍ରୀଅଙ୍ଗରୁ ଝାଳ ନିଗିଡ଼ି ପଡ଼ିବ । ମୁଗୁନି ପଥର ହେଲେ ବି ଦର୍ପଣରେ ପ୍ରତିବିମ୍ବିତ ହେଲାଭଳି ଭକ୍ତର ରୂପ ପ୍ରତିମାରେ ଦୃଶ୍ୟହେବ । ତା ନହେଲେ ଏ କିଭଳି ପ୍ରତିମା ? ଗୌରୀ ଅନୁମାନ କରେ ଯିମିତି ଏ ପଥର ପ୍ରତିମା ଛାତି ଭିତରେ ସକଳ ଗୋପୀଙ୍କ ପାଇଁ ଯେତେକ ପ୍ରେମ ସ୍ନେହ ଦରଦ ଭରି ରହିଛି ।

ନିତ୍ୟାନନ୍ଦ କୃଷ୍ଣ ପ୍ରତିମାକୁ ଦଣ୍ଡେ ଚାହିଁଦେଇ ଆଖିବୁଜନ୍ତି, ଧ୍ୟାନରେ ହଜିଯାଅନ୍ତି । ପୁଣି ଆଖିଖୋଲି କୃଷ୍ଣ ସ୍ତୋତ୍ରଟିଏ ଉଚ୍ଚାରଣ କରନ୍ତି :

ସୁପିଚ୍ଛଗୁଚ୍ଛମସ୍ତକଂ ସୁନାଦବେଣୁହସ୍ତକମ୍
ଅନଙ୍ଗରଙ୍ଗସାଗରଂ ନମାମି କୃଷ୍ଣନାଗରମ୍
ମନୋଜଗର୍ବମୋଚନଂ ବିଶାଳଲୋଲଲୋଚନମ୍
ବିଧୂତଗୋପଶୋଚନଂ ନମାମି ପଦ୍ମଲୋଚନମ୍

ନିତ୍ୟାନନ୍ଦ ସ୍ତୋତ୍ରଟି ଶେଷହେଲାପରେ ପ୍ରବଚନ ଦେବାଢଙ୍ଗରେ କାରିଗରମାନଙ୍କୁ ଲକ୍ଷ୍ୟକରି କହନ୍ତି, ଶ୍ରୀକୃଷ୍ଣ ହେଉଛନ୍ତି ନିର୍ଗୁଣ ପରଂବ୍ରହ୍ମଙ୍କ ସଗୁଣ ମୂର୍ତ୍ତି । ସେ ଅବ୍ୟକ୍ତ ଓ ଅଚିନ୍ତ୍ୟ । ତଥାପି ପରମ କରୁଣାମୟ ଭାବମୟ ଆଜି ଚିନ୍ତାଗ୍ରାହ୍ୟ ବିଗ୍ରହରୂପେ ପ୍ରକଟିତ ହେଉଛନ୍ତି । ଭକ୍ତଙ୍କୁ ଆନନ୍ଦ ପ୍ରଦାନ କରିବାପାଇଁ ଭଗବାନ ଯୁଗେଯୁଗେ ଲୀଳାମୟ ବିଗ୍ରହରୂପେ ଉଭାହୁଅନ୍ତି । ସେହି ମୂର୍ତ୍ତି ଅପ୍ରାକୃତ ପ୍ରେମମୂର୍ତ୍ତି

ହେଲେ ବି କାରିଗର ତାର ସର୍ଜନା ଶକ୍ତିର ଅଲୌକିକତାରେ ପ୍ରାକୃତ କରିଦିଏ । କୃଷ୍ଣ ପ୍ରାପ୍ତିପାଇଁ ନବଧା ଭକ୍ତିର ମାର୍ଗ ଅଛି । ଭାଗବତରେ ପରମ ଗୋସେଇଁ ଜଗନ୍ନାଥ ଏ କଥା ହିଁ ଆମ ପାଇଁ ନିର୍ଦ୍ଦେଶ କରିଯାଇଛନ୍ତି । ଭାଗବତାମୃତ ଶ୍ରବଣ କରି ପରୀକ୍ଷିତ, କୀର୍ତ୍ତନ ଦ୍ୱାରା ଶୁକ, ନିତ୍ୟସ୍ମରଣ କରି ଭକ୍ତ ପ୍ରହ୍ଲାଦ, ପାଦସେବାକରି ଲକ୍ଷ୍ମୀ, ପୂଜା ଅର୍ଚ୍ଚନା କରି ପୃଥୁ, ବନ୍ଦନା କରି ଅକ୍ରୁର, ଦାସ୍ୟଦ୍ୱାରା ହନୁମାନ, ସଖ୍ୟଦ୍ୱାରା ଅର୍ଜ୍ଜୁନ ଏବଂ ଆତ୍ମ ନିବେଦନ କରି ବଳି ଭଗବାନଙ୍କୁ ପ୍ରାପ୍ତ ହୋଇଥିଲେ । ବିନ୍ଧାଣିମାନେ ପିତୁଳୀ ସର୍ଜନା କରି ତାରି ମାଧ୍ୟମରେ ଭଗବାନଙ୍କ ପାଖରେ ପହଞ୍ଚି ପାରନ୍ତି । ଏହାକୁ ଦଶବିଧ ଭକ୍ତି କହିବା । ଏକଥା ଭାଗବତରେ ଉଲ୍ଲେଖ ନଥିଲେ ମଧ୍ୟ ଏହା ସତ୍ୟ । ବାସ୍ତବ ।

ରାଧାରାଣୀ ହେଲେ ପରମ ବୈଷ୍ଣବୀ, କୃଷ୍ଣଙ୍କ ପରମ ଭକ୍ତ, ତାଙ୍କ କଥା ସବୁବେଳେ ନିଆରା । ରାଧାରାଣୀଙ୍କ ସଂପର୍କରେ କାଳେ କଣ କହିବେ ବୋଲି ଭାବି ଗୌରୀମ୍ମ ନିତ୍ୟାନନ୍ଦଙ୍କ ମୁହଁକୁ ଅନେଇଲା । ଲାଗିଲା ନିତ୍ୟାନନ୍ଦ କୃଷ୍ଣପ୍ରେମରେ ତଲ୍ଲୀନ, ଲାଗିଲା ତାଙ୍କର ହୃଦୟରେ ପ୍ରେମର ବନ୍ୟା ଛୁଟିଛି । ସେ ରାଧାଭାବରେ ଆଲୋଡ଼ିତ ହେଉଛନ୍ତି ।

ନିତ୍ୟାନନ୍ଦ କହିଚାଲିଲେ ।

ରାଧା ଯେତେବେଳେ ଶ୍ରୀକୃଷ୍ଣଙ୍କ ସାନ୍ନିଧ ଲଭୁଥିଲେ, ସେ କୃଷ୍ଣଙ୍କ ରକ୍ତମାଂସ ଦେହରେ କୃଷ୍ଣସତ୍ତାକୁ ହିଁ ସଂଦର୍ଶନ କରୁଥିଲେ । ଅନ୍ୟ ବେଳେ କୃଷ୍ଣଙ୍କର ବିରହରେ ସେ ବେଦନା ବିଧୁର ହେଇ ଉଠୁଥିଲେ । ସେ ଅନୁଭବ କରୁଥିଲେ ଆକାଶ, ପବନ, ବନ ଉପବନ, ନଦନଦୀ, ପାହାଡ଼ ପର୍ବତ, କ୍ଷେତ ବାଡ଼ି ସବୁ କୃଷ୍ଣମୟ ହେଇଯାଇଛି । ସବୁଜିମା, ମାଧୁରିମା, ରଙ୍ଗିମା, ଭଙ୍ଗିମା ସବୁ କିଛି ନୀଳିମାରେ ପରିବର୍ତ୍ତିତ ହେଇଯାଇଛି । ତାଙ୍କୁ ଲାଗୁଥିଲା କୃଷ୍ଣଙ୍କ ସାନ୍ନିଧ ଅପେକ୍ଷା ତାଙ୍କର ବିରହର ପ୍ରଲୋଭନ ବଡ଼ ମଧୁମୟ ।

ରାଧାଙ୍କ ନିକଟରେ କୃଷ୍ଣସାନ୍ନିଧ ଓ କୃଷ୍ଣବିରହ ମଧ୍ୟରେ ବିରହ ହିଁ ବେଶି ପ୍ରେମମୟ । କୃଷ୍ଣ ଓ ରାଧା ଏକ ଓ ଅଭିନ୍ନ । ଏଣୁ ମିଳନ ଓ ବିରହ ସନ୍ଦର୍ଭ ଅମୂଳକ ।

ତଥାପି ବିରହରେ ଉଭୟେ ବହୁଧାରେ ବିସ୍ତାରିତ ହେଇ ଯାଆନ୍ତି । ରାଧାଙ୍କର ତନୁ ଯୋଜନ ଯୋଜନ ପ୍ରସାରିତ ହେଇଯାଏ । ତା ସାଙ୍ଗରେ ପ୍ରେମ ଅଭିପ୍ସାର ବଳୟ ଲମ୍ବିଯାଏ । କୃଷ୍ଣଙ୍କ ନୀଳିମା ସମଗ୍ର ଆକାଶରେ, ଶୂନ୍ୟରେ ଶ୍ୟାମଳ ନବଘନ ଭଳି ଘୋଟିଯାଏ ଓ ରାଧାଙ୍କ ତନୁଲତା ଉପରେ ବର୍ଷାଭଳି ଅଜାଡ଼ି ହେଇ ପଡ଼େ । ଯମୁନାରେ ଘନକୃଷ୍ଣ ଜଳର ବନ୍ୟାଆସେ, ସବୁ ଏକାକାର ହେଇଯାଏ । ରାଧାରାଣୀ ଏହା ହିଁ ଚାହାନ୍ତି । ଦୈହିକ ପ୍ରେମ ନୁହେଁ ବିଦେହରେ ପ୍ରେମର ପ୍ଲାବନ । ତାଙ୍କର ଭାବନାକୁ ଶାସ୍ତ୍ର ସିଦ୍ଧକରିବା ପାଇଁ ନିତ୍ୟାନନ୍ଦ ଶ୍ଳୋକଟିଏ ଉଚ୍ଚାରିଲେ ।

ସଙ୍ଗମବିରହ ବିକଳ୍ପେ ବରମିହ ବିରହୋ ନ ସଙ୍ଗମସ୍ତସ୍ୟ
ସଙ୍ଗେ ସୈବ ତଥୈକସ୍ତ୍ରିଭୁବନମପି ତନ୍ମୟଂ ବିରହେ ।

ନିତ୍ୟାନନ୍ଦ ଯାହା ପାଠରୁ ଉଦ୍ଧାର କରି ବଖାଣିଲେ ଗୌରୀ ସବୁ ମୁହୂର୍ତ୍ତରେ ସେଇଆ ହିଁ ଅନୁଭବ କରୁଛି । ଗୌରୀର ଦିନଯାକ ବିରହର ହିଁ ଦିନ । ରାଧାବିନୋଦ ପ୍ରତିମାର ବନ୍ଧନରୁ ଜୀବନ୍ତ ନିତ୍ୟାନନ୍ଦ । ପୁଣି ଜୀବନରୁ ପିତୁଳା, ନିତ୍ୟାନନ୍ଦ ରୁ ପ୍ରତିମା ଯାଏଁ ଉତ୍ତରଣ । ବିରହ ଏକ ବାରିଧି, ସେଥିରୁ ପୁଣି ଉତ୍ତରଣ କଣ ହେଇପାରେ ? ଗୌରୀ ସେ କଥା ହିଁ ସ୍ମରଣ କରୁଛି । ପାରାବାରରୁ ଉତ୍ତରିତ ହେଲେ ଆକାଶ ପୁଣି ଆକାଶରୁ ପାରାବାର । ଗୋଟିଏ ନୀଳିମାର ବିସ୍ତାରରୁ ଅନ୍ୟ ଏକ ନୀଳିମା । ସବୁ ଏକାଭଳି ଅନୁଭବ ।

କାରିଗରମାନେ ନିତ୍ୟାନନ୍ଦଙ୍କ ଠାରୁ ତତ୍ତ୍ୱ ଶୁଣିଲେ । ପୁଣି ଆରମ୍ଭହେଲା ଠକ୍‌ଠକ୍ । ଲାଗୁଛି ଏହି ଠକ୍‌ଠକ୍ ଭିତରେ ହିଁ ସବୁ ତତ୍ତ୍ୱ ନିହିତ ଅଛି । ନବଧା ଭକ୍ତି ଏଇଠି , ମିଳନ ଏଇଠି, ବିରହ ବି ଏଇଠି । ମନ୍ଦିରରେ ଗୀତଗୋବିନ୍ଦ ସେବା ବଢ଼େଇ ଦେଇ ନିତ୍ୟାନନ୍ଦ ଓ ଗୌରୀ ପୁଣି ଉପବନରେ ପ୍ରବେଶନ୍ତି । ଏଇ କେତେ ଦିନ ନିଭୃତ ସେବା ବନ୍ଦ ଅଛି । ଉପବନର ତରୁବର ଶାନ୍ତ ଓ କମନୀୟ ହେଇଯାଇଥାନ୍ତି । ସମସ୍ତଙ୍କ ପହୁଡ଼ର ବେଳ । କିନ୍ତୁ ଉପବନ ଭିତରେ ମୂର୍ତ୍ତି ଗଢ଼ଣର ଅହର୍ନିଶ ସଙ୍ଗୀତ ଚାଲିଛି । ଶ୍ରୀକୃଷ୍ଣ ଉଭାହେଉଛନ୍ତି ତ ଦେବତାମାନଙ୍କର ପହୁଡ଼ରେ ବିଘ୍ନ ଘଟୁନି । ଏଣୁ ସତେ ଯିମିତି ରାଧାରାଣୀଙ୍କ ଆଦେଶରେ ଏ କାର୍ଯ୍ୟଚାଲେ ମଧରାତ୍ରି ଯାଏଁ । ସବୁଶବ୍ଦ ବଂଶୀ ସ୍ୱନରେ ପରିଣତ ହେଇଯାଏ ।

ଗୌରୀ ଆସି ଆସି କୃଷ୍ଣମୂର୍ତ୍ତି ପାଖରେ ବସିଯାଆନ୍ତି ଓ ସ୍ୱପ୍ନାବିଷ୍ଟ ହୋଇ ଯାଆନ୍ତି । ନିତ୍ୟାନନ୍ଦ ଅଜାଙ୍କ ପାଖରେ ଅଟକିଯାଇ ଗୋସେଇଁଙ୍କ ଗଢ଼ଣର ରହସ୍ୟ ବୁଝୁଥାନ୍ତି । ଗୌରୀ ଆଖିବୁଜିଦେଇ ମନ୍ମଥସୁନ୍ଦର ଆକର୍ଷଣ କେନ୍ଦ୍ର, ଅନନ୍ତ ଐଶ୍ୱର୍ଯ୍ୟ, ଅଖଣ୍ଡ ଯଶ, ବୈରାଗ୍ୟ ଓ ଅମ୍ଳାନ ଜ୍ଞାନସ୍ୱରୂପ ଲୀଳା ପୁରୁଷୋତ୍ତମଙ୍କୁ ବନ୍ଦନା କରନ୍ତି ।

କସ୍ତୁରୀତିଳକଂ ଲଲାଟପଟଳେ ବକ୍ଷଃସ୍ଥଳେ କୌସ୍ତୁଭଂ
ନାସାଗ୍ରେ ବରମୌକ୍ତିକଂ କରତଳେ ବେଣୁଃ କରେ କଙ୍କଣମ୍ ।
ସର୍ବାଙ୍ଗେ ହରିଚନ୍ଦନଂ ସୁଲଳିତ କଣ୍ଠେ ଚ ମୁକ୍ତାବଳୀ
ଗୋପସ୍ତ୍ରୀପରିବେଷ୍ଟିତୋ ବିଜୟତେ ଗୋପାଳଚୂଡ଼ାମଣିଃ ॥

ବିନ୍ଧାଣିଙ୍କୁ ପ୍ରଶ୍ନକରନ୍ତି କୃଷ୍ଣଙ୍କ ପାଦତଳେ ବଇଠାଉପରେ ଗୋପୀମାନେ ଓ ଧେନୁପଲ ରହିବେ ତ ? ବିନ୍ଧାଣି ଗୌରୀଙ୍କୁ ବୁଝାଇବା ପାଇଁ ମୂର୍ତ୍ତିର ଟିପଣାଟା ଦେଖେଇଦିଏ । ବଇଠାର ଉପର ଥାକର ଗୋପୀମାନେ ଆଲଟ ଚାମର ଓ ବନ୍ଦାପନାଥାଳି ଧରି କୃଷ୍ଣଙ୍କୁ ଅର୍ଚ୍ଚନା କଲାଭଙ୍ଗିରେ ଅଛନ୍ତି । ଧେନୁପଲ ସିମିତି ବତ୍ସାଯୁକ୍ତ ହୋଇ ବଂଶୀ ସ୍ୱନ ଶୁଣିବା ପାଇଁ ଉତକଣ୍ଠାରେ ଗୋପାଳଶ୍ରେଷ୍ଠଙ୍କୁ ଚାହିଁ ରହିଛନ୍ତି ।

ଗୌରୀ କୃଷ୍ଣଙ୍କ ନବଘନ ମୂର୍ତ୍ତି ସଂଦର୍ଶନ କରି ପୁଲକିତ ହୋଇ ଯାଆନ୍ତି । ତାଙ୍କୁ ଲାଗେ ମୋହନ ସୁନ୍ଦର ତାଙ୍କୁ ଭୁଜବନ୍ଧେଇ କୋଳେଇ ନେଉଛନ୍ତି, ଗଣ୍ଡରେ ଅଧରରେ ଚୁମ୍ବନ ଭରି ଦେଉଛନ୍ତି । ସ୍ତନ ଯୁଗଳ ମର୍ଦ୍ଦନ କରୁଛନ୍ତି, ଗୌରୀଙ୍କର ସ୍ତନ ଜଘନ କଂପିଯାଏ । ଦେହରେ ଅଦ୍ଭୁତ ଶିହରଣ ଜାଗିଉଠେ । ତାଙ୍କୁ ରତିକ୍ଳାନ୍ତ ହେଲାଭଳି ଲାଗେ । ସେ ଠିଆହେଇ ପଡ଼ି କଦମ୍ବ ଗଛରେ ଦେହଟାକୁ ଆଉଜେଇ ଦିଅନ୍ତି । ମଧୁରଭାବରେ ସେ ତଲ୍ଲୀନ ହୋଇ ଅର୍ଦ୍ଧନିମିଳିତ ଚକ୍ଷୁରେ କୃଷ୍ଣ ମୂର୍ତ୍ତିକୁ ଚାହୁଁଥାନ୍ତି । ଭାବୁଥାନ୍ତି, ହେ ହରି ! ତମେ ମୋର ହୃଦୟ ଭିତରେ ସବୁଦିନ ପାଇଁ ବନ୍ଦୀହେଇ ରହ । ତମେ ବ୍ରଜରେ ଲହୁଣୀ ଚୋରିକଲ, ଗୋପାଙ୍ଗନାମାନଙ୍କର ବସ୍ତ୍ରଚୋରି କଲ, ନୂଆମେଘର ଶ୍ୟାମଳିମା ଚୋରିକଲ, ମୋର ଦେହ ମନ ସର୍ବସ୍ୱ ଚୋରିକଲ, ତମକୁ ଏଥର ଆଉ ଯିବାପାଇଁ ଦେବିନି । ତମେ ମୋତେ ତମ କୋଳରେ ଚିର ଆଶ୍ରୟଦିଅ ।

ତୁମେ ମଧୁର ନାୟକ । ତମର ଗାନ ପାନ ଭୋଜନ ଶୟନ ରୂପ ତିଳକ

ଛଟା ଚହାଣୀ ସବୁ ମଧୁମୟ । ତମର ହରଣ ଓ ରମଣ ବି ଏକାଭଳି ମଧୁର । ତମର ଲୀଳା କଳା ସବୁ ସୁନ୍ଦର । ତମେ ମୋତେ ବାରମ୍ବାର ରମଣ ସୁଖ ପ୍ରଦାନ କରି ଧନ୍ୟକରିଛ । ମୁଁ ତମର ଅଧର ମଧୁ ପାନକରି ବିମୋହିତ । ମୋ ଇଛା ପୂରଣ କରି ମୋ ମନର ବେଦନା ଦୂରକର । ମୋତେ ଆଉ ଭିନ୍ନକରି ରଖନାହିଁ, ଅଭିନ୍ନ କରିଦିଅ, ମୁଁ ତୁମ ସାଙ୍ଗରେ ଏକ ହେଇଯାଏ ।

ଉପବନରେ ନିଶା ଗରଜିଆସେ । ଗୌରୀ ନିତ୍ୟାନନ୍ଦ, ନୀଳାମ୍ବର ଅଜା ନିଜନିଜ ଖଞ୍ଜାକୁ ବାହୁଡ଼ି ଆସନ୍ତି । କାରିଗରମାନେ ବାହାର ମେଲା ଅଗଣାରେ କଚେରିପିଣ୍ଡାରେ ଶୋଇପଡ଼ନ୍ତି । ଟହଲିଆ ଉପବନ କବାଟ କିଳିଦିଏ । ସବୁଆଡ଼ ନିଛାଟିଆ ହେଇଯାଏ ।

କୃଷ୍ଣଙ୍କ ରୂପରେ କି ମହନୀୟ ଆକର୍ଷଣ ଅଛି କେଜାଣି ଗୌରୀ ମୁହୂର୍ତ୍ତେ ସମୟ ବି ପାଇଗଲେ ବାରମ୍ବାର ଉପବନ ଆଡ଼େ ଘେରେ ବୁଲି ଆସେ । ଭଅଁର ଫୁଲର କେଶର ଭିତରେ ଲାଖିଗଲାଭଳି ସେ ମୂର୍ତ୍ତିର ଆଭା ଭିତରେ ହଜିଯାଏ । ତା ଦେହ ସାରା କେଶରଧୂଳି ବିଞ୍ଚିହେଇଯାଏ । ତାକୁ ଚନ୍ଦନରେ ଭୂଷିତ ହେଇଗଲାଭଳି ଲାଗେ । କୃଷ୍ଣଚନ୍ଦ୍ରଙ୍କର ନବଘନ ମେଘପରି ଶ୍ୟାମଳ ସୁନ୍ଦର ଶରୀର, ପୂର୍ଣ୍ଣିମା ଚନ୍ଦ୍ରସଦୃଶ ମୁଖ, ପଦ୍ମପାଖୁଡ଼ାଭଳି ନେତ୍ର ଯୁଗଳ, ବିମ୍ବଫଳ ପରି ଅଧର ଗୌରୀକୁ ପ୍ରଲୁବ୍ଧ କରେ । ଆକର୍ଷଣ କରେ ।

ଏବେ ମୂର୍ତ୍ତି ସଂପୂର୍ଣ୍ଣ ହେଇଆସିଲାଣି । ଆଖି ନାକ କାନ ସବୁ ଖୋଦେଇ ସରିଲାଣି । କାନରେ କୁଣ୍ଡଳ ପିନ୍ଧିବାପାଇଁ, ନାକରେ ଦଣ୍ଡି, ବସୁଣୀ ନାଇହେବାପାଇଁ, ବ୍ୟବସ୍ଥା ରଖିବାକୁ ଗୌରୀ କହିଲେ । ରୁପାର ମୂରଲୀ ସ୍ୱତନ୍ତ୍ରଭାବେ ଗଢ଼ଣ ହେଇ ହାତରେ ଶୋଭା ପାଇବ । ପିଠି ପଟେ ଲମ୍ବାବେଣୀ ଲୋଟିଛି । ବେଣୀ ଅଗରେ ରତ୍ନ ଝୁମ୍ପା ଲାଗିବ । ପାଦରେ କଠଉ ପିନ୍ଧା ସରିଛି । କୃଷ୍ଣମୂର୍ତ୍ତି ଉଦଣ୍ଡ ଲଙ୍ଗଳା, କଟିର ଠାଣି ଚମତ୍କାର ଭାବରେ ଉତୁରି ପଡ଼ିଛି । ବାଁ ପଟ କମର ଟିକିଏ ଉତ୍ତାଳ । ଦକ୍ଷିଣ କାନ୍ଧରୁ ବାହୁ ଆଗକୁ ଉହୁଁକି ପଡ଼ିଛି । ବିଶାଳ ଭୁଜ, ଦୁଇ କମନୀୟ ହାତ ହାତର ମୁଦ୍ରା ଏକ ଅବିସ୍ମରଣୀୟ ଭଙ୍ଗିମାରେ ବଂଶୀ ବଜେଇବା ପାଇଁ ଉଦ୍ୟତ । ଗୁପତ ଅଙ୍ଗ ବି ଖୁବ୍ ଲୋଭନୀୟ । କେଉଁଠି ହେଲେ ଅସଙ୍ଗତି ଅସଂଯମ ଓ ଅଶ୍ଳୀଳତାର ଲେସ ମାତ୍ର

ନାହିଁ । ଏକ ନିର୍ଲିପ୍ତ ଅଥଚ ଆବେଗମୟ ଉଦାର ଭାବରେ ତ୍ରିଭଙ୍ଗି ଠାଣିରେ ଠିଆ ହେଇ ରହିଛନ୍ତି କୃଷ୍ଣଚନ୍ଦ୍ର ।

ଗୋସେଇଁ ପଦ୍ମାସନରେ ଖୋଦିତ ହେଉଛନ୍ତି । ସମଗ୍ର ଅଙ୍ଗ ବସ୍ତ୍ରାବୃତ । ବାଁ ହାତ ପ୍ରସାରିତ ହେଇ ଜଙ୍ଘ ଉପରେ ଭରା ରହିଛି । ଦକ୍ଷିଣ ହାତରେ ଜପାମାଳି । ମୁହଁ, ଦୁଇ ହାତ ଓ ଦୁଇ ପାଦକୁ ଛାଡ଼ି ଦେଲେ କାରିଗରୀ କୌଶଳ ଦେଖେଇବା ପାଇଁ ବିଶେଷ କିଛି ନାହିଁ, ଦେହରେ ଚାଦର ଘୋଡ଼େଇ ହେବାକୁ ଥିଲେ ମଧ୍ୟ ପଥରରେ ଚାଦର ଖୋଦେଇ ହେଉଛି । କାରଣ ଗୋସେଇଁଙ୍କୁ ଅଘିକଂକାଳ ସାର କରି ମୂର୍ତ୍ତି ଖୋଦେଇ କରିବାରେ କିଛି ଅର୍ଥ ହୁଏନା ।

ଉପବନରେ ମୂର୍ତ୍ତିକାମ ସମାପ୍ତ ହେଲା । ଆଜି ମଣ୍ଡପ ଉପରକୁ ମୂର୍ତ୍ତି ଉଠିବ । ସମସ୍ତେ ଉପବନରେ ଉପସ୍ଥିତ । ନୀଳାମ୍ବର, ନିତ୍ୟାନନ୍ଦ ଓ ଗୌରୀ । କାରିଗର ମାନେ ହିଁ ନିଜେ ହେପାଜତ କରି ଏ କାମ ବଢ଼େଇବେ । ମୂର୍ତ୍ତି ଜାଗା ଉପରେ ବସିଗଲାପରେ ଚିକ୍କଣ ହେବ । ମାଠ କାମ ବଢ଼ିବ ସବୁ ମଣ୍ଡପ ଉପରେ । କୃଷ୍ଣ ମୂର୍ତ୍ତି ଦେହରେ ଦଉଡ଼ି ବନ୍ଧାଯାଇ ଦୋଳାରେ ଝୁଲେଇଲା ଭଳି କରି ଶକ୍ତ କାଠଦଣ୍ଡା ଉପରୁ ଭାରକରି କାରିଗରମାନେ ଥିରି ଥିରି ମଣ୍ଡପଉପରକୁ ଉଠେଇଲେ । ସମସ୍ତେ ଖୁବ୍ ସତର୍କତାର ସହିତ ମଣ୍ଡପ ଉପରକୁ ଟେକି ଆଣୁଥାନ୍ତି । ସମସ୍ତଙ୍କ ଗୁଣ୍ଠିଆରେ ଦକ ଥାଏ, ଟିକିଏ ଅସାବଧାନ ହେଲେ ସବୁ ପରିଶ୍ରମ ବୃଥା ହେବ । ସେହି କୃଷ୍ଣଙ୍କ ଅପାର କୃପାରୁ ମୂର୍ତ୍ତି ଆସ୍ଥାନରେ ବସିଗଲେ । ତାଙ୍କ ଆଗରେ ଉପବିଷ୍ଟହେଲେ ଗୋସେଇଁ । ମୁଗୁନି ଶିଳାର କଳାମୂର୍ତ୍ତି ଆଗରେ ଗୋସେଇଁଙ୍କ ଫିକା ନାଲିଆ ପଥରର ପିତୁଳା, ପରମାତ୍ମା, ଜୀବାତ୍ମାଭଳି ବିରାଜିଲେ ।

ତାପରେ କବାଟ ଖଞ୍ଜାହେଲା । କବାଟର ଠଣାରେ କୃଷ୍ଣଲୀଳାର ବିଭିନ୍ନ ଆଖ୍ୟାୟିକା, କୃଷ୍ଣଜନ୍ମଠାରୁ ଆରମ୍ଭ କରି କଂସ ନିଧନ ପର୍ଯ୍ୟନ୍ତ ଖୋଦନ କରା ହେଇଛି । ଖୁବ୍ ନିଖୁଣ, ଲୁଞ୍ଚିକାମ ଭଳି ଖୋଦେଇ । ଶିଶୁକାଠର ଛାଉଁଳି କବାଟ ତୋରଣ ଭିତରେ ଖୁବ୍ ସରସ ସୁନ୍ଦର ଦିଶିଲା ।

ଆସନ୍ତା ଫଗୁପୂର୍ଣ୍ଣିମାରେ ଗୋସେଇଁଙ୍କ ପୁଣ୍ୟତିଥି ପାଳିତ ହେବ ।

ନିତ୍ୟାନନ୍ଦ ମଧ ମହନ୍ତ ଗାଦିରେ ବସିବେ । ଆଉ ମାସେ ଦେଢ଼ମାସ ସମୟ ମାତ୍ର ରହିଲା । ଏ ବିଧାନ ପାଇଁ ସଜ କିଣାହେବ । ମଠମାନଙ୍କର ମହନ୍ତଙ୍କ ପାଖକୁ ନିମନ୍ତ୍ରଣ ପଠାଯିବ । ଆଗରୁ ଖବର ନଗଲେ ହୁଏତ ସେମାନେ ଠିକଣା ବେଳେ ପହଞ୍ଚିବା ସମ୍ଭବ ହେବନାହିଁ ।

ମହନ୍ତ ଗାଦି ଆସୀନ ମହୋତ୍ସବ ଆମନ୍ତ୍ରଣକୁ ତାଳପତ୍ର ଉପରେ ଲେଖନରେ ଲେଖି, ତାକୁ ହଳଦୀ ପାଣିରେ ଧୋଇ, ତା ସହିତ ନିର୍ମାଲ୍ୟ ପୁଡ଼ା ଓ ତୁଳସୀମାଳ ରଖି ହଳିଆ ଓ ଟହଲିଆଙ୍କ ହାତରେ ପାଖଆଖ ମଠର ମହନ୍ତମାନଙ୍କ ପାଖକୁ ପଠାଗଲା । ସାରିଆପଲ୍ଲୀର ମହନ୍ତ ଶ୍ରୀ ବାଲାଜି ରତ୍ନଦାସ, ପାରଳାଖେମଣ୍ଡିର ମହନ୍ତ ଶ୍ରୀ ବିଷ୍ଣୁକୃଷ୍ଣ ଗୋସେଇଁ, ପାର୍ବତୀପୁରମ୍ର ଶ୍ରୀ ଭବସିନ୍ଧୁ ଦାସ ଗୋସ୍ୱାମୀ , ମଞ୍ଜୁଷାର ଶ୍ରୀ ପ୍ରେମରତ୍ନ ଦାସ ଅଧିକାରୀ, ଟେକାଲିର ଶ୍ରୀ ରାଧାକିଙ୍କର ବୈଷ୍ଣବ, ଶ୍ରୀକାକୁଲମ୍ର ଶ୍ରୀ ନାମଧାରୀ ବାବାଜି , ଓଡ଼ାସିଙ୍ଗି, ତନରଡ଼ା, କିରିବୁରୁ, ଡାକରଡ଼ା, ବୁଗୁଡ଼ା, ନିମଖଣ୍ଡି, ଦିଗପହଣ୍ଡି ଓ କୁକୁଡ଼ାଖଣ୍ଡି ପ୍ରଭୃତି ମହନ୍ତମାନଙ୍କୁ ଉପରୋକ୍ତ ପ୍ରକାରେ ସନ୍ଦେଶ ଯିବା ବ୍ୟବସ୍ଥା ହେଲା । ଦୂର ଜାଗାମାନଙ୍କ ପାଇଁ ଚାରିଜଣ ବେଠିଆଙ୍କୁ ନିତ୍ୟାନନ୍ଦ ଚାରିଦିଗକୁ ପଠେଇଲେ ଓ ସେମାନଙ୍କ ହାତରେ ଯଥାବିଧି ମର୍ଯ୍ୟଦା ବେଭାର ମଧ ଦେଲେ ।

ମିଶ୍ରେ ଏଭିତରେ ପ୍ରତିମା କାମ ସରିଲାପରେ ଆଉଥରେ ପାରଳାଖେମଣ୍ଡି ଯାଇ ମାଞ୍ଚେଲି ଫେରି ଆସି ସାରିଲେଣି । ଅଜା, ନିତ୍ୟାନନ୍ଦ ଆଉ ଗୌରୀ ଏକାଠିବସି ସ୍ଥିର କଲେ ଯେ ମଠରେ ମଉଛବ ଦୁଇଦିନ ଧରି ଅନୁଷ୍ଠିତ ହେବ । ପ୍ରଥମ ଦିନ ବୃନ୍ଦାବନର ମଠାଧୀଶ ଶ୍ରୀ ଶ୍ରୀ ବାଙ୍କବିହାରୀ ଦାସ ଗୋସ୍ୱାମୀ ପ୍ରବଚନ ଦେବେ ଓ ପ୍ରବଚନ ପରେ ରାସନୃତ୍ୟ ହେବ । ଦ୍ୱିତୀୟ ଦିନ ପ୍ରତିମା ପ୍ରତିଷ୍ଠା ଓ ଗାଦିଆସୀନ ଉତ୍ସବ ତା ସାଙ୍ଗକୁ ହରିନାମ କୀର୍ତ୍ତନ, ହରିପଙ୍ଗତ ଓ ପନ୍ତି ଭୋଜନ । ନିତ୍ୟାନନ୍ଦ ମଠ କରଣଙ୍କୁ ନିଜର ସ୍ୱତନ୍ତ୍ର ପ୍ରତିନିଧି ଭାବେ ବୃନ୍ଦାବନ ପଠେଇଲେ । ସେ ମହନ୍ତ ବାବାଙ୍କୁ ସଙ୍ଗରେ ନେଇ ମାଞ୍ଚେଲିରେ ଉତ୍ସବ ଦି ଦିନ ଆଗରୁ ପହଞ୍ଚିବେ ।

ନିତ୍ୟାନନ୍ଦ ଏତେ ବଡ଼ ଆୟୋଜନ ପାଇଁ ସମସ୍ତ ବନ୍ଦୋବସ୍ତର ନିଜେ ତଦାରଖ କଲେ । ଗୌରୀ ଦାସୀମାନଙ୍କ ସହାୟତାରେ ଅତିଥି ଅଭ୍ୟାଗତଙ୍କ ଦାୟିତ୍ୱ

ନେବା ପାଇଁ ନିଜକୁ ପ୍ରସ୍ତୁତ କରିନେଲେ । ମଠ ପରିବେଶ ପରିଷ୍କାର, ଉପବନର ପୁନଃ ସଜ୍ଜିକରଣ ଓ ମଠବାଡ଼ର ଚୁନଧୁଲେଇ ପ୍ରଭୃତି କାର୍ଯ୍ୟ ତନାଘନା ଲାଗିଛି । ମଠ ମହୋତ୍ସବରେ ପରଂପରାକ୍ରମେ ଗାଁର ସମସ୍ତେ ନିମନ୍ତ୍ରିତ ହେଇ ଆସିବେ । ଦେଖିବାକୁ ଗଲେ ମଠ ଗାଁର । ମହନ୍ତ ସେମାନଙ୍କ ସେବକ ମାତ୍ର ।

ବାହାର ମେଲାରେ ଖନ୍ଦା ଲାଗିବ । ସରୁ ଅରୁଆଚାଉଳ, ବଡ଼କାନ୍ଦୁଲ ଡ଼ାଲି, କଣ୍ଟାମୁଗଡାଇ, ଘିଅ, ନବାତ, ଗୁଡ଼, ଝଟାମଞ୍ଜି , ଶୋଲିଚଣା, ମକା, ବିରି ପ୍ରଭୃତି ବିଭିନ୍ନ ସାମାନ ଆସି ଭଣ୍ଡାର ଘରେ କୁଢ଼ ହେଲାଣି । ବଡ଼ବଡ଼ହଣ୍ଡା, ଡସଲା, ଗରାବାଲ୍‌ଟି,ଡାଲିଚଟୁ, ଡ଼ଙ୍କି, କଡ଼େଇ, ଓଗେର ମଧ ଯୋଗାଡ଼ ହେଇ ଆସୁଛି । ପ୍ରତିଦିନ ତିନି ହଜାର ଲୋକ ମଠରେ ଭୋଜନ କରିବେ । ଶଗଡ଼ ଶଗଡ଼ ଚାଉଳ ରନ୍ଧା ହେବ । ଏଣୁ ତାକୁ ଧରି ରାନ୍ଧୁଣିଆ ପରଷିଆଳି କଟାଳି ବଟାଳି ଚାକର ବାକରକୁ ମଧ କହିରଖିବାକୁ ହେବ । ସୌଭାଗ୍ୟକୁ ଅଜା ଖାଦ୍ୟ ପରିବେଷଣ ଦାୟିତ୍ୱ ନିଜେ ନେବେ ବୋଲି ବାହାରି ପଡ଼ିଲେ । ନିତ୍ୟାନନ୍ଦଙ୍କ ବଡ଼ ମୁଣ୍ଡବଥା ଗଲା । ଏତେ ଲୋକଙ୍କ ଖାଇବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ନକଲେ ଓ ଖାଦ୍ୟ ରାନ୍ଧିବାର କୌଶଳ ନଜାଣିଲେ ସବୁ ଆଡ଼ମ୍ବର ପସର ଫାଟିଯିବ । ଏଥିପାଇଁ ପକ୍କା ଅନୁଭବ ଥିବା ଲୋଡ଼ା ।

ଫଗୁପୂର୍ଣ୍ଣମୀ ପାଖେଇ ଆସୁଛି । ନିତ୍ୟାନନ୍ଦ ମହନ୍ତ ଗାଦିରେ ବସିବେ । ସମସ୍ତଙ୍କ ମନରେ ଉଚ୍ଚାଟ । ଗୌରୀର ଗୋଡ଼ ତଳକୁ ଲାଗୁନି ।

ପାର୍ବତୀପୁରମ୍‌ର ମହନ୍ତ ଭବସିନ୍ଧୁ ଗୋସ୍ୱାମୀ ନିଜର ହୀନମନ୍ୟତା ଯୋଗୁଁ ଓ କାମବାସନାର ଚରିତାର୍ଥ ପାଇଁ ତାକୁ ଯେଉଁଳି ବ୍ୟବହାର ଦେଖେଇଥିଲେ ତାହା ମନକୁ ମଝିରେ ମଝିରେ ଆସୁଛି । ସେ ପ୍ରସଙ୍ଗ କେଉଁଠି ଅଛି କେଜାଣି ବେଳେ ବେଳ ଉଦ୍‌ଗାରିଦେଉଛି ।

ଜଣେ ଜଣେ ହେଇ ମହନ୍ତମାନେ ମଠରେ ପହଞ୍ଚି ଯାଉଛନ୍ତି । ନିତ୍ୟାନନ୍ଦ ଓ ଗୌରୀ ସେମାନଙ୍କ ଅଭ୍ୟର୍ଥନା ପାଦପୂଜା ଓ ରହଣିର ସୁବନ୍ଦୋବସ୍ତ କରୁଛନ୍ତି ଅତିଥି ଅଭ୍ୟାଗତ ଖଞ୍ଜାରେ । ସେମାନେ ହରିପଙ୍ଗତ ପାଇଁ ବେଭାର, ଚୁଡ଼ା ଚାଉଳରୁ ଆରମ୍ଭ କରି ପନିପରିବା, ଫଳମୂଳ ପର୍ଯ୍ୟନ୍ତ ମଠ ରାବାଡ଼ିକୁ ଧରି ଜିନିଷ ଆଣୁଛନ୍ତି ।

କୌଣସି ମହନ୍ତ ମଠକୁ ଏକାକୀ ଆସୁନାହାନ୍ତି । ସାଙ୍ଗରେ ଚେଲା, ନହେଲେ ଅଙ୍ଗରକ୍ଷକ । ମହନ୍ତମାନଙ୍କ ଥାଟକୁ କି ଦେଖିବ । ସୁପର୍ ଫାଇନ୍ ଧୋତି ସାଙ୍ଗକୁ ଝଲମଲ କୁର୍ତ୍ତା, ସିଲ୍କଅଙ୍ଗି, ମଠାଚାଦର, ପାକଲାଗାମୁଣ୍ଛା । କିଏ ଖାଲି ପାଦ ତ କିଏ କଠଉ । ଜଣେ ଅଧେ ଚମଡ଼ା ପାଣ୍ଡେଇ ମଧ୍ୟ ପିନ୍ଧିଛନ୍ତି ।

ତାକରଡ଼ା ମଠର ମହନ୍ତ ମଟରକାର ଭଡ଼ା କରି ଆସିଛନ୍ତି । ଗାଡ଼ି ତ ଆସିବ, ସାଙ୍ଗରେ ବୟସ୍କା ଦାସୀ ଜଣେ ଓ ଅଙ୍ଗ ସେବିକା ଜଣେ ଆଣିଛନ୍ତି । ମହନ୍ତ କମ୍ ବୟସର । ପାଞ୍ଚବର୍ଷ ତଳେ ଗାଦିରେ ବସିଛନ୍ତି । ଉଜ୍ଜ୍ୱଳ ଚେହେରା , ଓଠ ଟିକିଏ ମୋଟା । କିନ୍ତୁ ଗଢ଼ଣ ଖୁବ୍ ରୁଚିପୂର୍ଣ୍ଣ । ତନରଡ଼ା ମହନ୍ତ ଅସମ୍ଭବ ଭାବେ ମୋଟା, ପେଟ ଭୀଷଣ ଅତଳା, ଛାତି ଉପରୁ ଥନ ଦିଟା ଲହଡ଼ି ଭଳି ପେଟ ଉପରକୁ ମାଡ଼ି ଆସିଛି । କାଖ ତଳେ ବହଳେ ମାଂସର ଓହଳ , ଅଣ୍ଟାରେ ତିନି ପରସ୍ତର ବଳୟ । ତଳି ପେଟ ଲାଗୁଛି ଜଂଜାଳର ମୁଣି ଭଳିଆ । ବାହା ଦିଟା ଦେହକୁ ଆଉ ଲାଗି ରହୁନି । ମୁଣ୍ଡ କାନ୍ଧ ସାଙ୍ଗରେ ଜାକି ଯାଇଛି । ସେ ମାଂସ ମେଦ ଓ ଚର୍ବିର ଏକ ଅସମ୍ଭାଳ ଅଭିବ୍ୟକ୍ତି ଭଳି ଲାଗୁଛନ୍ତି । ତାଙ୍କୁ ଦେଖି ଗୌରୀକୁ ହସ ମାଡ଼ିଲା । ସେ ବହୁ କଷ୍ଟରେ ହସକୁ ଚାପିଦେଇ ମହନ୍ତ ମହାରାଜାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା ।

କିଛି ମହନ୍ତ ବି ଧଡ଼ଧଡ଼ିଆ ଆଉ ପତଳା । ଯିମିତି ନିମଖଣ୍ଡିର ମହନ୍ତ ଶ୍ରୀ ଭକ୍ତିରତ୍ନ ଦାସ ବାବାଜି । ନିମକାଠି ଭଳି ଚେହେରା, ଦେହ ସାରା ଶିରା ପ୍ରଶିରା ବଟଗଛର ଚେର ଓ ଶିଅ ଭଳି ମାଡ଼ି ଯାଇଛି । ମୁହଁରେ ଛେଳି ଦାଢ଼ି ଥୋଡ଼ିରୁ ଛାତିକୁ ଲମ୍ବିଛି । ଓଠ କଳା । ଲାଗୁଛି, ଗଞ୍ଜେଇ ସେବନର ପ୍ରଭାବ । ସେଇଥିରୁ ହିଁ ତାଙ୍କ ଦେହ ରକ୍ତମାଂସ ଶୂନ୍ୟ ହେଇଯାଇଛି । ଚକ୍ଷୁ ଆରକ୍ତ । ଗୌରୀକୁ ଦେଖି ଲୋଭେଇଲା ଭଳି ସେ ଚାହିଁଲେ । ଗୌରୀ ପ୍ରଣାମ କରିବାରୁ ସେ ଆଶୀର୍ବାଦ କଲେ । କହିଲେ, ମା ତମେ ରାଧାରାଣୀ ଭଳି ଦେଖାଯାଉଛ । ତମେ ଧନ୍ୟ । ଗୌରୀ ଶଙ୍କିଗଲା । ମୁଣ୍ଡ ପୋତିଦେଲା । ଭକ୍ତରତ୍ନ ଦାସ ବାବାଜିଙ୍କ ସାଙ୍ଗରେ ଦିଟା ଛୋଟ ଛୋଟ ଚେଲା । ଚେଲା ଦିଜଣ ଖୁବ୍ ଗୁଲୁଗୁଲିଆ । ସୁଠାମ ଠାଣି । ଲାଗୁଛି, ସଖୀନାଟରେ ରାଧା ଓ ଲଳିତା ବେଶ ପଡୁଥିଲେ । ପରେ ଜଣାପଡ଼ିଲା ସେମାନେ ସତକୁ ସତ ସଖୀ ନାଟରେ ସଖୀ ହେଉଥିଲେ । ତାଙ୍କ ସାଙ୍ଗରେ ଦିଗପହଣ୍ଡି ରାଧାକୃଷ୍ଣ ମଠର ଗୋକୁଳ ଚନ୍ଦ୍ର ଅଧିକାରୀଙ୍କ ଶିଷ୍ୟଦ୍ୱୟ ମଧ୍ୟ ରାସନୃତ୍ୟରେ ଭାଗ ନେଉଥିଲେ ।

ମଠରେ ସଖୀନାଟ ପରିବେଷଣ କିଛି ଆଚମ୍ୱିତ କଥା ନୁହଁ । ରାଧାକୃଷ୍ଣ ଲୀଳା ଉପରେ ଆଧାରିତ ବିଭିନ୍ନ ନୃତ୍ୟ ମଠ ଅଗଣାମାନଙ୍କରେ ଅଭିନୀତ ହେଉଥିଲା । ମହନ୍ତ ତକିଆ ପକେଇ ମଠ ପିଣ୍ଡା ଉପରେ ବସିଥିବେ, ଥଳିଏ ବନ୍ଧନୃତ୍ୟ ହେଉଥିବ । ସଖୀ ପିଲାମାନେ ନାନା ରଙ୍ଗରେ ନାନା ଭଙ୍ଗିରେ ନାଟ ଦେଖଉଥିବେ, ନିତମ୍ୱ ହଲଉଥିବେ, ଛାତିକୁ ଦେଖଣାହାରିଙ୍କ ଉପରକୁ ଆଉଜେଇ ଆଣୁଥିବେ । ସେଇ ସେତିକିରେ ବି ମହନ୍ତ ମହାରାଜଙ୍କ ମନ ହୃଦୟ ତରଳି ଯାଉଥିବ । ନାଚ ଶେଷରେ ମହନ୍ତ ମହାରାଜ ପ୍ରୀତ ହେଇ ସଖୀ ପିଲାଙ୍କୁ ରୁପା ଟଙ୍କା ମାମୁଲ୍ଲୁ ଦେବେ । ମହନ୍ତ ପାନଖିଆ ଠୋଇକା ଗାଲ ଉପରେ ରୁପା ଟଙ୍କାଟେ ରଖି ସଖୀ ପିଲାଙ୍କୁ ଇଙ୍ଗିତ ଦେବେ । ଆ, ନେ । ପିଲା ନାଚି ନାଚି ଆସିବ, ମହନ୍ତଙ୍କ ଗାଲ ଉପରେ ନିଜ ଗାଲ ଥୋଇ ମହନ୍ତଙ୍କ ଥୋଡ଼ିରେ ହାତ ମାରି ନିଜ ଉପରକୁ ଆଉଜେଇ ଆଣିଲେ ଟଙ୍କା ତାର ଗାଲ ଉପରକୁ ଉଠି ଆସିବ । ତାପରେ ଘନ ଘନ ତାଳି ବାଜିବ । ଗଞ୍ଜାମର ମଠମାନଙ୍କର ପୃଷ୍ଠପୋଷକତାରେ ସଖୀନାଟ ଦକ୍ଷିଣ ଓଡ଼ିଶାରେ ବଞ୍ଚିରହେ ବହୁ ଦିନ ଧରି । ଆଗରୁ ତ ମାଇପିଲା ନାଟରେ ମିଶୁନଥିଲେ । ବାରଣ ଥିଲା । ଏଣୁ ସୁନ୍ଦରିଆ ଗୁଲୁଗୁଲିଆ ପିଲେ ହିଁ ସଖୀ ହେଉଥିଲେ, ରାଧା ହେଉଥିଲେ, ଲଳିତା ଓ ବିଶାଖା ହେଉଥିଲେ ।

ବୁଗୁଡ଼ା ମହନ୍ତ ଆସିଲେ । ସାଙ୍ଗରେ ଗଣ୍ଡେ ବ୍ରାହ୍ମଣ ପିଲା ଆଣିଛନ୍ତି । ବୋଧହୁଏ ତାଙ୍କ ଟୋଲ୍‌ର ବିଦ୍ୟାର୍ଥୀ । ମଠରେ ପହଞ୍ଚୁ ପହଞ୍ଚୁ ମଧୁରାଷ୍ଟକ ସମବେତକଣ୍ଠରେ ଚମତ୍କାର ବୋଲିଲେ ।

ଅଧରଂ ମଧୁରଂ ବଦନଂ ମଧୁରଂ   ନୟନଂ ମଧୁରଂ ହସିତଂ ମଧୁରଂ
ହୃଦୟଂ ମଧୁରଂ ଗମନଂ ମଧୁରଂ   ମଧୁରାଧିପତେରଖିଳଂ ମଧୁରଂ

ମହନ୍ତମାନେ ବେଳେ ବେଳେ ବୁଦ୍ଧି ଦେଖାନ୍ତି , ଜ୍ଞାନର ଓ ପାଣ୍ଡିତ୍ୟର । ଏହା ମଠର ପରଂପରା ଓ ମର୍ଯ୍ୟାଦାକୁ ବଢ଼େଇଦିଏ । ମହନ୍ତ ତ ଜ୍ଞାନରେ ମାନରେ ବୈରାଗ୍ୟ ଓ ନର୍ଲୋଭ ପଣିଆରେ ଶୀର୍ଷ ସ୍ଥାନରେ ରହିବା କଥା ।

ପାରଳାଖେମଣ୍ଡି ମଠର ମହନ୍ତ ଶ୍ରୀ ବିଭୁକୃପା ଗୋସେଇଁ ନୀଳାମ୍ୱର ମିଶ୍ରେଙ୍କ ଖୁବ୍ ଜଣାଶୁଣା । ମହନ୍ତ ଭାବିଲେ ଅନ୍ୟମାନେ ତ ଚୁଡ଼ା ଚାଉଳ ବେଭାର

ନେଇଥିବେ , ସେ ଏକ ନୂଆ ଦ୍ରବ୍ୟ ମାଞ୍ଚେଲି ମଠକୁ ଉପହାର ଦେବେ । ଗୋଟିଏ ଅଲଗା ପରଂପରା ଆରମ୍ଭ କରିବେ । ଚିତ୍ରକାର ରାଧାଗୋବିନ୍ଦ ମହାପାତ୍ରଙ୍କ ହାତର କାଠ ଖୋଦେଇ ରାଧାପିତୁଳାଟିଏ ସାଙ୍ଗରେ ଆଣି ଆସିଥିଲେ । ରାଧାଗୋବିନ୍ଦଙ୍କ କାମ ତ ଖୁବ୍ ଯରସା । ତାଙ୍କ କାଳ ହେଇଗଲାଣି । ଏଣୁ ସେ ଭାବିଲେ ହାତ କାମଟି ମଠରେ ରହିଯିବ । ଲୋକେ ଦେଖିବେ ଓ ପାରଳାବିନ୍ଧାଣିଙ୍କ ପ୍ରଶଂସା ହେବ । ପଥର କାମ ତ ମଥୁରା କାରିଗରଙ୍କ । ଏଣୁ କାଠ କାମର ବାହାଦୁରି ଲୋକେ ଜାଣିପାରିବେ । ନିତ୍ୟାନନ୍ଦ ଓ ଗୌରୀଙ୍କୁ ରାଧାମୂର୍ତ୍ତିଟି ବହୁ ପରିମାଣରେ ପ୍ରଭାବିତ କଲା । ସେମାନେ ଭାବିଲେ ଉପବନ ମଣ୍ଡପରେ କୃଷ୍ଣଚନ୍ଦ୍ର ଏକୁଟିଆ ବି କିମିତି କାଳ କାଟନ୍ତେ । ମୂର୍ତ୍ତି ବଡ଼ ନୁହେଁ ମୁଠାଣିଏ ଉଚର କିନ୍ତୁ କାରିଗରି କାମର ପରାକାଷ୍ଠା ସେଥିରେ ଫୁଟି ଉଠିଛି ।

କୁକୁଡ଼ାଖଣ୍ଡି ମହନ୍ତ ଦେଖିବାକୁ ତ୍ରିପଣ୍ଡ କଳା । କିନ୍ତୁ ସେ କଳା ରୂପରେ ମଧ୍ୟ ଲାବଣ୍ୟ ଫୁଟି ପଡୁଛି । ବେଶି ମୋଟା ନୁହନ୍ତି କି ବେଶି ପତଳା ନୁହନ୍ତି । ସଂସ୍କୃତ ସହିତ ଇଂଲିଶି ପାଠ ବି ପଢ଼ିଛନ୍ତି । ବେଲଗୁଣ୍ଠାରୁ ଅଣ୍ଟେ ଉଁଚାର ପିତଳ ରୂଖା ଟିଏ ଗଢ଼େଇଥିଲେ, ତାକୁ ସାଙ୍ଗରେ ନେଇଆସିଛନ୍ତି । ମହନ୍ତଙ୍କ ଇଚ୍ଛା, ସମାଧି ମଣ୍ଡପରେ ଦୀପଟି ରହିବ, ଅଖଣ୍ଡ ପ୍ରଦୀପ ହେଇ ଜଳିବ ।

ପାର୍ବତୀପୁରମ୍ ଆଉ କଣ ଆସିଥାନ୍ତେ କି ? ତାଙ୍କ ଲାଜ ତାଙ୍କୁ ଖାଉଥିବ । ସେ ଆଉ ମୁହଁ କିମିତି ବା ଦେଖାନ୍ତେ । ହୁଏତ ନିତ୍ୟାନନ୍ଦ ଓ ଗୌରୀ ନଥିଲେ ସ୍ୱୟଂ ଆସିଥାନ୍ତେ, ସଂଖୋଳିଥାନ୍ତେ । ଭଲମନ୍ଦ, ଉତ୍ସବ ମହୋତ୍ସବରେ ଯାଆଣ ଆସଣ ହୁଏ । ସମ୍ପର୍କକୁ ଟାଣ କରିବାପାଇଁ ତ ଏ ବ୍ୟବସ୍ଥା । ଗୌରୀର ଆମ୍ମାଙ୍କର ଦି ବର୍ଷ ତଳେ କାଳ ହେଇଯାଇଛି । ଏଣୁ ତାଙ୍କ ଦାଦା ସମ୍ପର୍କ ଘରର ହାତବୁଣା ଗୀତଗୋବିନ୍ଦ ଖଣ୍ଡୁଆଟେ ବେଭାର ପଠେଇଦେଇଛନ୍ତି ସମାଧି ମନ୍ଦିର ପାଇଁ । ଗୌରୀ ଏ ବେଭାର ଗ୍ରହଣ କଲା ଏକ ନିର୍ଲିପ୍ତ ମାନସିକତାରେ ।

କାଲିକି ମଉଚ୍ଛବ ପାଳନ ହେବ । ଆଜି ସକାଳୁ ସକାଳୁ ବୃନ୍ଦାବନ ଧାମରୁ ଶ୍ରୀ ଶ୍ରୀ ବାଙ୍କବିହାରୀ ଦାସ ଗୋସ୍ୱାମୀ ମହାରାଜ ପହଞ୍ଚିଗଲେଣି । ଷ୍ଟେସନରୁ ତାଙ୍କୁ ମହାଆଡ଼ମ୍ବରରେ ଖୋଳ କରତାଳ କୀର୍ତ୍ତନ କରି ମଠ ପର୍ଯ୍ୟନ୍ତ ଅଣାଗଲା, ମଠ କରଣଙ୍କ ଏତିକି ବାହାଦୁରି । ମହନ୍ତଙ୍କ ସାଙ୍ଗରେ ବିରାଟ ଥାଟ, କୀର୍ତ୍ତନ କରିବାପାଇଁ

ଚାରିଜଣ ବୈଷ୍ଣବ, ଦୁଇଜଣ ଅଙ୍ଗ ସେବକ ଓ ମଠର କନିଷ୍ଠ ଚେଲା ।

ମହନ୍ତ ମହାରାଜ ମାଙ୍କେଲି ମଠରେ ପହଞ୍ଚିଲାପରେ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଗଲା । ତାଙ୍କ ପାଇଁ ମଠରେ ଗୋସେଇଁଙ୍କ ଖଞ୍ଜାରେ ରହିବା ବ୍ୟବସ୍ଥା ହୋଇଥିଲା । ତାଙ୍କ ପାଖ ବଖରାରେ ଅଙ୍ଗ ସେବକମାନେ ଡ଼େରା ପକେଇଲେ । ସବୁ ମହନ୍ତମାନେ ନିତ୍ୟ କର୍ମ ସାରି ଚିତା ତିଳକ ଧାରଣ କରି ବାହାର ମେଲା ଅଗଣା, ଭିତର ମେଲା ଅଗଣାରେ ଚଳପ୍ରଚଳ ହେବାରୁ ମଠର ସାତ୍ତ୍ୱିକ ପରିବେଶ ଆହୁରି ଉଜ୍ଜ୍ୱଳ ଦିଶିଲା । ମଠ 'ବୈକୁଣ୍ଠପୁରୀ ଭଳିଆ ଲାଗିଲା । ମଠମାନେ ତ ସେଇଆ , ମର୍ତ୍ତ୍ୟଲୋକରେ ବୈକୁଣ୍ଠପୁର, ଯେଉଁଠୁ ଅହରହ ଦିବ୍ୟ ବିଭୂତି ଖଣ୍ଡ ମଣ୍ଡଳକୁ ବ୍ୟାପିଯାଏ ।

ଆଜି ବାଙ୍କବିହାରୀ ଦାସଗୋସ୍ୱାମୀ ପ୍ରବଚନ ଦେବେ । ବାହାରମେଲା ଅଗଣାରେ ଚାନ୍ଦୁଆ ବନ୍ଧା ହେଇଛି, ତଳେ ଶୀତଳା ପଟି ବିଛା ଯାଇଛି ଓ ଗୋଟିଏ କଡ଼କୁ ଲମ୍ବା ହେଇ ଗଦି ପଡ଼ିଛି ଓ ଗୋଲ ମାଣ୍ଡିସବୁ ଥୁଆହେଇଛି ନିମନ୍ତ୍ରିତ ମଠାଧାରୀଙ୍କ ପାଇଁ । ବୃନ୍ଦାବନ ବାବାଙ୍କ ପାଇଁ ପ୍ରବଚନ ଆସନ, ଅନ୍ୟ ଆସନମାନଙ୍କ ଠାରୁ ସାମାନ୍ୟ ଉଚ୍ଚା । ଆସନର ବାଁ କଡ଼େ ସଂକୀର୍ତ୍ତନ ଦଳ, ବୃନ୍ଦାବନ ଓ ମାଙ୍କେଲି ମଠର ମିଶାମିଶି । ବୃନ୍ଦାବନର ଭକ୍ତମାନେ ହିନ୍ଦୀ ଭଜନ ପରିବେଷଣ କରିବେ ଓ ମାଙ୍କେଲି ମଠର କୀର୍ତ୍ତନ ଦଳ ଓଡ଼ିଆ ଓ ମଝି ମଝିରେ ତେଲୁଗୁ ମଧ ବୋଲିବେ । ଆସନ ଉପରେ ମୃଗଛାଲ । ତା ଉପରେ ବାବା ଉପବେସନ କରିବେ । ଡ଼ାକବାଜି ଯନ୍ତ୍ରର ବ୍ୟବସ୍ଥା ମଧ ହେଇଛି । ଅଗଣା ଭିତରେ ହଜାରେ ଖଣ୍ଡେ ଲୋକ ଖୁନ୍ଦାଖୁନ୍ଦି ।

ବୃନ୍ଦାବନ ବାବା ଆହୁରି ମଣ୍ଡଳୀରେ ବିରାଜିନାହାନ୍ତି । କିନ୍ତୁ କୀର୍ତ୍ତନ ଆରମ୍ଭ ହେଇଗଲାଣି । ମହାମନ୍ତ୍ର କୀର୍ତ୍ତନର ମଧୁମୟ ଛନ୍ଦରେ ମଠ ଭିତରଟା ଝୁଲିବା ଆରମ୍ଭ କଲାଣି । ଶ୍ରୋତାଙ୍କ ଭିତରୁ ଦଳେ ଉନ୍ମାଦ ହେଇପଡ଼ି ଠିଆ ହେଇ ଉଦ୍ଦଣ୍ଡ ଆରମ୍ଭ କରିଦେଲେଣି । ଚାନ୍ଦୁଆ ତଳ ପରିବେଶ ରସମୟ ହେଇପଡ଼ୁଛି । ମହନ୍ତମାନେ ଜଣେ ଜଣେ ହେଇ ମଣ୍ଡଳୀ ଅଳଂକୃତ କରୁଛନ୍ତି । ଏତିକିବେଳେ ମନ୍ଦିରରେ ସନ୍ଧ୍ୟା ଆଳତିର ଘଣ୍ଟାବାଜି ଉଠିଲା । ବୃନ୍ଦାବନ ବାବା ବୋଧହୁଏ ରାଧାକୃଷ୍ଣ ମନ୍ଦିରରେ ଆଳତି ସାରି ମଣ୍ଡଳୀରେ ବିଜେ ହେବେ ।

ଠିକ୍ ଏମିତି ଏକ ଉତ୍କଣ୍ଠିତ ମୁହୂର୍ତ୍ତରେ ବୃନ୍ଦାବନ ବାବା ବିରାଜିଲେ କଳାମେଘ ଭିତରୁ ଜହ୍ନ ଉଇଁଲା ପରି । ସାଙ୍ଗରେ ନିତ୍ୟାନନ୍ଦ ଓ ଗୌରୀ ତାଙ୍କୁ ଆଗେ ଆଗେ ପାଛୋଟି ଆଣୁଛନ୍ତି । ପଛରେ ନୀଳାମ୍ବର ମିଶ୍ରେ ବି କୀର୍ତ୍ତନ ମଣ୍ଡଳୀକୁ ଆସୁଛନ୍ତି । ଏଇ କେତେଦିନ ହେଲା ମିଶ୍ରେ ବି ଚିତ୍ରକରରୁ ବୈଷ୍ଣବ ପାଲଟି ଗଲେଣି ବୋଲି ମନେ ହେଉଛି । ବାବା ଜୟ ରାଧେ ଜୟ ରାଧେ କହି ମୃଗଛାଲ ଉପରେ ଆସନ ଗ୍ରହଣ କଲେ । ଯୋଡ଼ ହାତ ହେଇ ଭୂଇଁରେ ମୁଣ୍ଡ ଲଗେଇ କୀର୍ତ୍ତନ ମଣ୍ଡଳୀରେ ଥିବା ସମସ୍ତ ଭକ୍ତଭଗବାନଙ୍କୁ ପ୍ରଣାମ କଲେ । ଏହା ହିଁ ବୈଷ୍ଣବ ଦୈନ୍ୟ, ସମସ୍ତେ ଏକ କଣ୍ଠରେ କହି ଉଠିଲେ ଜୟ କୃଷ୍ଣଚନ୍ଦ୍ର, ଜୟ ରାଧାରାଣୀ, ଭକ୍ତର ଜୟ ହେଉ, ଭଗବାନଙ୍କର ଜୟ ହେଉ ।

ନିତ୍ୟାନନ୍ଦ ଓ ଗୌରୀ ବାବାଙ୍କ ଆସନ ତଳେ, ତାଙ୍କ ପାଖାପାଖି ବସିଛନ୍ତି । ସେମାନେ ଦିଜଣ ଲାଗୁଛନ୍ତି ତପୋଦଗ୍ଧ ଦୁଇଟି ନିର୍ଲୋଭ ଆତ୍ମା ଭଳି । ଗୌରୀ ବୈଷ୍ଣବ, ଶିଷ୍ୟବର୍ଗ ଓ ଭକ୍ତମାନଙ୍କ ଭିତରେ ଏକମାତ୍ର ରାଧିକା, ପରମାବୈଷ୍ଣବୀ । ସମସ୍ତଙ୍କ ଆଖି ଗୌରୀ ଉପରେ ନିବଦ୍ଧ । ସେ ନିଶ୍ଚଳ ପ୍ରତିମା ଭଳି ବସିଛି, ଶୁଭ୍ରବସ୍ତ୍ର ପିନ୍ଧିଛି, ଗୀତଗୋବିନ୍ଦ ପାଟଖଣ୍ଡୁଆ ଓପରାଣ ନାଇଛି ।

ବୃନ୍ଦାବନ ବାବାଙ୍କ ଦେହ ତମ୍ବାବର୍ଣ୍ଣ, ଦୀର୍ଘବପୁ, ସୁଗଠିତ ଆଜାନୁ ଲମ୍ବିତ ଭୁଜ, କୃଶୋଦର । କୌପୀନ ଉପରେ ଆଣ୍ଠୁଯାଏଁ ସଫେଦ ଚାଦର ବେଢ଼େଇ ହେଇଛନ୍ତି । ତାଙ୍କର ଦେହ ଲୋମଶ, ବେକରେ ଚାପିହେଇ ଚାରିସୋରା ତୁଳସୀମାଳି, ମୁହଁ ଲମ୍ବା, ଉନ୍ନତ ନାସିକା, ପଦ୍ମପଲାଶ ଭଳିଆ ଆଖି, ସୁଦୀର୍ଘ କପାଳରେ ବୈଷ୍ଣବ ତିଳକ, ନାସାରେ ହରି ଚନ୍ଦନ, ମୁହଁରେ ଘନକୃଷ୍ଣ ଖୁଞ୍ଚାଖୁଞ୍ଚା ଦାଢ଼ି । ଲଣ୍ଡିତ ମସ୍ତକ ହେଲେ ବି ଲାଗୁଛି ଗଜୁରି ଉଠୁଥିବା ଛୋଟ ଛୋଟ ବାଳର ଓପରାଣଟିଏ ଢ଼ାଙ୍କିହେଇ ପଡ଼ିଛି । ମୁଣ୍ଡ ପଛରେ ଚୈତନ୍ୟ ଚୁଟି, ଉନ୍ମୁକ୍ତ କାନ୍ଧରେ ମଠାର ଚାଦର । ମଣ୍ଡଳୀକୁ ଆସିଲା ବେଳେ କଠଉ ଶବ୍ଦରୁ ଅନୁମାନ ହେଉଥିଲା ସେ କଠଉ ପିନ୍ଧନ୍ତି । ଡ଼ାହାଣ ହାତରେ ଜପାମାଳି, କୋଥଳି ଭିତରେ ହାତ, ଗଭୀର ଅଥଚ କମନୀୟ ରୂପ ସୌଷ୍ଠବ । ସେ ସବୁ ମହନ୍ତଙ୍କ ଭିତରେ ବାରି ହେଇପଡୁଛନ୍ତି, ବୟସ ବେଶି ନୁହେଁ ପଚାଶ ଛୁଉଁଚି । ଦାଢ଼ି ଭିତରେ କଦବା କେଉଁଠି ଶୁଭ୍ର କେଶର ଉନ୍ମେଷ ରୂପ ଲାବଣ୍ୟକୁ ବୃଦ୍ଧି କରିବାରେ ସାହାଯ୍ୟ ସିନା କରୁଛି କ୍ଷୁଣ୍ଣ କରୁନାହିଁ । ସେ ଜ୍ଞାନରେ ପ୍ରବୃଦ୍ଧ , ବୟସରେ ନୁହେଁ ।

ବୈଷ୍ଣବ ପରଂପରାରେ ମଠର ଶୀର୍ଷତ୍ୱ ଅଛି ବୋଲି ସେ ଲାଗୁଛନ୍ତି ଆହୁରି ବରିଷ୍ଠ ଓ ବୈଷ୍ଣବ କୁଳଶ୍ରେଷ୍ଠ ।

ବୃନ୍ଦାବନ ବାବାଙ୍କ ଆହୁରି ବିଶେଷତ୍ୱ ହେଲା ସେ ଆମରି ଦେଶର ଲୋକ, ପୁଣି ଏ ଅଞ୍ଚଳର, ସାଲୁରୁ ଗାଁର । ସେ ପିଲାଟି ହେଇଥିଲେ ବାବା ମାଁ ଉଭୟେ ହଇଜା ରୋଗରେ ଆଖି ବୁଜିଦେଲେ , ହଇଜା ମହାମାରୀ ରୂପ ଧାରଣ କରି ଗାଁରୁ ଅଧେରୁ ଅଧିକ ଖାଇଗଲା । ସେ ନିଃସ୍ୱ ହେଇଗଲେ, ଗରିବ ଘର ପିଲା ଆଉ କରନ୍ତେ ବା କଣ । ଗାଁ ବାଲାଜି ମଠରେ ବାସନ କୁସନ ମଜାମଜି କରି ମଠ ଓଳେଇ ଅଭ୍ୟାଗତ ପାରୁସେ ପାରୁସେ ଖାଇ ପଡ଼ିରହିଲେ । ବୃନ୍ଦାବନଧାମରୁ ଫଳାହାରୀ ବାବା ତିରୁପତି ମହାପ୍ରଭୁଙ୍କ ଦର୍ଶନ ସାରି ଏ ଅଞ୍ଚଳର ମଠମାନ ପରିଦର୍ଶନ କରି ଫେରୁଥିଲେ । ମଠ ପିଣ୍ଡାରେ କ୍ଲାନ୍ତିରେ ଶୋଇପଡ଼ିଥିବା ନିରୀହ ପିଲାଟି ପ୍ରତି ଦୟା ପରବେଶ ହୋଇ ତାକୁ ସାଙ୍ଗରେ ନେଇ ବୃନ୍ଦାବନ ଫେରିଲେ ।

ପିଲାଟି ବୃନ୍ଦାବନରେ ରହିଲା, ପାଠ ପଢ଼ିଲା, ଶାସ୍ତ୍ର ଅଧ୍ୟୟନ କଲା, ହଟଯୋଗରେ ପାରଙ୍ଗମ ହେଲା, ବ୍ରହ୍ମଚର୍ଯ୍ୟ ପାଳନ କଲା । ଗୀତା ଭାଗବତ, ଅନ୍ୟାନ୍ୟ ବୈଷ୍ଣବ ଧର୍ମ ଗ୍ରନ୍ଥ, ତତ୍ତ୍ୱ ଓ ଦର୍ଶନ ଭିତରେ ପାରଦର୍ଶିତା ଲାଭ କଲା । ଫଳାହାରୀ ବାବାଙ୍କ ସ୍ନେହ ଶ୍ରଦ୍ଧା କରୁଣା ପାଇଲା । ହନ୍ଦୀ ଭାଷାକୁ ଆୟତ୍ତ କରି ଖୁବ୍ ସାବଲୀଳ ଢ଼ଙ୍ଗରେ ସାରଗର୍ଭକ ପ୍ରବଚନ ଦେଲା । ଭକ୍ତଜନଙ୍କୁ, ଶ୍ରୋତାଙ୍କୁ ମୁଗ୍ଧ କରିଦେଲା । ଧୀରେ ଧୀରେ ତାର ପ୍ରବଚନରେ ଢ଼େରେ ପ୍ରାଣବନ୍ତା ଭରିଗଲା । ବୃନ୍ଦାବନ ଧାମରେ ତାକୁ ସମସ୍ତେ ଜାଣିଲେ ପ୍ରବଚନବାବା ବୋଲି । ଫଳାହାରୀ ବାବା ତାର ମଠ ନାମ ରଖିଲେ ବାଙ୍କବିହାରୀ ।

ବାଙ୍କବିହାରୀଙ୍କ ନିଷ୍ଠା ଓ ପ୍ରତିଭା ବୃନ୍ଦାବନ ଧାମରେ ତାକୁ ଯୁବ ସନ୍ୟାସୀ ଭାବରେ ପ୍ରତିଷ୍ଠିତ କରେଇଦେଲା । ଦିନେ ସନ୍ଧ୍ୟାର ଘଟଣା । ବୃନ୍ଦାବନର ଚମ୍ପାକୁଞ୍ଜ ମଠରେ ବାଙ୍କବିହାରୀ ପ୍ରବଚନ ଦେବାପାଇଁ ନିମନ୍ତ୍ରିତ ହେଇ ଆସିଥାନ୍ତି, କଣ ଗୋଟିଏ ମହୋତ୍ସବର ଆୟୋଜନ ହେଇଥାଏ । ମଠରେ ଭକ୍ତମାନେ ରୁଣ୍ଡ ହେଇଥାନ୍ତି । ମଠର ମହନ୍ତ ରାଧାନାଥ ଅଧିକାରୀ ମହାରାଜ ଉପସ୍ଥିତ ଥାଆନ୍ତି । ବାଙ୍କବିହାରୀ ପିତୁଳା ପିତୁଳୀ ଭେଦତତ୍ତ୍ୱ ଉପରେ କହିବା ଆରମ୍ଭ କଲେ । ତାଙ୍କର ପ୍ରବଚନ ଭାଗବତର

ସାରମର୍ମ ଉପରେ ପର୍ଯ୍ୟବସିତ ଥିଲା । ଆତ୍ମା ପରମାତ୍ମାର ସମ୍ପର୍କ, ରୂପ ଅରୂପର ରହସ୍ୟ, ଜନ୍ମ ମୃତ୍ୟୁର ଲୀଳା ଭିତରେ ଅବିନଶ୍ୱରତାର ମହତ୍ତ୍ୱ, ସର୍ବୋପରି ପିତୁଳା ଓ ପିତୁଳୀଙ୍କ ଦେହରେ ଜୀବନ ସଂଚାରଣ ଓ ସେମାନଙ୍କର ବହୁବିଧ ପ୍ରକାଶର ତଥ୍ୟକୁ ସରଳ ଭାଷାରେ ବୁଝାଉଥାନ୍ତି । ମଝିମଝିରେ ଭାଗବତରୁ, ଭଗବଦ୍‌ଗୀତାରୁ ପାଠ ଉଦ୍ଧାର କରି ଉପସ୍ଥାପନା କରୁଥାନ୍ତି । ମହନ୍ତ ରାଧାନାଥ ଅଧିକାରୀଙ୍କ ହୃଦୟକୁ ବାଙ୍କ ବିହାରୀଙ୍କ ପ୍ରବଚନ ସ୍ପର୍ଶକଲା । ସେ ବାଙ୍କବିହାରୀଙ୍କ ନାମଗୋତ୍ର ବୁଝିସାରିଲା ପରେ ନିଜ ମଠରେ ରହି ପ୍ରତ୍ୟହ ପ୍ରବଚନ ଦେବାପାଇଁ ଅନୁରୋଧ କଲେ । ଫଳାହାରୀ ବାବାଙ୍କ ଅନୁମତି କ୍ରମେ ବାଙ୍କବିହାରୀ ଚମ୍ପାକୁଞ୍ଜ ମଠରେ ଅବସ୍ଥାପିତ ହେଲେ । ସମୟ ଅତିବାହିତ ହେବାକୁ ଲାଗିଲା । ବୃନ୍ଦାବନ ଧାମରେ ଚମ୍ପାକୁଞ୍ଜ ମଠର ଯଶ, ପ୍ରତିପତ୍ତି ଢ଼େର ଥିଲା । ସେ ଧୀରେ ଧୀରେ ମହନ୍ତ ମହାରାଜାଙ୍କ ଶ୍ରଦ୍ଧାଭାଜନ ହେଲେ, ବିଶ୍ୱାସ ଭାଜନ ହେଲେ ଓ ଶେଷରେ ଏଭଳି ସମୟ ଉପନୀତ ହେଲା ଯେ ମହନ୍ତ ମହାରାଜଙ୍କ ଅସୁସ୍ଥତାରେ ତାଙ୍କର ସେବା ଶୁଶ୍ରୁଷା କରି ସେ ପ୍ରଧାନ ଶିଷ୍ୟ ଭୂମିକାରେ ନିଜକୁ ପ୍ରତିଷ୍ଠିତ କରାଇଲେ । ମଠର ଅନ୍ୟାନ୍ୟ ଶିଷ୍ୟମାନେ ବାଙ୍କବିହାରୀଙ୍କ ପ୍ରତି ଅସୂୟା ପରବଶ ହେଲେବି ତାଙ୍କର ଧୀଶକ୍ତି ଭକ୍ତିନିଷ୍ଠତା ଓ ଉଦାରତା ଆଗରେ ସମସ୍ତଙ୍କୁ ମୁଣ୍ଡ ନୁଆଁଇବାକୁ ହେଲା । ମହନ୍ତ ରାଧାନାଥ ଅପ୍ରକଟ ହେଲା ପରେ ବାଙ୍କବିହାରୀ ଗାଦି ଆସୀନ ହୋଇ ମଠର ମହନ୍ତ ହେଲେ ଏବଂ ଅଖଣ୍ଡ ପ୍ରଭୁତ୍ୱ ଓ ସମ୍ମାନର ଅଧିକାରୀ ହେଲେ ।

ବାଙ୍କବିହାରୀ ଧ୍ୟାନରେ କିଛି ସମୟ ଆଖି ବନ୍ଦ କରି ବସିଲେ । ତା ପରେ ଆଖି ଖୋଲି 'ଜୟ ରାଧେ, ଜୟ ରାଧେ' କହି ସ୍ତୋତ୍ରଟିଏ ଉଚ୍ଚାରଣ କଲେ ।

ବନ୍ଦେ ମୁକୁନ୍ଦମରବିନ୍ଦଦଳାୟତାକ୍ଷଂ
କୁନ୍ଦେନ୍ଦୁଶଙ୍ଖଦଶନଂ ଶିଶୁଗୋପବେଶଂ ।
ଇନ୍ଦ୍ରାଦିଦେବଗଣବନ୍ଦିତପାଦପୀଠଂ
ବୃନ୍ଦାବନାଲୟମହଂ ବସୁଦେବସୂନୁମ୍ ॥

ତାପରେ ସେ ପ୍ରବଚନ ଆରମ୍ଭିଲେ :

କୃଷ୍ଣଚନ୍ଦ୍ର ଓ ରାଧାରାଣୀଙ୍କ ରତିବିଳାସ କଳାରେ ବୈଷ୍ଣବ ପରଂପରା ଭରପୂର । ପରମାତ୍ମା ସ୍ୱରୂପ ଶ୍ରୀକୃଷ୍ଣଙ୍କ ପ୍ରତି ଜୀବାତ୍ମା ସ୍ୱରୂପିଣୀ ରାଧାଙ୍କର ଆସକ୍ତି

ହିଁ ରାଧାକୃଷ୍ଣ ପ୍ରେମର ମୂଳକଥା । ମେଘରୁ ଜଳ ବହି ଧରା ଉପରେ ପ୍ରବାହିତ ହେଲେ ତାହା ଧାରା ହୁଏ । ଏହି ଧାରା ଊର୍ଦ୍ଧ୍ୱମୁଖୀ ହେଇ ଧରାରୁ ମେଘକୁ ଗମିଲେ ରାଧାହୋଇଯାଏ । ଯିମିତି କୁଣ୍ଡଳିନୀ ମୂଳାଧାରରୁ ଊର୍ଦ୍ଧ୍ୱମୁଖୀ ହୋଇ ସହସ୍ରାରରେ ପହଞ୍ଚିଲେ ଦିବ୍ୟାନନ୍ଦ ପ୍ରାପ୍ତି ହୁଏ, ସିମିତି ରାଧାଭାବରେ ଅଭିସରଣ କରି ପରମ ପୁରୁଷ କୃଷ୍ଣଙ୍କ ସହିତ ମିଳନ ହେଲେ ପରମ ଆନନ୍ଦ ମିଳେ। ଆମେ ସମସ୍ତେ ରାଧାଭାବରେ କୃଷ୍ଣଙ୍କୁ ଭଜିଲେ କୃଷ୍ଣ ମିଳିବେ। ଶାସ୍ତ୍ରରେ କୁହାଯାଇଛି । ଆରାଧୟତୀତି ରାଧା । ଅର୍ଥାତ ଯିଏ ଆରାଧନା କରେ ସେ ହିଁ ରାଧା । ଆକର୍ଷୟତୀତି କୃଷ୍ଣ । ଅର୍ଥାଥ ଯିଏ ଆକର୍ଷଣ କରେ ସେ ହିଁ କୃଷ୍ଣ ।

ବାଙ୍କବିହାରୀ ତାଙ୍କ କଣ୍ଠରେ କଣ୍ଠ ମିଳେଇ ଭକ୍ତ ମଣ୍ଡଳୀକୁ ଉଚ୍ଚ ସ୍ୱରରେ ବୋଲିବାକୁ କହିଲେ । ବୋଲ୍, ନୀଳକନ୍ଦର ନିବାସୀ, ଭଗବାନ ଜଗନ୍ନାଥ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଜୟ ହେଉ, ଲକ୍ଷ୍ମୀ ସ୍ୱରୂପିଣୀ ରାଧାରାଣୀଙ୍କ ଜୟ ହେଉ । ମହନ୍ତ ମହାରାଜ ଶ୍ରୀ ଭାବାନନ୍ଦ ଦାସ, ଶ୍ରୀ ଦିବାକର ଦାସ, ଶ୍ରୀ ନିତ୍ୟାନନ୍ଦ ଦାସ , ଶ୍ରୀ ଶ୍ରୀ ରାମକୃଷ୍ଣ, ଶ୍ରୀରାମାନୁଜ ଦାସ ଓ ଶ୍ରୀ ହରେକୃଷ୍ଣଦାସଙ୍କର ଜୟ ହେଉ। ବାହାରମେଲା ଅଗଣାରେ ସମବେତ ଭକ୍ତଜନଙ୍କ ଉଚ୍ଚାରଣରେ ମଠଟି ମନ୍ଦ୍ରିତ ହେଇଉଠିଲା ।

ଯେଉଁ କଥା ଆମେ ଟିକେ ଆଗରୁ ଆଲୋଚନା କଲେ ରାଧାକୃଷ୍ଣଙ୍କ ସମ୍ପର୍କରେ ତାକୁ ଆପଣମାନେ ହୃଦୟଙ୍ଗମ କରନ୍ତୁ । ଆରାଧନା କରିବା ମନର ଧର୍ମ ଏବଂ ଆକର୍ଷଣ କରିବା ରୂପ ବା ଦେହର କରାମତି । ଆକର୍ଷଣର ଏହି ପ୍ରବୃତ୍ତିକୁ ଆଧାର କରି ସମସ୍ତ ଜାଗତିକ ପ୍ରେମ ଓ ରାଧାକୃଷ୍ଣଙ୍କ ଅଲୌକିକ ପ୍ରେମ ମଧ ନିୟମରେ ବନ୍ଧା ହେଇଛି ।

ସୌନ୍ଦର୍ଯ୍ୟ ଯାହା, ସତ୍ୟର ସ୍ୱରୂପ ତାହା । ଉଭୟେ ଆକର୍ଷଣର ମାଧ୍ୟମ । କୃଷ୍ଣଚନ୍ଦ୍ରଙ୍କର କମନୀୟ ଅଙ୍ଗ ସୌଷ୍ଠବର ମାଧୁର୍ଯ୍ୟସୁଧା ପାନ କରି ରାଧାରାଣୀ ବିହ୍ୱଳିତ ହେଇପଡ଼ନ୍ତି । ସେ ନିଜକୁ ପାଶୋରି ଦିଅନ୍ତି, ମନରୁ ଦେହ ଭାବନାର ବିଲୟ ଘଟେ । ସେ ଦେହାତୀତ ହେଇ କୃଷ୍ଣଙ୍କୁ ପାଇବାପାଇଁ ଅଧୀର ହୁଅନ୍ତି । ହା କୃଷ୍ଣ ହା କୃଷ୍ଣ ହେଇ ଯମୁନା ତଟ କୁଞ୍ଜମାନଙ୍କରେ ଖୋଜନ୍ତି । ଭାବନ୍ତି କାଳୀୟ ଗଣ୍ଡରେ ଲୁଚିପଡ଼ିଥିବେ ପରା । ପୁଣି ଧେନୁପଲଙ୍କ ଭିତରେ ସେ କୃଷ୍ଣଙ୍କୁ ହିଁ ଖୋଜିବସନ୍ତି ।

ଏଠି ଯେଉଁ ଅଙ୍ଗ ସୌଷ୍ଠବ କଥା କୁହାଗଲା ତାର ସ୍ୱରୂପ ଦିବ୍ୟ । ଅତଏବ ଆକର୍ଷଣର ମାଧ୍ୟମ ଦେହର ସୌଷ୍ଠବ ନୁହେଁ, ଦେହାତୀତ ସୌନ୍ଦର୍ଯ୍ୟ ଓ ପରାକାଷ୍ଠା । ପରମାତ୍ମା ଓ ଜୀବାତ୍ମା ଭିନ୍ନ ଭିନ୍ନ ହେଲେ ମଧ୍ୟ ଉଭୟଙ୍କ ସ୍ୱରୂପ ଏକ । ଏକ ପରମାତ୍ମା ବା ଏକବ୍ରହ୍ମ ବିଭିନ୍ନ ଜୀବରେ, ବିଭିନ୍ନ ବୀଜରେ ପ୍ରତିଫଳିତ ହୋଇଛନ୍ତି । ଗଛଲତା ପାହାଡ଼ପର୍ବତ ନଦନଦୀରେ ଓ ସମଗ୍ର ପ୍ରକୃତିରେ ବି ସେ ପ୍ରକଟିତ ହୁଅନ୍ତି । ସବୁ ତ ସେହି ପରଂବ୍ରହ୍ମଙ୍କର ଲୀଳା ।

ଗୌରୀ ଏ ତତ୍ତ୍ୱ ଶୁଣିଲା ପରେ ତା ଦେହରେ ପୁଲକ ଜାତ ହେଲା । ସେ ପ୍ରେମ ଭାବରେ ବୁଡ଼ିଗଲା, ତାର ଶରୀରରୁ ରତିସ୍ୱେଦ ନିଗିଡ଼ି ଗଲା । ସେ ସତେ ଯିମିତି କୃଷ୍ଣଙ୍କ ସାନ୍ନିଧ୍ୟରେ ଅସମ୍ଭାଳ ହେଇପଡ଼ିଲା । ସେ ଚାହିଁଲା କୃଷ୍ଣଚନ୍ଦ୍ରଙ୍କ ଅଙ୍ଗରେ ତତ୍‌କ୍ଷଣାତ୍ ଲୀନ ହେଇଯିବ । ସେ ଘନ ଘନ ବାଙ୍କବିହାରୀଙ୍କ ମୁହଁକୁ, ତାଙ୍କ ସମଗ୍ର ଶରୀରର ଉଚ୍ଚାଟନକୁ, ଗଭୀର ଭାବେ ଲକ୍ଷ୍ୟ କରୁଥିଲା । ବାଙ୍କବିହାରୀ ମଧ୍ୟ ଗୌରୀର ଭାବାନ୍ତରକୁ ହୃଦୟଙ୍ଗମ କରିପାରୁଥିଲେ ।

ବାଙ୍କବିହାରୀ ଭକ୍ତସମାଜକୁ ଆଉଥରେ ତାଙ୍କ ସହିତ କଣ୍ଠରେ କଣ୍ଠ ମିଳେଇ ବୋଲିବାପାଇଁ ହାତ ଯୋଡ଼ି ଅନୁରୋଧ କଲେ । କହିଲେ : ବୋଲ୍, ଯମୁନା ପୁଲିନ ବିହାରୀ ରାଧାପ୍ରାଣ ହାରୀ ପ୍ରେମସ୍ୱରୂପ ଭଗବାନ କୃଷ୍ଣଚନ୍ଦ୍ରଙ୍କର ଜୟ ହେଉ । ମାନିନୀ ବୃଷଭାନୁ ଜେମା କନକ ଗୌରୀ ରାଧାରାଣୀଙ୍କର ଜୟ ହେଉ ।

କୃଷ୍ଣପ୍ରେମ ବିଳାସିନୀ ରାଧା ବହୁ ସମୟରେ ଆତ୍ମହରା ହେଇପଡ଼ନ୍ତି । ପୁରୁଷଶେଖର ସକଳ ସୌନ୍ଦର୍ଯ୍ୟର ଆଧାର କୃଷ୍ଣଚନ୍ଦ୍ରଙ୍କର ପ୍ରେମ ସୁଧା ପାନ କରିବାପାଇଁ ଆକୁଳ ହୁଅନ୍ତି । ରାଧାଙ୍କ ଅଙ୍ଗଲତାରେ ତଡ଼ିତ୍‌ର ପ୍ରବାହ ଖେଳିଯାଏ । ଅନିର୍ବଚନୀୟ ସୁଖର ପ୍ରବାହ ତରଙ୍ଗାୟିତ ହୁଏ । ରାଧାଙ୍କର ପ୍ରେମାବସ୍ଥା ଲକ୍ଷ୍ୟ କରି କୃଷ୍ଣଚନ୍ଦ୍ରଙ୍କର ରତିସୁଖ ଆସ୍ୱାଦନ କରିବାପାଇଁ ସ୍ପୃହା ଜାତ ହୁଏ । ଏଣୁ କୃଷ୍ଣ ଚନ୍ଦ୍ର ସ୍ୱୟଂ ରାଧାଭାବେ ଅବତରି ଯାଆନ୍ତି ଯିମିତି ଚୈତନ୍ୟ ମହାପ୍ରଭୁ, ଯିମିତି ଅତିବଡ଼ି ଜଗନ୍ନାଥ ଦାସ । ସିମିତି । ନିଜେ ରାଧା ନହେଲେ କୃଷ୍ଣଚନ୍ଦ୍ରଙ୍କୁ ପାଇବା ଅସମ୍ଭବ । ରାଧା ନହେଇ କୃଷ୍ଣଚନ୍ଦ୍ରଙ୍କୁ କିଏ କେବେ ପାଇଛି ! ରାଧାକୃଷ୍ଣ ଲୀଳା ତ ଅଭେଦ୍ୟ ।

ନିତ୍ୟାନନ୍ଦ ନିଜକୁ ଧନ୍ୟ ମନେ କରୁଛନ୍ତି ଯେ ସେ ଗୌରୀ ଭିତରେ ରାଧାଙ୍କୁ ହିଁ ସଂଦର୍ଶନ କରିଆସିଛନ୍ତି । ସେ ଗୌରୀର ଦେହରେ ଯମୁନା, ମନ୍ଦର, ବୃନ୍ଦାବନ ସବୁ ରଚି ଦେଇଛନ୍ତି । ଗୌରୀ ଦେହରେ ଗୋବର୍ଦ୍ଧନ ଅଛି । କାମଧେନୁ ଅଛି । ସକଳ ସୁଖ ଶାନ୍ତିର ଭଣ୍ଡାର ଗୌରୀ ରାଧାସ୍ୱରୂପିଣୀ । ଆନନ୍ଦମୟୀ ।

ଗୌରୀ ଭାବୁଛି ବୃନ୍ଦାବନ ନିତ୍ୟ ରାସର ସ୍ଥାନ । ଏବେ ବି ରାଧାରାଣୀ ଓ କୃଷ୍ଣଚନ୍ଦ୍ର ବେତସ କୁଞ୍ଜରେ ନ ହେଲେ ମାଳତୀ କୁଞ୍ଜରେ କିମ୍ବା ଜାଇ ଯୂଇ ହେନା ଫୁଲର ଶେଯରେ ରତି କେଳି କରୁଛନ୍ତି, ରତିସୁଖ ଲଭୁଛନ୍ତି । ରତି ସୁଖସାରେ ଗତମତିସାରେ ମଦନମନୋହର ବେଶଂ । ସେହି ଯମୁନା ତଟ ଉପବନରୁ ଉଭାହେଇଛନ୍ତି ବାଙ୍କବିହାରୀ, ପ୍ରେମବାଣୀ ଶୁଣାଉଛନ୍ତି । ପ୍ରେମରେ ମଜେଇ ଦେଉଛନ୍ତି । ସେ କହୁଛନ୍ତି ପ୍ରେମମୟ ଏ ଜଗତ, ପ୍ରେମ ହିଁ ସତ୍ୟ ।

ପ୍ରବଚନ ଚାଲିଛି ।

ଶ୍ରୀରାଧାଙ୍କର ପ୍ରତିଅଙ୍ଗକୁ କୃଷ୍ଣଚନ୍ଦ୍ର ନିଜ ଅଙ୍ଗରେ ଅବଧାରଣା କରି ଚୈତନ୍ୟ ମହାପ୍ରଭୁ ଭାବେ ଜନ୍ମ ନେଲେ । ରାଧାଙ୍କର ଚିତ୍ତକୁ ନିଜ ଚିତ୍ତରେ ଆରୋପଣ କରି, ତାଙ୍କ ପ୍ରୀତିରସରେ ନିଜ ଚିତ୍ତବୃତ୍ତିକୁ ଅନୁସିକ୍ତ କରି ଶ୍ରୀକୃଷ୍ଣ ନିଜକୁ ମହାଭାବ ସ୍ୱରୂପିଣୀ ରାଧାରାଣୀ ଭାବେ ପରିଣତ କଲେ ଓ ନିଜକୁ ଚୈତନ୍ୟ ବୋଲେଇଲେ । ଶ୍ରୀକୃଷ୍ଣଙ୍କର ନବଘନ ଶ୍ୟାମଳ ଶରୀର ହେମମୟ ହେଇଗଲା । କୃଷ୍ଣଚନ୍ଦ୍ର ଓ ତାଙ୍କର ହ୍ଲାଦିନୀ ଶକ୍ତି ଶ୍ରୀରାଧା ଅଭେଦ୍ୟ ହେଲେ ହେଁ ଦ୍ୱାପରରେ ଲୀଳା ପ୍ରକାଶ କରିବାପାଇଁ ଦ୍ୱୈତ ତନୁ ଧାରଣ କରିଥିଲେ । କଳିଯୁଗରେ ଦ୍ୱୈତ ଦେହଧାରୀ ରାଧା ଓ ହରି ପୁଣି ଏକରେ ପରିଣତ ହେଇଗଲେ, ଚୈତନ୍ୟ ମହାପ୍ରଭୁଙ୍କ ଅବତାରରେ ।

ବାଙ୍କବିହାରୀ ପୁଣି ଥରେ ପ୍ରବଚନରେ ଭକ୍ତଙ୍କ ସଙ୍ଗ ଲୋଡ଼ିଲେ । କଣ୍ଠରେ କଣ୍ଠ ମିଳେଇ ନାମ ନେବାପାଇଁ ହାତ ଯୋଡ଼ି ଅନୁନୟ ହେଲେ । କହିଲେ ବୋଲ୍, ନଦିୟା ବିହାରୀ ପ୍ରେମ ଭକ୍ତିଚାରୀ, ଚୈତନ୍ୟ ମହାପ୍ରଭୁଙ୍କର ଜୟ ହେଉ, ନିକୁଞ୍ଜ କୁଞ୍ଜ ବିହାରିଣୀ ମାନିନୀ ରାଧାରାଣୀଙ୍କ ଜୟ ହେଉ ।

ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତିର ଅନୁପମ ବିଭାରେ ସ୍ୱୟଂ କାମଦେବ ମଧ୍ଯ ବିମୋହିତ ହୋଇପଡ଼ନ୍ତି ବୋଲି ସେ ମଦନ ମୋହନ । ଏକାକୀତ୍ୱରେ ସୌନ୍ଦର୍ଯ୍ୟ ବୋଧ ନାହିଁ । ଏକାକୀତ୍ୱ ଓ ନିଃସଙ୍ଗତ୍ୱ ମାଧୁର୍ଯ୍ୟ ଭାବକୁ ପ୍ରକାଶିତ କରିପାରେନାହିଁ । ଏଣୁ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଆମମାନଙ୍କର ପୂଜ୍ୟ ଓ ଆରାଧ୍ୟ । ରାଧା ହେଉଛନ୍ତି ସକଳ ମାଧୁର୍ଯ୍ୟ, ସକଳ ସୌନ୍ଦର୍ଯ୍ୟ ଓ ଲାବଣ୍ୟର ଉତ୍ସ । ଏହା ତାଙ୍କରି ପାଖରୁ ସକଳତ୍ର ବିଚ୍ଛୁରିତ ହୁଏ, ସେ ଏସବୁ ବିଭବର ଆଧାର । ତାଙ୍କର ପ୍ରାଣ ହେଉଛି କୃଷ୍ଣମୟ । ତାଙ୍କରି ମୁଖରେ ଅହରହ କୃଷ୍ଣନାମ ଉଚ୍ଚାରିତ ହେଉଥାଏ । ତାଙ୍କ ହୃଦୟ ସଦା ସର୍ବଦା କୃଷ୍ଣ ପ୍ରେମରସରେ ବୁଡ଼ି ରହିଥାଏ । କୃଷ୍ଣଙ୍କ ଅବସ୍ଥା ବି ଅନୁରୂପ । ସେ ରାଧାବିନା ଜୀବନ ଧାରଣ କରିପାରନ୍ତି ନାହିଁ । ରାଧା ତାଙ୍କର ପ୍ରାଣଶକ୍ତି, ସେ ଶୟନେ ସ୍ୱପନେ ରାଧାଭାବକୁ ହିଁ ଜପାମାଳି କରିଥାନ୍ତି । ରାଧାଙ୍କର କମନୀୟ ଅଙ୍ଗଲତା ଭିତରେ ସେ ସଦା ବିହରଣ କରିବାକୁ ଇଚ୍ଛୁଥାନ୍ତି । ପୁରାଣମାନଙ୍କରେ ରାଧାରାଣୀଙ୍କୁ କୃଷ୍ଣଚନ୍ଦ୍ରଙ୍କର ଅର୍ଦ୍ଧାଂଶ ସ୍ୱରୂପ ଓ ମୂଳ ପ୍ରକୃତି ବୋଲି କୁହାଯାଇଛି । ଯେପରି କ୍ଷୀରରେ ଧବଳତା, ଯେପରି ଅଗ୍ନିରେ ଦାହିକା ଶକ୍ତି, ସେଭଳି ତମରି ଭିତରେ ମୁଁ ବୋଲି କୃଷ୍ଣଚନ୍ଦ୍ର ରାଧିକାଙ୍କୁ କହିଛନ୍ତି । ଚୈତନ୍ୟଚରିତାମୃତରେ ବର୍ଣ୍ଣନା ଅଛି କହି ବାଙ୍କବିହାରୀ ଗୀତଟି ସ୍ୱର ଦେଇ ବୋଲିଲେ :

ରାଧାକୃଷ୍ଣ ଏକ ଆତ୍ମା ଦୁଇ ଦେହ ଧରି
ଅନ୍ୟୋନ୍ୟେ ବିଳାସେ ରସ ଆସ୍ୱାଦନ କରି ।

ପ୍ରେମ ହେଉଛି କୃଷ୍ଣ ଭକ୍ତିର ଚରମ ଉତ୍କର୍ଷ । କୃଷ୍ଣଙ୍କ ପାଇଁ ଯଶ ମାନ ମନ ପ୍ରାଣ ଦେହ ସବୁ ଅର୍ପଣ କରି ନିଜର ସକଳ ସ୍ୱାର୍ଥକୁ ବଳିଦେଇ ନିଜକୁ ତାଙ୍କ ପାଇଁ ଉତ୍ସର୍ଗ କରିବା ହିଁ ପରକୀୟା ପ୍ରେମ । ଘନ ଅନ୍ଧାର ରାତିରେ ବିଜୁଳିର ଚମକରେ ବାଟ ଉଣ୍ଡି ଉଣ୍ଡି ଯମୁନା କୂଳ କୁଞ୍ଜରେ କୃଷ୍ଣଙ୍କୁ ପାଇବାପାଇଁ ଅଭିସାର ରଚିବା ଏବଂ କୃଷ୍ଣଙ୍କୁ ପାଇସାରି ରତିକ୍ରୀଡ଼ାରେ ନିଜକୁ ସମ୍ପୂର୍ଣ୍ଣ ହଜେଇଦେବା, କୃଷ୍ଣଙ୍କ ଭିତରେ ବିଲୀନ ହେଇଯିବା ହିଁ ପରକୀୟା ପ୍ରେମ । ଏଭଳି ପ୍ରେମର ଚରମ ପରାକାଷ୍ଠା ଦେଖାଦେଇଛି ରାଧାଙ୍କ ଭିତରେ, ଅଷ୍ଟସଖୀଙ୍କ ଭିତରେ ଆଉ ବ୍ରଜନାରୀ ସମୂହଙ୍କ ଭିତରେ । ବ୍ରଜ ଭୂମିର ପ୍ରତିଟି ରେଣୁ କୃଷ୍ଣପ୍ରେମର ଗାଥା ଗାନ କରୁଛି । ରାଧାଙ୍କ ଅନାବିଳ ପ୍ରେମମୟତାର ମାଧୁର୍ଯ୍ୟରେ ଯମୁନା ନଦୀ, ନଦୀତଟ କୁଞ୍ଜ, ସମଗ୍ର ବନଭୂମି ଓ ଜନପଦ ସ୍ନିଗ୍ଧ ।

ବାଙ୍କବିହାରୀଙ୍କ ଚୈତନ୍ୟଚରିତାମୃତ କଣ୍ଠ ପୈଠ ଭଳି ଲାଗୁଛି । ସେ ପୁଣି ଥରେ ସେଥିରୁ ଉଦ୍ଧାର କରି ଭକ୍ତଙ୍କ ସମକ୍ଷରେ ପରିବେଷଣ କଲେ । କି ଚମତ୍କାର ନିର୍ମଳ କଣ୍ଠ ସ୍ୱର, କି ଦୀପ୍ତ ତାଙ୍କ ଉଚ୍ଚାରଣ, କି ଭାବଗର୍ଭକ ସେ ପ୍ରବଚନ । କି କମନୀୟ ସେ ଚାହାଣି, କି ମଧୁମୟ ସେ ଈଷଦ୍ ହସ ଓ କି ଲୋଭନୀୟ ସେ ରଙ୍ଗାଧର । ଗୌରୀକୁ ଲାଗୁଛି ସେ ବାଙ୍କବିହାରୀଙ୍କ ଭିତରେ ତାଙ୍କର ପ୍ରାଣର ପ୍ରତିମା କୃଷ୍ଣଚନ୍ଦ୍ରକୁ ହିଁ ଉପଲବ୍ଧି କରୁଛି ।

ପରକୀୟା ଭାବେ ଅତି ରସେର ଉଲ୍ଲାସ,
ବ୍ରଜବିନା ଏହାର ଅନ୍ୟତ୍ର ନାହିଁ ବାସ
ବ୍ରଜବଧୂ ଗନେଇ ଏଇ ଭାବ ନିରବଧି
ତା'ର ମଧ୍ୟେ ଶ୍ରୀରାଧା ଭାବେର ଅବଧି

ଗୋପୀମାନେ ସଦା ସର୍ବଦା କୃଷ୍ଣଚନ୍ଦ୍ରଙ୍କ ସାନ୍ନିଧ୍ୟ ଚାହିଁଚନ୍ତି , ସଙ୍ଗ ଚାହିଚନ୍ତି , ସେଥିରେ ହିଁ ସେମାନଙ୍କ ଚରମ ତୃପ୍ତି । ପ୍ରେମ ହିଁ ଗୋବିନ୍ଦ ପ୍ରାପ୍ତିର ଚରମ ଓ ପରମ ମାଧ୍ୟମ । କୃଷ୍ଣଙ୍କୁ ଘଡ଼ିଏ ନଦେଖିଲେ ଗୋପୀମାନଙ୍କୁ ଯୁଗଯୁଗର ଯନ୍ତ୍ରଣା ଘାରିଦିଏ ।

ବାଙ୍କବିହାରୀ ଭକ୍ତ ମଣ୍ଡଳୀ ଆଡ଼େ ଅନେଇ ପ୍ରଣାମ କଲେ । ଅନୁରୋଧ କଲେ, ବୋଲ୍, ବ୍ରଜଧାମବାସୀ କୃଷ୍ଣ ମୋହନଙ୍କ ଜୟ ହେଉ ନାରୀ କୁଳ ଶ୍ରେଷ୍ଠ ପ୍ରିୟତମା ରାଧାରାଣୀଙ୍କ ଜୟ ହେଉ ।

ମାଞ୍ଚେଲି ମଠରେ ଏଭଳି ପ୍ରବଚନ ଆଗରୁ କେବେ ହେଇନଥିଲା । ସମସ୍ତେ କୃଷ୍ଣପ୍ରେମ ରସରେ ବୁଡ଼ିଯାଇଛନ୍ତି, ସମସ୍ତେ ଅନୁଭବ କରୁଛନ୍ତି ତାଙ୍କ ଗାଁର ଉତ୍ତର ଦିଗରେ ମଠ ପାଚେରି କଡ଼େ କଡ଼େ ଯମୁନା ନଦୀ ବହିଯାଉଚି । ମଠର ଉପବନ ବିସ୍ତରିଯାଉଛି ଓ କୁଞ୍ଜମୟ ହେଇଯାଉଛି । କଦମ୍ବ ବଣ ଜମିଯାଇଛି । ମାଇଲ ମାଇଲ ବ୍ୟାପି କଦମ୍ବ ବାସ୍ନା ସଂଚରିଯାଇଛି । ମଠର ଦାସୀମାନେ ସବୁ ଗୋପାଙ୍ଗନା ପାଲଟିଯାଇଛନ୍ତି । ମାଞ୍ଚେଲିର ସବୁ ଯୁବତୀ ଗୋପୀ ହେଇଯାଇଛନ୍ତି , ସେମାନଙ୍କ ଭିତରେ ଗୌରୀମା ରାଧାରାଣୀ ବି ଅଛନ୍ତି । ଗୋପୀମାନେ ଆକୁଳରେ ବ୍ୟାକୁଳରେ ଖୋଜୁଛନ୍ତି

କୃଷ୍ଣଚନ୍ଦ୍ରଙ୍କୁ କୁଞ୍ଜମାନଙ୍କରେ । ସବୁ କୁଞ୍ଜ ଖାଲି । ସବୁରି ଭିତରେ କୃଷ୍ଣୀୟ ଶୂନ୍ୟତା ପ୍ରାଣନଥିଲା ଭଳି ସମସ୍ତଙ୍କୁ ଲାଗୁଛି । ପୁଣି ପର ମୁହୂର୍ତ୍ତରେ ସବୁ ଦୃଶ୍ୟ ପରିବର୍ତ୍ତିତ ହୋଇଯାଉଛି । ସବୁ କୁଞ୍ଜରେ ଗୋପୀମାନେ କୃଷ୍ଣଙ୍କ ସାଙ୍ଗରେ ତାଙ୍କ ବାହୁବନ୍ଧନ ଭିତରେ ରତିକେଳି ରଚୁଛନ୍ତି । ସମସ୍ତଙ୍କ ଅଧର ଚୁମ୍ବନର ଆତିଶଯ୍ୟରେ ରକ୍ତ ରଞ୍ଜିତ ହେଉଛି । ସେମାନଙ୍କ ସ୍ତନରେ କୁଙ୍କୁମର ଆଭା ବିଛି ହୋଇ ପଡୁଛି ।

ଭକ୍ତମାନେ ମର୍ମେ ମର୍ମେ ଅନୁଭବ କରୁଛନ୍ତି ବାଙ୍କବିହାରୀରୂପୀ କୃଷ୍ଣ ସ୍ୱୟଂ ବୃନ୍ଦାବନରୁ ଆସି ଗୌରୀ ରୂପୀ ରାଧାଙ୍କ ପ୍ରେମରେ ଆକର୍ଷିତ ହୋଇ ଏଠି ବିରାଜିଛନ୍ତି । ସମସ୍ତଙ୍କ ପାଇଁ ବୃନ୍ଦାବନରୁ ଆଣିଛନ୍ତି କୃଷ୍ଣଙ୍କ ପଦରେଣୁ । ତାକୁ ତାଙ୍କ ବାକ୍ୟ ଭିତରେ ମନ୍ତ୍ରିତ କରି ବୁଣିଦେଇଛନ୍ତି ଭକ୍ତମଣ୍ଡଳୀ ଉପରେ, ସମସ୍ତେ ମଜି ଯାଇଛନ୍ତି, ହଜିଯାଇଛନ୍ତି । ଆଃ ପ୍ରବଚନର ବି ଏଭଳି ଆକର୍ଷଣ ଥାଇପାରେ । ଲାଗୁଛି ପ୍ରବଚନରୁ ମଧୁ ଝରୁଛି ।

ଗୌରୀର ଅନ୍ତର ଆଲୋକିତ ହୋଇଯାଇଛି, ଆଉ କଲ୍ମଷ ନାହିଁ । ପ୍ରାଣରେ ପ୍ରେମର ଜୁଆର କୂଳ ଲଙ୍ଘୁଛି । ପ୍ଲାବିତ କରିଦେଉଛି ସମଗ୍ର ସତ୍ତାକୁ । ଗୌରୀ ନିଜକୁ ପ୍ରଶ୍ନ କରୁଛି ମୁଁ କିଏ ? ଗୌରୀ ନା ରାଧା । କେଉଁଠୁ ଆସିଲି କୁଆଡ଼େ ଯିବି, ମୋ ଆଗରେ ତ ଏକମାତ୍ର ରାସ୍ତା, ରାସ୍ତା ବ୍ରଜଭୂମିକୁ । ସେ ଦେଖୁଚି ଆଉ ମାଝେଲି ମଠରେ ଭକ୍ତମଣ୍ଡଳୀ ଭିତରେ ନିତ୍ୟାନନ୍ଦଙ୍କ ପାଖରେ ବସିନି, ସେ ବସିଛି କୃଷ୍ଣଙ୍କ କୋଳରେ କୁଞ୍ଜର ନିଭୃତ ଅନ୍ଧାର ଭିତରେ ଲୋଚିଯିବାକୁ ତାର ଇଚ୍ଛା ହେଉଛି । ପୁଣି ସେ ସେଇଠୁ ଫେରି ଆସୁଛି ନିତ୍ୟାନନ୍ଦଙ୍କ ପାଖକୁ ବାଙ୍କବିହାରୀଙ୍କ ପ୍ରବଚନର ସରହଦ ଭିତରକୁ ।

ବାଙ୍କବିହାରୀ ଏଥର ଓଡ଼ିଆ ଭାଗବତରୁ ପଦେ ଦି ପଦ ବୋଲି ଶୁଣେଇଲେ , ଟିପ୍ପଣୀ ଦେଲେ । ଅକ୍ରୁର ରଥ ନେଇ ଆସିଛନ୍ତି ଭଗବାନ କୃଷ୍ଣଚନ୍ଦ୍ର ଓ ବଳରାମଙ୍କୁ ବସେଇ ମଥୁରା ନେଇଯିବେ, ରଙ୍ଗସଭାରେ ହାଜର କରେଇବେ । ମହାରାଜା କଂସଙ୍କ ଆଦେଶ । ଗୋପୀମାନେ ତାଙ୍କର ପ୍ରାଣର ସଖା ନୟନ ପିତୁଳି କୃଷ୍ଣଚନ୍ଦ୍ରଙ୍କୁ ଦଣ୍ଡେ ହେଲେ ଅନ୍ତର କରିବାକୁ ଇଚ୍ଛୁ ନାହାନ୍ତି । ଗୋପୀମାନେ ପ୍ରାଣ ବିକଳରେ ଧାଇଁଛନ୍ତି ରଥ ପଛରେ । ବାଲିରେ ସେମାନଙ୍କ ଗୋଡ଼ ଥକିଯାଉଛି । କଦଳୀଗଛ ବାତ୍ୟାରେ ପଡ଼ିଗଲା ଭଳି ଗୋପୀମାନେ ରାସ୍ତାରେ ଗଡ଼ିପଡୁଛନ୍ତି । ତଥାପି ଧାଇଁଛନ୍ତି

କୃଷ୍ଣଚନ୍ଦ୍ରଙ୍କୁ ଆକଟ କରିବେ । କହିବେ, ମଥୁରା ଯାଅନି ପ୍ରଭୁ ।

ଜଗନ୍ନାଥ ଦାସ ଭାଗବତରେ ଗାଉଛନ୍ତି :

ମୁଁ ଯେ ଭକତେ ଭାବେ ବାଇ । ଭାବ ନିକଟେ ନିତ୍ୟେ ଥାଇ ।
ଶରଦ ରାସ କାଳେ ଯାହା । ହୋଇଲେ ଯେତେକ ଉତ୍ସାହା ।
ତାହାଙ୍କ ଭକ୍ତି ଭାବ ଘେନି । ରମିଲି ସକଳ କାମିନୀ ।
ସେ ମୋର ଦେହର ଜୀବନ । ଚକ୍ଷୁପିତୁଳୀ ନିରଞ୍ଜନ ।
ଜୀବନ ଛାଡ଼ି ଯାଉଅଛି । ମୃତ୍ୟୁ ପିଣ୍ଡକୁ କେହୁଗଛି ।
କେବଳ ରାଜକାର୍ଯ୍ୟ ସାରି । ତହିଁ ରହିବୁ ଦିନ ଚାରି ।
ଏକଥା ଗୋପୀଙ୍କି କହିବୁ । ଘରକୁ ପଠିଆଇ ଦେବୁ ।
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ । ଶ୍ରୀ ଦାମ ଗଲା ବେଗ ହୋଇ ।
କହିଲା ଗୋପୀଙ୍କ ଆଗର । ବୋଇଲା ଯାଅ ଯେଝାଘର ।
ଶୁଣି ଗୋପୀଏ ଛନଛନ । କୃଷ୍ଣର ତହିଁ ଦେଇ ମନ ।
ରଥକୁ ଚାହାନ୍ତି ନିରୋପି । ଚିତ୍ରପ୍ରତିମା ପ୍ରାୟ ଗୋପୀ ।

ଭକ୍ତମଣ୍ଡଳୀ ସ୍ତବ୍ଧ ଓ ପୁଲକିତ । ଅନେକଙ୍କ ଆଖିରୁ ଆନନ୍ଦାଶ୍ରୁ ଗଡ଼ିଲାଣି । ଆହା ଗୋପୀଙ୍କର କି ଦୁଃଖ, କି ବିରହ ଯନ୍ତ୍ରଣା । ଏହାକୁ ହିଁ କହିବା ସଚ୍ଚା ପ୍ରେମ । ହେ କୃଷ୍ଣଚନ୍ଦ୍ର ତମେ ଆମରି ଭିତରେ ବି ଭରିଦିଅ ଏ ଭାବ, ଏ ଉନ୍ମାଦନା । ଆମକୁ ଗୋପୀ କରିଦିଅ । ଆମେ ଆଉ ସଂସାର ଜଂଜାଳରେ ଉବୁଟୁବୁ ହେଇ ଦୁଃଖରେ ସଢ଼ିବୁନି । ଦୟାକର ପ୍ରଭୁ, ଆଶିଷ ବରଷ, ଗୋପୀ କରିଦିଅ । ଆମେ ତମ ପଛରେ ବ୍ରଜବାଳୀଙ୍କ ଭଳି ଧାଉଁଥାଉ ।

ଗୌରୀ ସତେ ଯିମିତି ଭାସିଯାଉଚି ଯମୁନାର ପ୍ରଖର ସ୍ରୋତରେ । କୃଷ୍ଣଚନ୍ଦ୍ର ଡ଼ଙ୍ଗା ବାହି ଆଣୁଛନ୍ତି ତାରି ଆଡ଼କୁ । ହସି ହସି କହୁଛନ୍ତି, ରାଧେ ଯମୁନା ପାରି ହେବ ? ଦେଖ ଯମୁନାରେ ପ୍ଲାବନ, ତମର କୋମଳ ଅଙ୍ଗଲତା, ବୃଷଭାନୁ ଜେମା ତମେ, ପହଁରି ଜାଣିନ । ଦୁଧ ଦହି ଘିଅ ଓ ଲହୁଣୀର ନାରୀ ତମେ , ଆସ ମୋ ଡ଼ଙ୍ଗାକୁ, ମୋ କୋଳକୁ । ମୁଁ ପରା ଯୁଗ ଯୁଗ ଧରି ଅପେକ୍ଷା କରିଛି, ବାହୁ ପ୍ରସାରିଛି, ମୋ ହୃଦୟ ମନ୍ଦିର ଶୂନ୍ୟ କରି ଜଗି ବସିଛି, ଆସ ପ୍ରାଣପ୍ରିୟ ମୋର । ଗୌରୀ । ତମେ

ତ ମୋର ସଖୀ । ଶୟନେ ସପନେ ଜାଗରଣେ ମୁଁ ତୁମକୁ ହିଁ ଦେଖୁଛି । କିଭଳି ଭୁଲିପାରିବି ସଖୀ, ବସନ୍ତରାସର କଥା, ଶରଦ୍ କେଳିର କଥା । ତମେ ମୋତେ କୋଳକରିନେଲ, ମୁଁ ତମ ବାହୁଲତାରେ ଛନ୍ଦି ହେଇଗଲି । ମୃଗମଦ କସ୍ତୁରୀ କୁଙ୍କୁମ ବୋଳା ସ୍ତନ ମୋ ଛାତିରେ ଚପିଯାଇ ମୋ ହୃଦୟ ରଞ୍ଜିତ ହୋଇଗଲା । ତମେ ତମ ବିମ୍ବ ଓଠକୁ ବଢ଼େଇ ଦେଲ, ମୁଁ ଚୁମ୍ବିଲି । ମୁଁ ରାଧାଭାବରେ ମଜ୍ଜି ଯାଇଥିଲି । ମୁଁ ସତେ ଯିମିତି ନିଜକୁ ତମରି ଭିତରେ ହଜେଇ ଦେଇଥିଲି । ମୁଁ ନୀବୀବନ୍ଧ ଖୋଲିଲି । କାହିଁ ତେ ତମେ ପ୍ରତିବାଦ କଲନି । ତମର ନିତମ୍ବ ଜଘନ ମୋତେ ବ୍ରହ୍ମାଣ୍ଡର ପରିଧି ଭଳି ଲାଗିଲା, ହିରଣ୍ମୟ ଗର୍ଭ ଦିଶିଲା । ମୁଁ ହଜିଗଲି ରାଧେ, ତାପରେ ମୁଁ ଜାଣିନି ସକାଳ କେବେ ହେଲା ।

ଗୌରୀ ସମାଧିସ୍ଥ ହେଇଯାଇଛି ।

ବାଙ୍କବିହାରୀ ପ୍ରବଚନର ଶେଷ ପାଦରେ । ସେ ବି ରାଧାପ୍ରେମରେ ତଲ୍ଲୀନ । ମହନ୍ତଙ୍କ ଆଖିରୁ ପ୍ରେମାଶ୍ରୁ ବହୁଚି । ସେ ଭାବ ଗଦ୍‌ଗଦ୍ ହେଇ ରାଧାପ୍ରେମ, କୃଷ୍ଣ ପ୍ରେମ ଓ ବିଶ୍ୱପ୍ରେମ ଭିତରେ ସତେ ଯିମିତି ବିଚରଣ କରୁଛନ୍ତି । ସବୁ ଆଡ଼େ ତୃପ୍ତିର ଭାବ । ସବୁ ଆଡ଼େ ଆନନ୍ଦ ଉଲ୍ଲାସ ।

ବାଙ୍କବିହାରୀ ନିଜ ମଠର ଭକ୍ତମାନଙ୍କୁ ଇଙ୍ଗିତ ଦେଲେ । ସେମାନେ ମୃଦଙ୍ଗରେ ବୋଲ୍ ଡ଼ାକିଲେ , ଝାଞ୍ଜରେ ଶବ୍ଦ ଭରିଲେ । ଏ ସବୁ ଝଙ୍କାରର ସାମାନ୍ୟ ବ୍ୟବଧାନ ଭିତରେ ବାଙ୍କବିହାରୀ ପ୍ରବଚନ ଶେଷ କଲେ ।

ହାତଯୋଡ଼ି ମୁଣ୍ଡିଆ ମାରିଲେ । ଶୋତୃଜନଙ୍କୁ, ଭକ୍ତମଣ୍ଡଳୀକୁ ସମାଗତ ମଠାଧୀଶମାନଙ୍କୁ, ବୈଷ୍ଣବଙ୍କୁ ଓ ଦିବଙ୍ଗତ ହରେକୃଷ୍ଣ ଦାସ ଗୋସ୍ୱାମୀ ମହନ୍ତଙ୍କ ସ୍ମୃତିକୁ । ଶୂନ୍ୟକୁ ହାତ ଯୋଡ଼ି ପ୍ରଣମିଲେ । କୃଷ୍ଣଚନ୍ଦ୍ରଙ୍କୁ ଓ ରାଧାରାଣୀଙ୍କୁ ।

ତାପରେ ମୃଦଙ୍ଗର ତାନରେ ସଭା ସ୍ଥଳି କମ୍ପି ଉଠିଲା ।
ପ୍ରବଚନ ସରିଲା ।
ସଖୀପିଲାଙ୍କ ରାସନୃତ୍ୟ ଆରମ୍ଭ ହେଲା ।

ମଉଛବର ଶେଷ ଦିନ । ଆଜି ପ୍ରତିମା ପ୍ରତିଷ୍ଠା ଓ ଗାଦି ଆରୋହଣ ଦୁଇଟି ଯାକ ବିଧାନ ଏକାସାଙ୍ଗେ ବଢ଼ିବ । ହରିପଙ୍ଗତ ପରେ ମଉଛବ ଉଜେଇ ଦିଆଯିବ । ଅତିଥି ଅଭ୍ୟାଗତ କାଲି ସକାଳୁ ବାହୁଡ଼ିବା ଆରମ୍ଭ କରିବେ । ଆଜି ଉପବନ ନନ୍ଦନକାନନ ହେଇଯାଇଛି, ଚନ୍ଦ୍ରାତପରେ ଜାଗାଟି ସଜାଣ ହେଇଛି । ସମାଧି ମଣ୍ଡପରେ ଦୁଇଟି ପ୍ରତିମା ଗୋସେଇଁଙ୍କ ଓ ଶ୍ରୀକୃଷ୍ଣଚନ୍ଦ୍ରଙ୍କର । ନବଯୌବନ ବିଧାନ ହେବ । ତାପରେ ପ୍ରାଣପ୍ରତିଷ୍ଠା । ବାହାର ମେଲା ଅଗଣାରେ ନିତ୍ୟାନନ୍ଦ ଦାସ ମହନ୍ତ ଗାଦିରେ ବସିବେ । ଆଉ ପୁରୁଷେ ମଠର ପରଂପରା ଲମ୍ବି ଆସିବ । ଶ୍ରୀ ଶ୍ରୀ ହରେକୃଷ୍ଣ ଦାସ ମହନ୍ତ ତ ବୈକୁଣ୍ଠବାସୀ ହେଇ ସାରିଛନ୍ତି । ପ୍ରତିମା ରୂପରେ ଏବେ ତାଙ୍କର ସ୍ମୃତି ଉଜ୍ଜୀବିତ ହେବ । କୃଷ୍ଣଙ୍କ ପାଦ ତଳେ ଚିର ଆଶ୍ରିତ ହେଇ ରହିଯିବେ । ସେ ଦେବଲୋକରେ ସ୍ଥାନ ପାଇବେ, ଦେବତା ହେଇଯାଇ ପୂଜା ଅର୍ଚ୍ଚନା ଗ୍ରହଣ କରିବେ ।

ପିତୁଳା ସ୍ମୃତିର ସନ୍ତକ । ତାହା ପରଂପରାକୁ ଉଜ୍ଜୀବିତ କରିଦିଏ । ମୃତ୍ୟୁ ଯାହା ଅପ୍ରକଟ କରେ, ପଞ୍ଚମହାଭୂତ ଯାହା ଶେଷରେ ଫେରେଇନେଇଯାଏ , ପିତୁଳା ସେହି ରୂପ ଗନ୍ଧ ସ୍ପର୍ଶକୁ ପୁଣି ଆଉଥରେ ତା ସତ୍ତାରେ ସଞ୍ଚରେଇବା ପାଇଁ ଚେଷ୍ଟା କରେ । ମଠର ଐତିହ୍ୟକୁ ଚଳମାନ କରାଏ । ପୁରାତନ ଓ ନୂତନ ଭିତରେ ସେତୁଟିଏ ବାନ୍ଧିଦିଏ ଓ ସେହି ସେତୁ କାହିଁ କୁଆଡ଼େ ଲମ୍ବିଯାଏ ।

ଏବେ ବୃନ୍ଦାବନ ଧାମରୁ ଡ଼ୋରିଟିଏ ଲମ୍ବି ଆସିବ ଓ ନିତ୍ୟାନନ୍ଦଙ୍କୁ ସମ୍ପର୍କ ଭିତରେ ଛନ୍ଦିଦେବ । ନିତ୍ୟାନନ୍ଦ ପୁଣ୍ୟ ଭାରତ ବର୍ଷର ମଠ ବ୍ୟବସ୍ଥାର, ବୈଷ୍ଣବ ସଂପ୍ରଦାୟର ସଦସ୍ୟ ହେଇଯିବେ । ରାଧାପ୍ରେମରେ ଉଦ୍‌ବୁଦ୍ଧ ହେଉଥିବା ଭକ୍ତଙ୍କ ଭିତରେ ଗଣା ହେଇଯିବେ । ନିତ୍ୟାନନ୍ଦ ଦାସଙ୍କ ମହିମା ଗରୀୟାନ ହେବ । ସେ ଯଶରେ, ମାନରେ, ପ୍ରତିପତ୍ତିରେ ମହୀୟାନ ହେବେ ।

ନିତ୍ୟାନନ୍ଦ ମହନ୍ତ ଆସନରେ ଆରୂଢ଼ ହେଲା ପରେ ସେ ନିସ୍ପନ୍ଦ ପିତୁଳା ଭଳି ହୋଇଯିବେ । ତାଙ୍କ ଚାରି ପଟେ ଗଢ଼ି ଉଠିବ ମେଘନାଦ ପାଚେରି । ଗୌରୀ

କ'ଣ ତାହା ଲଘି ପାରିବେ । ସେ ଗାଦିତଳେ ହିଁ ରହିଯିବେ ଦାସୀ ଭଳି । ବୈଷ୍ଣବ ପରଂପରାରେ ନାରୀ ମାତ୍ରେ ରାଧା । ତଥାପି ମହନ୍ତର ଆସନ ଗିରି ଗୋବର୍ଦ୍ଧନ ଠାରୁ ଆହୁରି ଉଚ୍ଚା । ତାକୁ ଉତ୍ତୋଳନ କରି, ଉପାଡ଼ି ଫିଙ୍ଗିଦେବା ପାଇଁ ଯିଏ ସମର୍ଥ ସିଏ କୃଷ୍ଣ , ରାଧା ନୁହଁନ୍ତି । ମାଝେଲି ମଠରେ ମାତାହେଇ ଗାଦିରେ ବସିବା ପରଂପରା ନାହିଁ । ଅନ୍ୟ କେଉଁଠି ହେଲେ ଏ ବ୍ୟବସ୍ଥା ନାହିଁ । ଏଣୁ ଗାଦି ତଳେ ଠିଆ ହେଇ ହାତ ଯୋଡ଼ି ଗୌରୀ ମହନ୍ତଙ୍କ ଦର୍ଶନ ଲଭିବେ । ମହନ୍ତ ଖଞ୍ଜା ଭିତରକୁ ପ୍ରବେଶିଲେ ସେ ଶଙ୍କିଯାଉଥିବେ । ସେହି ଧାର୍ମିକ ବିଳାସ ଓ ପରଂପରାର ଆଡ଼ମ୍ବର ଭିତରେ ମହନ୍ତଙ୍କ ଭୋଗ୍ୟା ହେବାପାଇଁ ସେ ଚାହିଁବେନି । ଗୌରୀମା ଚାହାନ୍ତି ତାଙ୍କର ନିତ୍ୟାନନ୍ଦ ଚୈତନ୍ୟ ମହାପ୍ରଭୁଙ୍କ ଭଳି ନିଷ୍କଳଂକ ବିରାଜନ୍ତୁ । ତା ବୋଲି ସେ ନିଭୃତ ସେବାରେ ପୌରୋହିତ୍ୟ କରିବେନି ସେମିତି ନୁହେଁ । ନିଭୃତ ସେବା ତ ବୈଷ୍ଣବ ସମ୍ମତ ଓ ଅନାବିଳ । ମହନ୍ତ ନିତ୍ୟାନନ୍ଦ ଦାସ ନିଭୃତ ସେବାରେ ବିଜେ କଲେ ଗୌରୀ ତାଙ୍କ ପାଇଁ ନବନାରୀକୁଞ୍ଜର ସଜେଇ ଦେବେ ଓ ତା ଶୀର୍ଷରେ ତାଙ୍କୁ ବସେଇ ଦେବେ । ସେ ଭାବିବେ ପ୍ରେମାତୁରା ହେଇ ଖୋଜନ୍ତୁ ମହନ୍ତ ରାଧାରାଣୀଙ୍କୁ । କହିବେ ଗୋସେଇଁ ଖୋଜନ୍ତୁ ଆପଣଙ୍କ ପ୍ରିୟତମାଙ୍କୁ ।

ମହନ୍ତ ଦେଖିବେ କଦମ୍ବ ମୂଳରେ ରାଧାରାଣୀ କୃଷ୍ଣଚନ୍ଦ୍ରଙ୍କ ସାଙ୍ଗରେ କେଳି କରୁଛନ୍ତି । କୃଷ୍ଣ ତ ଏକ ନୁହନ୍ତି ଅନେକ । ସେ ଭକ୍ତଙ୍କ ପାଇଁ ବହୁଧାରେ ପ୍ରକାଶ ହେଇଯାଆନ୍ତି । କଦମ୍ବ ମୂଳ ଦିବ୍ୟ ଆଲୋକ ଓ ଦିବ୍ୟ ଗନ୍ଧରେ ଝଲସି ଯାଉଥିବ । ମହନ୍ତ ନିତ୍ୟାନନ୍ଦ ସ୍ତବ୍ଧ ଚକିତ ହେଇଯିବେ ।

ମହନ୍ତ କହି ଉଠିବେ ଗୌରୀ ମୋତେ ଏଠି ମହନ୍ତ ଆସନରେ ବସେଇ ଦେଇ ତମେ ଖସିଗଲ କଦମ୍ବ ମୂଳକୁ । ମୁଁ ଏ ଧର୍ମ ସିଂହାସନର ମୋହରେ ସ୍ଥାଣୁ ହେଇଗଲି । ମୋ ଉପରେ ଚନ୍ଦ୍ରାତପ ମୋ ଦେହରେ ଶୃଙ୍ଖଳାର ବେଡ଼ି, ମୋ ଆଗରେ ନୀତି ନିୟମର ଅହେତୁକ କୁଣ୍ଡଳୀ । ମୁଁ ଅଣନିଶ୍ୱାସୀ ହେଇଯାଉଛି । ମୁଁ ପିତୁଳା ହେଇଯାଉଛି, ପ୍ରିୟେ । ଗୌରୀ, ତମେ କିନ୍ତୁ ଏ ବଳୟରବାହାରେ ରହି ଏବେ ବି ଛଳଛଳ ଢ଼ଳଢ଼ଳ ଓ ପ୍ରାଣବନ୍ତ । ପରଂପରା ବେଳେବେଳେ ଏଭଳି ନିଷ୍ଠୁର ହେଇ ରଜ୍ଜୁ ଭଳି ଗଳାକୁ ରୁଦ୍ଧ କରିଦିଏ । ତମେ ଏମିତି ବହିଯାଅନା ଗୌରୀ । ଅପେକ୍ଷା କର ମୁଁ ହୁଏତ ଆସିବି, ମୋ ପାଦରୁ ଶୃଙ୍ଖଳ ଛିଣ୍ଡେଇ ଦେଇ ଆସିବି । ମୁଁ ଆସିବାପାଇଁ ଚେଷ୍ଟା ତ କରିବି, ଏତିକି ତ ବିଶ୍ୱାସ ରଖ । ମହନ୍ତ ହେବାର କି ଯନ୍ତ୍ରଣା ମୁଁ ଏବେ ଭୋଗୁଛି ।

ଆସନ  ବ୍ୟବସ୍ଥାର କି ନଷ୍ଟୁର ତାଡ଼ନା ।  ମୁଁ ଏକଥା ସ୍ୱପ୍ନରେ ସୁଦ୍ଧା କଳିନଥିଲି ଯେ ମହନ୍ତ ନଦୀ ଭଳି ବହିପାରିବନି, ସେ ଅନଳ ଭଳି ଦହିପାରିବନି , ସେ ଜଳ ଭଳି ଅନ୍ୟର ହୃଦୟକୁ ସିକ୍ତ କରିପାରିବନି ।  ସେ ଅନ୍ୟକୁ ହିଲ୍ଲୋଳିତ କରିବାର କ୍ଷମତା ହରେଇ ଦେବ ।  ସେ ଆଲିଙ୍ଗନ କରିବା ଭୁଲିଯିବ ।  ସେ କୂର୍ମ ଭଳି ନିଜର ଅବୟବ ମାନଙ୍କୁ ଘାଣ୍ଟୁ କରିଦେଇ ଖୋଳପା ଭିତରେ ହଜିଯିବ, ଖୋଳପା ଦିଶିବ ସଂଯତ ଚିକ୍କଣ ଓ ସୁଠାମ ।

ଗୌରୀ ତମେ ମୋତେ ଡ଼ାକନା ମହନ୍ତ ଗୋସେଇଁ ବୋଲି ।  ନିତ୍ୟାନନ୍ଦ ଏବେବି ତମର ଦାସ, ସଖାମାତ୍ର ।  ନିଅ ମୋତେ କୋଳକର, ଆଲିଙ୍ଗନର ପୁଲକରେ ମୋ ପ୍ରାଣକୁ ଶୀତଳ କର, ମୋତେ ତମ ବାହୁଲତାରେ ଛନ୍ଦିଦିଅ, ମୋତେ ତମରି ଭିତରେ  ହଜିବାକୁ ଦିଅ ।  ମୁଁ ତମର ସୁନାର ଦେହକୁ, ଚନ୍ଦ୍ରମୁଖର ସୌନ୍ଦର୍ଯ୍ୟକୁ ଜୀବନ ଜୀବନ ଧରି ଚାହିଁ ରହିବାକୁ ଇଚ୍ଛା କରୁଛି ।  ହେ ରାଧେ ! ମାନମୟୀ, ମାନଭଞ୍ଜନ କର ।

ନିତ୍ୟାନନ୍ଦ ଗୋସେଇଁ! ତମେ ଏବେ ବ୍ରହ୍ମବେତ୍ତା । ତମର ସମସ୍ତ ଓଜ, ତେଜ, ଉର୍ଦ୍ଧ୍ୱମୁଖୀ ହେଇ ସହସ୍ରାର ଉପରକୁ ଉଠି ମାନସ ସରୋବରରେ ମିଶିଯାଇ ଏକାକାର ହେଇଯାଉଛି ।  ତମର ସବୁ କଥା ଏବେ ଜ୍ଞାନମୟ, ପ୍ରେମମୟ ।  ତମେ ଧୀରେ ଧୀରେ ଅଚିନ୍ତ୍ୟ ଅଗୋଚର ହେଇଯାଉଛ ।  ତମେ ଖୁବ୍ ଶୀଘ୍ର ନିଜକୁ ହରେଇବ ।  ତମେ ମହନ୍ତ ହେଇଗଲ ।  ବେଶ୍, ସେ ଶବ୍ଦର ମହିମାରେ ନିଜକୁ ମଜ୍‌ଗୁଲ୍ କରିରଖ ।   ଆଗକୁ ଉତ୍ତରଣ ଆଉ ମହନ୍ତର କାମ୍ୟ ନୁହେଁ ।  ତମେ ତ ଉତ୍ତରିତ ହେଇଗଲ ।  ମଣିଷରୁ ମହନ୍ତ ହେଲ ।  କାଠଗଡ଼ ଭଳି ସମୟର ପ୍ରବାହରେ ଆମେ ଭାସିଆସିଲେ ।  ତମେ ପିତୁଳା ହେଇଗଲ  । ଆଉ ମୁଁ ଗୌରୀ, ରହିଗଲି ନାରୀଟିଏ ହେଇ । କୃଷ୍ଣାର୍ପିତା ଦାସୀଟିଏ ହେଇ ।  ମୋ ବେଦନା ମୋର ନାରୀତ୍ୱର । ମୁଁ ପିତୁଳୀ ହେଇପାରୁନି ।  ମୁଁ ଚଳଚଂଚଳା ତଟିନୀ ।   ମହନ୍ତ ମହାରାଜ ମୋତେ ବୁଝିବାକୁ ଚେଷ୍ଟା କର ।

ଗୌରୀ ଭଜନ କୋଠିର ଗାୟିକା ଆସନରେ ବସିରହି ନିତ୍ୟାନନ୍ଦଙ୍କୁ ସମ୍ବୋଧନ କରୁଛି ।  ଗୋସେଇଁ ମହାପ୍ରଭୁ, ଆଦେଶଦିଅ କି ଭଜନ ବୋଲିବି ।

ଗୋପାଳକୃଷ୍ଣଙ୍କ ପଦାବଳୀରୁ ନା ଗୀତଗୋବିନ୍ଦରୁ । ଉତ୍ତର ଦିଅ। କହ ବୋଲିବି କି ? ରତିସୁଖସାରେ ଗତମଭିସାରେ ମଦନମନୋହରବେଶମ୍ । ନ କୁରୁ ନିତମ୍ବିନି ଗମନବିଳମ୍ବନମନୁସର ତଂ ହୃଦୟେଶମ୍ । ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ । ପୀନପୟୋଧରପରିସରମର୍ଦ୍ଦନଚଞ୍ଚଳକରଯୁଗଶାଳୀ ।।

ମହନ୍ତର ଭବ୍ୟ ଆସନରେ ବସିରହି ଗୀତଗୋବିନ୍ଦର ରତିକେଳି ବିଳାସ କଥା ଶୁଣିଲେ ମନ ଚହଲି ଯିବନି ତ ? ମହନ୍ତମାନେଇ ତ ଗାୟେଣିଙ୍କ କଣ୍ଠରୁ ଗୀତଗୋବିନ୍ଦ ଶୁଣନ୍ତି । ଗୀତଗୋବିନ୍ଦ ଶୁଣୁ ଶୁଣୁ ପହୁଡ଼ ଯାଆନ୍ତି । ମୁଁ ରାଧିକା ସାଜି ତମରି ଶୋଇବା ଖଞ୍ଜାରେ କିମିତି କବାଟ ଠକ୍‌ଠକ୍ କରିବି । ପହୁଡ଼ରେ ବାଧା ହେବନି ତ ? ତମେ ଏବେ ଖାଲି ନିତ୍ୟାନନ୍ଦ ନୁହଁ, ମହନ୍ତ ନିତ୍ୟାନନ୍ଦ । ତମ ପହୁଡ଼ ଭାଙ୍ଗିବା କ'ଣ ସମୀଚୀନ ହେବ ? ନୀଳିମା ରେଣୁକା ହରିପ୍ରିୟା କନକ ଚମ୍ପା ଓ ପୁଷ୍ପା କ'ଣ ଭାବିବେ ? କ'ଣ କହିବେ ? କହିବେ ରାଧାରାଣୀ ଅଭିସାରିକା ସାଜିଛନ୍ତି । ରାଧାରାଣୀ ସିନା କୁଳ ମାନ ମହତ ଲଙ୍ଘି ପାରିଲେ ବୋଲି, ଅପବାଦକୁ ଅଙ୍ଗରେ ଚନ୍ଦନ କରି ଲେପିଦେଲେ ବୋଲି ତାଙ୍କ ପାଇଁ ସବୁ ସମ୍ଭବ ହେଲା । ମୋର କରଣି କ'ଣ କହନ୍ତୁ , ମହନ୍ତ ମହାରାଜ । ବୈଷ୍ଣବ ପରଂପରା ରାଧାଙ୍କୁ ଭକ୍ତିର ପରାକାଷ୍ଠାରେ ଶୀର୍ଷ ଆସନ ଦେଇ ମଠରେ ନାରୀର ସ୍ଥିତିକୁ କେବଳ ଭୋଗ୍ୟାର ପର୍ଯ୍ୟାୟରେ ରଖିଦେଲା । ମଠରେ ନାରୀ କେବଳ ବସ୍ତୁ ସତ୍ତା ମାତ୍ର ।

ବାଙ୍କବିହାରୀ ସ୍ନାହାନ ସାରି କୌପୀନ ଖଣ୍ଡେ ପିନ୍ଧି ପୁଷ୍କରିଣୀରୁ ବାହୁଡୁଛନ୍ତି । କି ବଳିଷ୍ଠ ଅଙ୍ଗ ସୌଷ୍ଠବ ତାଙ୍କର , କି ଦୀପ୍ତି, କି କମନୀୟ ରୂପ ଗଢ଼ଣ । ସେ ଏବେ ସଜ ବସ୍ତ୍ର ପିନ୍ଧିବେ, ତିଳକ ଘେନିବେ, ଛେନା ମଣୋହି କରିବେ, ରାଧାକୃଷ୍ଣଙ୍କ ସେବାପାଇଁ ମନ୍ଦିର ବିରାଜିବେ । ମୁଁ ଯାଉଛି । ତାଙ୍କୁ ପାଛୋଟି ନେଇ ଯିବି । ଆଚମନ କରିବାପାଇଁ ଚେମ୍ବୁରୁ ପାଣି ଗଡ଼େଇଦେବି । ହାତକୁ ତୁଳସୀମାଳା ଓ କୋଥଳି ବଢ଼େଇଦେବି । ସେ କୃଷ୍ଣଚନ୍ଦ୍ରଙ୍କୁ ଅର୍ଚ୍ଚନା କରିବେ, ମୁଁ ତାଙ୍କୁ ସାନ୍ନିଧ ଦେବି, ମୁଁ ତାଙ୍କୁ ସଖ୍ୟ ଦେବି । ଏମିତି କରିବା ଏଇ ମଠଦାସୀର କର୍ତ୍ତବ୍ୟ । ମୁଁ ଯାଏଁ ।

ନିତ୍ୟାନନ୍ଦ ଦାସ ଗୋସେଇଁ ଆଜି ତମର ଗାଦି ଆସୀନ ଉତ୍ସବ । ଦାସୀମାନେ ମାଜଣା ପାଇଁ କବାଟ ଠକ୍ ଠକ୍ କଲେଣି । ନିଦ୍ରାତେଜି ପଲଙ୍କରୁ ଉଠ ।

ବାସଜଳ ନିଅ, ମୁଖ ପ୍ରକ୍ଷାଳନ କର, ଦନ୍ତ ମାର୍ଜନ କର, ଶୃଳେଇରେ ବିଜେହୁଅ, ଅଙ୍ଗରେ ତୈଳ ମର୍ଦ୍ଦନ କର, ସଖୀଙ୍କ ଗହଣରେ ସ୍ନାନ ସାରି ନିଜ ଖଞ୍ଜାରେ ବିଜେ ହୁଅ । ଅପେକ୍ଷାକର, ଦାସୀମାନଙ୍କୁ କହିଲେ ଶ୍ରୀଅଙ୍ଗରେ ତିଳକ ଅଙ୍କନ କରିଦେବେ, ସଜବାସ ପିନ୍ଧେଇ ଦେବେ । ତମେ ସବୁ ଦେଖୁଥାଅ, ଶୁଣୁଥାଅ, ଶୁଙ୍ଘୁଥାଅ, ଖାଉଥାଉ ଶୋଉଥାଅ । ନୀତି ଯାହା ନିର୍ଦ୍ଦେଶ ଦେବ, ମଠର ପରଂପରାରୁ ଯାହା ପ୍ରଚୋଦନା ପାଇବ, ତାହା କର । ପ୍ରେମଭାବ ଏଭଳିକି ଭକ୍ତିଭାବ ମଧ ତମ ପାଇଁ ସବୁ ଶୁଣାକଥା ହେଇଯାଉ , ତମେ ସ୍ପନ୍ଦନ ରହିତ ହୁଅ, ତମେ କାତରତା ହରେଇ ବସ, ମାଧୁର୍ଯ୍ୟ ତମର ପ୍ରାପ୍ୟ ନୁହେଁ । ତମେ ପଙ୍ଗୁ ହେଇଯାଅ, ଅଥର୍ବ ହେଇଯାଅ । ତମେ ପ୍ରତିମା ଭଳି ନିଶ୍ଚଳ ନିର୍ବିକାର ଓ ନିର୍ବେଦ ହୁଅ । ତମେ ମହନ୍ତ ହୁଅ, ଗୋସେଇଁ ହୁଅ ।

ବାଙ୍କବିହାରୀ ମଣୋହି ସାରି ଶୟନ କକ୍ଷରେ ବିଜେ କଲେ । ଶ୍ରୀଅଙ୍ଗକୁ ପଲଙ୍କ ଉପରେ ଗଡ଼େଇ ଦେଲେ । ରେଣୁକା ତାଙ୍କ ପଦ ମଞ୍ଜାଳିଲା । ତାଙ୍କ ମୁଖ କେତେ ପ୍ରସନ୍ନ ଦିଶିଲା । ସେ ଭାବିଲେ ରାଧାରାଣୀ ତାଙ୍କ ପଦସେବା କରୁଛନ୍ତି । ତାଙ୍କ ଦେହରେ ଅପୂର୍ବ ଶିହରଣ ଖେଳିଗଲା । ତାଙ୍କ ଆଖିପତା ବନ୍ଦ ହେଇଆସିଲା ଓ ସେ ନିଶ୍ଚିନ୍ତିରେ ପହୁଡ଼ ଗଲେ ।

ମଠକରଣ ଯାବିତା ତିଆରିଛି । ତମର ଗାଦି ଆରୋହଣ ଉତ୍ସବ ପାଇଁ କେତେପ୍ରକାର ଚିଜ ଲେଖା ଅଛି । ପଢ଼ିବ ଯଦି ପଢ଼ । ପଢ଼ି ବା ତମର କଣ ହେବ । ଏ ସବୁ ମଠଉ ତଳ ଲୋକ ସଂଗ୍ରହ କରିବେ । ତଥାପି ଥରକ ପାଇଁ ହେଲେ ଆଖି ପକେଇଆଣ ।

ଶ୍ରୀ ଶ୍ରୀ ନିତ୍ୟାନନ୍ଦ ଦାସ ମହନ୍ତ ମହାରାଜାଙ୍କ ଗାଦି ଆରୋହଣକୁ ଚଳିବା ବିଧାନ ଯାବିତା ।

୧. ସମୁଦ୍ର ଜଳ ଆଣିବାକୁ ବାରୁଆପେଣ୍ଠକୁ ପଠାଯାଇ ଜଳ ଆସିଲା ।
୨. ଗଙ୍ଗୋଦକ ମଧ ଆସିଲା ।
୩. ଏଦିନ ସକାଳୁ ରାଧାକୃଷ୍ଣଙ୍କ ମାଜଣାକୁ ଧନଞ୍ଜୟ ରଥେଙ୍କ ମୁଳେ ଦ୍ୟାଗଲା ।
୪. ଅହଁଳା ହଳଦି କଳାକାଛ ସିନ୍ଦୁର କଜ୍ଜଳ ଅଗେରା ସାମାନ ଦ୍ୟାଗଲା ।

୫.	ଶ୍ରୀ ଜଗନ୍ନାଥଙ୍କ ଠାରେ କର୍ମ କରିବାକୁ ଗୁଆ ଚାଉଳ ଛୁଇଁ ମହନ୍ତ ମହାରାଜ ଦେଲେ ।

୬.	ଭୋଗକୁ ନବାତ କଦଳୀ ନଡ଼ିଆ ପ୍ରତ୍ୟେକ ସ୍ଥାନକୁ ଦ୍ୟାଗଲା ସେବକମାନେ ଆସିନେଲେ । ଦୀପକୁ ଘିଅ ଦ୍ୟାଗଲା ।

୭.	ଗାଦିଠାରେ ଜାଗ୍ରତ ହେବାକୁ ଶ୍ରୀଦୁର୍ଗାମାଧବ ପଟ ।

୮.	ଶ୍ରୀ ମହାପ୍ରସାଦ ।

ଦୁର୍ବା, ହରିଦ୍ରାକ୍ଷତ, ଏହାରଖିବାକୁ ପାତ୍ର - ସାତଦୀପ

ଶୋଭାର୍ଥ କଳସି - ଗୋ ୪ଟି	ଗାମୁଛା

ବରଣକୁମ୍ଭ ଏଥକୁ ସରାବ	ଗାମୁଛା

ଆମ୍ବଡ଼ାଳ, ପଞ୍ଚପଲ୍ଲବ, ଏଥକୁ ଗାମୁଛା

ପରିଡ଼

ଶୋଭାର୍ଥ ଦୀପ

ବରଣପୂଜା ସାକର କଦଳୀ

ସ୍ୱସ୍ତିବାଚନ ବ୍ରାହ୍ମଣ

ଗାଦି ପାଖରେ ରହିବା ବ୍ରାହ୍ମଣଙ୍କ ପାଁରେ ଜଥା, ଗାମୁଛା, ବନ୍ଧାପନା ଥାଳି ରଖା ଦୀପ ମଠରୁ ଆସିବ ।

ଓଗେର ଓଗେର

ସ୍ୱା ମଠକରଣ ଶ୍ରୀ ଦୟାନିଧି ଛାମୁପଟ୍ଟନାୟକ ।

ସନ୍ଧ୍ୟା ହେଇ ଆସୁଛି । ମନ୍ଦିରମାନଙ୍କରେ ଆଳତି ବଜୁଛି । ତାପରେ ସମସ୍ତେ ଉପବନ ଭିତରେ ମଣ୍ଡଣି ହେଇଥିବା ଚାନ୍ଦୁଆ ତଳକୁ ଯିବେ । ପୁରୋହିତ ପ୍ରତିମା ପ୍ରତିଷ୍ଠା ବିଧାନ ବଢ଼େଇବେ । ହୋମ ହେବ, ଜୀବନ୍ୟାସ ମନ୍ତ୍ର ବୋଲାହେଇ ପ୍ରତିମାରେ ପ୍ରାଣ ପ୍ରତିଷ୍ଠା ହେବ । କୃଷ୍ଣଚନ୍ଦ୍ର ତାଙ୍କ ବାଙ୍କ ଚାହାଣିରେ ଆମକୁ ଚାହିଁ ହସିବେ । ତାଙ୍କ ରୁପାର ବଂଶୀରୁ ମନେହେବ ସ୍ୱନ ଭାସି ଆସିଲା । ମହନ୍ତଙ୍କ ମୂର୍ତ୍ତିରେ ମଧ୍ୟ ଚକ୍ଷୁଦାନ କରାଯିବ । ପୁରୋହିତ ମୂର୍ତ୍ତି ଦେହରେ ତିଳକ ଆଙ୍କିଦେବ । ପ୍ରତିମା ମାନେ ଜୀବନ ପାଇଯିବେ । ତାଙ୍କ ଆଗରେ ଏବେ ପ୍ରସାଦ ବାଢ଼ି ଦିଆଗଲା । ମଣ୍ଡପର

କବାଟ ବନ୍ଦ ହେଲା । ଉପବନ ଛାଡ଼ି ସମସ୍ତେ ବାହାର ମେଲା ଅଗଣାରେ ପହଂଚିଲେ । ନିତ୍ୟାନନ୍ଦ ଦାସ ବୈକୁଣ୍ଠବାସୀ ମଠର ମହନ୍ତମାନଙ୍କର ଫୋଟ ଓ ପ୍ରତିମା ଆଗରେ ମୁଣ୍ଡିଆ ମାରିଲେ, ଆଶୀର୍ବାଦ ଭିକ୍ଷା କଲେ । ଉପବନର ସମାଧି ମଣ୍ଡପରେ ଶ୍ରୀ ହରେକୃଷ୍ଣ ଦାସଙ୍କ ପ୍ରତିମା ଆଗରେ ଲମ୍‌ତମ୍ ହେଇପଡ଼ିଥିଲେ । କୃପା ଭିକ୍ଷା କରିଥିଲେ ।

ବୃନ୍ଦାବନର ବାବା ବାଙ୍କବିହାରୀ ଦାସ ମହନ୍ତ ଗାଦି ପାଖରେ ବସିଛନ୍ତି । ସେ ନିତ୍ୟାନନ୍ଦଙ୍କ ବେକରେ ବୃନ୍ଦାବନର ତୁଳସୀମାଳ ପିନ୍ଧେଇ ଦେଲେ, କାନ୍ଧରେ ପାଟର ଉତ୍ତରୀୟ ବେଢ଼େଇଦେଲେ । ଗାଦି ଆଗରେ ପ୍ରଣାମ କରିବାପାଇଁ କହିଲେ । ଗୁରୁଙ୍କୁ ସ୍ମରଣା କରିବାପାଇଁ କହିଲେ । ସେ ଯାହା ଯାହା କହୁଥାନ୍ତି ନିତ୍ୟାନନ୍ଦ ଯନ୍ତ୍ରଚାଳିତ ପିତୁଳା ଭଳିଆ ତାହା ତାହା କରୁଥାନ୍ତି । ଉପସ୍ଥିତ ସମସ୍ତ ମହନ୍ତମାନଙ୍କଠାରୁ ଆଜ୍ଞା ନେବାପାଇଁ କହିଲେ । ନିତ୍ୟାନନ୍ଦ ଯୋଡ଼ ହସ୍ତରେ ବିନମ୍ର ହେଇ କହିଲେ ମୋତେ ଆପଣମାନେ ଆଦେଶ ଦେଲେ ମୋ ଗୁରୁ ଶ୍ରୀ ଶ୍ରୀ ହରେକୃଷ୍ଣ ଦାସଙ୍କର ଉତ୍ତରାଧିକାରୀ ଭାବେ ମୁଁ ଏଇ ମହନ୍ତ ଆସନରେ ବସି ଠାକୁରଙ୍କ ପୂଜା ଅର୍ଚ୍ଚନା କରି ବୈଷ୍ଣବ ଧର୍ମର ପ୍ରଚାର ପ୍ରସାରରେ ବ୍ରତୀ ହେବି ଓ ଜୀବନ ଅତିବାହିତ କରିବି । ଉପସ୍ଥିତ ସମସ୍ତ ମଠାଧୀଶ, ନିମନ୍ତ୍ରିତ ଅତିଥିମାନେ ତଥାସ୍ତୁ ତଥାସ୍ତୁ କହି ସ୍ୱସ୍ତିବାଚନ କଲେ । ବାଙ୍କ ବିହାରୀ ନିତ୍ୟାନନ୍ଦଙ୍କ ମୁଣ୍ଡରେ ମହନ୍ତେଇ ପାଟଶାଢ଼ି ବାନ୍ଧିଦେଲେ ଓ ତାଙ୍କ ହାତଧରି ନେଇ ମଠର ଗାଦି ଉପରେ ବସେଇଲେ । ନିତ୍ୟାନନ୍ଦ ଏବେ ମହନ୍ତ ମହାରାଜ, ସେ ବାଙ୍କବିହାରୀଙ୍କୁ ପ୍ରଣାମ କଲେ । ବୃନ୍ଦାବନ ଧାମ ଗାଦିର ପ୍ରାଧାନ୍ୟକୁ ସ୍ୱୀକାର କଲେ ମହନ୍ତ ଭାବରେ ।

ବର୍ତ୍ତମାନ ମଠର ସବୁ ଅନ୍ତେବାସୀ ଗାଦିଆସୀନ ମହନ୍ତ ନିତ୍ୟାନନ୍ଦ ଦାସଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣେଇଲେ । ଏଥିରେ ଥିଲେ ଗୌରୀମ୍ମା, ତାପଛକୁ ଆଉ ଯେତେକ ଦାସୀ, ମଠକରଣ, ପୂଜାରୀ, ପୁରୋହିତ , ଟହଲିଆ, ଖୁଣ୍ଟିଆ, ଘାଟ ପାଇକ, ହଳିଆ, ମୁଲିଆ, ଓଗେର ଓଗେର । ବର୍ତ୍ତମାନ ମଠର ସାଧାରଣ ଲୋକ ଓ ମହନ୍ତ ମହାରାଜାଙ୍କ ଭିତରେ ସଂଭ୍ରମର, ମର୍ଯ୍ୟାଦାର ଔଚିତ୍ୟର ବାଡ଼ଟିଏ ପଡ଼ିଗଲା । ନିତ୍ୟାନନ୍ଦ ନିଆରା ନିଆରା ଲାଗିଲେ ।

ତାପରେ ହରିପଙ୍କତ ଓ ପନ୍ତି ଭୋଜନ ଆରମ୍ଭ ହେଲା । ଭିତର ମେଲା ଅଗଣା ବାହାର ମେଲାଅଗଣା, କଚେରି ପିଣ୍ଡା, ଭଜନ କୋଠି ସବୁ ଆଡ଼େ ଅତିଥି ଅଭ୍ୟାଗତ ବସିଗଲେ । ପତ୍ର ପଡ଼ିଲା, କୀର୍ତ୍ତନ ଆରମ୍ଭ ହେଲା । ଲମ୍ବା ଧାଡ଼ି । ଗୋଟିଏ ପଟୁ ଆରମ୍ଭ କଲେ ଅନ୍ୟ ପଟେ ପହଞ୍ଚିବାପାଇଁ ଅଧଘଣ୍ଟା ସମୟ ଲାଗୁଛି । ନୀଳାମ୍ବର ମିଶ୍ରେ ରନ୍ଧାବଢ଼ା ଓ ପରଷିବା ଦାୟିତ୍ୱରେ ଥିଲେ । ଲାଗୁଥିଲା ପ୍ରସାଦ ଖୁବ୍ ସ୍ୱାଦିଷ୍ଟ ଥିଲା । ଖିରି ହାପୁରିବା ଢ଼ଙ୍ଗରୁ ଓ ତହିଁରୁ ନିର୍ଗତ ଶବ୍ଦରୁ ଜଣା ପଡୁଥିଲା ଖାଦ୍ୟର, ପରିବେଷଣର ଓ ଖାଇବାଲୋକର ପରିତୃପ୍ତିର ମାନସିକତା ।

ସବୁ ଯୋଗାଡ଼ ଆଡ଼ମ୍ବର ଶେଷ ହେଉହେଉ ରାତି ଏଗାର ବାର ।

କବାଟ କିଳା ହେଲ ବେଳକୁ ମଧ ରାତ୍ରି ଗଡ଼ିଯାଇଥିଲା ।

ମହନ୍ତ ନିତ୍ୟାନନ୍ଦ ଦାସ ନିଜ ଖଞ୍ଜାକୁ ବିଜେ ହେଉଥିଲେ । ଦାସୀ ଓ ଅନ୍ୟ ପରିଚାରିକାମାନେ ରାସ୍ତାରୁ ଆଡ଼େଇ ହେଇଯାଉଥିଲେ । ମହନ୍ତ ମହାରାଜ ଖୁବ୍ ଗମ୍ଭୀର ଦେଖାଯାଉଥିଲେ । ଗୌରୀ, ମହନ୍ତ ମହାରାଜାଙ୍କ ପାଖରୁ ସେ ରାତିରେ ନିଭୃତ ସେବା କରିବାପାଇଁ ଅନୁମତି ଚାହିଁଲା । ମହନ୍ତ ପ୍ରଥମେ ଦୋଦୋପାଞ୍ଚ ହେଲେ, ସେ ବି ଗୌରୀ ସାଙ୍ଗରେ ଯିବାପାଇଁ ଭାବିଲେ । ବିଗତ ଦିନର ନିଭୃତ ସେବାର ସମ୍ମୋହନ ମନରେ କ୍ଷଣିକ ଉନ୍ମାଦନା ଭରିଦେଲା । ଦିନ ଯାକର କ୍ଲାନ୍ତି ଦେହକୁ ଅବଶ କରିଦେଉଥିଲା । ସେ ନାଚାର ହେଇଯାଇଥିଲେ । ଏଣୁ ସେ ମନା ବା କିମିତି କରିଥାନ୍ତେ । ନିଭୃତ ସେବା ତ ଗୌରୀର ଦାୟିତ୍ୱ ଭିତରେ । ବୁଢ଼ା ମହନ୍ତ ନିଜ ଉଇଲ୍‌ରେ ମଧ ସେକଥା ଉଲ୍ଲେଖ କରିଥିଲେ ।

ସକାଳୁ ଶ୍ରୀ ଶ୍ରୀ ବାଙ୍କବିହାରୀ ଦାସଙ୍କ ଟ୍ରେନ୍ । ଭୋର ଚାରିଟାରେ ସୋମପେଟା ଷ୍ଟେସନ୍‌ରେ ଗାଡ଼ି ଲାଗିବ । ଏତେ ସକାଳଟାରୁ ଉଠି ତାଙ୍କୁ ବିଦାଗି ଦେବାପାଇଁ ଷ୍ଟେସନ୍‌ରେ ଉପସ୍ଥିତ ହେବାକୁ ନିତ୍ୟାନନ୍ଦଙ୍କୁ ବାଙ୍କବିହାରୀ ବାରଣ କଲେ । ତାପରେ ନିତ୍ୟାନନ୍ଦ ଏବେ ମଠର ମହନ୍ତ । ଏଣୁ ତାଙ୍କୁ ଅନେକ ଦାୟିତ୍ୱ ନିଜେ ତୁଲାଇବାକୁ ପଡ଼ିବ । ନିତ୍ୟାନନ୍ଦ ମଠକରଣ ଓ ଟହଲିଆକୁ ନିର୍ଦ୍ଦେଶ ଦେଲେ ସେମାନେ ଶଗଡ଼ରେ ବସେଇନେଇ ମହନ୍ତ ମହାରାଜାଙ୍କୁ ଷ୍ଟେସନ୍‌ରେ ବାଟେଇ ଦେଇ ଆସିବେ ।

ମହନ୍ତ ମହାରାଜାଙ୍କ ବିଦାଗି ମେଲାଣି ସଜଡ଼ା ହେଇଯାଇଛି । ଗୌରୀ ସେକାମ ବଢ଼େଇ ଦେଇଛି । ମହନ୍ତ ନିତ୍ୟାନନ୍ଦ ବାଙ୍କବିହାରୀଦାସ ମହନ୍ତଙ୍କୁ ପ୍ରଣାମ ହେଇ ନିଜଖଞ୍ଜାକୁ ଚାଲିଗଲେ ।

ତାପରେ ମଠରେ ନିଶା ଗର୍ଜିଲା ।

ଉପବନରେ ଝିଙ୍କାରୀର ରିମ୍‌ଝିମ୍ ଶବ୍ଦ ଆହୁରି ଉଚାଟ ହେଲା ।

ଗୌରୀ ନିଜ ଖଞ୍ଜାକୁ ଫେରିଲା । ଶୀତଳ ଜଳରେ ସ୍ନାନକଲା । ସର୍ବାଙ୍ଗରେ ଚନ୍ଦନ ଲେପିଲା, ମଥାରେ କୁଙ୍କୁମ ଘେନିଲା । ନୂଆଲୁଗା ପିନ୍ଧିଲା , ତାର ଆତ୍ମା ଦେଇଥିବା ଗୀତଗୋବିନ୍ଦ ଖଣ୍ଡୁଆ ପାଟକୁ ଓପରାଣ କଲା । ଗଳାରେ ଫୁଲର ମାଳା ନାଇହେଲା । ଧୀରେ ଧୀରେ ଗୋଡ଼ କାଢ଼ି ଉପବନ ଭିତରକୁ ଗଲା । ଫଗୁପୂର୍ଣ୍ଣିମାର ଚାନ୍ଦ ମଠ ଅଗଣାରେ ବିଛାଡ଼ି ହେଇ ପଡ଼ିଥିଲା । ଗୌରୀଆତ୍ମା ଓ ତା ପଛରେ ତା ଛାଇ ଆସ୍ତେ ଆସ୍ତେ ଉପବନର ସବୁଜିମା ଭିତରକୁ ଅପସରିଗଲେ ।

ଉପବନ ପ୍ରତି ଗୌରୀର ଆକର୍ଷଣ କାବ୍ୟିକ । ଉପବନର ସବୁଜିମା ତା ପ୍ରାଣରେ ଭରିଦିଏ କୃଷ୍ଣମୟତା । ସେ ଉପବନ ଭିତରକୁ ପଶିଲେ ମୁକ୍ତିର କଥା ଭାବିବସେ । ଉପବନର ଐକାନ୍ତିକତା ତା ମନରେ ଆଣିଦିଏ ଚେତନାର ସମ୍ମୋହନ । ସେ କଦମ୍ବ ବଉଳବନର ସାନ୍ଦ୍ରତା ଭିତରେ ହଜିଯିବାପାଇଁ ଚାହେଁ ଚିରଦିନ ଲାଗି । ଉପବନରେ ଘଡ଼ିଏ ତଳର କୋଳାହଳ, ମନ୍ତ୍ରପାଠର ଝଙ୍କାର ଆଉ ନାହିଁ । ଚନ୍ଦ୍ରାତପ ଅବଶଦେହ ଭଳି ଝୁଲୁଛି । କିନ୍ତୁ ଆଲୁଅର ଆଡ଼ମ୍ବରକୁ କାଢ଼ି ନିଆହେଇଯାଇଛି ।

ଚାନ୍ଦୁଆ ଚନ୍ଦ୍ରାଲୋକିତ ଆକାଶ ଓ ମଉଛବର ମାଟି ଭିତରେ ଯିମିତି ମେଘଟିଏ ଢ଼ାଙ୍କି ଦେଇଛି । ସେଥିଯୋଗୁଁ ଉପବନ ଲାଗୁଛି ଆହୁରି ଅନ୍ଧାର, ଆହୁରି ନିବିଡ଼, ଆହୁରି ନିଜର । କଦମ୍ବ ମୂଳର ମଣ୍ଡପରେ ଘିଅ ଦୀପଟେ ଜଳୁଛି । ଘିଅ ସରି ସରି ଆସି ଦୀପ ନିଷ୍ପ୍ରଭ ହେବା ଉପରେ । ଏହି ନିଷ୍ପ୍ରଭ ଆଲୁଅରେ ମହନ୍ତଙ୍କ କନ୍ଦା ପଥରର ପ୍ରତିମୂର୍ତ୍ତି ଲାଗୁଚି ଶାନ୍ତ ଓ ସ୍ଥବିର । ତା ପଛରେ କୃଷ୍ଣଙ୍କର କଳାମୁଗୁନିର ଶିଳା ପ୍ରତିମା ଦିଶୁଛି ଆହୁରି ବିସ୍ମୟକର ଆହୁରି କୌତୂହଳମୟ । ଗୌରୀ ଗବାକ୍ଷ

ଭିତର ଦେଇ ଏ ଶୋଭା ଦେଖୁଛି । ତାକୁ ଲାଗୁଛି ତା ଦୃଷ୍ଟି ଭିତରେ ମାୟାର ଝାପ୍‌ସା ଆସ୍ତରଣଟିଏ ବେଢ଼ିଯାଇଛି ।

ଗୌରୀ ସମାଧି ମନ୍ଦିରର କବାଟ ଖୋଲିଲା । ପିତଳ କବାଟ ଦିପଟକୁ ମେଲିଗଲା । ସେ ଚାରି ଆଡ଼କୁ ଚାହିଁଲା । କୃଷ୍ଣଚନ୍ଦ୍ରଙ୍କ ଆଖିରେ ତା ଆଖି ମିଶିଗଲା । କୃଷ୍ଣଚନ୍ଦ୍ରଙ୍କ ଆଖିରେ ଆବେଗ । ଲାଗିଲା କୃଷ୍ଣଚନ୍ଦ୍ର ଯିମିତି ତାକୁ ଅପେକ୍ଷା କରୁଥିଲେ । କୃଷ୍ଣଚନ୍ଦ୍ରଙ୍କ ବିଶ୍ୱାସ ଥିଲା ଗୌରୀ ନିଶ୍ଚୟ ଆସିବ । ଗୌରୀ ଏଥର ମଣ୍ଡପର ଢାଉଁଳି କବାଟ ଆଉଜେଇ ଦେଲା । ଆଣ୍ଠୁମାଡ଼ି କିଛି ସମୟ ବସିଲା । ତାର ମନେ ପଡ଼ିଗଲା ପଛଦିନର ଘଟଣା । ସେ ତାର ଥର ଥର ହାତରେ ରାଧାବିନୋଦଙ୍କ ଗଳାରେ ମଙ୍ଗଳସୂତ୍ର ପିନ୍ଧେଇ ଦେଇ ବରିଥିଲା ପ୍ରତିମାକୁ ପତି କରି । ମନରେ ଉନ୍ମାଦନା ନଥିଲା । ଆତଙ୍କ ତାର ସତ୍ତାକୁ ଆବୋରି ଦେଇଥିଲା । ରାଧାବିନୋଦ କିନ୍ତୁ ତାକୁ ଏମିତି ଉତ୍କଣ୍ଠାରେ ଅନେଇ ରହିଥିଲେ । ସେ ଚାହାଣିରେ ପ୍ରୀତିଭରା ବିସ୍ମୟ ଥିଲା । ଏକ ଆଗ୍ରହ ଭରା ଉତ୍କଣ୍ଠା ଥିଲା । ଏତେ ଦିନ ପରେ ବି କୃଷ୍ଣଙ୍କ ଆଖିରେ ଠିକ୍ ସେମିତିକା ଚାହାଣି, ସେହି ଏକା ଭଳି ବିସ୍ମୟ ।

ଦେବାର୍ପିତା ଗୌରୀର ଦିନଯାକ କଳ୍ପନା ଭିତରେହିଁ କଟିଥିଲା । ସେ କଳ୍ପନାରେ ନଦନଦୀ, ବିଲବଣ, ପାହାଡ଼ପର୍ବତ, ବନଉପବନ କୃଷ୍ଣଙ୍କ ସାଙ୍ଗରେ ଭ୍ରମିଲା । ଯମୁନା ତଟ କୁଞ୍ଜରେ ଅଭିସାରିକା ସାଜିଲା । ବେତସ କୁଞ୍ଜରେ, ମାଳତୀର ହିନ୍ଦୋଳରେ କୃଷ୍ଣଙ୍କ ପାଇଁ ବିନିଦ୍ର ରଜନୀ ବିତେଇଲା । କୃଷ୍ଣ ଗୌରୀକୁ ରମଣ ସୁଖ ଦେଲେ । ଅଙ୍ଗ ସ୍ପର୍ଶରେ, ଆଲିଙ୍ଗନରେ, ଚୁମ୍ବନରେ ତା ମନ ପ୍ରାଣ ଉଚ୍ଚାଟ କଲେ । ସେ ଅସ୍ଥିର ଚଞ୍ଚଳ ଓ ବିନୋଦିତ ହେଲା । ତା ଦେହ ଅପୂର୍ବ ସୁଗନ୍ଧରେ ମହକିଲା । ସେ ସମୁଦ୍ର ଭଳି ଘନ ଗଭୀର ଓ ଗମ୍ଭୀର ହେଲା । ତା ଦେହରେ ସମୁଦ୍ର ଲହଡ଼ା ଭାଙ୍ଗିଲା । ତାର ସମଗ୍ର ସତ୍ତା କୃଷ୍ଣମୟ ହେଇଗଲା ।

କୃଷ୍ଣଚନ୍ଦ୍ର ଗୌରୀକୁ ସମୁଦ୍ରର ଅତଳ ଗର୍ଭରୁ ରତ୍ନ ଭଳି ତୋଳି ଆଣିଲେ । ନିତ୍ୟାନନ୍ଦଙ୍କ ଗଳାରେ ଝୁଲେଇ ଦେଲେ । ନିତ୍ୟାନନ୍ଦ କି କଳି ପାରିବ ସମୁଦ୍ରର ଗଭୀରତା । ସେ କି ବା ଆକଳନ କରିବ ତା ବିସ୍ତାର । ସେ ସ୍ତବ୍ଧ ଚକିତ ହୋଇଗଲା । ସେ ସମୁଦ୍ର ଭିତରକୁ ଲମ୍ଫଦେଲା । ସନ୍ତରଣ କରିବ ବୋଲି ବିଚାରିଲା,

ଅବଗାହନ କରିବ ବୋଲି ଚେଷ୍ଟା କଲା । ଉତ୍ତାଳ ତରଙ୍ଗ ନିତ୍ୟାନନ୍ଦକୁ ତା ଗର୍ଭରୁ ଉଠେଇ ଆଣି ଫିଙ୍ଗି ଦେଲା ବିସ୍ତୀର୍ଣ୍ଣ ବାଲୁକା ଶେଯରେ । ନିତ୍ୟାନନ୍ଦ ସମୁଦ୍ରକୁ ପଛକରି ଏବେ ଶାମୁକା ଖୋଜିଲା , ହୀରା ନୀଳା ବୈଦୁର୍ଯ୍ୟର ରଙ୍ଗ ବେରଙ୍ଗ ଶାମୁକା । ସେ ଶାମୁକା ଖୋଜୁ ଖୋଜୁ ଗୌରୀକୁ ପାଇଲା । ଗୌରୀ ଦେହରେ ଶାମୁକା ସାଉଁଟିଲା ।

ଗୌରୀର ସମଗ୍ର ଦେହ ସତେ ଯିମିତି ଶାମୁକାର ଗନ୍ତାଘର । ଆଉ ନିତ୍ୟାନନ୍ଦ ଶାମୁକାର ସୌଦାଗର । ଏବେ ସମୁଦ୍ର ଗର୍ଜିଉଠିଲା । ଘୋର ଘନ ଗର୍ଜନ କଲା, ହୁଙ୍କାର ଦେଲା । ଅଭିମାନରେ, ଆକ୍ରୋଶରେ କୂଳରେ ମଥା ପିଟିଲା । ଉତ୍ତାଳ ଫେନ ଯୁକ୍ତ ତରଙ୍ଗ ନିତ୍ୟାନନ୍ଦକୁ କୌତୁକରେ ଭରିଦେଲେ । ସେ ଗୌରୀକୁ ଜାବୁଡ଼ି ଧରିଲା । ମେରୁରେ ବାସୁକି ଛନ୍ଦି ହେଲା ଭଳି ସେ ଗୌରୀର ଅଙ୍ଗଲତା ଭିତରେ ଛନ୍ଦି ହେଇଗଲା । ସେ ଗରଳ ଉଦ୍‌ଗାରିଲା । ସମୁଦ୍ରର ଅତଳ ଗର୍ଭରେ ଏଇ ମାତ୍ର କେତେ ଟୋପା ଗରଳ ।

ନିତ୍ୟାନନ୍ଦ ଗୋଡ଼ ତଳୁ ଇହଡ଼ା ଭୂଇଁ ଓଟାରି ନେଉଛି । ସେ ଶାମୁକା ମାନଙ୍କୁ ଜାବୁଡ଼ି ଧରିଲା । ହାତରେ ଅକସ୍ମାତ ପଡ଼ିଗଲା ପାଞ୍ଚଜନ୍ୟ । ସେ ପାଞ୍ଚଜନ୍ୟରେ ନାଦ ଭରିବାକୁ ଚେଷ୍ଟାକଲା । ଦେହର ନବଦ୍ୱାର ରୁଦ୍ଧ କରି ଫୁଙ୍କିଲା । ସମଗ୍ର ବେଳା ଶଙ୍ଖଧ୍ୱନିରେ ମନ୍ଦ୍ରିତ ହେଇ ଉଠିଲା । ଧ୍ୱନି ସମୁଦ୍ରର ନୀଳିମାକୁ ଆହୁରି ଗଭୀରତର କରିଦେଲା । ଗୌରୀ ତାକୁ ବଟପତ୍ରଟିଏ ବଢ଼େଇ ଦେଲା । ତା ଉପରେ ସେ ଶୋଇପଡ଼ି ନିଜର ଡ଼ାହାଣ ଗୋଡ଼ର ବୁଢ଼ାଆଙ୍ଗୁଳିକୁ ପାଟିରେ ପୂରେଇ ଭାସିବାକୁ ଲାଗିଲା । ନିଶ୍ଚିନ୍ତିରେ, ଆନନ୍ଦରେ ।

ଏମିତି ଦିନ ପରେ ଦିନ ସମୁଦ୍ରରେ, ତା ନୀଳିମାରେ, ତାର ବାଲୁକା ଶେଯରେ ଓ ଆକାଶରେ ଉଭୟେ ଖୋଜିଲେ । ଗୌରୀ ଖୋଜିଲା ସମୁଦ୍ରର ନୀଳିମା,ତାର ବ୍ୟାପ୍ତି ଆଉ ନିତ୍ୟାନନ୍ଦ ସମୁଦ୍ରର ରଙ୍ଗିନ ଶାମୁକା । ଉଭୟେ ଥିଲେ ସମର୍ପିତ ସତ୍ତା । ଖୋଜିବାରେ ନିଷ୍ଠା ଥିଲା, ଉତ୍କଣ୍ଠା ଥିଲା ଓ ପ୍ରାପ୍ତିରେ ଥିଲା ଆନନ୍ଦ ।

ସେମାନେ ଏମିତି ଖୋଜୁ ଖୋଜୁ ଦିନେ ଝୁଣ୍ଟିପଡ଼ିଲେ । ଗୌରୀ ନିତ୍ୟାନନ୍ଦକୁ ଟେକି ଧରିଲା । ଲାଗିଲା ବାଲିରେ କ'ଣ ଗୋଟାଏ ପୋତିହେଇ ରହିଥିଲା ।

ବହୁବର୍ଷ ତଳେ ଇନ୍ଦ୍ରଦ୍ୟୁମ୍ନଙ୍କ ଘୋଡ଼ା ଏମିତି କ'ଣ ଗୋଟିଏ ପଦାର୍ଥ ବାଲିରେ ଝୁଣ୍ଟିଥିଲା ବୋଲି କିମ୍ବଦନ୍ତୀ କହେ। ସେମାନେ କୌତୂହଳୀ ହେଲେ। ଶୈଶବକୁ ଫେରିଗଲେ। ମୁଠା ମୁଠା ବାଲି ଉଠେଇଲେ। ଖୋଳି ଚାଲିଲେ ତଳକୁ ତଳ ସମୁଦ୍ରର ବେଳାରୁ ପାତାଳପୁରୀକୁ। ସମୁଦ୍ର ହସିଲା। ବୋଧହୁଏ ଭାବିଲା ପିଲାଦୁହେଁ ଖେଳୁଛନ୍ତି, ଖେଳୁଥାନ୍ତୁ। ଗୌରୀ ଏଥର ଥକି ଗଲା। ତା ଦେହ ସାରା ବାଲି। ସେ ମାଟି ତଳ ଅନ୍ଧାର ଭିତରେ ବି ସୁନାର ପ୍ରତିମା ଭଳି ଝଟକୁ ଥିଲା। ନିତ୍ୟାନନ୍ଦ ଗୌରୀକୁ ଦେଖିପଡ଼ି ଶିହରି ଗଲା।

ବାଲିଗଦା ଭିତରେ ଫୁଟି ବାହାରିଲା ମନ୍ଦିରର ଚୂଡ଼ା ଧ୍ୱଜଦଣ୍ଡ ଆୟୁଧ ଆମଳକ ବେକି ଖପୁରି ଶିଖର ଗଣ୍ଡି ବାଡ଼- ଜାଙ୍ଘ ବସନ୍ତ କଣି ପଟା କୁମ୍ଭ ପାଦ ଓ ଶେଷରେ ପୀଠ। ଚାହୁଁ ଚାହୁଁ ସେମାନଙ୍କ ଆଗରେ ଉଭା ହେଇଗଲା ଏକ ପ୍ରକାଣ୍ଡ ଦେବହର୍ମ୍ୟ। କେଉଁ ପୂର୍ବପୁରୁଷଙ୍କ କୀର୍ତ୍ତି। ସେମାନେ କୌତୂହଳୀ ହେଇ ମନ୍ଦିର ଚାରିଦିଗେ ବୁଲିଲେ। ପ୍ରଦକ୍ଷିଣ କଲେ। କାମକଳା ପିତୁଳାପିତୁଳୀମାନେ ନିମଗ୍ନ ଯାଇଛନ୍ତି ରତି କୌତୁକରେ। ସେମାନେ ଆଡ଼ କରି ମଧ୍ୟ ଏମାନଙ୍କୁ ଚାହିଁଲେନି। ସେମାନଙ୍କ ତର ନଥିଲା। ଆସକ୍ତି ସେମାନଙ୍କୁ ଆବୋରି ଦେଇଥିଲା।

ସେମାନେ ମନ୍ଦିରର ସିଂହଦ୍ୱାର ଖୋଲିଲେ। ଗର୍ଭଗୃହ ଶୂନ୍ୟ। ସିଂହାସନ ଖାଲି। ସିଂହାସନରେ ହୀରା, ନୀଳା, ମୋତି, ମାଣିକ୍ୟ ଖଞ୍ଜା ହେଇ ଅପୂର୍ବ.ଦେଖା ଯାଉଛି। ଆଭା ଉକୁଟୁଛି। ଉଭୟେ ଚକିତ ହେଇ ପଡ଼ିଲେ। ନିତ୍ୟାନନ୍ଦ କହିଲା ଗୌରୀ ଦେଖ, ଏ ମନ୍ଦିର ଏ ସିଂହାସନ ଆମ ପାଇଁ ହିଁ ଏତେ ଦିନ ଧରି ଶୂନ୍ୟ ହେଇ ରହିଥିଲା। ସିଂହାସନର କି ପ୍ରଲୋଭନ। ନିତ୍ୟାନନ୍ଦ କହିଲା ତାର ଭାରି ଇଚ୍ଛା ହେଉଛି ସେ ଥରେ ସିଂହାସନରେ ବସିବ। ଗୌରୀ ବାରଣ କଲାନି। ଗୌରୀର ହୁଏ ତ ଉପଲବ୍ଧି ନଥିଲା ସିଂହାସନରେ ବସିଲେ ମଣିଷ ପଥର ପାଲଟି ଯାଏ। ପରଂପରାରେ, ଐତିହ୍ୟରେ ବିଲୀନ ହୋଇଯାଏ। ନିତ୍ୟାନନ୍ଦ ଚାହୁଁ ଚାହୁଁ ସିଂହାସନାରୂଢ଼ ହୋଇଗଲା। ତାର ସେହି ଦଶା ହିଁ ହେଲା। ସେ ପଥର ପାଲଟି ଗଲା। ଏବେ ଧୂପ ଦୀପ ନୈବେଦ୍ୟ ଗନ୍ଧରେ ଗର୍ଭଗୃହ ସୁବାସିତ ହେଇଗଲା। ଏହା କଣ ବିଧି ପ୍ରେରିତ ଥିଲା ? ଏମିତି ମନ୍ଦିରଟିଏ ସମୁଦ୍ରକୂଳେ ପୋତି ହେଇ ପଡ଼ିଥିବ ଯୁଗଯୁଗ ଧରି। ଗୌରୀ ଓ ନିତ୍ୟାନନ୍ଦ ତାକୁ ନିଦରୁ ଉଠେଇବେ। ମନ୍ଦିର ଭିତରେ ଦେବତା ନଥିବେ। ନିତ୍ୟାନନ୍ଦକୁ ସିଂହାସନ ପ୍ରତାରିତ କରିବ। ସେ

ସିଂହାସନରେ ବସିଯିବ । ପିତୁଳା ହେଇଯିବ । ଆଉ ଗୌରୀ ସିଂହାସନ ତଳେ ଦାସୀ ହେଇ ରହିଯିବ ।

ଗୌରୀ ଆଉ କଣ ବା କରିପାରିଥାନ୍ତା । ପିତୁଳା ସମକ୍ଷରେ ଆରାଧନା କଲା । ଆଖିବୁଜି ଧ୍ୟାନସ୍ଥ ହେଲା । ଧୂପ ଦୀପ ନୈବେଦ୍ୟ ବାଢ଼ିଲା । ପ୍ରାଣର ବେଦନା ପିତୁଳା ଆଗରେ ବଖାଣିଲା । ମନ କଥା ଖୋଲି କହିଲା । ପିତୁଳା ହୁଏତ ଆଉ ଶୁଣିବା ଅବସ୍ଥାରେ ନଥିଲା । ସେ ଖାଲି ଆଖି ତରାଟି ବଲ୍‌ବଲ୍ କରି ଚାହିଁଲା । ଗୌରୀ ଏଥର ଉଠି ଠିଆହେଲା । ଗୋଡ଼ କାଢ଼ିଲା ଯିବା ପାଇଁ ସମୁଦ୍ରକୂଳକୁ ।

ପିତୁଳା ଯଦି କଥା କହିଥାନ୍ତା, ପଚାରିଥାନ୍ତା ଗୌରୀ ପୁଣି କୁଆଡ଼େ ? ଗୌରୀ କହିଥାନ୍ତା ବାହାରେ ଶୁଭୁଛି ସମୁଦ୍ରର ସଙ୍ଗୀତ, ପବନର ହିଲ୍ଲୋଳ, ନୀଳିମାର ଉଲ୍ଲାସ । ସମୁଦ୍ର ମୋତେ ଡ଼ାକୁଛି । କୁହାଟୁଛି । ବଂଶୀ ସ୍ୱନ ଭଳି । ମୋ ପାଇଁ ମୁଣ୍ଡ ପିଟୁଛି ।

ଗୌରୀ ଆସିଲା । ସମୁଦ୍ର କୂଳରେ ଠିଆହେଲା । ତାକୁ ଲାଗିଲା ସମୁଦ୍ର କୃଷ୍ଣମୟ ହେଇଯାଇଛି । ସମୁଦ୍ରର ଏତେ ବିଶାଳ ଦେହ, ପ୍ରଶାନ୍ତିର ଏତେ ବ୍ୟାପ୍ତି , ଏତେ ସୁଦୀର୍ଘ ନୀଳିମା ସବୁ ରୂପାୟିତ ହେଇଯାଇଛି ଶିଳା ପ୍ରତିମାରେ । ଅଗସ୍ତ୍ୟଙ୍କ ଚଳୁରେ ସପତ ସମୁଦ୍ର ଭଳି ।

ପୀତାମ୍ବର ପାଟରେ କୃଷ୍ଣଚନ୍ଦ୍ର ଖୁବ୍ ମନୋହର ଦେଖାଯାଉଛନ୍ତି ଦିଗ୍‌ବଳୟରେ ସୂର୍ଯ୍ୟ ଉଇଁଲା ପରି । ସେ ଶିଳାବିଗ୍ରହ ଆଗରେ ମୁଣ୍ଡିଆ ମାରିଲା । ମହନ୍ତ ଗୋସେଇଁଙ୍କୁ ପ୍ରଣାମ କଲା । ସେ ଅନୁଭବ କଲା ଉଭୟେ ତାକୁ ଅନେଇ ରହିଛନ୍ତି । ଜଣେ ରକ୍ତ ମାଂସ ଦେହର ମଣିଷ, ଯିଏ ଏବେ ସ୍ପନ୍ଦନ ରହିତ, ପ୍ରାଣହୀନ. ଅନ୍ୟଟି ସୀମାହୀନ ପାରାବାର ଯେଉଁଠି କୌମାର୍ଯ୍ୟ ସତତ ଲହଡ଼ା ଭାଙ୍ଗୁଥାଏ । ଗୋଟିକରେ ଚାହାଣି ନିଷ୍ପ୍ରଭ । ଅନ୍ୟଟି ସହସ୍ରାକ୍ଷ । ପ୍ରତି ଆଖିରେ ଚୁମ୍ବନର ମାଦକ ଭରାବିଷ । ପ୍ରୀତିର ନୀଳଜ୍ୱାଳା । ଉଭୟେ ବିଗ୍ରହ । ଅଥଚ ତା ଭିତରେ ବାରି ହେଇପଡୁଛି ସାତ ତାଳ ପ୍ରଭେଦ । ଜଣେ ଅସମ୍ପୂର୍ଣ୍ଣ ମଣିଷ ଯାହାକୁ ପରଂପରା ପିତୁଳା କରି ଗଢ଼େ ଓ ଶେଷରେ ଥାପିଦିଏ ଗୃହସ୍ଥର ଜଞ୍ଜାଳମୟ ବାଲି ଘରେ ନ ହେଲେ ନିକାଞ୍ଚନ ମଠର ନିର୍ବେଦ ସିଂହାସନରେ । ଅନ୍ୟ ଜଣେ ପୂର୍ଣ୍ଣତାର ସ୍ୱରୂପ । ଗଛରେ ପତ୍ରରେ ନଦୀରେ

ସମୁଦ୍ରରେ ସୂର୍ଯ୍ୟରେ ଚନ୍ଦ୍ରରେ ଗ୍ରହ ଓ ନକ୍ଷତ୍ରମାନଙ୍କରେ ମଣିଷ ଭିତରେ ପଶୁପକ୍ଷୀ କୀଟପତଙ୍ଗ ଦେହରେ ଚେତନମୟ ସତ୍ତା, ପରଂବ୍ରହ୍ମ । ଗୌରୀ କୃଷ୍ଣଙ୍କୁ ଅନେଇଲା । ପାଦରୁ ମସ୍ତକ ଯାଏଁ । ସେ ଚାକ୍ଷୁଷ କଲା ସମଗ୍ରବିଶ୍ୱ ବ୍ରହ୍ମାଣ୍ଡ ଉଭା ହେଇଛନ୍ତି ଏ ଶିଳା ବିଗ୍ରହର କ୍ଷୁଦ୍ର ଆୟତନ ଭିତରେ, ମୁନିଋଷି ଦେବଦେବୀ ଗନ୍ଧର୍ବଗାନ୍ଧର୍ବୀ ନରକିନ୍ନର କୋଟି କୋଟି ବିଶ୍ୱବ୍ରହ୍ମାଣ୍ଡ, ଐରାବତ, ଉଚ୍ଚୈଃଶ୍ରବା, ନନ୍ଦିନୀ, କେତେ ତପୋବନ୍ତ ବନଭୂମି ବିନ୍ଧ୍ୟାଚଳ, ହିମବତ, ଗଙ୍ଗା, ଯମୁନା ସବୁର ସମାହାର ଏ ବିଗ୍ରହ । ଗୌରୀ କୃଷ୍ଣଙ୍କୁ ବାରମ୍ବାର ନିରେଖୁଛି । ଭାବୁଥିଲା ବ୍ୟାପ୍ତିକୁ ଫେଡ଼ିଦେଇ ଆଲିଙ୍ଗନ କରିବ, ଆଘ୍ରାଣ କରିବ, ଆସ୍ୱାଦନ କରିବ । ଘେନିବ ଏ ରୂପଚର୍ଯ୍ୟାର ମହନୀୟତା ।

ଉପବନ ଭିତରକୁ ଗଲାବେଳେ ସବୁବେଳେ ଯିମିତି ଦାସୀମାନେ ଉତ୍‌କଣ୍ଠିତ ହେଇପଡୁ ଥିଲେ ଆଜିମଧ ସେମାନେ ସେମାନଙ୍କ ଖଞ୍ଜାଭିତରୁ ଗୌରୀମ୍ମାକୁ ନିଘାକଲେ । ଗୌରୀମ୍ମା ଏକାକିନୀ । ସେମାନେ ପରସ୍ପର ଭିତରେ ଆଲୋଚନା କଲେ । ଏଥର ଗୌରୀମ୍ମା ତ ଚିରଦିନ ଏକାକିନୀ ହିଁ ରହିଯିବେ ।

ଗୌରୀମ୍ମା କିନ୍ତୁ ଅବ୍ୟକ୍ତ ନୈରୂପ୍ୟ ଭୂମାର ସନ୍ଧାନରେ ଅଛନ୍ତି । ଦାସୀମାନେ ତ ଛାର ମଣିଷ । ସମୁଦ୍ର ବେଳାରେ ବାଲିଗରଡ଼ା ଗୋଟାଉଥିବା, କଙ୍କଡ଼ାଙ୍କ ପଛରେ ଗୋଡ଼ଉ ଥିବା ସାଧାରଣ ମଣିଷ । ଦାସୀମାନେ କ୍ଷୁଦ୍ର ବୁଦ୍ଧିରେ ଭାବୁଛନ୍ତି ତାହେଲେ ଗୌରୀ ଏଇମିତି ଆମରି ପାଖରେ ଚିରକାଳ ରହିଯିବେ । ମହନ୍ତ ତ ଏଥର ମଠର ସିଂହାସନରେ ବସି ମାଳା ଜପିବେ ଆଉ ଆମ ଗୌରୀମ୍ମା ବିଗତ ସ୍ମୃତିକୁ ସନ୍ତକ କରି ମଉନ ହେଇଯିବେ । ମଉଛବ କାମରେ ଧନ୍ଧି ହେଇ ସେମାନେ କ୍ଳାନ୍ତ ହେଇପଡ଼ିଥିଲେ । ଆଖିପତା ନିଦରେ ଘାରିହେଇ ପଡୁଥିଲା । ସେମାନେ ଶୋଇଗଲେ । ଯିମିତି ସଂସାରର ମଣିଷ ମାନେ ସଦା ସର୍ବଦା ମୋହଗ୍ରସ୍ତହେଇ ଶୋଇ ଯାଆନ୍ତି ।

ଗୌରୀମ୍ମା ଏଥର ଆଖିବୁଜି ପଦ୍ମାସନରେ ବସିଲା । ତା ଆଖିଆଗରେ ଦେଖାଗଲା ଏକ ବିସ୍ତୀର୍ଣ୍ଣ ଜଳରାଶି, ପାରାବାରର ଏକ କୃଷ୍ଣମୟ ସତ୍ତା । ମଠ ମହନ୍ତ ନିତ୍ୟାନନ୍ଦ ଓ ଦାସୀମାନେ ସେହି ପାରାବାର ଭିତରେ କୁଆଡ଼େ ହଜିଗଲେ । ଗୌରୀର ସ୍ମରଣ ବି ହେଲା ନାହିଁ ତାର ନିଜର ସ୍ଥିତି, ତାର ସଂସାର ।

ଗୌରୀ ଏବେ ଆଖି ଖୋଲିଲା । ସେ ସମାଧି ମଣ୍ଡପରେ କୃଷ୍ଣଚନ୍ଦ୍ରଙ୍କ ପ୍ରତିମା ଆଗରେ ବସିଛି । ରାଧାରାଣୀ ବୋଲି ନିଜକୁ ଅନୁଭବ କରୁଛି । ସମ୍ପର୍କ ଯୋଡ଼ିହେଇ ଯାଉଛି ପିତୁଳାଙ୍କ ସହିତ । ସେ ରାଧାରାଣୀ ଉଭୟଙ୍କର । ଅପ୍ରକଟ ହେଇଯାଇଥିବା ମହନ୍ତଙ୍କର ଓ ପ୍ରେମମୟ ବିଗ୍ରହ କୃଷ୍ଣଚନ୍ଦ୍ରଙ୍କର । ମହନ୍ତ ନିର୍ବାକ ଓ ନିଶ୍ଚଳ ଥିଲେ । କିନ୍ତୁ କୃଷ୍ଣଚନ୍ଦ୍ର ଗୌରୀକୁ ଦେଖିଲା ପରଠାରୁ ମୁରୁକି ମୁରୁକି ହସୁଥିଲେ । ହସ ଧୀରେ ଧୀରେ ଉଚ୍ଚାଟ ହେଲା । କୁନି କୁନି ଲହଡ଼ା ପର୍ବତ ପ୍ରମାଣେ ଉଚ୍ଚା ହେଇ ଅଜାଡ଼ି ହେଲା । ହସ ଗଗନରେ ପବନର ଖେଳିଗଲା । ଚତୁର୍ଦ୍ଦିଗେ ହସ ଚୁଣି ହେଇଗଲା । ଅଗଣିତ, ଅସୁମାରୀ ସେ ହସର ସମ୍ଭାର ।

ଗୌରୀର ଭାବନା ପିତୁଳାରୁ ଆସି ମଠରେ ନିବଦ୍ଧ ହେଲା । ସେ ଏ ଭିତରେ ମର୍ମେ ମର୍ମେ ଅନୁଭବ କରିଛି ମଠ ପରଂପରାର ପାଷାଣୀ ନିର୍ବେଦତା । ଗୃହୀମଠ କଥା ନିଆରା, ନିହଙ୍ଗୀ ମଠରେ ମହନ୍ତଙ୍କ ଧର୍ମପତ୍ନୀ ହେଇ ଏକା ସାଙ୍ଗରେ ମଠରେ ଅଥଚ ଅଲଗା ଅଲଗା ପୃଥିବୀ ଭିତରେ ରହିବାର ଯନ୍ତ୍ରଣା ଯେ କେତେ ତୀବ୍ର ହେଇପାରେ ଗୌରୀ ପ୍ରଥମରୁ କଳ୍ପନା କରିପାରିନଥିଲା । ସିମିତି ସେ କଳ୍ପନା କରିପାରିନଥିଲା ଘର ଠାରୁ ମଠ କେତେ ଦୂର । ତା ହେଲେ ତା ପାଇଁ କଣ ପାରଳାଖେମଣ୍ଡି ରହଣି ହିଁ ସ୍ୱର୍ଗଥିଲା ? ପାରଳାଖେମଣ୍ଡିର ଦିନଯାକ ଥିଲା କଳ୍ପନାମୟତାରୁ ଉତୁରିଆସି ରୂପମୟତା ଭିତରେ ନିଜକୁ ଖୋଜି ବାହିର କରିବାର ସମୟ । ହଁ, ଏତେ ଟାହି ଟାପରା ଭିତରେ ବି ସେଠି ସ୍ୱାଧୀନତା ଥିଲା । ସେଠି ଧର୍ମର ଅହେତୁକ ବନ୍ଧନ ନଥିଲା । ଏଠିର ମହନ୍ତର ଗାଦି ଅଲୋଡ଼ା ପାହାଡ଼ ଭଳି । ପରିତ୍ୟକ୍ତ ମନ୍ଦିରର ପାଚେରି । ଲଙ୍ଘିବା ଅସମ୍ଭବ । ଗୌରୀ ନିଜେ ରଚିଥିବା ବୁଢ଼ିଆଣିର ଜାଲଭିତରେ ନିଜେ ଛନ୍ଦି ହୋଇ ପଡ଼ିଲା । କିଏ ତାକୁ କହିଥିଲା ସମୁଦ୍ର ବେଳାରୁ ମୁଠା ମୁଠା ବାଲି ଖୋଳିବା ପାଇଁ ? କିଏ ବା କହିଥିଲା ମନ୍ଦିର ଚୂଡ଼ାରୁ ଓହ୍ଲେଇ ଆସି ପୀଠରେ ପହଞ୍ଚିବା ପାଇଁ ? କିଏ କହିଥିଲା ଶୂନ୍ୟଗର୍ଭକୁ ଫେଡ଼ିଦେଇ ସେ ଅନ୍ଧାର ଭିତରେ ନିତ୍ୟାନନ୍ଦକୁ ପିତୁଳାଟିଏ କରି ବସେଇ ଦେବା ପାଇଁ ? ଗୌରୀ ଏସବୁ ପ୍ରଶ୍ନର ଉତ୍ତର ପାଇପାରୁନି ।

ଗୌରୀ ବିଷଣ୍ଣ ହେଇପଡ଼ିଥିଲା । ତା ମୁହଁରେ ସରସତା ନଥିଲା । ସେ ଗମ୍ଭୀର ହେଇ ଯାଇଥିଲା । ମନ ଭିତରୁ ତୁହାକୁ ତୁହା କୋହ ଉଦ୍‌ଗାରୁଥିଲା । ସେ ଆପାତତଃ ବାହାରକୁ ସ୍ଥିର ଲାଗୁଥିଲେ ମଧ୍ୟ ତାର ଅନ୍ତର ଭିତରେ ବିଭିନ୍ନ ପ୍ରଶ୍ନ

ଆନ୍ଦୋଳିତ ହେଉଥିଲା । ସେ ନିଜକୁ ଖୁବ୍ ଅସହାୟ ଅନୁଭବ କଲା । ସେ ଅଥୟ ହେଇ କାନ୍ଦିବାକୁ ଲାଗିଲା । ଆଖିରୁ ଲୁହର ଧାରାଶ୍ରାବଣ ଯିମିତି ଛୁଟିଗଲା । ସେ ତାରି ଭିତରେ ବି ପିଲାଟି ଭଳି ଧକେଇ ଧକେଇ କହିବାକୁ ଚେଷ୍ଟାକଲା । କୃଷ୍ଣଙ୍କୁ ପଚାରିଲା, ଯିମିତି ସମୁଦ୍ର ଅକାଶକୁ ପ୍ରଶ୍ନ କରେ । ତା ହେଲେ ପ୍ରଭୁ । ଏଇଆ ତମର ଲୀଳା । ବିଚିତ୍ର ଏ ବିଚାର ତମର । ମୁଁ କାନ୍ଦୁଚି ତମରି ପାଖରେ, ଆଉ ତମେ ହସୁଛ, ମତେ ଦେଖିବି ହସିପାରୁଛ ।

ସମୁଦ୍ର ଏଥର ପ୍ରତିଧ୍ୱନି ଫେରେଇଲା । ଗୌରୀ, ମୋ ପାଇଁ ହସ କାନ୍ଦ, ସୁଖଦୁଃଖ ସବୁ ଏକାଭଳି । ମୁଁ ଏସବୁର ଊର୍ଦ୍ଧ୍ୱରେ ଏକ ନିରାମୟ ଉପଲବ୍ଧି, ଏକ କୃଷ୍ଣମୟ ଚେତନା । ସମୁଦ୍ର କହିଲା ଗୌରୀ, ତମେ ହସ, ମୋ ହସ ସାଙ୍ଗରେ ସ୍ୱର ମିଳେଇ । ତମର ସମଗ୍ର ସତ୍ତା ହସମୟ, ସମୁଦ୍ରମୟ ଓ କୃଷ୍ଣମୟ ହେଇଯାଉ । ତମେ ଲହଡ଼ା ଭଳି ଅଜାଡ଼ି ହେଇପଡ଼ । ଏହାହିଁ ତମ ପାଇଁ ମାହେନ୍ଦ୍ର ମୁହୂର୍ତ୍ତ । ସମୁଦ୍ରର ନୀଳିମାରେ ନିଜକୁ ମିଶେଇ ଦିଅ, ହଜେଇ ଦିଅ, ତମର ସବୁ ଦୁଃଖ ଯାତନା ଜିଜ୍ଞାସା ଅନ୍ୱେଷଣ ଉପଲବ୍ଧି, ସବୁ ମତେ ସମର୍ପି ଦିଅ ।

ଗୌରୀ ଶିଳା ବିଗ୍ରହ ଦେହରେ ହାତ ଅଣ୍ଡାଳି ଆଣିଲା । ଚମତ୍କାର ଉଷ୍ମ ଶୀତଳ ଅନୁଭବ । ତଳେ ମୁଣ୍ଡିଆ ମାରିଲା । ଉଠି ଠିଆହେଲା । ସେ ସମୁଦ୍ରକୁ ବାହୁଡ଼ିବ । ଯିବା ପାଇଁ ଉଦ୍ୟତ ହେଉଛି । ଅଟକି ଗଲା । ଲାଗିଲା ପଣତ ଛନ୍ଦି ହେଇଯାଇଛି ପ୍ରତିମା ସାଙ୍ଗରେ । ସେ ଫେରି ପଛକୁ ଚାହିଁଲା । ନୀଳ ପାରାବାର ହସୁଛି । ହସରେ କୋଟି କଳ୍ପର ଆକୁଞ୍ଚନ । ସେ ଅନୁଭବ କଲା ତା ଚାରିଆଡ଼େ ସମୁଦ୍ରର ବିପୁଳାୟତନ ଜଳରାଶି । ପୁଷ୍କରିଣୀ, ଉପବନ, ମଠ ପରିସର ସବୁଆଡ଼େ ପ୍ଳାବନ । କଦମ୍ବ, ଦେଉଳର ନେତ ଓ ରାସମଣ୍ଡପର ଦଧିନଉତି ହଜିଗଲେଣି । ହସର ଲହଡ଼ା ହୁଙ୍କାର କରି ଅଜାଡ଼ି ହେଇ ପଡୁଛି ପୂର୍ବ ପଶ୍ଚିମ ଉତ୍ତର ଓ ଦକ୍ଷିଣରୁ, ଦିଗରୁ ଓ ବିଦିଗରୁ । ସେ କେବଳ ଦେଖୁଛି ପାରାବାରର ସୀମାହୀନ ବିସ୍ତାର, ନୀଳିମାର ଶେଷହୀନ ବ୍ୟାପ୍ତି ଓ ସେହି ବ୍ୟାପ୍ତି ହିଁ ଉଭା ହେଇଛି ନଭଶ୍ଚୁମ୍ବି ଶିଳା ବିଗ୍ରହ ଭଳି । ଦିବ୍ୟ ଆଭା ବିମଣ୍ଡିତ, ତେଜ ଓ ଔଜ୍ଜଲ୍ୟରେ ପରିପୂର୍ଣ୍ଣ ନୀଳବିଗ୍ରହ । ଗୌରୀର ଦିବ୍ୟ ଚକ୍ଷୁ ଫେଡ଼ି ଯାଇଛି । ସେ ଅନୁଭବ କଲା ଏକ ଅଲୌକିକ, ଅବର୍ଣ୍ଣନୀୟ, ଅଦ୍ଭୁତ ଅନନ୍ତ ମହିମାମୟ, ଅପ୍ରମିତ ସୌର୍ଯ୍ୟର ସତ୍ତା । ତାର ଚେତନ, ଅବଚେତନ, ସ୍ଥିତି,

ପ୍ରକୃତି ଓ ଅନ୍ତଃକରଣ ଉଦ୍‌ଭାସିତ ହେଇଗଲା । ଏତେ ଦୁଃଖ ଭିତରେ ବି ହସି ପକେଇଲା ।

ଗୌରୀ ଏକ ଚୁମ୍ବକୀୟ ଆକର୍ଷଣରେ ଟାଣି ହେଇଗଲା । ଜ୍ୟୋତ୍ସ୍ନା ରଜନୀରେ ସମୁଦ୍ର ଯିମିତି କଲ୍ଲୋଳିତ ହେଇଯାଏ, ପ୍ରତିମା ସିମିତି ଉଲ୍ଲସିତ ହେଲା । ଗୌରୀ ପ୍ରତିମା ସାଙ୍ଗରେ ଜଡ଼ିଗଲା । କୃଷ୍ଣ ତାକୁ ଆଲିଙ୍ଗନ କଲେ । ଅଧର ଚୁମ୍ବିଲେ । ତା ପରେ ଗୌରୀ କୃଷ୍ଣଙ୍କ ବାହୁ ବନ୍ଧନ ଭିତରେ ନିଜକୁ ହଜେଇ ଦେଲା । ପ୍ରତିମା ଚିରଦିନ ପାଇଁ ଗୌରୀକୁ କୋଳ କରିନେଲା, ସମୁଦ୍ର ଯିମିତି ନଦୀକୁ କୋଳେଇ ନେଇଯାଏ । ଯିମିତି ପ୍ରାଚୀ କୋଳେଇ ନେଇଯାଏ ପାହାନ୍ତି ତାରାକୁ । ଗୌରୀ ସମୁଦ୍ରର ଘନକୃଷ୍ଣ ନୀଳିମା ଭିତରେ ହଜିଗଲା ।

ତା ପରେ ସବୁ ଶୂନ୍ ଶାନ୍ ହେଇଗଲା ।

ସବୁ ଦିନ ଭଳି ମଠରେ ସୂର୍ଯ୍ୟ ଉଇଁଲେ । ସକାଳର ମଙ୍ଗଳ ଆଳତି ଘଣ୍ଟା ମନ୍ଦିରମାନଙ୍କରେ ବାଜିଲା । ସମସ୍ତେ ଗୌରୀମାକୁ ଖୋଜିଲେ, ମହନ୍ତଙ୍କ ଠାରୁ ଆରମ୍ଭ କରି ଚାକର ପର୍ଯ୍ୟନ୍ତ । ଖଞ୍ଜାରେ ଗୌରୀମା ନାହାନ୍ତି , କବାଟ ମୁକୁଳା ପଡ଼ିଛି, ଆଲୁଅ ଜଳୁଛି । ତ୍ରସ୍ତ ହେଇ ଦାସୀମାନେ ଏଣେ ତେଣେ ଧାଇଁଲେ । ଜଗନ୍ନାଥ ମନ୍ଦିର ଓ ରାଧାକୃଷ୍ଣ ମନ୍ଦିର ବେଢ଼ାରେ ତଲାସିଲେ । ଉପବନ ଭିତରକୁ ଗଲେ । ଆକୁଳରେ ଡ଼ାକିଲେ ଗୌରୀମା ! ଗୌରୀମା ! ବୋଲି । ଉପବନ ପ୍ରତିଧ୍ୱନି ଫେରେଇଦେଲା । ପୁଷ୍କରିଣୀର କୁନି କୁନି ଲହଡ଼ା ମାନେ ଜଣେଇଦେଲେ ଗୌରୀମା ଆଉ ନାହିଁ ବୋଲି ।

ଦାସୀଏ ସମାଧି ମଣ୍ଡପ ଖୋଲିଲେ । ବଡ଼ ସଂଭ୍ରମରେ କବାଟ ମେଲିଲେ । ଏ କ'ଣ ଆଚମ୍ବିତ ରୂପ ସେମାନେ ଦେଖୁଛନ୍ତି । କୃଷ୍ଣଙ୍କ ବିଗ୍ରହ ପାଖରେ ପିତୁଳୀ ହେଇ ଉଭା ହେଇଛନ୍ତି ଗୌରୀମା । ଗୌରୀମା ସତେ ଏବେ କୃଷ୍ଣପ୍ରାଣା, ରାଧାରାଣୀ ଭଳି ପ୍ରକଟିଛନ୍ତି । ଚକ୍ଷୁ ଧ୍ୟାନସ୍ଥ । ଆଉଜି ରହିଛନ୍ତି ପ୍ରତିମାର ଭୁଜ ଉପରେ, ଚିଷ୍ଣଳ, ନିର୍ବିକଳ୍ପ ସମାଧିରେ ଯିମିତି ଜୀବାତ୍ମା ଶେଷରେ ସ୍ଥିର ହେଇଯାଏ ।

ଗୌରୀମାଙ୍କ ଗୀତଗୋବିନ୍ଦର ଖଣ୍ଡୁଆଟି କୃଷ୍ଣ ପ୍ରତିମା ଆଗରେ ତଳେ ବିଛେଇ ହେଇ ପଡ଼ିଛି । ତା ଉପରେ ଠାକୁରଙ୍କ ମଥାର କଦମ୍ବର ପେଛାଟିଏ ଝରି ଯାଇଛି ।

ମହନ୍ତ ନିତ୍ୟାନନ୍ଦ ଅତି ସନ୍ତର୍ପଣରେ ଦୌଡ଼ି ଆସିଲେ । ସମାଧି ମନ୍ଦିର ଭିତରେ ଧ୍ୟାନସ୍ଥ ନିଃଶବ୍ଦତା । ସମସ୍ତେ ଲାଗୁଛନ୍ତି ପିତୁଳି ଭଳି । କୃଷ୍ଣଚନ୍ଦ୍ରଙ୍କ ପାଖରେ ରାଧାରାଣୀ, ପାଦତଳେ ମହନ୍ତ ମହାରାଜ ଓ ଚତୁର୍ଦ୍ଦିଗେ ମଣ୍ଡଳାକାରରେ ଅଷ୍ଟସଖୀ । ଏଇଠି ରଚିତ ହେଇଯାଇଛି ମହାରାସ ।

ମହାରାସ ଦେଖୁ ଦେଖୁ ଚଟାଣ ଉପରେ ପିତୁଳାଟି ଭଳି ବସି ପଡ଼ିଲେ ନିତ୍ୟାନନ୍ଦ ।

ରୂପଂ ରୂପଂ ପ୍ରତିରୂପୋ ବଭୂବୋ
ତଦସ୍ୟ ରୂପଂ ପ୍ରତିଚକ୍ଷଣାୟ





ଦିନନାଥ ପାଠୀ

ଓଡ଼ିଆ ଚିତ୍ରଭାଷାର
ଜଣେ ଅଗ୍ରଣୀ
ଭାରତୀୟ ଚିତ୍ରକର
କଳାଐତିହାସିକ
ସର୍ଜନାଶୀଳ ଲେଖକ
ଡ଼ିଜାଇନର୍
ଭିଜୁଏଲାଇଜର୍

ଷ୍ଟୁଡ଼ିଓ ଭୀମଟାଙ୍ଗିରେ

---

ଠିକଣା :
ଅବନ୍ତୀ
ଇ ୪୯/୧୩୮୬ ଭୀମଟାଙ୍ଗି
ଭୁବନେଶ୍ୱର ୭୫୧୦୨୦

---

ଫୋନ୍ ୫୯୦୨୧୨
ଫୋନ୍/ଫାକ୍ସ ୫୯୨୮୯୫